

## ହିମାଳୟବାସୀ ଗୁରୁଙ୍କର ଆଶ୍ରିତ

# ଜଣେ ଯୋଗୀଙ୍କର ଆତ୍ମକଥା

## ଶ୍ରୀ ଏମ୍

ଆମର ସୌଭାଗ୍ୟ ଯେ ଶ୍ରୀ ଏମ୍. ଆମ ଗହଣରେ ଅଛନ୍ତି
ଓ ତାଙ୍କର ସାନ୍ନିଧ୍ୟ ଆମପାଇଁ ସହଜଲଭ୍ୟ

- ବ୍ରିଗେଡିୟର ନାରାୟଣନ୍

ଶ୍ରୀ ଏମ୍. କେରଳର ତ୍ରିଭେନ୍ଦ୍ରମରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନୁ ହିମାଳୟକୁ ଯିବାର ଅଦମ୍ୟ ଆକାଂକ୍ଷା ତାଙ୍କୁ ମାତ୍ର ଉଣେଇଶ ବର୍ଷ ବୟସରେ ଗୃହତ୍ୟାଗୀ କରିଥିଲା । ହିମାଳୟସ୍ଥିତ ବଦ୍ରିନାଥରୁ ସାମାନ୍ୟ ଦୂରରେ ଥିବା ବ୍ୟାସଗୁମ୍ଫାରେ ସେ ନିଜର ଗୁରୁଙ୍କର ସାକ୍ଷାତ ପାଇଲେ ଏବଂ ତାଙ୍କ ସହିତ ତୁଷାରାବୃତ୍ତ ହିମାଳୟରେ ଥିବା ଅନେକ ତୀର୍ଥ, ସୌନ୍ଦର୍ଯ୍ୟ ବିମଣ୍ଡିତ ସ୍ଥାନ ଓ ଗିରି ଗୁମ୍ଫାଗୁଡ଼ିକ ଭ୍ରମଣ କରିବା ସହିତ ସେ ବହୁ ସାଧୁସଙ୍ଗ କରିଥିଲେ ତଥା ତିବ୍ବତସ୍ଥିତ ତୋଲିଙ୍ଗମଠ ପର୍ଯ୍ୟନ୍ତ ଯାତ୍ରା କରିଥିଲେ । ଏହିପରି ଭାବରେ ସାରା ହିମାଳୟରେ ଭ୍ରମଣକରି ସେ ସାଢ଼େ ତିନିବର୍ଷ ବିତାଇଥିଲେ । ଗୁରୁ ମହେଶ୍ୱରନାଥଙ୍କର ଶିକ୍ଷା ତାଙ୍କର ଚେତନା ସ୍ତରରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଆଣି ଦେଇଥିଲା । ପରବର୍ତ୍ତୀ ସମୟରେ ସେ ଗୁରୁଙ୍କର ଆଜ୍ଞାନୁଯାୟୀ ହିମାଳୟ ତ୍ୟାଗକରି ଭାରତର ଅନ୍ୟାନ୍ୟ ବହୁ ତୀର୍ଥ ଭ୍ରମଣ କଲେ ଓ ସାଧାରଣ ଜଣେ ମନୁଷ୍ୟ ପରି ଜୀବନ ବିତାଇଥିଲେ - ଜୀବିକା ଉପାର୍ଜନ ପାଇଁ କାର୍ଯ୍ୟ କଲେ ଏବଂ ତାହା ସହିତ ସେ ନିଜେ ଯାହାସବୁ ଶିକ୍ଷା କରିଥିଲେ ଓ ଅନୁଭବ କରିଥଲେ, ତାହାକୁ ଅନ୍ୟମାନଙ୍କ ମଧ୍ୟରେ ବିତରଣ କରିବା ପାଇଁ ପ୍ରସ୍ତୁତି ଆରମ୍ଭ କଲେ । ଗୁରୁଙ୍କଠାରୁ ସବୁଜ ସଂକେତ ମିଳିବା ପରେ ସେ ନିଜର ଶିକ୍ଷା ଦେବାର ପ୍ରକ୍ରିୟା ଆରମ୍ଭ କଲେ । ଆଜି ମଧ୍ୟ ସେ ନିଜର ଅନୁଭବ ଓ ଜ୍ଞାନର ବିତରଣ କରି ପୃଥିବୀର ବିଭିନ୍ନ ସ୍ଥାନରେ ଭ୍ରମଣ କରୁଛନ୍ତି । ପ୍ରତିଟି ଧର୍ମର ସାରମର୍ମକୁ ଉପଲବ୍ଧ କରିଥିବା ଶ୍ରୀ ଏମ୍. କହନ୍ତି, "ମର୍ମକୁ ବୁଝିବା ଦରକାର, ସିଦ୍ଧାନ୍ତ ଦ୍ୱାରା କାମ ଚଳିବ ନାହିଁ ।" ଅତ୍ୟନ୍ତ ସରଳ ଜୀବନଯାପନ କରୁଥିବା ଶ୍ରୀ ଏମ୍. ବିବାହିତ ଓ ତାଙ୍କର ଦୁଇଟି ସନ୍ତାନ ରହିଛନ୍ତି । ଶିକ୍ଷାକ୍ଷେତ୍ରରେ ଉତ୍କର୍ଷକୁ ଅଗ୍ରାଧିକାର ଦେଉଥିବା ସତ୍‌ସଙ୍ଗ ଫାଉଣ୍ଡେସନ୍‌ର ସେ ହେଉଛନ୍ତି ଅଧ୍ୟକ୍ଷ । ବର୍ତ୍ତମାନ ସେ ଆନ୍ଧ୍ର ପ୍ରଦେଶର ମଦନପିଲ୍ଲୀରେ ବାସ କରୁଛନ୍ତି । ବେଙ୍ଗାଲୁରୁରୁ ଏହି ସ୍ଥାନରେ ପହଞ୍ଚିବାକୁ ମାତ୍ର ଦୁଇଘଣ୍ଟା ଲାଗିଥାଏ । ଶ୍ରୀ ଏମ୍.ଙ୍କ ସହିତ ନିମ୍ନଲିଖିତ ମାଧ୍ୟମ ଦ୍ୱାରା ସମ୍ପର୍କ ସ୍ଥାପନ କରାଯାଇପାରିବ

www.satsang-foundation.org କିମ୍ବା

ail.misterm@gmail.com

## ହିମାଳୟବାସୀ ଗୁରୁଙ୍କର ଆଶ୍ରିତ

# ଜଣେ ଯୋଗୀଙ୍କର ଆତ୍ମକଥା


## ଶ୍ରୀ ଏମ୍

ଓଡ଼ିଆ ଅନୁବାଦ

ଶ୍ରୀମତୀ ଦିପ୍ତି ପଟ୍ଟନାଏକ





ମ୍ୟାଜେଷ୍ଟା ପ୍ରେସ୍ ଏଣ୍ଡ ପବ୍ଲିକେଶନ୍ ପ୍ରାଇଭେଟ୍ ଲିମିଟେଡ୍

Authorized odia translation from the English language edition, entitled
**Apprenticed to a Himalayan Master – A Yogi's Autobiography** by **Sri M.**

**ହିମାଳୟବାସୀ ଗୁରୁଙ୍କର ଆଶ୍ରିତ**
**ଜଣେ ଯୋଗୀଙ୍କର ଆତ୍ମକଥା**

ମୂଳ ରଚନା: **ଶ୍ରୀ ଏମ୍**

ଓଡ଼ିଆ ଅନୁବାଦ: **ଶ୍ରୀମତୀ ଦିପ୍ତି ପଟ୍ଟନାଏକ**



କଭର ଫଟୋ : ନରେଶ ରମନ

ପ୍ରଥମ ଓଡ଼ିଆ ସଂସ୍କରଣ : ୨୦୧୩

ISBN: 978-819100969-9

ପ୍ରକାଶକ :



**ମ୍ୟାଜେଣ୍ଟା ପ୍ରେସ୍ ଏଣ୍ଡ ପବ୍ଲିକେଶନ୍ ପ୍ରାଇଭେଟ୍ ଲିମିଟେଡ୍**
କାଭେରୀ ଟାୱାର - କଲେଜ ରୋଡ୍
ମାଡ଼ିକେରି,
କୁର୍ଗ, କର୍ଣ୍ଣାଟକ -୫୭୧୨୦୧ (ଭାରତ)
ଫୋନ୍ : +୯୧୯୮୪୫୮୩୧୬୮୩
www.magentapress.in

ବିତରକ :



**ଏ.କେ. ମିଶ୍ର ଏଜେନ୍‌ସିଜ୍ (ପ୍ରା) ଲିମିଟେଡ୍**
'ସତ୍ୟଭାମା', ରକ୍ସି ଲେନ୍, ବାଦାମବାଡ଼ି, କଟକ - ୭୫୩୦୦୯
ଫୋନ୍ : (୦୬୭୧) ୨୩୨୨୨୪୪/୫୫, ଫ୍ୟାକ୍ସ : ୨୩୨୨୨୭୭
E-mail : akm.pvtltd_ecdrid@bsnl.in



ମୁଦ୍ରଣ : ମିରର୍ ପବ୍ଲିଶିଙ୍ଗ୍, ଏମ୍.ଏସ୍.ପି. ଏଲ୍, ପୁନେର ବିଭାଗ

# ସୂଚୀ

# କୃତଜ୍ଞତା ସ୍ୱୀକାର

ଯେଉଁ କେତେଜଣ ବନ୍ଧୁଙ୍କର ସାହାଯ୍ୟ ବ୍ୟତୀତ ଏହି ପୁସ୍ତକଟି ସମ୍ଭବ ହୋଇ ନ ଥାନ୍ତା, ସେମାନଙ୍କୁ ମୁଁ ଗଭୀର କୃତଜ୍ଞତା ଜଣାଉଛି । ସେମାନଙ୍କ ବିଷୟ ନିମ୍ନରେ ଉଲ୍ଲେଖ କରାଯାଇଛି ।

ସେପରି ଜଣେ ହେଉଛନ୍ତି କାଇଜର କରାଚିଓ୍ୱାଲା, ସେ ବହୁ କଷ୍ଟ ସ୍ୱୀକାର କରି ମୁଁ ଏଠିସେଠି ଗାରେଇଥିବା ଓ ପ୍ରାୟ ପଢ଼ି ହେଉ ନଥିବା ଲେଖାଗୁଡ଼ିକୁ ସଂଗ୍ରହ କରି ତାହାକୁ ଏକ ସହଜପାଠ୍ୟ ପାଣ୍ଡୁଲିପିରେ ପରିଣତ କରିଛନ୍ତି ।

ନିଃସ୍ୱାର୍ଥପର ଭାବରେ ଓ ବିଚକ୍ଷଣତାର ସହିତ ବାଲାଜୀ ଓ ଶ୍ରୀଧର ବହିଟିର ପ୍ରକାଶନ ଓ ବ୍ୟବସାୟିକ ଦିଗର ଦାୟିତ୍ୱ ବହନ କରିଛନ୍ତି ।

ମୋର ଅତ୍ୟନ୍ତ କୁଣ୍ଠା ସତ୍ତ୍ୱେ ପ୍ରଥମରୁ ହିଁ ଶୋଭା ରେଡ୍‌ଡୀ ବହିଟିରେ ଛପା ହୋଇଥିବା ବେଶ୍ କେତେଗୁଡ଼ିଏ ଫଟୋ ସଂଗ୍ରହ କରିବାର ଦାୟିତ୍ୱ ନେଇ, ତାହାକୁ ସୁଚାରୁରୂପେ ସମ୍ପାଦନ କରିଛନ୍ତି ।

ମୋର ପୁଅ ରୋଶାନ ଯେ ମୋର ଜଣେ ବନ୍ଧୁ ମଧ୍ୟ ଏବଂ ରାଧା ମହେନ୍ଦ୍ରୁ ଫଟୋଗୁଡ଼ିକର ନିର୍ବାଚନପାଇଁ ବିଶେଷ ସାହାଯ୍ୟ କରିଛନ୍ତି ଓ ଫଟୋଗୁଡ଼ିକର ସୁବିନ୍ୟାସ ହେଉଛି ସେମାନଙ୍କର ନିଷ୍ଠାର ଫଳ ।

ବିଜୟ ଭାସ୍କର ଅଫିସ କାମର ତଦାରଖ କରିଛନ୍ତି ।

ଏମାନଙ୍କ ବ୍ୟତୀତ ମୋର ସବୁ ପ୍ରିୟ ବନ୍ଧୁମାନଙ୍କର ଆଗ୍ରହାତିଶଯ୍ୟ ହେଉଛି ଏପର୍ଯ୍ୟନ୍ତ ଅତ୍ୟନ୍ତ ଗୋପନୀୟ ରହିଥିବା ମୋର ଜୀବନର ଅଧ୍ୟାୟଗୁଡ଼ିକୁ ପ୍ରକାଶ କରିବା ପାଇଁ ମୋର ପ୍ରେରଣାର ଉତ୍ସ ।

ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି ।

**ଶ୍ରୀ ଏମ୍**

# ଅନୁବାଦ ସମ୍ପର୍କରେ.....

ପୂଜ୍ୟ ଶ୍ରୀ ଏମ୍. ଇଂରାଜୀରେ ଲେଖିଥିବା ନିଜର ଆତ୍ମଜୀବନୀକୁ ଓଡ଼ିଆରେ ଅନୁବାଦ କରିବାର ସୁଯୋଗ ଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ବୋଲି କହିବା ଧୃଷ୍ଟତା ହେବ; କାରଣ, ଏହା ଏପରି ଏକ ଅନୁଗ୍ରହ, ଯାହାକୁ ଭାଷାରେ ପ୍ରକାଶ କରିବା ସହଜ ନୁହେଁ । ଏହାର ଅନୁବାଦ କାର୍ଯ୍ୟ ଆରମ୍ଭ କରିବାଠାରୁ ଶେଷ କରିବା ପର୍ଯ୍ୟନ୍ତ ମୋର ହୃଦୟ ଏକ ଅନାସ୍ୱାଦିତ ଆନନ୍ଦର ଅନୁଭବରେ ଉଦ୍‌ବେଳିତ ହୋଇ ରହିଥିଲା । ଅନୁବାଦକାଳରେ ଅନୁଭବ କରିଛି, ଯେପରି ଶ୍ରୀ ଏମ୍‌ଙ୍କ ସହିତ ମୁଁ ଦାକ୍ଷିଣାତ୍ୟରେ ସାଗରର ବେଳାଭୂମିରୁ ଆରମ୍ଭ କରି ହିମାଳୟର ଦୁର୍ଗମ ଅଞ୍ଚଳରେ ଭ୍ରମଣ କରୁଛି । ସଂକୀର୍ଣ୍ଣ ଗିରିପଥ ଅବଲୀଳାକ୍ରମେ ଅତିକ୍ରମ କରିଯାଇଛି, ସ୍ୱର୍ଗୀୟ ଦୃଶ୍ୟଗୁଡ଼ିକର ଅବଲୋକନ କରିଛି; ମନ୍ଦାକିନୀ, ଅଳକନନ୍ଦା, ଗଙ୍ଗା, ଯମୁନା ଆଦି ପୁଣ୍ୟତୋୟା ନଦୀମାନଙ୍କରେ ଅବଗାହନ କରିଛି, ଅସଂଖ୍ୟ ଦେବଦେବୀଙ୍କର ବନ୍ଦନା କରିଛି, ହେମକୁଣ୍ଡର ବରଫମିଶା ଶୀତଳ ଜଳରେ ବୁଡ଼ ପକାଇ ପବିତ୍ର ହୋଇଯାଇଛି, ଫୁଲର ଉପତ୍ୟକାର ଅତୁଳନୀୟ ସୌନ୍ଦର୍ଯ୍ୟରେ ବିମୋହିତ ହୋଇଛି, ରଜତ ମୁକୁଟ ପରିହିତ ପାର୍ବତ୍ୟ ଶୃଙ୍ଗଗୁଡ଼ିକର ଗାମ୍ଭୀର୍ଯ୍ୟ ମୋତେ ଚକିତ କରିଛି ଓ ଗିରିଗୁମ୍ଫାରେ ବାସ କରୁଥିବା ପୁଣ୍ୟାତ୍ମାମାନଙ୍କର ଗୁରୁଗମ୍ଭୀର ସ୍ତୋତ୍ର ଉଚ୍ଚାରଣର ପବିତ୍ର ଧ୍ୱନିରେ ରୋମାଞ୍ଚିତ ହୋଇଛି । ତୁଷାରକଣାଯୁକ୍ତ ହିମଶୀତଳ ପବନ ମୋତେ ପ୍ରକମ୍ପିତ କରିଛି ତ ସାଧୁସନ୍ଥମାନଙ୍କର ଧୁନିର ଉଷ୍ମତା ମୋତେ ଉଜ୍ଜୀବିତ କରିଛି । ଦେବତାତ୍ମା ହିମାଳୟଙ୍କର ଏହି ଉପଲବ୍ଧି ମୋର ମନକୁ ପ୍ରସାରିତ କରିଛି, ଅନ୍ତର୍ଲୋକରେ ଏକ ଦୀପ୍ତ ଆଲୋକଶିଖା ପ୍ରଜ୍ୱଳିତ କରିବା ସହିତ ମୋ'ପରି ମନ୍ତ୍ରହୀନ, ଜ୍ଞାନହୀନ ଲୋକଟିର ମନରେ ଆଧ୍ୟାତ୍ମିକ ଭାବନାର ଉଦ୍ରେକ କରାଇଛି । ଏହି ଅନୁଭୂତି ଅତୁଳନୀୟ । ସେଥିପାଇଁ ଶ୍ରୀ ଏମ୍‌ଙ୍କ ଚରଣରେ କୋଟି କୋଟି ପ୍ରଣାମ ।

କର୍ଣ୍ଣାଟକ ରାଜ୍ୟର ଅବସରପ୍ରାପ୍ତ ପୁଲିସ ମହାନିର୍ଦ୍ଦେଶକ ଶ୍ରୀ ଅଜୟ କୁମାର ସିଂହ ଏହି ଜୀବନକଥାକୁ ହିନ୍ଦୀରେ ଅନୁବାଦ କରିଛନ୍ତି । ସେ ମୋତେ କାର୍ଯ୍ୟଟିକୁ ସମାପ୍ତ କରିବା ପାଇଁ ପ୍ରେରଣା ଦେବା ସହିତ ତାଙ୍କର ପାଣ୍ଡୁଲିପିର ପ୍ରତିଲିପି ଯୋଗାଇଦେଇ ମୋର ଅନୁବାଦ କାର୍ଯ୍ୟକୁ ସୁଗମ କରିଛନ୍ତି । ତାଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଶ୍ରୀ ସରୋଜ ରଞ୍ଜନ ମହାନ୍ତି ମୋର ଏହି କାର୍ଯ୍ୟରେ ମୋତେ ଅନେକ ସାହାଯ୍ୟ କରିଛନ୍ତି ଓ ବହିଟିର ସୁବିନ୍ୟାସପାଇଁ ସେ ଅନେକାଂଶରେ ଦାୟୀ । ତାଙ୍କ ନିକଟରେ ମୁଁ ଋଣୀ ।

ଆଶା କରେ, ଏହି ଗ୍ରନ୍ଥଟିର ଅଧ୍ୟୟନ ପାଠକକୁ ଏକାଗ୍ର ହେବାରେ ଓ ସତ୍‌ମାର୍ଗ ଅବଲମ୍ବନ କରିବାରେ ସହାୟକ ହେବ ।

**ଦୀପ୍ତି ପଟ୍ଟନାୟକ**

# ପୂର୍ବାଭାସ

ମୁଁ ଆପଣଙ୍କୁ ମୋ ସହିତ ଭାରତର ଦକ୍ଷିଣତଟରୁ ରହସ୍ୟମୟ ହିମାଳୟର ହିମାଚ୍ଛାଦିତ ଶିଖରଗୁଡ଼ିକ ପର୍ଯ୍ୟନ୍ତ ଏହି ଦୁଃସାହସିକ ଯାତ୍ରାରେ ନେଇ ଫେରିବା ପୂର୍ବରୁ (ଯେଉଁ ଯାତ୍ରାରେ ଆମେ ଅସାଧାରଣ ବ୍ୟକ୍ତିମାନଙ୍କୁ ଭେଟିବା, ଅପୂର୍ବ ଏବଂ ଅବିଶ୍ୱସନୀୟ ଅନୁଭବ ବିଷୟରେ ଆଲୋଚନା କରିବା) କିଛି କହି ରଖିବାକୁ ଚାହେଁ । ତାହା ହେଲେ ଆପଣମାନେ ଯଥାର୍ଥ ଭାବରେ ବୋଧକ୍ଷମ ହୋଇପାରିବେ ।

ଏହି ପୁସ୍ତକରେ ଲିଖିତ ଅଧିକାଂଶ ଅନୁଭୂତିକୁ ମୁଁ ଏପର୍ଯ୍ୟନ୍ତ ମୋର ହୃଦୟରେ ଗୋପନ କରି ରଖିଥିଲି । ମୋର ଅନ୍ତରଙ୍ଗ ବନ୍ଧୁମାନେ ବହୁ ସାଧସାଧନା ପରେ ମଧ୍ୟ ମୋତେ ମୋର ସେହି ଅନୁଭୂତି ବିଷୟରେ ଖୋଲିକରି କହିବାକୁ ରାଜି କରାଇ ପାରିନଥିଲେ । ମୋ ଚେତନା ଭିତରେ କ'ଣ ଗୁପ୍ତ ଭାବରେ ରହିଛି ସେ ବିଷୟରେ କେବଳ ଏଠି ସେଠି କିଛି ସୂଚନା ଦେଇଥିଲି ।

ଯେଉଁ ବିଷୟରେ ମୁଁ ଏତେ ଗୋପନୀୟତା ଅବଲମ୍ବନ କରୁଥିଲି, ତାହାକୁ ବର୍ତ୍ତମାନ କାହିଁକି ଏତେ ଖୋଲାଖୋଲି ଭାବରେ ପ୍ରକାଶ କରୁଛି ?

ଏହି ପ୍ରଶ୍ନର ଉତ୍ତର ହେଲା–

ମୋର ଗୁରୁ ବାବାଜୀ ମୋତେ ଏହି କାର୍ଯ୍ୟପାଇଁ ଗତ ଦୁଇବର୍ଷ ତଳେ ହିଁ ସବୁଜ ସଙ୍କେତ ଦେଲେ । ପୂର୍ବରୁ ଅବଶ୍ୟ ସେ ମୋତେ ଆଭାସ ଦେଇଥିଲେ ଯେ, ଦିନେ ନା ଦିନେ ମୁଁ ମୋର ଆତ୍ମକଥା ଲେଖିବି, କିନ୍ତୁ ନିଶ୍ଚିତଭାବରେ କୌଣସି ନିର୍ଦ୍ଦେଶ ଦେଇ ନ ଥିଲେ । ତେଣୁ ମୁଁ ଅପେକ୍ଷା କରି ରହିଥିଲି । ତା'ପରେ ମଧ୍ୟ ମୋର ଛ'ମାସରୁ ଅଧିକ ସମୟ ଅସ୍ଥିରତା ମଧ୍ୟରେ କଟିଲା । ଶେଷରେ ବହୁ କୁଣ୍ଠାର ସହିତ ମୁଁ ଲେଖା ଆରମ୍ଭ କଲି । ତା'ର ମୁଖ୍ୟ କାରଣ ହେଉଛି ଦୁଇଟି ।

ପ୍ରଥମ, ମୋର ଭୟ ଥିଲା ଯେ, ମୋର ଅନୁଭବଗୁଡ଼ିକର ସମ୍ମୋହକ କାହାଣୀଗୁଡ଼ିକର ମୋହଜାଲରେ ଛନ୍ଦି ହୋଇ ପ୍ରକୃତ ଆଧ୍ୟାତ୍ମିକ ଅନ୍ୱେଷଣକାରୀ କାଳେ ଆଧ୍ୟାତ୍ମିକ ଯାତ୍ରାର ବ୍ୟବହାରିକ ଏବଂ ବାସ୍ତବ ଦିଗଗୁଡ଼ିକ ବିଷୟ ବିସ୍ମୃତ ହୋଇଯିବ ।

ଦ୍ୱିତୀୟ, ବର୍ଣ୍ଣନାର କିଛି ଅଂଶକୁ ଅବିଶ୍ୱସନୀୟ ଭାବରେ ବିଚିତ୍ର ବୋଲି ଭାବି କାଳେ ଛିଦ୍ରାନ୍ୱେଷୀ ପାଠକ ପୂରା ପୁସ୍ତକଟିକୁ ହିଁ କପୋଳ–କଳ୍ପିତ ବୋଲି ଭାବିନେବ ।

ସେ ଯାହା ମଧ୍ୟ ହେଉ, ନିମ୍ନଲିଖିତ କାରଣଗୁଡ଼ିକ ପାଇଁ ମୁଁ ପୁସ୍ତକଟି ଲେଖିବାର ସପକ୍ଷରେ ସିଦ୍ଧାନ୍ତ ନେଲି ।

ପ୍ରଥମତଃ ମୋର ବୋଧ ହେଲା, ମୁଁ ଯାହା ଅନୁଭବ କରିଛି, ତାହା ବର୍ଣ୍ଣନା କରିବା ହେଉଛି ମୋର କର୍ତ୍ତବ୍ୟ । ଯେଉଁ କେତେଜଣ ଅଳ୍ପସଂଖ୍ୟକ ସମାଲୋଚନାପ୍ରିୟ ପାଠକ ଅଛନ୍ତି, ସେମାନେ ଏହାକୁ ଗ୍ରହଣ ବା ପ୍ରତ୍ୟାଖ୍ୟାନ କରିପାରନ୍ତି । କିନ୍ତୁ ମୁଁ ଯଦି ମୋର କାହାଣୀ ବର୍ଣ୍ଣନା କରିବାକୁ କୁଣ୍ଠାବୋଧ କରେ, ତେବେ ଏହା ଅଧିକ ସଂଖ୍ୟକ ପାଠକମାନଙ୍କ ପ୍ରତି ଅନ୍ୟାୟ ଆଚରଣ ହେବ ।

ଦ୍ୱିତୀୟତଃ, 'The Autobiography of a Yogi' ପୁସ୍ତକଟି ପ୍ରକାଶ ପାଇବା ପରେ, ଖୁବ୍ କମ୍ ସଂଖ୍ୟକ ପ୍ରମାଣସିଦ୍ଧ ଆଧ୍ୟାତ୍ମିକ ଆତ୍ମଚରିତ ପ୍ରକାଶିତ ହୋଇଛି । ସେଗୁଡ଼ିକର ଲେଖକମାନେ ମଧ୍ୟ ସେସବୁର ଆଲୋଚନାପାଇଁ ଜୀବିତ ନାହାନ୍ତି । ତା' ବ୍ୟତୀତ ସ୍ୱାମୀ ଯୋଗାନନ୍ଦଙ୍କ ଆତ୍ମଚରିତ ଯେତେ ପ୍ରମାଣସିଦ୍ଧ ହେଲେ ମଧ୍ୟ ସେ ବ୍ୟକ୍ତିଗତ ଭାବରେ ବେଶି ସମୟ ହିମାଳୟରେ ବ୍ୟତୀତ କରି ନାହାନ୍ତି । ତେଣୁ ମୁଁ ସ୍ଥିର କଲି ଯେ ମୋର ଅନୁଭୂତି, ବିଶେଷରେ ହିମାଳୟରେ ହୋଇଥିବା ମୋର ଅନୁଭୂତିଗୁଡ଼ିକୁ ମୋର ବର୍ତ୍ତମାନ ହିଁ ବର୍ଣ୍ଣନା କରିବା ଆବଶ୍ୟକ । କାରଣ ଜଣ ଜଣ କରି ଆଗ୍ରହୀ ବ୍ୟକ୍ତିଙ୍କ ସହିତ ସେହି ସବୁ ଅନୁଭୂତି ବିଷୟରେ ଆଲୋଚନା କରିବାପାଇଁ ମୁଁ ଉପଲବ୍ଧ ।

ତୃତୀୟତଃ, ବାବାଜୀ ଏବଂ ଶ୍ରୀ ଗୁରୁଙ୍କ ପରି ମହାନ ସାଧକ ଓ ଗୁରୁମାନେ ଆଧ୍ୟାତ୍ମିକ ବିବର୍ତ୍ତନ ପ୍ରକ୍ରିୟାକୁ ପରୋକ୍ଷରେ ରହି, ନିଃଶବ୍ଦରେ ପ୍ରଭାବିତ କରିଥାଆନ୍ତି ଯଦିଓ ସେମାନଙ୍କର ଉପସ୍ଥିତି ବିଷୟରେ ବହୁତ କମ୍ ଲୋକ ଜାଣନ୍ତି । ଏହି ବିଷୟଟି ପ୍ରମାଣ କରିବା ମୋର ଉଦ୍ଦେଶ୍ୟ ଥିଲା ।

ପାଠକମାନଙ୍କୁ ମୋର ଅନୁରୋଧ, ବହିଟିର ଯେଉଁ ଅଂଶଗୁଡ଼ିକ ସେମାନଙ୍କୁ ଅବାସ୍ତବ ବା କାଳ୍ପନିକ ପରି ଲାଗୁଛି, ସେଗୁଡ଼ିକୁ ସେମାନେ ଦରକାର ପଡ଼ିଲେ ବାଦ୍ ଦେଇ ବହିଟିର ବାକି ଅଂଶ ପଢ଼ନ୍ତୁ  ଏବଂ ଶ୍ରୀ ଗୁରୁ ଓ ବାବାଜୀଙ୍କର ମହାନ୍ ଶିକ୍ଷା ବିଷୟରେ ଅବଗତ ହୁଅନ୍ତୁ । ମୁଁ ମୋର ଗୁରୁଙ୍କ ବିଷୟରେ ସ୍ୱାମୀ ବିବେକାନନ୍ଦ ତାଙ୍କର ଗୁରୁଙ୍କ ବିଷୟରେ ଯାହା କହିଥିଲେ, ତାହା ହିଁ କେବଳ କହିପାରେ– "ତାଙ୍କର ପବିତ୍ର ପାଦପଦ୍ମର ଗୋଟିଏ ଧୂଳିକଣା ହଜାରଟା ବିବେକାନନ୍ଦ ସୃଷ୍ଟି କରିପାରିବାପାଇଁ ସକ୍ଷମ ।"

ବିବେକାନନ୍ଦ ବଦଳରେ ଯଦି ଏମ୍ (M) ଲେଖାଯାଏ, ତେବେ ଆପଣମାନେ ମୋ' କଥାର ଅର୍ଥ ବୁଝିପାରିବେ ।

ତେଣୁ ପ୍ରିୟ ପାଠକମାନେ ଏହି ବିସ୍ମୟକର ଯାତ୍ରାରେ ମୋର ସଙ୍ଗୀ ହୁଅନ୍ତୁ ଏବଂ ମହାନ୍ ସାଧକମାନଙ୍କର ଆଶୀର୍ବାଦ ଆପଣମାନଙ୍କୁ ପ୍ରାପ୍ତ ହେଉ ।

ଆସନ୍ତୁ, ଯାତ୍ରାରମ୍ଭ କରିବା......

# 1. ପ୍ରାରମ୍ଭ

ଆଜିକୁ ଚାଳିଶବର୍ଷ ପୂର୍ବେ ଭାରତର ଦକ୍ଷିଣତମ ରାଜ୍ୟ କେରଳର ଗୋଟିଏ ଊଣେଇଶ ବର୍ଷ ବୟସ୍କ କିଶୋର ହିମାଳୟସ୍ଥିତ ବ୍ୟାସଙ୍କ ଗୁମ୍ଫାରେ ଗଭୀର ଧ୍ୟାନରେ ବୁଡ଼ି ରହିଥିବାର ଦେଖାଯାଇଥିଲା । ଏହି ସ୍ଥାନଟି ହେଉଛି ବଦ୍ରିନାଥ ନିକଟରେ । ଏହାଠାରୁ ଅଳ୍ପ ଦୂରରେ ରହିଛି ଭାରତ-ତିବ୍ବତ ସୀମାରେଖା । ସେ ସମୟରେ ମଧ୍ୟ ଜଣେ କିଶୋର ହିମାଳୟକୁ ଧ୍ୟାନ କରିବାକୁ ଯିବାଟା ଗୋଟାଏ ସାଧାରଣ ଘଟଣା ନ ଥିଲା । ଏହି ଘଟଣାଟି ଆହୁରି ଅବିଶ୍ୱାସ୍ୟ ଥିଲା, କାରଣ କିଶୋରଟି ହିନ୍ଦୁ ପରିବାରରେ ଜନ୍ମ ହୋଇ ନ ଥିଲା ।

ଏହି କିଶୋରଟି କେମିତି ଯୋଗୀ ହେଲା; ଏବଂ ଏକ ରହସ୍ୟମୟ ତଥା ମନୋମୁଗ୍ଧକର ଜଗତ ତାହାର ଅକଳ୍ପନୀୟ ଶକ୍ତି ଏବଂ ବିଶାଳତା ନେଇ କିପରି ତା' ସମ୍ମୁଖରେ ଉଦ୍‌ଭାସିତ ହେଲା, ତାହା ହିଁ ହେଉଛି ମୋର ଜୀବନର କଥା । ମୁଁ ହେଉଛି ସେହି କିଶୋର ।

ଆପଣମାନେ ଅନୁମତି ଦେଲେ, ମୁଁ ପ୍ରଥମରୁ ହିଁ ଆରମ୍ଭ କରିବି । ଯେତେଶୀଘ୍ର ସମ୍ଭବ ଆମେ ଚିର ତୁଷାର ରାଜ୍ୟରେ ପହଞ୍ଚିବାକୁ ଚେଷ୍ଟା କରିବା । ସେହି ବରଫାବୃତ୍ତ ହିମାଳୟର ଶୃଙ୍ଗଗୁଡ଼ିକରେ ରହିଥିଲେ ମୋର ବନ୍ଧୁ, ଦାର୍ଶନିକ ଓ ପଥ ପ୍ରଦର୍ଶକ- ମୋର ପ୍ରିୟ ଶିକ୍ଷକ, ମୋର ପ୍ରଭୁ । ତାଙ୍କର ଦୟା ଓ ଆଶୀର୍ବାଦରୁ ମୁଁ ଆତ୍ମଚେତନାର ବୃହତ୍ତର ପରିସରକୁ ଆରୋହଣ କରିବା ବିଷୟରେ ଶିକ୍ଷା ଲାଭ କଲି ।

ସେହିସବୁ ସ୍ଥାନର ମହିମା ବିଷୟ ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ; କିନ୍ତୁ ଭାଷା ବ୍ୟତୀତ ଆମ ପାଖରେ ଅନ୍ୟ କୌଣସି ଉପାୟ ମଧ୍ୟ ନାହିଁ । ଆସନ୍ତୁ ବନ୍ଧୁଗଣ ଗଭୀର ଜଙ୍ଗଲ ଭିତର ଦେଇ ଗତି କରିବା । ଦେଖିବା ଅତି ଚମତ୍କାର ଦୃଶ୍ୟ- ଉଜ୍ଜ୍ୱଳ ପୁଷ୍ପର ପବନରେ ଦୋଳନ, ଗୀତ ଗାଉଥିବା ପକ୍ଷୀ, ବିରାଟ ନଦୀଗୁଡ଼ିକର ଉଚ୍ଛ୍ୱସିତ ପ୍ରବାହ, ରାସ୍ତାରେ ଥିବା ସୁଉଚ୍ଚ ନିରବ ବରଫାବୃତ୍ତ ହିମାଳୟର ଗମ୍ଭୀର ଉପସ୍ଥିତି । ଏହି ଦୃଶ୍ୟ

ଏପରି ଯେ, ସ୍ୱତଃ ବାକ୍‌ରୋଧ ହୋଇଯାଏ । ପୁରାତନ ଋଷିମାନେ କ'ଣ ଏହିକଥା କହି ନ ଥିଲେ– 'ଯଦ୍ ବାଚା ନା ଅଭ୍ୟୁଦିତମ୍' ଅର୍ଥାତ୍ ସେହି ମହିମାକୁ ଭାଷାଦ୍ୱାରା ମଧ୍ୟ ବର୍ଣ୍ଣନା କରିହେବ ନାହିଁ ।

ପର୍ବତମାନଙ୍କର ରାଜା ହିମବାନଙ୍କର ଲଜ୍ଜାଶୀଳା କନ୍ୟା ପାର୍ବତୀଙ୍କ ସମୀପବର୍ତ୍ତୀ ହେବାକୁ ଆପଣମାନେ ଯେତେ ଉତ୍କଣ୍ଠିତ ମୁଁ ମଧ୍ୟ ସେତିକି ପରିମାଣରେ ବ୍ୟଗ୍ର କିନ୍ତୁ ଆରୋହଣ କରିବା ପୂର୍ବରୁ କେତେଗୁଡ଼ିଏ ଆବଶ୍ୟକୀୟ ଜିନିଷପତ୍ର ସଂଗ୍ରହ କରିବାକୁ ପଡ଼ିବ । ଯେତିକି ନିହାତି ଦରକାର, ସେତିକି ଜିନିଷ ମୁଁ ସଂଗ୍ରହ କରିନେବି ସମୟନଷ୍ଟ ନ କରି ।

ମୁଁ ଥିରୁବନନ୍ତପୁରମରେ ଜନ୍ମଗ୍ରହଣ କରିଥିଲି । ଏହାକୁ ଅନନ୍ତ ସର୍ପ ଉପରେ ଶାୟିତ ବିଷ୍ଣୁଙ୍କ ସହର ବୋଲି କୁହାଯାଏ । ସଂସ୍କୃତରେ ଅନନ୍ତ ଅର୍ଥ ହେଲା, ଯାହାର କୌଣସି ଅନ୍ତ ନାହିଁ । ବ୍ରିଟିଶମାନେ ସେମାନଙ୍କର ଶତାଧିକ ବର୍ଷର ରାଜୁତି ସମୟରେ ଏହାର ନୂତନ ନାମକରଣ କରିଥିଲେ ତ୍ରିଭେନ୍ଦ୍ରମ । ଦକ୍ଷିଣଭାରତର ଶେଷରେ ଥିବା ଏହି ଉପକୂଳବର୍ତ୍ତୀ ସହରଟି ହେଉଛି କେରଳ ରାଜ୍ୟର ରାଜଧାନୀ । 1948 ମସିହାରେ ନଦୀ ପର୍ବତ ବେଷ୍ଟିତ ଓ ସବୁଜିମା ମଣ୍ଡିତ କେରଳ ଥିଲା ଯେମିତି ଅତ୍ୟଧିକ ଲୋକସଂଖ୍ୟା ଥିବା ଗୋଟିଏ ଗାଁ ।

1948 ମସିହାର ନଭେମ୍ବର ଛ' ତାରିଖରେ ମୋର ଜନ୍ମ ହୋଇଥିଲା । ଗୋଟିଏ ବିଦେଶାଗତ ପଠାଣ ପରିବାରରେ । ମୋର ପୂର୍ବଜମାନେ କେରଳକୁ ଭଡ଼ାଟିଆ ସୈନ୍ୟ ଭାବରେ ଆସିଥିଲେ ଓ ଟ୍ରାଭାଙ୍କୋରର ସେହି ସମୟର ଶକ୍ତିଶାଳୀ ମହାରାଜା ମହେନ୍ଦ୍ର ବର୍ମାଙ୍କର ସୈନ୍ୟବାହିନୀରେ ସାମିଲ ହୋଇଥିଲେ ।

ଏହା ହେଉଛି ଗୋଟାଏ ଅନ୍ୟଧରଣର ରଙ୍କରୁ ରାଜା ହେବା ପରି କାହାଣୀ – ଗୋଟିଏ ଅତିସାଧାରଣ କିଶୋରର ନିଷ୍ଠା ଓ ଏକାଗ୍ରତା ବଳରେ ସୁଉଚ୍ଚ ହିମାଳୟ, ଯେଉଁଠାରେ ଆତ୍ମଚେତନା ସମ୍ପ୍ରସାରିତ, ସେଠାରେ ପହଞ୍ଚିବାର କାହାଣୀ । ସେହି କିଶୋରର ସବୁ ବିପଦକୁ ତୁଚ୍ଛ କରିଦେବାର ସାହସ ଥିଲା ଏବଂ କୌଣସି ଅସଫଳତାକୁ ସେ ଗ୍ରହଣ କରିବାକୁ ଅତିମାତ୍ରାରେ ଅନିଚ୍ଛୁକ ଥିଲା ।

ଅବଶ୍ୟ ଅନ୍ୟ ଗୋଟିଏ ତଥ୍ୟ ରହିଛି, ଯାହା ମୋ ପାଇଁ ବେଶି ଗୁରୁତ୍ୱପୂର୍ଣ୍ଣ । ତାହା ଥିଲା ଏକ ମହାନ ଗୁରୁଙ୍କ ଉପଦେଶ ଓ ଆଶୀର୍ବାଦ । ତାଙ୍କର ଅତଳାନ୍ତ ପ୍ରେମ ଓ କରୁଣା ମୋତେ ଏହି ବିଶାଳ ଏବଂ ବହୁଳାଂଶରେ ଅନାବିଷ୍କୃତ ଅଞ୍ଚଳକୁ ଯାତ୍ରା କରିବାର ସାହସ

ଯୋଗାଇଲା । ସେ ଥିଲେ ଏମିତି ଜଣେ ଗୁରୁ, ଯେ ମୋର ପ୍ରଶ୍ନ କରିବାର ସ୍ୱାଧୀନତାକୁ କେବେହେଲେ ହ୍ରାସ କରିଦେଇ ନ ଥିଲେ, କେବେହେଲେ ମୋତେ ଅତ୍ୟଧିକ ସାହାଯ୍ୟର ହାତ ବଢ଼େଇ ଆଳସ୍ୟପରାୟଣ ଓ ନିର୍ଭରଶୀଳ କରିଦେଇ ନ ଥିଲେ ଓ ମୋର ସମସ୍ତ ଦୋଷଦୁର୍ବଳତା ଓ ସୀମିତ ପ୍ରତିକ୍ରିୟାକୁ ମାର୍ଜନା କରି ଦେଇଥିଲେ । ମୁଁ କ'ଣ କେବେହେଲେ ସେହି ମହାତ୍ମାଙ୍କୁ ଭୁଲିପାରିବି – ଯେ ମୋର ପିତା, ମାତା, ଶିକ୍ଷକ ଏବଂ ପ୍ରିୟ ସବୁ ଥିଲେ ଏକାଧାରରେ !

କ'ଣ କେବଳ ଦୟାପରବଶ ହୋଇ ସେ ମୋର ଜୀବନରେ ପ୍ରବେଶ କରିଥିଲେ ମୋର ମାତ୍ର ନ'ବର୍ଷ ବୟସରେ ? କିମ୍ବା ଏମିତି କୌଣସି ସଂଯୋଗ ଥିଲା, ଯାହା ଜୀବିତ କାଳଗୁଡ଼ିକର ପାର୍ଥିବ ହିସାବର ଊର୍ଦ୍ଧ୍ୱରେ ? କାହାଣୀଟିର ସମାପ୍ତି ପରେ ଏହା ନିର୍ଣ୍ଣୟ କରିବାର ଭାର ମୁଁ ଆପଣମାନଙ୍କ ଉପରେ ନ୍ୟସ୍ତ କରୁଛି ।

ବାବାଜୀ ବୋଲି ମୁଁ ମୋର ଗୁରୁଙ୍କୁ ସମ୍ବୋଧନ କରୁଥିଲି । ସେ କହିଥିଲେ – "ସରଳ ଓ ସ୍ୱଷ୍ଟ ହୁଅ, ଅସନ୍ତୁଳିତ ଭାବରେ ରହ ନାହିଁ । ସାଧାରଣ ଲୋକଙ୍କ ପରି ସଂସାରରେ ଅବସ୍ଥାନ କର । ମାହାତ୍ମ୍ୟକୁ କେବେ ପ୍ରଚାର କରାଯାଏ ନାହିଁ । ଯେଉଁମାନେ ନିକଟକୁ ଆସନ୍ତି, ସେମାନେ ତାହା ଜାଣିପାରନ୍ତି । ସଂସାରରେ ସୁଖଶାନ୍ତିରେ ରହି ମଧ୍ୟ କିପରି ଭାବରେ ଅନନ୍ତ ଚୈତନ୍ୟରୁ ପ୍ରଚୁର ଶକ୍ତି ଓ ଗୌରବ ଆହରଣ କରିହେବ, ତାହାର ଉଦାହରଣ ତୁମର ସଂସର୍ଗରେ ଥିବା ଲୋକମାନଙ୍କୁ ଏବଂ ବନ୍ଧୁମାନଙ୍କୁ ପ୍ରଦର୍ଶନ କର ।

ମୋତେ ନଅବର୍ଷ ପୂରିବାର ଛ'ମାସ ପରେ ମୋ ଜୀବନରେ ପରମଦୟାଳୁ ମୋର ଗୁରୁଙ୍କର ଆବିର୍ଭାବ ଘଟିଥିଲା । ସେହି ନିୟତିସୂଚକ ଦିନ ବିଷୟରେ କିଛି କହିବା ପୂର୍ବରୁ ଅନ୍ୟ କେତେକ ବିଷୟ ନ କହି ରିହପାରୁ ନାହିଁ । ସେଗୁଡ଼ିକ ନିମ୍ନରେ ଦିଆଗଲା ।

1. ଜନ୍ମହେବାମାତ୍ରେ ମୋର ଗୋଟାଏ ଗୋଡ଼ ଉପରେ ଆଉ ଗୋଟାଏ ଗୋଡ଼ ପକାଇବାର ପ୍ରବୃତ୍ତି ଥିଲା । (ଦୁଇମାସ ବୟସରେ ମୋର ଉଠାଯାଇଥିବା ଫଟୋ ଦ୍ରଷ୍ଟବ୍ୟ) ସେହି ଅଭ୍ୟାସ ରହିଗଲା ଏବଂ ବୟସ ବଢ଼ିବା ସହିତ ମୁଁ ଲକ୍ଷ୍ୟ କଲି, ଯୋଗୀମାନଙ୍କ ପରି ଗୋଡ଼ ଛନ୍ଦି ବସିବା ହେଉଛି ମୋ ପାଇଁ ସବୁଠୁଁ ଆରାମପ୍ରଦ ଆସନ । ଏବେ ମଧ୍ୟ ମୁଁ ଯେଉଁଆଡ଼େ ଯାଏ, ଯଦି ମୋର ନିମନ୍ତ୍ରକମାନଙ୍କର ଆପତ୍ତି ନ ଥାଏ, ତେବେ ଖାଇବା ଚଉକିରେ ମଧ୍ୟ ମୁଁ ସେହିପରି ଆସନରେ ବସିଥାଏ ।

2. ପାଞ୍ଚବର୍ଷ ବୟସରୁ ଆରମ୍ଭ କରି ପ୍ରାୟ ଦଶବର୍ଷ ପର୍ଯ୍ୟନ୍ତ ମୁଁ ଭୟଙ୍କର ପୀଡ଼ାଦାୟକ ଦୁଃସ୍ୱପ୍ନ ଦେଖୁଥିଲି । ସେହି ସ୍ୱପ୍ନଗୁଡ଼ିକ ଏକପ୍ରକାର ଥିଲା । ପ୍ରାୟ ଅଧରାତି ବେଳକୁ, ମୋତେ ଲାଗେ କୁକୁର ପରି ବିରାଟ ବିରାଟ ଦି'ଟା ଦାନ୍ତ ଓ ବଡ଼ ବଡ଼ ପଂଝା ଥିବା ଗୋଟାଏ ବିରାଟକାୟ ଅର୍ଦ୍ଧମାନବାକୃତି ରାକ୍ଷସ, ଯେ କିଛି ଅଂଶରେ କଥକଲି ନର୍ତ୍ତକ ପରି ଦିଶୁଥାଏ, ମୋତେ ଧରିପକେଇ ନେଇ ପଳାଇଯିବାକୁ ଚେଷ୍ଟା କରୁଥାଏ । ବାହାରେ ମୁଁ ଶୋଇଥିବା ପରି ଦିଶୁଥିଲେ ମଧ୍ୟ, ସ୍ୱପ୍ନରେ ମୁଁ ଚିତ୍କାର କରେ । ଧାଉଁଥାଏ ଓ ରାକ୍ଷସ ମୋ ପଛରେ ଗୋଡ଼ାଇଥାଏ । ମୁଁ ଚିତ୍କାର କରୁଥାଏ, ''ମୋତେ ସେଠାକୁ ଚାଲିଯିବାକୁ ହେବ ।''

ମୋର ବାପା ମା' ପ୍ରାୟ ମୋ ପଛରେ ଦୌଡ଼ନ୍ତି ଏବଂ ମୋ ବାପା ଥିଲେ ଏକମାତ୍ର ବ୍ୟକ୍ତି, ଯେ ମୋ କାନ ପାଖରେ ଜୋର୍‌ରେ ମୋର ନାଁ ଧରି ଡାକି ମୋତେ ସେହି ମୋହଗ୍ରସ୍ତ ଅବସ୍ଥାରୁ ଉଠାଇପାରୁଥିଲେ । ସେ ଯାହା ବି ହେଉ, ଥରେହେଲେ ସେହି ଭୂତମାନେ ମୋ ଦେହରେ ହାତ ମାରି ପାରୁ ନ ଥିଲେ ।

ବିଭିନ୍ନ ପ୍ରକାର ଚିକିତ୍ସା କରାଗଲା, ତେଉଁରିଆ ପିନ୍ଧାଗଲା, କିନ୍ତୁ କିଛି ଉପକାର ହେଲା ନାହିଁ । କିନ୍ତୁ ମୋର ଗୁରୁଙ୍କ ସହିତ ପ୍ରଥମ ସାକ୍ଷାତ ପରେ ସ୍ୱପ୍ନଗୁଡ଼ିକ ଉଭେଇଗଲେ । ମୁଁ କାହାଠାରୁ ଦୌଡ଼ି ପଳାଇବାକୁ ଚାହୁଁଥିଲି ଓ କେଉଁଠାକୁ ଯିବାକୁ ଚାହୁଁଥିଲି, ସେକଥା ବୁଝିବାକୁ ମୋତେ ବହୁବର୍ଷ ଲାଗିଗଲା ।

3. ମୋର ଆଈଙ୍କର ସୂଫୀମାନଙ୍କ ସହିତ ସମ୍ପର୍କ ଥିଲା, ସେ ମୋତେ ସୂଫୀମାନଙ୍କର କାହାଣୀ କହି ମୁଗ୍ଧ କରିଦେଉଥିଲେ, ତାଙ୍କର ପ୍ରିୟ ଗପ ଥିଲା (ମୋର ମଧ୍ୟ) ସୂଫୀ ସନ୍ଥ ପୀର୍ ମହମ୍ମଦଙ୍କ ଜୀବନୀ ଉପରେ ଆଧାରିତ । ସନ୍ଥ ଜଣକ ପ୍ରାୟ ଶହେବର୍ଷ ତଳେ ତ୍ରାଭାଙ୍କୋର ରାଜ୍ୟରେ ଗୋଟିଏ ଛୋଟ ଗାଆଁ ଟୁକାଲେରେ ବାସ କରୁଥିଲେ, ବନାରସର ପ୍ରସିଦ୍ଧ ସନ୍ଥ କବୀର ଦାସଙ୍କ ପରି ପୀର ମହମ୍ମଦ ମଧ୍ୟ ଜଣେ ତନ୍ତୀ ଥିଲେ । ଯେତେବେଳେ ସେ ତନ୍ତରେ ଲୁଗା ବୁଣୁଥିଲେ, ସେ ତାମିଲ୍‌ରେ ରହସ୍ୟମୟ ଅର୍ନ୍ତଦୃଷ୍ଟିଯୁକ୍ତ ଆଧ୍ୟାତ୍ମିକ ସଙ୍ଗୀତ ଗାଉଥିଲେ । ଏହି ଗୀତଗୁଡ଼ିକୁ 'ପାଡାଲ୍' (Paadal) ବୋଲି କୁହାଯାଏ ଏବଂ ଏଗୁଡ଼ିକ ମଧ୍ୟ ତାମିଲନାଡୁର କେତେକ ସୂଫୀ ସମ୍ପ୍ରଦାୟ ମଧ୍ୟରେ ଜନପ୍ରିୟ । ପୀର ମହମ୍ମଦଙ୍କ ବୟସ ବୃଦ୍ଧି ସହିତ ତାଙ୍କର ଦୃଷ୍ଟିଶକ୍ତି କମିଗଲା ଓ ସେ ଅନ୍ଧ ହୋଇଗଲେ । ଜଣେ କିଶୋର ତାଙ୍କୁ ସାହାଯ୍ୟ କରୁଥିଲା ଓ ସେ ଥିଲା ତାଙ୍କର ଶିଷ୍ୟ ।

ସୂଫୀ ସନ୍ଥଙ୍କର ଜୀବନର ଗୋଟିଏ ଘଟଣା ବିଷୟରେ ମୋର ଆଈ ବାରମ୍ବାର କହିବାକୁ ଭଲ ପାଉଥିଲେ ଏବଂ ମୋତେ ସେକଥା ଶୁଣିବାକୁ ଭାରି ଭଲ ଲାଗୁଥିଲା । ଘଟଣାଟି ଥିଲା ଏହିପରି, ଆରବ ଦେଶର ଦୁଇଜଣ ଧାର୍ମିକ

ଡାକ୍ତର ଯେତେବେଳେ ଦକ୍ଷିଣଭାରତର ଏହି ସନ୍ଥଙ୍କ ବିଷୟରେ ଶୁଣିଲେ, ସେମାନେ ତାଙ୍କୁ ସାକ୍ଷାତ କରିବାକୁ ଆସିଲେ । ସେମାନଙ୍କୁ ସନ୍ଥଙ୍କର ସବୁ କଥା ଭଲ ଲାଗିଲା କିନ୍ତୁ ସେ ଯେ ତୀର୍ଥ କରିବାକୁ ପବିତ୍ର ମକ୍କା ଯିବାକୁ ଚାହାନ୍ତି ନାହିଁ, ସେହି କଥାଟି ସେମାନଙ୍କୁ ଭଲ ଲାଗିଲା ନାହିଁ । ମକ୍କାକୁ ତୀର୍ଥ କରିଯିବା ହେଉଛି ଯେକୌଣସି ସକ୍ଷମ ମୁସଲମାନର ଧାର୍ମିକ-କର୍ତ୍ତବ୍ୟ । ଏହି ଟୁକାଲେ ସନ୍ଥ ନିଜକୁ ଅନ୍ଧ ବୋଲି ବାହାନାକରି ତୀର୍ଥଯାତ୍ରାରୁ ବିରତ ରହିଥିଲେ କାରଣ ଏତେ ବାଟ ଯିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ; କିନ୍ତୁ ସେ ତୀର୍ଥଯାତ୍ରା ପ୍ରତ୍ୟକ୍ଷ କରିଛନ୍ତି ଏବଂ ମକ୍କା ସେଇଠି, ଯେଉଁଠି ସେ ରହନ୍ତି ବୋଲି ସେ ଜୋର୍ ଦେଇ କହୁଥିଲେ ।

ଏ କଥା ଆରବର ସାକ୍ଷାତକର୍ତ୍ତାମାନଙ୍କୁ ବାଜେ ଗପ ଓ ଗୋଟାଏ ପାଗଳର ପ୍ରଳାପ ପରି ମନେହେଲା । କିନ୍ତୁ ପୀର ମହମ୍ମଦ ହାରିବା ଲୋକ ନୁହନ୍ତି । ସେ ଗୋଟାଏ ପୁରୁଣାମାଟିର ପାତ୍ରରେ ଜଳ ଆଣିବାପାଇଁ ତାଙ୍କର ଶିଷ୍ୟକୁ ଆଦେଶ ଦେଲେ ଏବଂ ଆରବ ଲୋକମାନଙ୍କୁ ତାହା ଭିତରକୁ ଚାହିଁବାକୁ କହିଲେ । ଜଣ ଜଣ କରି ସେମାନେ ପୂରା ତୀର୍ଥଯାତ୍ରା ସେ ଭିତରେ ପ୍ରତ୍ୟକ୍ଷ କଲେ ଏବଂ ସବୁଠୁଁ ଆଶ୍ଚର୍ଯ୍ୟ ହେଲା ସେମାନେ ନିଜନିଜକୁ ମଧ୍ୟ 'କାବା'କୁ ପରିକ୍ରମା କରୁଥିବାର ଦେଖିପାରିଲେ । ଖାଲି ସେତିକି ନୁହେଁ ଅନ୍ଧ ସନ୍ଥ ଜଣକ ମଧ୍ୟ ସେମାନଙ୍କ ସହିତ ଥିବାର ସେମାନେ ଦେଖିପାରିଲେ । ସେମାନେ ସନ୍ଥଙ୍କ ଗୋଡ଼ତଳେ ପଡ଼ିଗଲେ ଓ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ସନ୍ଥଙ୍କ ସମାଧି ନିକଟରେ ତାଙ୍କର ଶିଷ୍ୟ ଥିବା ମୋର ଜଣେ ପିତୃବ୍ୟଙ୍କ ସମାଧି ରହିଛି ।

4. ପାଞ୍ଚବର୍ଷରୁ ନଅବର୍ଷ ମଧ୍ୟରେ ମୁଁ ହିନ୍ଦୁଧର୍ମ ଓ ଖ୍ରୀଷ୍ଟିଆନ୍ ଧର୍ମ ସଂସ୍ପର୍ଶରେ ଆସିଲି । ସେହି ବୟସରେ ମଧ୍ୟ ମୁଁ ଲକ୍ଷ୍ୟ କଲି, ବିଭିନ୍ନ ସମ୍ପ୍ରଦାୟର ଲୋକମାନେ ପରସ୍ପରର ଧର୍ମ ବିଷୟରେ କେତେଦୂର ପକ୍ଷପାତିତ୍ୱ ଦେଖାନ୍ତି । ଉଦାହରଣସ୍ୱରୂପ, ମୋର ଆଈ, ଯେ ମୁସଲମାନ ସନ୍ଥମାନଙ୍କ ବିଷୟରେ କହିଲେ ଭାବବିହ୍ୱଳ ହୋଇଯାଉଥିଲେ, ସେ ହିନ୍ଦୁଧର୍ମ ଓ ହିନ୍ଦୁ ଦେବଦେବୀଙ୍କୁ ଘୃଣା କରୁଥିଲେ । ସେ ମୋତେ ହିନ୍ଦୁ ପଡ଼ୋଶୀମାନଙ୍କ ଘରେ କୌଣସି ଖାଦ୍ୟ ନ ଖାଇବାପାଇଁ ସାବଧାନ କରିଥିଲେ । ତାଙ୍କର ଭୟ ଥିଲା ଯେ ସେହି ଖାଦ୍ୟ ହୁଏତ ସେ ଅପବିତ୍ର ବୋଲି ଭାବୁଥିବା ହିନ୍ଦୁ ଦେବଦେବୀଙ୍କ ପ୍ରସାଦ ହୋଇଥିବ । ସେ ହିନ୍ଦୁମାନଙ୍କୁ ମୂର୍ତ୍ତିପୂଜକ ବୋଲି କହୁଥିଲେ । ତାଙ୍କର ମତ ଥିଲା ଯେ ଇସଲାମ୍‌ର ଅଭ୍ୟୁଦୟ ହେଉଛି ମାନବ ସମାଜରେ ଘଟିଥିବା ଶ୍ରେଷ୍ଠ ଘଟଣା, ଜଣେ ଉତ୍ତମ ମୁସଲମାନପାଇଁ ସ୍ୱର୍ଗରେ ସ୍ଥାନ ସଂରକ୍ଷିତ ବୋଲି ତାଙ୍କର ଧାରଣା ଥିଲା ।

ମୋତେ ଏକ ସମ୍ପ୍ରଦାୟର ନନ୍ (ସନ୍ୟାସିନୀ)ମାନଙ୍କ ଦ୍ୱାରା ପରିଚାଳିତ ଏକ ଅଭିଜାତ ବିଦ୍ୟାଳୟକୁ ପଠାଗଲା । ସେଠାରେ ସେମାନେ ଯଦିଓ ଆମକୁ ବାଧ୍ୟ କରୁ ନ ଥିଲେ, ତେବେ ବି ଛୋଟ ଚର୍ଚ୍ଚ (ଚାପେଲ୍) ବା ଭର୍ଜିନ୍ ମେରୀଙ୍କ ମୂର୍ତ୍ତି ସାମ୍ନା ଦେଇ ଗଲାବେଳେ ଛାତିରେ କ୍ରସ ଆଙ୍କିବାଟାକୁ ଉତ୍ସାହିତ କରୁଥିଲେ । ଆମକୁ ଅନେକ ଖ୍ରୀଷ୍ଟିଆନ୍ ସ୍ତୋତ୍ର (hymn) ମଧ୍ୟ ଶିଖାଯାଇଥିଲା ।

ଯୀଶୁଙ୍କୁ ମେଷପାଳକ ଭାବରେ ଚିତ୍ରିତ କରି ଅନେକ ଚିତ୍ର ସ୍କୁଲସାରା ଟଙ୍ଗା ହୋଇଥିଲା । ତାଙ୍କର ଦାଢ଼ିଥିବା ସୌମ୍ୟ ଚେହେରା ମୋତେ ଭାରି ଭଲ ଲାଗୁଥିଲା । ନନ୍‌ମାନେ ଆମକୁ ଯେତେବେଳେ ଶିକ୍ଷା ଦେଲେ ଯେ, ମୁସଲମାନ୍‌ମାନେ ସୂର୍ଯ୍ୟପୂଜକ ଏବଂ ହିନ୍ଦୁମାନେ ଏଣୁତେଣୁ ମୂର୍ତ୍ତିଗୁଡ଼ିକୁ (hobglobins) ପୂଜା କରନ୍ତି ବୋଲି, ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

ଆମର ସବୁ ପଡ଼ୋଶୀ ହିନ୍ଦୁ ଥିଲେ । ସେମାନଙ୍କର ଘରେ ପୂଜା ପାଉଥିବା ବିଭିନ୍ନ ପ୍ରକାରର ଠାକୁରମାନଙ୍କୁ ଦେଖି ମୁଁ ମୋହିତ ହୋଇଯାଉଥିଲି । ଗୋଟିଏ ରକ୍ଷଣଶୀଳ ହିନ୍ଦୁ ବ୍ରାହ୍ମଣ ପରିବାରର ଜଣେ ମହିଳା ମୋତେ ମିଠେଇ ଖୁଆଇବାକୁ କାହିଁକି ଏତେ ଭଲପାଉଥିଲେ, ଅଥଚ ମୋର ଆଈ ମୋତେ ସେଗୁଡ଼ା ଖାଇବାକୁ ବାରଣ କରୁଥିଲେ, ଏଇଟା ମୋତେ ଭାରି ଆଶ୍ଚର୍ଯ୍ୟ ଲାଗୁଥିଲା । ଅବଶ୍ୟ ଆମର ହିନ୍ଦୁ ପଡ଼ୋଶୀମାନଙ୍କ ଭିତରେ ଏମିତି କେତେଜଣ ଥିଲେ, ଯେଉଁମାନେ ମୋ ମା' ପ୍ରସ୍ତୁତ କରୁଥିବା ସୁସ୍ୱାଦୁ ବିରିଆନୀ ଖାଇବାକୁ ଆଗ୍ରହରେ ଅପେକ୍ଷା କରୁଥିଲେ । ମା' ରମ୍‌ଜାନ୍ ବକ୍‌ରିଦ୍ ସମୟରେ ଆମ ପଡ଼ିଶାରେ ଥିବା ନାୟାର୍ ପରିବାରଗୁଡ଼ିକ ମଧ୍ୟରେ ବିରିଆନୀ ବାଣ୍ଟୁଥିଲେ । ମୁଁ କିନ୍ତୁ ତାଜା କଦଳୀପତ୍ରରେ ବଢ଼ା ହୋଇଥିବା ଇଡ୍‌ଲି, ସମ୍ବର ଓ ପାରମ୍ପରିକ ମାଲୟାଲୀ ନିରାମିଷ ଖାଦ୍ୟପାଇଁ ଆଗ୍ରହରେ ଚାହିଁ ରହୁଥିଲି ।

ପଡ଼ୋଶୀମାନଙ୍କର ପୂଜା ସ୍ଥାନରେ ଥିବା ଦେବଦେବୀମାନଙ୍କର ଚିତ୍ର ମୂର୍ତ୍ତି ଇତ୍ୟାଦି ସଂସ୍ପର୍ଶ ବ୍ୟତୀତ ମୋର ହିନ୍ଦୁ ଆଧ୍ୟାତ୍ମିକ ପଦ୍ଧତି ସହିତ ପ୍ରଥମ ପ୍ରଧାନ ଅନୁଭୂତି ହେଲା, ଯେତେବେଳେ ଗୋଟିଏ କୀର୍ତ୍ତନିଆଙ୍କ ଦଳର ହଠାତ୍ ଆମ ଘର ସାମ୍ନାରେ ଆବିର୍ଭାବ ହେଲା । ସେଇଟା ଥିଲା ଗୋଟିଏ ରବିବାରର ସକାଳ । ସେତେବେଳେ ମୁଁ ରୋଷେଇଘର ନିକଟରେ ବସି କେମିତି କାମ କରୁଛି ଦେଖିବାପାଇଁ ପୂର୍ବରୁ ଖଣ୍ଡଖଣ୍ଡ କରିଦେଇଥିବା ଗୋଟାଏ ଖେଳଣାକୁ ସଜାଡ଼ିବାର ଅସଫଳ ଚେଷ୍ଟା କରୁଥାଏ । ଠିକ୍ ସେହିସମୟରେ ଆତ୍ମାକୁ ଜାଗରୁକ କରିବା ପରି ମୃଦଙ୍ଗମ୍‌ର ତାଳ (ତାଳ ବଦିଷ୍ୟାମି) ଓ ତା' ସହିତ କରତାଳର ମଧୁର ଝଣଝଣ ଶବ୍ଦ ସମ୍ପୂର୍ଣ୍ଣ ଭାବରେ ମୋର ମନକୁ ଆଚ୍ଛନ୍ନ କରିଦେଲା ।

ମୋର ଖେଳଣାକୁ ଫିଙ୍ଗି ଦେଇ କେବଳ ଗୋଟିଏ ଛୋଟ ପ୍ୟାଣ୍ଟ୍ ପିନ୍ଧି ମୁଁ ଗେଟ୍ ଆଡ଼କୁ ଧାଇଁଲି, ମୋର ହୃତ୍‌ସ୍ପନ୍ଦନ ଖୁବ୍ ବଢ଼ିଯାଇଥାଏ । ଗୋଟାଏ ଅଜବ ଦୃଶ୍ୟ ମୋ ଆଖିରେ ପଡ଼ିଲା । ଚାରିଜଣ ମଧ୍ୟବୟସ୍କ ଲୋକ ରାସ୍ତା ଉପରେ ଗୀତ ଗାଇ ଗାଇ ନାଚୁଥାଆନ୍ତି । ଜଣଙ୍କ ଛଡ଼ା ଅନ୍ୟ ସମସ୍ତେ ସେମାନଙ୍କ ଅଣ୍ଟାଠାରୁ ପାଦ ପର୍ଯ୍ୟନ୍ତ ଲମ୍ବିଥିବା ଖଣ୍ଡେ ଖଣ୍ଡେ ହଳଦିଆ ରଙ୍ଗର ଲୁଙ୍ଗି ପିନ୍ଧିଥାଆନ୍ତି । ଦୀର୍ଘ ଶ୍ମଶ୍ରୁ ଏବଂ କେଶଧାରୀ ଓ ଗଳାରେ ସମ୍ପୂର୍ଣ୍ଣ ଶୁଭ୍ର ପୁଷ୍ପମାଲ୍ୟ ପରିହିତ ଜଣେ ଗୌରବର୍ଣ୍ଣର ଦୀର୍ଘ-ଦେହ ସୁଦର୍ଶନ ବ୍ୟକ୍ତି ଥିଲେ ସେମାନଙ୍କ ମଧ୍ୟରେ ବ୍ୟତିକ୍ରମ । ସେ କେବଳ ମାତ୍ର ଖଣ୍ଡିଏ ସ୍ୱଳ୍ପ ପରିସର କୌପୀନ ପିନ୍ଧିଥିଲେ ଓ ତାଙ୍କର ଅବଶିଷ୍ଟ ଦେହ ଥିଲା ଅନାବୃତ ।

ଚାରିଜଣଙ୍କର ପାଦଗୁଡ଼ିକ ଥିଲା ନଗ୍ନ । ଜଣଙ୍କ ଗଳାରୁ ମୃଦଙ୍ଗ ଝୁଲୁଥିଲା ଓ ସେ ଦୁଇହାତରେ ତାଳ ଦେଉଥିଲେ । ତାଙ୍କର ଚକ୍ଷୁ ମୁଦ୍ରିତ ଥିଲା ଓ ମଝିରେ ମଝିରେ ସେ ଉଲ୍ଲାସର ସହିତ ହସିଉଠୁଥିଲେ ଅନ୍ୟ ଜଣେ ଛୋଟ ଛୋଟ ଗିନି ବଜାଇବାରେ ମଗ୍ନ ଥିଲେ ଓ ମୁଣ୍ଡକୁ ଦୁଇପଟକୁ ହଲାଉଥିଲେ । ତୃତୀୟଜଣକ ଦ୍ୱାରଦ୍ୱାର ବୁଲି ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନର ସହିତ ଦାନ କରୁଥିବା ଆମର ପଡ଼ୋଶୀମାନଙ୍କଠାରୁ ଫଳମୂଳ, ଚାଉଳ ଏବଂ ବେଳେବେଳେ ପଇସାପତ୍ର ସଂଗ୍ରହ କରୁଥିଲେ ।

ଦୀର୍ଘଦେହୀ, ଶ୍ମଶ୍ରୁଯୁକ୍ତ ଏବଂ ସୁଦର୍ଶନ ଚତୁର୍ଥ ବ୍ୟକ୍ତିଜଣକ ସେହି ଦଳଟିର ନେତୃସ୍ଥାନୀୟ ବୋଲି ଜଣାପଡୁଥାଆନ୍ତି । ମୃଦଙ୍ଗ ଓ କରତାଳର  ମଧୁର ତାଳ ସହିତ ସେ ନାଚିନାଚି "ହରେ ରାମ ହରେ ରାମ..." ଗାନ କରି ଏକସ୍ୱରରେ ଗାଉଥିବା ଦଳଟିର ନେତୃତ୍ୱ ଦେଉଥାଆନ୍ତି । ତାଙ୍କର ମୁଦ୍ରିତ ଚକ୍ଷୁରୁ ଧାର ଧାର ଲୁହ ବହିଯାଉଥାଏ । ସେ ଗୋଟାଏ ପ୍ରକାରର ଅର୍ଦ୍ଧଚେତନ ଅବସ୍ଥାରେ ରହିଥାଆନ୍ତି । ମୁଁ ଦେଖିଲି, ଆମର କେତେଜଣ ପଡ଼ୋଶୀ  ତାଙ୍କ ନିକଟକୁ ଯାଇ ତାଙ୍କର ପାଦତଳେ ପ୍ରଣିପାତ କରୁଥାଆନ୍ତି ।

ଗୋଟାଏ ଆଶ୍ଚର୍ଯ୍ୟ ପ୍ରକାରର ହର୍ଷରେ ମୋର ହୃଦୟ ଭରିଗଲା, ମୁଁ ମଧ୍ୟ ହସିବାକୁ ଲାଗିଲି । ତା'ପରେ ମୁଁ ଦୌଡ଼ିଯାଇ ଘର ଭିତରୁ ଗୋଟାଏ ମୁଦ୍ରା (ମନେ ନାହିଁ ସେଇଟା କେତେ ପଇସା ଥିଲା ବା ତା'ର ମୂଲ୍ୟ କେତେ ଥିଲା) ଆଣି ଦଳର ସଂଗ୍ରାହକ ଧରିଥିବା ଗୋଟିଏ ଛୋଟ ମୁଣିରେ ପକାଇଦେଲି । ଠିକ୍ ସେତିକିବେଳେ ମୋର ଆଈ ମୋତେ ଡାକୁଥିବାର ଶୁଣିପାରିଲି । ମୁଁ କ'ଣ ଗୋଟାଏ ଅନୁଚିତ କାମ କରିପକାଇଛି ବୋଲି ଭାବି ଶୀଘ୍ର ଚାଲିଯିବା ବେଳେ ମୁଁ ବୁଲିପଡ଼ି ଗଳିରେ

ନାଚୁଥିବା ପ୍ରାୟ ନଗ୍ନ ସେଇ ଆଶ୍ଚର୍ଯ୍ୟଜନକ ଲୋକଙ୍କ ଆଡ଼କୁ ଶେଷଥରପାଇଁ ଚାହିଁଲି । ତାଙ୍କର ଆଖି କ୍ଷଣକପାଇଁ ଖୋଲିଗଲା ଏବଂ ଆମ ଦୁହିଁଙ୍କର ଦୃଷ୍ଟି ମିଳିତ ହେଲା ଓ ମୁଁ ଘର ଭିତରକୁ ଚାଲିଗଲି ।

ଦଳଟି ଅପସରି ଗଲା, ସଙ୍ଗୀତର ମୂର୍ଚ୍ଛନା ଧୀରେ ଧୀରେ କମିଗଲା ଏବଂ ନିରବତା ବିରାଜମାନ କଲା । ମୋର ଆଈ ମୋର କାମକୁ ପସନ୍ଦ କଲେ ନାହିଁ ଏବଂ ସାମାନ୍ୟ ଧର୍ମୋପଦେଶ ପରେ ମୋତେ ମୁକ୍ତି ମିଳିଲା । ବହୁବର୍ଷ ପରେ ମୁଁ ଜାଣିପାରିଲି, ଭାବାବେଶରେ ମତ୍ତ ହୋଇ ନାଚୁଥିବା ସେହି ବ୍ୟକ୍ତିଜଣଙ୍କ ଥିଲେ ସ୍ୱାମୀ ଅଭେଦାନନ୍ଦ । ସେ ଆମ ଘରଠାରୁ ବେଶି ଦୂରରେ ନ ଥିବା ଗୋଟିଏ ଆଶ୍ରମରେ ରହୁଥିଲେ । କଲେଜରେ ପଢୁଥିବା ସମୟରେ ମୋର ତାଙ୍କ ସହିତ ଅନେକ ସୁଖକର ସାକ୍ଷାତ ହୋଇଛି, କିନ୍ତୁ ସେ କଥା ପରେ ।

5. ପ୍ରାୟ ଏହି ସମୟରେ ମୋର ମା'ଙ୍କର ଜଣେ ମାମୁ ମୋତେ ଇଷ୍ଟ ଫୋର୍ଟ ଦୁର୍ଗର ପୂର୍ବ ପଟେ ହେଉଥିବା 'ଅରାଟ୍ଟୁ' ଉତ୍ସବ ଦେଖିବାକୁ ସାଙ୍ଗରେ ଡାକିନେଲେ । ସେ ଥିଲେ ଜଣେ ଉତ୍ସାହୀ ଫଟୋ ଉତ୍ତୋଳକ । ପୁରୁଣା କିଲ୍ଲାକୁ ମହାରାଜାମାନେ ସେମାନଙ୍କ ଇଷ୍ଟଦେବ ଅନନ୍ତ ପଦ୍ମନାଭ ସ୍ୱାମୀଙ୍କର ମନ୍ଦିରର ଚାରିପଟେ ନିର୍ମାଣ କରିଥିଲେ । ପୂର୍ବରୁ କହିଛି, ତ୍ରିଭାନ୍ଦ୍ରମ ସହରର ମୂଳ ନାମ ଥିଲା ତିରୁବନ୍ତପୁରମ । ଏହି ଠାକୁର, ଯାହାର ନାଭିରୁ କମଳ ଜନ୍ମ ନିଏ ବୋଲି କୁହାଯାଏ, ତାଙ୍କର ନାଁ ଅନୁସାରେ ଥିଲା ସହରର ନାଁ । ପ୍ରତିବର୍ଷ ମନ୍ଦିରର ବେଢ଼ା କାଗଜର ପତାକା ଇତ୍ୟାଦି, ଫୁଲ ଏବଂ ଆଲୋକମାଳା ଦ୍ୱାରା ସଜ୍ଜିତ ହୁଏ । ହିନ୍ଦୁଧର୍ମର ସମସ୍ତ ଦେବଦେବୀଙ୍କର ମନୁଷ୍ୟାକୃତି କିମ୍ବା ତା'ଠାରୁ ମଧ ବଡ଼ବଡ଼ ପ୍ରତିମୂର୍ତ୍ତି ଗୁଡ଼ିକ ରଙ୍ଗିନ ଲୁଗାପଟା ଓ ଗହଣାପତ୍ରରେ ମଣ୍ଡିତ କରାଯାଇ ପ୍ରଦର୍ଶିତ ହୁଏ । ମୁଁ ଯେତେବେଳେ ସେହି ପୁରାତନ ମନ୍ଦିରର ଗୋପୁରମ ସ୍ତମ୍ଭ (tower) ଆଡ଼କୁ ଚାହିଁଲି, ସେତେବେଳେ ଲାଗିଲା ଯେପରି ମୋର ନାଭିଦେଶରେ କ'ଣ ଗୋଟାଏ ହଲଚଲ ହେଲା ଓ ମୋର ମନ ଭିତରେ ମନ୍ଦିର ଭିତରକୁ ଯିବାର ଅଦମ୍ୟ ଇଚ୍ଛା ଜାତ ହେଲା । ଅବଶ୍ୟ ସେତେବେଳେ ମୋର ବୟସ ମାତ୍ର ଛ'ବର୍ଷ ଏବଂ ମନ୍ଦିର ଭିତରେ କ'ଣ ଅଛି, ତାହା ମୋର ଜାଣିବା କଥା ନୁହେଁ । ମା'ଙ୍କ ମାମୁ କହିଲେ ଯେ, ଆମେ ହିନ୍ଦୁ ନୋହୁଁ ତେଣୁ ଆମକୁ ମନ୍ଦିର ଭିତରକୁ ଯିବାର ଅନୁମତି ନାହିଁ ।

ମୋର ପରିଷ୍କାର ମନେଅଛି, ସେ ଧଳାରଙ୍ଗ ହୋଇଥିବା ସାଇନ୍‌ବୋର୍ଡ଼ରେ ଉଭୟ ଇଂରେଜୀ ଓ ମାଲୟାଲମ୍ ଭାଷାରେ ଲେଖାହୋଇଥିବା ଆଲେଖ୍ୟକୁ ପଢ଼ିଥିଲେ । ସେଥିରେ ଲେଖାଥିଲା – ଅଣହିନ୍ଦୁମାନଙ୍କ ପାଇଁ ପ୍ରବେଶ ନିଷେଧ ।

ଦୁଇ ସମ୍ପ୍ରଦାୟରେ ସମାନ ପ୍ରକାରର ମଣିଷ ଥିବାବେଳେ ସେମାନଙ୍କ ଭିତରର ଭେଦଭାବ ମୋତେ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲା । ସେତେବେଳେ ମୋର କିଛି ଉପାୟ ନ ଥିଲା, ତେଣୁ ମୋତେ ପରାସ୍ତ ହୋଇ ଫେରିଆସିବାକୁ ପଡ଼ିଥିଲା । ସେତେବେଳେ ମୁଁ କ'ଣ ଜାଣିଥିଲି ଯେ, ବୟସ ବଢ଼ିବା ସହିତ ମୋତେ ଧର୍ମୋନ୍ମାଦମାନଙ୍କର ଧର୍ମ ନାମରେ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ବିଭେଦ ସୃଷ୍ଟି କରିବାର ଭୟାବହ ପ୍ରୟାସ ଦେଖିବାକୁ ପଡ଼ିବ ବୋଲି ?

ମୋତେ ଖୁସି କରିବାକୁ ମୋର ମାମୁ ମୋତେ ପିପରମିଣ୍ଟ୍ ଦେଲେ ଏବଂ ଚାରି କିଲୋମିଟର ଦୂରରେ ଥିବା କେନ୍ଦ୍ରୀୟ ସଚିବାଳୟର ଦକ୍ଷିଣରେ ଥିବା ଗେଟ୍ ପାଖକୁ ନେଇଗଲେ । ସେଠାରେ ଗେଟ୍‌ଠାରୁ ଅନତିଦୂରରେ, ଜଣେ ବାଳପାଚି ଆସୁଥିବା ଓ ମୁହଁରେ ଅଯତ୍ନବର୍ଦ୍ଧିତ ଦାଢ଼ିନିଶ ଥିବା ସାମାନ୍ୟ ସ୍ଥୂଳ ଶରୀର ଜଣେ ପ୍ରିୟଦର୍ଶନ ବ୍ୟକ୍ତି ଗୋଟିଏ ଖଟରେ ଶୋଇଥିଲେ । କେରଳର 'ମୁଣ୍ଡୁ' ଦ୍ୱାରା ତାଙ୍କର ନିମ୍ନାଙ୍ଗ ଆବୃତ ଥିଲା ଓ ଦେହର ଉପର ଅଂଶ ଅନାବୃତ ଥିଲା । ସେ ମୋତେ ନରମ ଭାବରେ କଥା କହିଲେ, ମୋର ହ୍ୟାଣ୍ଡସେକ୍ କଲେ ଓ ମୋତେ ଗୋଟିଏ ମିଠା ଦେଲେ ଖାଇବାକୁ । ସେ କହିଲେ, ମୁଁ ପିନ୍ଧିଥିବା ନାଲିଆ ହାଫ୍‌ପ୍ୟାଣ୍ଟଟି ତାଙ୍କୁ ଭାରି ପସନ୍ଦ ।

ମୁଁ ପରେ ଜାଣିଲି ଯେ ସେ ଥିଲେ ପୁରୁଖା କମ୍ୟୁନିଷ୍ଟ ନେତା ଏ.କେ. ଗୋପାଳନ୍ । ସେ ସେତେବେଳେ କଂଗ୍ରେସ ସରକାର ବିରୁଦ୍ଧରେ ପ୍ରତିବାଦ କରି ଆମରଣ ଅନଶନ କରୁଥାଆନ୍ତି । ବାମପନ୍ଥୀମାନଙ୍କ ପ୍ରତି ଦୁର୍ବଳତା ଥିବା ମୋର ମାମୁଙ୍କର ଏହି କମ୍ୟୁନିଷ୍ଟ ନେତାଙ୍କପାଇଁ ଅତ୍ୟନ୍ତ ସମ୍ମାନ ଥିଲା । ତେଣୁ ସେ ମୋତେ ତାଙ୍କ ନିକଟକୁ ନେଇଯାଇଥିଲେ । ବୋଧହୁଏ ଶ୍ରୀଯୁକ୍ତ ଗୋପାଳନଙ୍କର ନରମ ଚାହାଣି ଏବଂ କୋମଳ ସ୍ପର୍ଶର ଯାଦୁ ମୋତେ ପରବର୍ତ୍ତୀ ସମୟରେ କଲେଜରେ ପଢୁଥିବାବେଳେ କାର୍ଲମାର୍କ୍ସ ଓ Das Capital ପ୍ରତି ଆକୃଷ୍ଟ କରିଥିଲା ।

6. ଯାଦୁ ବା ମ୍ୟାଜିକ ବିଷୟ କହିଲେ ମୋର ପରିଷ୍କାର ଭାବରେ ମନେପଡ଼ିଯାଉଛି ସେହି ଯାଦୁକରୀ ମୁହୂର୍ତ୍ତଗୁଡ଼ିକ ଯେତେବେଳେ ମୁଁ ଘରର ପଛପଟେ ବସି ମେଘଭର୍ତ୍ତି ଆକାଶକୁ ଚାହିଁ ରହୁଥିଲି । ମୋର କଳ୍ପନାବିଳାସୀ ମନକୁ ସେଗୁଡ଼ିକ ଆବିଷ୍କୃତ ହେବାକୁ ଉନ୍ମୁଖ ବରଫାବୃତ ଶୃଙ୍ଗ ପରି ଲାଗୁଥିଲେ । ବହୁ ପରେ ଗୋଟାଏ କଫି ଟେବୁଲ ବହିରେ ଯେତେବେଳେ ମୁଁ ହିମାଳୟର ଚିତ୍ର ଦେଖିଲି, ସେତେବେଳେ ମୋର ମନେହେଲା, ଛ'ବର୍ଷ ବୟସରେ ଘରର ପଛପଟେ ବସି ଆକାଶକୁ ଚାହିଁ ମୁଁ କ'ଣ ଏଗୁଡ଼ିକୁ ଦେଖି ନାହିଁ ?

ଏଇ ଅଧ୍ୟାୟର ସମାପ୍ତି କରିବାକୁ ଯାଇ ଗୋଟିଏ ଗଳ୍ପର ଅବତାରଣା କରାଯାଇପାରେ । ହିମାଳୟର ପର୍ବତର ଶିଖରରୁ ତଳକୁ ଅଙ୍କାବଙ୍କା ହୋଇ ବହିଯାଉଥିବା ଭାଗିରଥୀ ତୀରରେ ବସି ମୋର ଗୁରୁ ଏହି ଗଳ୍ପଟି ମୋତେ କହିଥିଲେ । ଏହି ଯାତ୍ରାର ପରବର୍ତ୍ତୀ ଅଧ୍ୟାୟକୁ ଯିବା ପୂର୍ବରୁ ମୁଁ ଭାବୁଛି ମୋର ଗୁରୁ କହିଥିବା ଗଳ୍ପଟିର ପୁନରାବୃତ୍ତି କରିବା ସଙ୍ଗତ ହେବ । ଗଳ୍ପଟି ଶୁଣି ଆପଣ ନିଜର ସିଦ୍ଧାନ୍ତ ନେଇପାରନ୍ତି । କିନ୍ତୁ ସେଥିପାଇଁ ତରବର ବା ବ୍ୟସ୍ତ ହେବାର ଆବଶ୍ୟକତା ନାହିଁ ।''

''ହିମାଳୟସ୍ଥିତ ପବିତ୍ର ତୀର୍ଥ ବଦ୍ରିନାଥର ବିଖ୍ୟାତ ମନ୍ଦିର ପଛପଟେ ଥିବା ପ୍ରାୟ ଅଗମ୍ୟ ପର୍ବତଶିଖରରେ କେତେଗୁଡ଼ିଏ ଛୋଟବଡ଼ ଗୁମ୍ଫା ରହିଛି । କେବଳ ଗ୍ରୀଷ୍ମକାଳରେ କିଛି ସମୟ ପାଇଁ ମନ୍ଦିରଟି ତୀର୍ଥଯାତ୍ରୀଙ୍କ ପାଇଁ ଖୋଲା ରହେ । ବାକି ସମୟତକ ସମଗ୍ର ସ୍ଥାନଟି ବରଫାବୃତ୍ତ ହୋଇ ରହିଥାଏ । ଏପରିକି ଶଙ୍କରାଚାର୍ଯ୍ୟଙ୍କ (ଏହି ସନ୍ଥଜଣକ ଶହଶହ ବର୍ଷ ପୂର୍ବେ ମନ୍ଦିରର ପୂର୍ଣ୍ଣ ସଂସ୍କାର କରିଥିଲେ) ଅମଳରୁ ମନ୍ଦିରରେ ପୂଜାର୍ଚ୍ଚନା କରୁଥିବା ନମ୍ବୁଦ୍ରିପୂଜକମାନେ ଯୋଶୀମଠ ଥିବା ଗାଆଁକୁ ଚାଲିଯାଆନ୍ତି ଓ ତୀର୍ଥଯାତ୍ରୀମାନଙ୍କର ପରବର୍ତ୍ତୀ ଆଗମନର ସମୟକୁ ଅପେକ୍ଷା କରି ରହନ୍ତି । କେବଳ ଖୁବ୍ ଅସାଧାରଣ କେତେଜଣ ମଣିଷ ସେଠାରେ ରହିଯାଆନ୍ତି ଓ ଶୀତଋତୁରେ ମଧ ଗୁମ୍ଫାଗୁଡ଼ିକ ମଧରେ ଧ୍ୟାନମଗ୍ନ ହୋଇ ରହନ୍ତି ।

ପ୍ରାୟ ଶହେ ବର୍ଷ ତଳେ ସେହିପରି ଜଣେ ଅସାଧାରଣ ଯୋଗୀ ପୂର୍ବୋକ୍ତ ଗୋଟିଏ ଗୁମ୍ଫା ଭିତରେ ଧ୍ୟାନସ୍ଥ ହୋଇ ବସିଥିଲେ । କେବଳ ଖଣ୍ଡିଏ କୌପୀନ ବ୍ୟତୀତ ଅନ୍ୟ କୌଣସି ବସ୍ତ୍ରଧାରଣ କରି ନ ଥିବା ଯୋଗୀ ଜଣକ ଗଭୀର ଅର୍ନ୍ତମୁଖୀ ଧ୍ୟାନରେ ମଗ୍ନ ଥିଲେ । ସେ ଥିଲେ ଗୌରବର୍ଣ୍ଣ ଓ ସୁଦର୍ଶନ । ତାଙ୍କର ଦୀର୍ଘ କୃଷ୍ଣ କେଶ ଓ ଶ୍ମଶ୍ରୁ ଥିଲା ଏବଂ ତାଙ୍କର ଚକ୍ଷୁ ମୁଦ୍ରିତ ଥିବାବେଳେ ଅନ୍ତର୍ନିହିତ ଆନନ୍ଦ ହେତୁ ଏକ ପ୍ରଶାନ୍ତ ହାସ୍ୟ ତାଙ୍କ ମୁଖମଣ୍ଡଳକୁ ଉଜ୍ଜ୍ୱଳ କରି ରଖିଥିଲା । ଊଣେଇଶ ବର୍ଷ ବୟସର ଏହି କିଶୋର ଯୋଗୀ ପବିତ୍ର ବାରାଣସୀ ନଗରୀର ବିଖ୍ୟାତ ବୈଦିକ ପଣ୍ଡିତମାନଙ୍କର ପରିବାରରୁ ଆସିଥିଲେ ।

ତାଙ୍କର ପୂର୍ବଜମାନେ ଜଣେ ପ୍ରସିଦ୍ଧ ଯୋଗୀଙ୍କର ଶିଷ୍ୟ ଥିଲେ । ଏହି ଗୁରୁଜଣକ 'ଶ୍ରୀ ଗୁରୁ ବାବାଜୀ' ନାମରେ ବିଖ୍ୟାତ ଏବଂ ବିଶ୍ୱାସ କରାଯାଏ ଯେ, 'ଶ୍ରୀ ଗୁରୁ ବାବାଜୀ' ତାଙ୍କର ଭୌତିକ ଶରୀରକୁ ଯୁବକ-ସୁଲଭ ଅବସ୍ଥାରେ ଶହଶହ ବର୍ଷ ଧରି ଧାରଣ କରିଥିଲେ ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ ମଧ ସେ ସେହି ଅବସ୍ଥାରେ ରହିଛନ୍ତି ।

ପୂର୍ବୋକ୍ତ କିଶୋରଙ୍କର ପିତା, ଯେ ବାବାଜୀଙ୍କର ଶିଷ୍ୟ ଥିଲେ, ସେ ତାଙ୍କର ପୁତ୍ରକୁ ମାତ୍ର ନ' ବର୍ଷ ବୟସରେ ବାବାଜୀଙ୍କ ହାତକୁ ଟେକି ଦେଇଥିଲେ; ତା'ପରଠାରୁ ସେହି ବାଳକ ନିଜର ଗୁରୁଙ୍କ ସହିତ ହିମାଳୟର ଏପଟରୁ ସେପଟ ପର୍ଯ୍ୟନ୍ତ ପରିଭ୍ରମଣ କରୁଥିଲେ । (ଗୁରୁଙ୍କର କୌଣସି ସ୍ଥାୟୀ ଆବାସ ନ ଥିଲା ।) ବର୍ଷକ ତଳେ, ଅଠରବର୍ଷ ବୟସରେ ସେ ସ୍ୱାଧୀନ–ଯୋଗୀ ପଦକୁ ଉନ୍ନୀତ ହେଲେ । ତା' ପରଠାରୁ ସେ ଏକାକୀ ବରଫାବୃତ୍ତ କେଦାର ଓ ବଦ୍ରି ଶୃଙ୍ଗଗୁଡ଼ିକ ମଧ୍ୟରେ ଘୂରି ବୁଲୁଥିଲେ ।

ଯେତେବେଳେ ଆମର କିଶୋର ଯୋଗୀ ସମ୍ପୂର୍ଣ୍ଣ ଭାବରେ ନିଶ୍ଚଳ ହୋଇ ଯୌଗିକ ଅବସ୍ଥାରେ  ଅର୍ଥାତ୍ ସମାଧିରେ ବସିଥିଲେ, ଏକ ଆଶ୍ଚର୍ଯ୍ୟ ଧରଣର ନାଟକ ତାଙ୍କ ମୁଦ୍ରିତ ଚକ୍ଷୁ ସାମ୍ନାରେ ଉନ୍ମୋଚିତ ହେଉଥିଲା । ତୀକ୍ଷ୍ଣ ପାହାଡ଼ିଆ ଓ ଅତି ସଂକୀର୍ଣ୍ଣ ଉଦ୍‌ଗତ ସ୍ଥାନକୁ ହାତ ଓ ପାଦର ନଖଦ୍ୱାରା ଆଞ୍ଜୁଡ଼ା ଆଞ୍ଜୁଡ଼ି କରି ସେସବୁ ଅଞ୍ଚଳରେ ପ୍ରାୟ ଦେଖାଯାଉ ନ ଥିବା ଗୋଟାଏ ପ୍ରକାରର ଜଣେ ମଣିଷ ଟାଣି ଓଟାରି ହୋଇ ଗୁମ୍ଫା ସାମ୍ନାରେ ଥିବା ସମତଳ ଅଞ୍ଚଳରେ ପହଞ୍ଚିଗଲେ । ତାଙ୍କର ମଇଳା ଶାଗୁଆ ପଗଡ଼ି, ଶତଛିନ୍ନ ଢ଼ିଲା ଲମ୍ବା ଜାମା, ଗଳାରେ ଝୁଲୁଥିବା ଜପମାଳା ଓ ମେହେନ୍ଦୀରେ ରଙ୍ଗ କରାଯାଇଥିବା ଲମ୍ବା ଦାଢ଼ି ପରିଷ୍କାର ଭାବରେ ଜଣାଇ ଦେଉଥାଏ ଯେ ସେ ଜଣେ ମୁସଲମାନ ଫକିର ।

ତାଙ୍କର ହାତଗୋଡ଼ ଓ ଦେହର  ଅନାବୃତ ଅଂଶଗୁଡ଼ିକ ଖଣ୍ଡିଆଖାବରା ହୋଇ ପ୍ରଚୁର ରକ୍ତସ୍ରାବ ହେଉଥାଏ । ଶୀତ ଓ କ୍ଷୁଧାରୁ ଲୋକଜଣକ ପ୍ରାୟ ଭାଙ୍ଗିପଡୁଥିବା ଅବସ୍ଥାରେ ଗୁମ୍ଫା ସାମ୍ନାରେ ବସିଥିବା କିଶୋର ଯୋଗୀଙ୍କ ଉପରେ ତାଙ୍କର ନଜର ପଡ଼ିଗଲା । ତାଙ୍କ ମୁହଁର ବେଦନାର୍ତ୍ତ ଭାବ ଉଭେଇଗଲା ଓ ଖେଳିଗଲା ଏକ ମୃଦୁହାସ୍ୟ । ସେହି ହାସ୍ୟ ପ୍ରସାରିତ ହୋଇ ଉନ୍ମାଦନାପୂର୍ଣ୍ଣ ଉଚ୍ଚହାସ୍ୟରେ ପରିଣତ ହେଲା । 'ଆଲ୍ଲାହଙ୍କର ଅପାର କରୁଣା' ବୋଲି କହି ନିଜର ସବୁ ଦୁଃଖ କଷ୍ଟ ଭୁଲିଯାଇ, ସେ ସେପର୍ଯ୍ୟନ୍ତ ଧ୍ୟାନମଗ୍ନ ଥିବା ଯୋଗୀଙ୍କ ଆଡ଼କୁ ଅଗ୍ରସର ହେଲେ ଓ ତାଙ୍କୁ ଭୂପତିତ ହୋଇ ପ୍ରଣାମ କଲେ । ତା'ପରେ ଏମିତି ଏକ ଆଚରଣ କଲେ, ଯାହା କୌଣସି ହିନ୍ଦୁ କେବେହେଲେ ସ୍ୱପ୍ନରେ ମଧ୍ୟ କରିବ ନାହିଁ – ସେ ଯୋଗୀଙ୍କୁ କୁଣ୍ଢାଇ ପକାଇଲେ ।

ବଡ଼ ରୁକ୍ଷ ଭାବରେ ଧ୍ୟାନଭଗ୍ନ ହେବା ପରେ ଯୋଗୀ ତାଙ୍କୁ କୁଣ୍ଢାଇ ଧରିଥିବା ବୃଦ୍ଧ ଜଣକ କବଳରୁ ନିଜକୁ ମୁକ୍ତ କଲେ । ବୃଦ୍ଧଜଣଙ୍କ କ୍ଷତସ୍ଥାନରୁ ରକ୍ତ ଝରୁଥାଏ, ସେ ପଥଶ୍ରମରୁ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଥାଆନ୍ତି । ତାଙ୍କ ଦେହରୁ ଦୁର୍ଗନ୍ଧ ବାହାରୁଥାଏ । ଯୋଗୀ ନାସିକା କୁଞ୍ଚନ କରି କହିଲେ, "ତୁମର ତ ସାହସ କମ୍ ନୁହେଁ ? ଏହି ସ୍ଥାନରୁ ଦୂର ହୋଇଯାଅ ।" କ୍ରୋଧ ଏମିତି ଗୋଟାଏ  ଭୟଙ୍କର

ବିଷ, ଯେଉଁଥିରୁ ମୁନିଋଷିମାନେ ମଧ୍ୟ ନିଜକୁ ମୁକ୍ତ ରଖିପାରନ୍ତି ନାହିଁ । ସେହି କ୍ରୋଧ ଯୋଗୀଙ୍କର ହୃଦୟକୁ ଆଛନ୍ନ କଲା ।

"ମହାଶୟ ! ଦୟାକରି ମୋତେ ମୋର କଥା ଶୁଣାଇବାର ସୁଯୋଗ ଦିଅନ୍ତୁ" – ବିକଳରେ ଫକିର ଜଣକ ପ୍ରାର୍ଥନା କଲେ । "ଦୂର ହୋଇଯାଅ । ତୁମପରି ମାଂସ ଭକ୍ଷଣ କରୁଥିବା ବର୍ବର ଲୋକପାଇଁ ଏଠାରେ କୌଣସି ସ୍ଥାନ ନାହିଁ । ଯାଅ ବାହାରିଯାଅ, ତୁମେ ବଡ଼ ରୁକ୍ଷ ଭାବରେ ମୋର ଧ୍ୟାନଭଙ୍ଗ କରିଛ, ମୋତେ ବର୍ତ୍ତମାନ ଯାଇ ଅଳକନନ୍ଦାରେ ସ୍ନାନ କରିଆସି ପୁନର୍ବାର ଧ୍ୟାନରେ ବସିବାକୁ ହେବ" – ଗର୍ଜିଉଠିଲେ ଯୋଗୀ ।

ଫକିର ହତୋତ୍ସାହ ହେଲେ ନାହିଁ । "ହେ ମହାନ୍ ଯୋଗୀ ! ଦୟାକରି ମୋ କଥା ଶୁଣନ୍ତୁ । ମୁଁ ନକ୍ଶାବନ୍ଦିୟା ଶୃଙ୍ଖଳାର ଏକ ମହାନ ସୂଫୀ ଗୁରୁଙ୍କର ପ୍ରଧାନ ଶିଷ୍ୟ ଓ ମୁଁ ନିଜେ ଜଣେ ସୂଫୀ । ଛ'ମାସ ତଳେ ମୋର ଗୁରୁ ଦେହ ତ୍ୟାଗ କରିଛନ୍ତି । ମୃତ୍ୟୁର ଠିକ୍ ପୂର୍ବରୁ ସେ ମୋତେ କହିଯାଇଛନ୍ତି, "ବତ୍ସ ! ମୋର ସାଧ୍ୟାନୁସାରେ ମୁଁ ତୁମକୁ ଆଧ୍ୟାତ୍ମିକ ସିଦ୍ଧିର ଗୋଟାଏ ସ୍ତରକୁ ନେଇ ଆସିଛି । ମୁଁ ବର୍ତ୍ତମାନ ଦେହତ୍ୟାଗ କରିବାକୁ ଯାଉଛି ଏବଂ ଏମିତି କେହି ସୂଫୀ ଗୁରୁ ନାହାନ୍ତି, ଯେ ତୁମକୁ ମାର୍ଗଦର୍ଶନ କରିବେ ଓ ପରବର୍ତ୍ତୀ ଉଚ୍ଚତର ସ୍ତରକୁ ନେଇଯାଇ ପାରିବେ । କିନ୍ତୁ ଚିନ୍ତା କର ନାହିଁ । ହିମାଳୟର ବଦ୍ରି ନିକଟରେ ଜଣେ କିଶୋର ସାଧୁ ଅଛନ୍ତି । ତାଙ୍କୁ ଠାବ କର ଓ ତାଙ୍କଠାରୁ ସାହାଯ୍ୟ ପ୍ରାର୍ଥନା କର ।" "ଆପଣ ହେଉଛନ୍ତି ସେହି ଯୋଗୀ, ଯାହାଙ୍କ ବିଷୟରେ ମୋର ଗୁରୁ କହିଯାଇଛନ୍ତି । ଆପଣ ହିଁ କେବଳ ବର୍ତ୍ତମାନ ମୋତେ ରକ୍ଷା କରିପାରିବେ ।"

ଦୁଇମାସ ହେଲା ମୁଁ ଅଗଣିତ ଦୁଃଖଦୁର୍ଦ୍ଦଶା ଓ ପଥଶ୍ରମ ଭୋଗି ଶେଷରେ ଆପଣଙ୍କର ସନ୍ଧାନ ପାଇଛି । ପଥଶ୍ରମଜନିତ କ୍ଳାନ୍ତି ହେତୁ ମୁଁ ଏଇଠି ପଡ଼ି ମରିଯାଇପାରେ । କେବଳ ଏତିକି ପ୍ରାର୍ଥନା କରୁଛି ମୋତେ ଶିଷ୍ୟରୂପେ ଗ୍ରହଣ କରନ୍ତୁ । ତାହାହେଲେ ମୋର ଆତ୍ମା ଶାନ୍ତିର ସହ ପ୍ରସ୍ଥାନ କରିବ । ମୁଁ ଆପଣଙ୍କୁ ଭିକ୍ଷା ମାଗୁଛି ।"

"ମୁଁ ତୁମର ଗୁରୁ ବା ତୁମେ କହୁଥିବା ସୂଫୀମାନଙ୍କ ବିଷୟରେ କିଛି ଜାଣେ ନାହିଁ । ମୁଁ ସେପରି କୌଣସି ନିର୍ଦ୍ଦେଶ ପାଇ ନାହିଁ । ତା'ଛଡ଼ା ମୁଁ ଶିଷ୍ୟ ଗ୍ରହଣ କରେ ନାହିଁ" – କହିଉଠିଲେ କ୍ରୁଦ୍ଧ କିଶୋର ଯୋଗୀ ଜଣକ । ତା'ପରେ ସେ କହିଲେ, "ଏଥର ମୋର ବାଟ ଛାଡ଼ । ମୁଁ ଯାଇ ଅଳକନନ୍ଦା ନଦୀରେ ଗୋଟାଏ ବୁଡ଼ ପକାଇ ଆସି ପୁଣି ଧ୍ୟାନରେ ବସିବି । ତୁମେ ବଡ଼ ରୁକ୍ଷ ଭାବରେ ମୋର ଧ୍ୟାନରେ ବ୍ୟାଘାତ ଘଟାଇଛ, ଯାଅ ବାହାର ଏଠୁ !"

ଫକିର କହିଉଠିଲେ, "ଠିକ୍ ଅଛି, ମହାନ୍ ଯୋଗୀ । ଏହା ହିଁ ଯଦି ଆପଣଙ୍କର ଶେଷ କଥା, ମୋର ଆଉ ବଞ୍ଚିବାର କୌଣସି ଇଚ୍ଛା ନାହିଁ, ମୋ ଜୀବନର ଏକମାତ୍ର ସ୍ୱପ୍ନ ବିଧ୍ୱସ୍ତ ହୋଇଯାଇଛି । ମୁଁ ନଦୀକୁ ଡେଇଁ ପଡ଼ି ଜୀବନ ତ୍ୟାଗ କରିବି । ବ୍ରହ୍ମାଣ୍ଡର ପରମ ପିତା ମୋର ମାର୍ଗଦର୍ଶକ ହୁଅନ୍ତୁ ।"

"ତୁମେ ଯାହା କରିବା କଥା କର । ମୁଁ ତୁମ ପାଇଁ କିଛି କରିପାରିବ ନାହିଁ" – ଦୃଢ଼ତାର ସହ କହିଲେ ଯୋଗୀ । "ତୁମର ଭାଗ୍ୟ ଭଲ ଯେ, କ୍ରୋଧିତ ହୋଇ ମୁଁ ତୁମକୁ ଅଭିଶାପ ଦେଇ ନାହିଁ । ନିଜ ରାସ୍ତାରେ ଯାଅ, ଆଉ ମୋତେ ମୋ ରାସ୍ତାରେ ଯିବାକୁ ଦିଅ ।"

ଲୋତକପୂର୍ଣ୍ଣ ଆଖିରେ ଯୋଗୀଙ୍କ ପାଦତଳେ ପ୍ରଣିପାତ କରି ଫକିର ବିଦାୟ ନେଲେ ଓ ବହୁ ନିମ୍ନରେ ବହୁଥିବା ନଦୀତଟରେ ପହଞ୍ଚିଲେ । ପରମପିତାଙ୍କୁ ମାର୍ଗ ଦେଖାଇବାକୁ ପ୍ରାର୍ଥନା କରୁକରୁ ଉତ୍ତାଳ ବେଗରେ ବହୁଥିବା ନଦୀ ଭିତରେ ନିମଜ୍ଜିତ ହେଲେ ।

କିଶୋର ଯୋଗୀ ଜଣକ ଭାବିଲେ ସେ ସଠିକ୍ କର୍ମ କରିଛନ୍ତି । ତେଣୁ ଅନୁତାପ–ବିହୀନ ହୃଦୟରେ ସେ ନଦୀତଟର ଏକ ସୁନ୍ଦର ସ୍ଥାନକୁ ଓହ୍ଲାଇ ଆସିଲେ ଓ ନିଜକୁ ପବିତ୍ର କିରବା ପାଇଁ ଉଦ୍ଦିଷ୍ଟ ମନ୍ତ୍ରଗାନ କରୁକରୁ ସେହି ପବିତ୍ର ନଦୀର ଅତ୍ୟନ୍ତ ଶୀତଳ ଜଳରେ ବୁଡ଼ ପକାଇଲେ ଏବଂ ତାଙ୍କ ନିକଟରେ ଥିବା ଏକମାତ୍ର ବସ୍ତ୍ରଖଣ୍ଡରେ ପୋଛାପୋଛି ହେଲେ । ଗୋଟିଏ ପଥର ଉପରେ ବସି ତାଙ୍କୁ ପବିତ୍ର କରିଦେଇଥିବାରୁ ମନେମନେ ପାବନ ନଦୀକୁ ଧନ୍ୟବାଦ ଦେଲେ । ତା'ପରେ ଗୁମ୍ଫା ନିକଟକୁ ଆରୋହଣ କରିବାର ପୂର୍ବ ମୁହୂର୍ତ୍ତରେ ସେ ଶୁଣିପାରିଲେ ତାଙ୍କର ଗୁରୁଙ୍କର ମଧୁର ସ୍ୱରର 'ମଧୁ !' ଆହ୍ୱାନକୁ ।

ଗୋଟାଏ ପଥୁରିଆ ଅତି ସଂକୀର୍ଣ୍ଣ ଉଦ୍‌ଗତ ସ୍ଥାନ ଉହାଡ଼ରୁ ତାଙ୍କର ମହାନ ଗୁରୁ ବାବାଜୀ ଆବିର୍ଭୂତ ହେଲେ । ମନେହେଲା ଆଗତ ସନ୍ଧ୍ୟା ଯେମିତି ତାଙ୍କର ଅତ୍ୟୁଜ୍ଜ୍ୱଳ ଉପସ୍ଥିତି ହେତୁ ହଠାତ୍ ଆଲୋକିତ ହୋଇଉଠିଲା । ପ୍ରାୟ ୟୁରୋପୀୟମାନଙ୍କ ପରି ଗାତ୍ରବର୍ଣ୍ଣଯୁକ୍ତ ଦୀର୍ଘ ଗୌରାଙ୍ଗ ବାବାଜୀଙ୍କର ଲମ୍ବା କେଶ ଥିଲା କିନ୍ତୁ ମୁଖମଣ୍ଡଳ ଅତ୍ୟନ୍ତ ଶ୍ମଶ୍ରୁବିରଳ ଥିଲା । ତାଙ୍କୁ ପ୍ରାୟ ଷୋହଳବର୍ଷ ବୟସ ହୋଇଥିବ ବୋଲି ମନେହେଉଥିଲା । ଅତ୍ୟନ୍ତ ସୁଗଠିତ ପେଶିବହୁଳ ଦେହରେ କେବଳ ଖଣ୍ଡିଏ କୌପୀନ ଥିଲା, ବାକି ଅଂଶ ଥିଲା ଅନାବୃତ । ନଗ୍ନପାଦରେ ସେ ଅତ୍ୟନ୍ତ ସୁନ୍ଦରଭାବରେ ମର୍ଯ୍ୟାଦାର ସହିତ ଚାଲୁଥିଲେ ।

ତାଙ୍କର ବିଶାଳ ଧ୍ୟାନଯୁକ୍ତ ଚକ୍ଷୁଦ୍ୱଇଟି ତାଙ୍କର ଶିଷ୍ୟ ମଧୁଙ୍କ ଉପରେ ନିବଦ୍ଧ ହେଲା । ସେ କୋମଳ ଭାବରେ କହିଲେ – ''କି ସାଂଘାତିକ କର୍ମ କରିପକାଇଲ ବତ୍ସ !''

ଶିଷ୍ୟ ଜଣକ କିଛି ସମୟ ପୂର୍ବରୁ ଯେଉଁ ଅନ୍ୟାୟ କରିଥିଲେ, ତାହା ତାଙ୍କ ମନରେ ବିଜୁଳିବେଗରେ ଅନୁଭୂତ ହେଲା । କାନ୍ଦିକାନ୍ଦି ଗୁରୁଙ୍କ ପାଦତଳେ ପ୍ରଣିପାତ କରିବା ପୂର୍ବରୁ ସେ କେବଳ ଉଚ୍ଚାରଣ କରିପାରିଲେ – ''ବାବାଜୀ !''

''ନିଜକୁ ସଂଯତ କର ବତ୍ସ ! ଆଉ ଆସ । ଚାଲ ପର୍ବତାରୋହଣ କରି ତୁମର ଗୁମ୍ଫାକୁ ଯିବା ।'' ସେମାନେ ତ୍ୱରିତପଦରେ ଆରୋହଣ କଲେ ଓ ଗୁମ୍ଫାରେ ପହଞ୍ଚି ମୁହାଁମୁହିଁ ହୋଇ ବସିଲେ । ''ତୁମକୁ ମୁଁ କ'ଣ କହି ନାହିଁ ଯେ, କଥା କହିବା ପୂର୍ବରୁ ଚିନ୍ତା କର ଯେ ତୁମେ କେଉଁ ପରିସ୍ଥିତିରେ କାହାକୁ କ'ଣ କହିବାକୁ ଯାଉଛ ବୋଲି ? ତୁମେ ସାମାନ୍ୟ ଧୈର୍ଯ୍ୟ ଧରି ବୃଦ୍ଧଜଣକ କ'ଣ କହିବାକୁ ଚାହୁଁଥିଲେ, ସେକଥା ଶୁଣିପାରିଥାଆନ୍ତ । ଜଣେ ସାଧୁଙ୍କୁ କ'ଣ ତାଙ୍କର ବାହ୍ୟରୂପରୁ ବିଚାର କରାଯାଏ ? ଯେମିତି ମୋର ମହାନ ଶିଷ୍ୟ କବୀର କହିଥିଲେ – ତୁମେ କ'ଣ ଖଣ୍ଡାଧାରକୁ ଖଣ୍ଡାଠାରୁ ବେଶି ସମ୍ମାନ ଦେବା ଉଚିତ ? ତୁମେ ପ୍ରଭୁଙ୍କର ଜଣେ ମହାନ ଭକ୍ତଙ୍କୁ ଦୁଃଖ ଦେଇଛ, ତୁମର ବହୁବର୍ଷର କଠୋରବ୍ରତର ଫଳ ତୁମେ ନିମିଷକ ମଧ୍ୟରେ ଧ୍ୱଂସ କରିଦେଇଛ । ଶହେବର୍ଷର ଅତ୍ୟନ୍ତ କଠୋର ସଂଯମଠାରୁ ଗୋଟିଏ ମୁହୂର୍ତ୍ତର କରୁଣା ଯଥେଷ୍ଟ ଅଧିକ ମୂଲ୍ୟବାନ । ତୁମକୁ ଏଥିପାଇଁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ ।''

ସେତେବେଳକୁ କିଶୋର ଶିଷ୍ୟଜଣକ ନିଜକୁ ସଂଯତ କରି ଶାନ୍ତ ହୋଇଯାଇଥାଆନ୍ତି । ''ଆପଣ ଯାହା କହିବେ, ତାହା କରିବାକୁ ମୁଁ ପ୍ରସ୍ତୁତ'' ସେ କହିଲେ । ବାବାଜୀ କହିଲେ, ''ଫକିରଙ୍କର ଆଧ୍ୟାତ୍ମିକ ପ୍ରୟୋଜନ କଥା ମୁଁ ବୁଝିବି, ତୁମେ ତୁମର ଉଦ୍ଧତ ବ୍ୟବହାର ଦ୍ୱାରା ତୁମର ଆଧ୍ୟାତ୍ମିକ ପ୍ରଗତିର ଗତିରୋଧ କରିଛ । ପୁଣି ସେହି ମାର୍ଗକୁ ଫେରିଆସିବାକୁ ହେଲେ ତୁମକୁ ସେହି ଫକିରଙ୍କ ପରି ଦୁଃଖକଷ୍ଟ ଇତ୍ୟାଦି ଭିତର ଦେଇ ଯିବାକୁ ପଡ଼ିବ । ତୁମେ ସମ୍ପୂର୍ଣ୍ଣ ଖେଚରୀ ମୁଦ୍ରାର ଶେଷ କ୍ରିୟାପାଇଁ ପ୍ରସ୍ତୁତ ହୁଅ ଏବଂ ତୁମର ପ୍ରାଣ ଆଜ୍ଞାକେନ୍ଦ୍ର ମଧ୍ୟଦେଇ ନିର୍ଗତ ହେଉ । ତା'ପରେ ଆମ୍ଭେ ତୁମର ଆତ୍ମାକୁ ମାର୍ଗଦର୍ଶନ ଦେବୁ, ଯେପରି ସେ ଏପରି ପରିସ୍ଥିତିରେ ଜନ୍ମଗ୍ରହଣ କରିବ, ଯେମିତି ସେହି ହତଭାଗ୍ୟ ଲୋକଟି ଯେଉଁ କଷ୍ଟ ଭୋଗିଥିଲା ସେହିପରି ଅବସ୍ଥା ମଧ୍ୟ ଦେଇ ତାହାକୁ ଗତି କରିବାକୁ ପଡ଼ିବ । ବର୍ତ୍ତମାନ ତାହା କର ।''

"ଆପଣଙ୍କର ଇଚ୍ଛା ସବୁବେଳେ ମୋର ଶିରୋଧାର୍ଯ୍ୟ ବାବାଜୀ ଏବଂ ମୁଁ ଆପଣଙ୍କ କଥାମତେ କାର୍ଯ୍ୟ ସାଙ୍ଗେ ସାଙ୍ଗେ କରିବି, କିନ୍ତୁ ମୋର ଗୋଟିଏ ଶେଷ ଇଚ୍ଛା ଅଛି ।"

"ତାହାକୁ ପ୍ରକାଶ କର ବତ୍ସ !" କହିଲେ ବାବାଜୀ ।

ଆବେଗରୁଦ୍ଧ କଣ୍ଠ ଏବଂ ପ୍ରାର୍ଥନାର ଭଙ୍ଗିରେ ଯୋଡ଼ହସ୍ତ କିଶୋର ଶିଷ୍ୟ କହିଲେ, "ଭଗବାନ୍ ! ମୁଁ ମୋର ହୃଦୟ ଦେଇ ଆପଣଙ୍କୁ ପ୍ରେମ କରେ । ପ୍ରତିଜ୍ଞା କରନ୍ତୁ ଆପଣ ମୋତେ ତ୍ୟାଗ କରିବେ ନାହିଁ ଏବଂ ମୋ ଉପରୁ କୃପାଦୃଷ୍ଟି ଅପସାରଣ କରି ମୋତେ ପାର୍ଥିବ ଚିନ୍ତା ଓ ଉଦ୍‌ବେଗର ଘୂର୍ଣ୍ଣ୍ୟାବର୍ତ୍ତ ମଧ୍ୟରେ ହଜିଯିବାକୁ ଦେବେ ନାହିଁ । ମୋର ଏତିକି ପ୍ରାର୍ଥନା, ଦୟାକରି ପ୍ରତିଜ୍ଞା କରନ୍ତୁ ଯେ ଆପଣ ମୋ ଉପରେ କୃପାଦୃଷ୍ଟି ରଖିବେ ଏବଂ ପୁନର୍ବାର ମୋତେ ଫେରେଇ ଆଣି ଆପଣଙ୍କର ପବିତ୍ର ପାଦପଦ୍ମରେ ସ୍ଥାନ ଦେବେ ।"

କରୁଣାରେ ବିଗଳିତ ଜ୍ୟୋତିର୍ମୟ ନୟନରେ ଚାହିଁ ମହାନ ଗୁରୁ କହିଲେ, "ମୁଁ ପ୍ରତିଜ୍ଞା କରୁଛି । ମୋର ପ୍ରଧାନ ଶିଷ୍ୟ ମହେଶ୍ୱରନାଥ ତୁମର ଆଗାମୀ ଜୀବନରେ ବେଶ ଶୀଘ୍ର ତୁମକୁ ଦର୍ଶନ ଦେବେ । ସେ ହେବେ ତୁମର ମାର୍ଗଦର୍ଶକ । କୌଣସି ଏକ ସମୟରେ ତୁମେ ବର୍ତ୍ତମାନ ପରି ମୋତେ ଭେଟିବ ଓ ମୋ ସହିତ କଥାବାର୍ତ୍ତା କରିବ । କିନ୍ତୁ ଏବେ ତୁମେ ଶୀଘ୍ର ପ୍ରସ୍ଥାନ କର କାରଣ ଏହା ହେଉଛି ଯିବାର ପ୍ରକୃଷ୍ଟ ସମୟ ।"

ସେତେବେଳକୁ ସୂର୍ଯ୍ୟାସ୍ତ ହୋଇସାରିଥାଏ, ରୁପେଲି ଜହ୍ନ ଯେପରି ଏହି ପବିତ୍ର ନାଟକ ଅଭିନୀତ ହେଉଥିବା ସମୟରେ ସାକ୍ଷୀ ରହିବାପାଇଁ ବାଦଲକୁ ଫାଙ୍କ କରିଦେଇଥାଏ । ଲୋତକପୂର୍ଣ୍ଣ ନେତ୍ରରେ କିଶୋର ସନ୍ନ୍ୟାସୀ ପୁଣି ଥରେ ତାଙ୍କର ଗୁରୁଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଗୁରୁ ତାଙ୍କୁ ଆଶୀର୍ବାଦ କଲେ ଏବଂ ମୁହୂର୍ତ୍ତକ ମଧ୍ୟରେ ରାତ୍ରିର ଅନ୍ଧକାରରେ ସମାହିତ ହୋଇଗଲେ, ବର୍ତ୍ତମାନ ମଧୁ ଏକା । ସେ ପଦ୍ମାସନରେ ବସି, କେତେକ ଗଭୀର ନିଃଶ୍ୱାସ ନେଇ ଖେଚରୀ ମୁଦ୍ରା ଧାରଣ କଲେ । ଏହି ମୁଦ୍ରା ବଳପ୍ରୟୋଗପୂର୍ବକ ନିଃଶ୍ୱାସପ୍ରଶ୍ୱାସକୁ ରୁଦ୍ଧ କରିଥାଏ । ଏହି ମୁଦ୍ରାରେ ବସି ନିଜର ଦୁଇ ଭ୍ରୂଲତା ମଧ୍ୟରେ ନିଜକୁ ଏକାଗ୍ର କରି ସେ ଶରୀର ତ୍ୟାଗ କଲେ ।

ମୋତେ ମୋର ଗୁରୁ ମହେଶ୍ୱରନାଥ କହିଥିବା ଗଳ୍ପର ଏହା ହେଉଛି ସମାପ୍ତି ।



# ୨ ହିମାଳୟବାସୀ ଗୁରୁଙ୍କର ଆଗମନ

ମୋର ଗୁରୁ କିପରି ଅଦ୍‌ଭୁତ ଭାବରେ ମୋ ସହିତ ସମ୍ପର୍କ କଲେ ଓ ପୂର୍ବର ସଂଯୋଗ ସ୍ଥାପନ କଲେ, ସେ କଥା କହିବାର ସମୟ ବର୍ତ୍ତମାନ ଉପସ୍ଥିତ ।

ସେତେବେଳେ ମୋତେ ନ' ବର୍ଷରୁ ସାମାନ୍ୟ ଅଧିକ ହୋଇଥାଏ, ଅମ୍ବୁଜ ବିଳାସମ୍ ରୋଡ୍‌ରେ ଆମେମାନେ, ମାନେ ମୋର ବାପା ମା', ସାନ ଭଉଣୀ, ଆଇ ଏବଂ ମୁଁ ସମସ୍ତେ ଗୋଟିଏ ବେଶ୍ ବଡ଼ ଘରେ ରହୁଥାଉ । ସେହି ଜାଗାଟା ଥିଲା ଭାନ୍‌ଚିୟୁର, ସେଇଟା ପ୍ରଧାନ ଯାତାୟାତର ରାସ୍ତାଠାରୁ ବେଶି ଦୂରରେ ନ ଥିଲେ ମଧ୍ୟ ବେଶ୍ ଶାନ୍ତିପୂର୍ଣ୍ଣ ଜାଗା ଥିଲା । ଘରର ନାଁ ଥିଲା ପଲ୍ଲୀଭିଡ୍ଡୁ ଏବଂ ଘରଭଡ଼ା ବାପା ଚାଳିଶଟଙ୍କା ଲେଖାଏଁ ମାସକୁ ଦେଉଥିଲେ । ସେ ସମୟରେ ଏହି ଅର୍ଥରାଶି ରାଜକୀୟ ଥିଲା ।

ଆମର ଦାଣ୍ଡଦୁଆର ଓ ଗେଟ୍ ଭିତରେ ବେଶି ଜାଗା ନ ଥିଲା । କିନ୍ତୁ ଆମର ବାରିପଟ ବେଶ୍ ପ୍ରଶସ୍ତ ଥିଲା – ପ୍ରାୟ ଅଧଏକର ଘଞ୍ଚେ ଜାଗା, ସେଥିରେ ନଡ଼ିଆ ଓ ପଣସଗଛ ଭର୍ତ୍ତି ଏବଂ ଅନେକ ଫୁଲଭର୍ତ୍ତି ବୁଦା ଥିଲା । ଅଗଣାରେ ମୋର ମା' କୁକୁଡ଼ା ପାଳିଥିଲେ । ମାଆ କୁକୁଡ଼ା ସହିତ ବୁଲୁଥିବା ଝୁମ୍ପଭର୍ତ୍ତି କୁକୁଡ଼ା ଚିଆଁଗୁଡ଼ିକୁ ଗୋଲାପୀ ରଙ୍ଗ କରାଯାଉଥିଲା । ସେଗୁଡ଼ିକ ଭାରି ସୁନ୍ଦର ଦିଶନ୍ତି । ଛଞ୍ଚାଣ କବଳରୁ ରକ୍ଷା କରିବା ପାଇଁ ସେମାନଙ୍କୁ ଏମିତି ରଙ୍ଗ କରଯାଉଥିଲା । ଆମର ହଳେ ଛେଳି ମଧ୍ୟ ଥିଲେ ।

ମୋର ବାପା ବିଲ୍‌ଡ଼ିଂ କଣ୍ଟ୍ରାକ୍ଟରୀ ସହିତ ବର୍ଜ୍ୟ କାଗଜପତ୍ର ବ୍ୟବହାର କରି ଗୋଟାଏ ବ୍ୟବସାୟ କରୁଥିଲେ । ଛାପାଖାନାର ଏହି ରଦ୍ଦି କାଗଜ ଭର୍ତ୍ତି ବସ୍ତାଗୁଡ଼ାକୁ ରଖିବାପାଇଁ ବାରିପଟେ ଗୋଟାଏ ବିରାଟ ଚାଳିଆ ବନାଯାଇଥିଲା । ଏହି ଜାଗାଟା ମୋର ଓ ମୋର ଅଢ଼େଇବର୍ଷ ବୟସ୍କ ଭଉଣୀର ପ୍ରିୟ ଜାଗା ଥିଲା । ଏଇଠି ଆମେ ଲୁଚକାଳି ଖେଳୁଥିଲୁ କିମ୍ବା ଖାଲିଟାରେ ବସ୍ତା ଉପରେ ବସି ନୂଆ ନୂଆ ଶବ୍ଦ ଉଦ୍ଭାବନ କରି ଓ ଏଣୁତେଣୁ ଗୀତ ବୋଲି ମଜା କରୁଥିଲୁ ।

ଅଗଣା ଚାରିପଟର ପାଚେରି ଅଳ୍ପ ଉଚ୍ଚ ଥିଲା ଓ ମାଟିରେ ତିଆରି ହୋଇଥିଲା । ଅଗଣାର ପ୍ରାୟ ମଝିକୁ ଲମ୍ବିଆସିଥିବା ଗୋଟାଏ ବୁଢ଼ା ପଣସ ଗଛର ଡାଳରୁ ଗୋଟିଏ

ମଜବୁତ ଦୋଳି ଝୁଲୁଥିଲା । ଆମେ ଭାରି ଖୁସିରେ ଦୋଳିରେ ଝୁଲୁଥିଲୁ ଏବଂ ପ୍ରାୟ ଆମ ସାଇପଡ଼ିଶାର ପିଲାଏ ଅକ୍ଲେଶରେ ପାଚେରି ଟପି ଆମ ହତାକୁ ଆସି ଆମ ସହିତ ଯୋଗ ଦେଉଥିଲେ । ଆଉ ଗୋଟାଏ ପଣସ ଗଛ ଆହୁରି ବଡ଼ ଏବଂ ବୋଧହୁଏ ଆହୁରି ପୁରୁଣା, ଦକ୍ଷିଣ କୋଣରେ ଥିଲା । ଏହି ଗଛତଳେ ମୋର ଜୀବନକୁ ଆମୂଳ ପରିବର୍ତ୍ତିତ କରିଦେଇଥିବା ନାଟକ ଅଭିନୀତ ହୋଇଥିଲା ।

ମୁଁ ଏବଂ ମୋ ଭଉଣୀ ଉଭୟେ ହୋଲି ଆଞ୍ଜେଲ କନ୍‌ଭେଣ୍ଟକୁ ଯାଉଥିଲୁ । ସ୍କୁଲଟି ଆମ ଘରଠାରୁ ଚାଲିଚାଲି ଯାଇପାରିବା ଭଳି ଦୂରରେ ଥିଲା । ଆମେ ସାଧାରଣତଃ ଘରକୁ ଫେରିବା ପରେ ଧୂଆଧୋଇ ହୋଇ, ହାଲ୍କା କିଛି ଖାଇ ବାରିପଟେ ସନ୍ଧ୍ୟା ପର୍ଯ୍ୟନ୍ତ ଖେଳୁଥିଲୁ । ସନ୍ଧ୍ୟାବେଳେ ଆମକୁ ମୁହଁ ହାତ ଗୋଡ଼ ଧୋଇ ଆମର ଆଇଙ୍କ ସହିତ ବସି ସଂକ୍ଷିପ୍ତ ଆରବୀ ଏବଂ ଉର୍ଦ୍ଦୁ ଭାଷାରେ ପ୍ରାର୍ଥନା କରିବାକୁ ପଡୁଥିଲା । ତା'ପରେ, ସ୍କୁଲର ପଢ଼ା, ରାତ୍ରିଭୋଜନ ଏବଂ ବେଳେବେଳେ ଆରବ୍ୟ ରଜନୀରୁ କିଛି ଗଳ୍ପ କିମ୍ବା ତାଙ୍କର ନିଜସ୍ୱ ଅନୁଭୂତିରୁ କିଛି ଗଳ୍ପ ଆଇଙ୍କଠାରୁ ଶୁଣି ଆମେ ଶୋଇବାକୁ ଯାଉଥିଲୁ ।

ସେଦିନ ମୋ ଭଉଣୀ, ଯେ ମୋଠାରୁ ବେଶି ଅଧ୍ୟବସାୟୀ ଥିଲା (ସେଥିପାଇଁ, ସେ ଯେ ଭାରତୀୟ ପ୍ରଶାସନିକ ସେବାର ଜଣେ ବରିଷ୍ଠ ଅଧିକାରୀ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।) ନିଜର ଖେଳିବା ସମୟରୁ କାଟି ଅନ୍ୟ ଦିନଠାରୁ ଶୀଘ୍ର ଘର ଭିତରକୁ ଚାଲିଗଲା । ମୁଁ ବାରିପଟେ ଉଦ୍ଦେଶ୍ୟବିହୀନ ଭାବରେ ଘୂରି ବୁଲୁଥାଏ । ସୂର୍ଯ୍ୟଙ୍କର କିରଣ ମୃଦୁ ହୋଇଯାଇ ସୁନେଲି ହୋଇଯାଇଥାଏ, ମୁଁ ଭାବିଲି, ଘରକୁ ଚାଲିଯିବି ଓ ରୋଷେଇଘରକୁ ଯାଇ କିଛି ଖାଇବା ଜିନିଷର ସନ୍ଧାନ କରିବି । ତେଣୁ ମୁଁ ଘର ଆଡ଼କୁ ମୁହାଁଇଲି, କିନ୍ତୁ କେଜାଣି କାହିଁକି, କାରଣ ମୁଁ ଆଜି ପର୍ଯ୍ୟନ୍ତ କହିପାରିବି ନାହିଁ ବୁଲିପଡ଼ି ବାଡ଼ିର ଶେଷମୁଣ୍ଡରେ ଥିବା ପଣସଗଛ ଆଡ଼କୁ ଚାଲିଲି । ସେଠାରେ ସେହି ଗଛ ତଳେ କିଏ ଜଣେ ଥିଲେ, ଯେ ମୋତେ ସାମ୍ନାକୁ ଆସିବାର ଇସାରା କରୁଥିଲେ ।

ସହଜ ପ୍ରତିକ୍ରିୟା ତ ଏପରି ହେବା କଥା ଯେ, ମୁଁ ଦୌଡ଼ିକରି ପଳେଇ ଆସିଥାଆନ୍ତି କିନ୍ତୁ ଆଶ୍ଚର୍ଯ୍ୟ କଥା ଯେ, ସେମିତି ହେଲା ନାହିଁ । ମୋତେ କୌଣସି ପ୍ରକାରର ଭୟ ଲାଗିଲା ନାହିଁ । ସେଇ ଅଜଣା ଅଚିହ୍ନା ଲୋକଙ୍କ ପାଖକୁ ଯିବାପାଇଁ ଏକ ଅଜବ ଧରଣର ଉତ୍ସୁକତାରେ ମୋର ହୃଦୟ ପୂର୍ଣ୍ଣ ହୋଇଗଲା । ମୁଁ ଶୀଘ୍ର ଶୀଘ୍ର ପାଦ ପକାଇ ତାଙ୍କ ସାମ୍ନାରେ ଯାଇ ଠିଆ ହେଲି । ଏବେ ମୁଁ ତାଙ୍କୁ ଭଲଭାବରେ ଦେଖିପାରୁଥାଏ । ସେ ବେଶ୍ ଡେଙ୍ଗା, ବହୁତ ଗୋରା ଥିଲେ ଏବଂ ତାଙ୍କର ହୃଷ୍ଟପୁଷ୍ଟ ମାଂସପେଶୀଯୁକ୍ତ ଶରୀର ଅନାବୃତ ଥିଲା, କେବଳ ଗୋଟିଏ ଶୁଭ୍ର ଧୋତି ତାଙ୍କର ଆଣ୍ଠୁ ପର୍ଯ୍ୟନ୍ତ ପହଞ୍ଚୁଥିଲା । ତାଙ୍କର ପାଦ ଦୁଇଟି ନଗ୍ନ ଥିଲା ।

ଏହି ଆଶ୍ଚର୍ଯ୍ୟ ଧରଣର ବ୍ୟକ୍ତି, ଯାହାଙ୍କର କହରା ଲମ୍ବା ଓ ମୋଟା ଜଟାଗୁଡ଼ିକ ଏକ ବଡ଼ ଖୋଷା ପରି ମୁଣ୍ଡଉପରେ ଗୁଡ଼ାହୋଇ ଗୋଜିଆ ଟୋପି ପରି ଦିଶୁଥାଏ, ତାଙ୍କୁ ଦେଖି ମୋର ମନ କୌତୂହଳରେ ଭରିଗଲା । ତାଙ୍କର କାନରେ ବଡ଼ବଡ଼ ବାଦାମୀ ରଙ୍ଗର ବୋଧହୁଏ ତମ୍ବାର ବଳା ଥିଲା । ତାଙ୍କର ଡାହାଣ ହାତରେ ପାଲିସ୍ କରାଯାଇଥିବା ଏକ କଳା କମଣ୍ଡଳୁ ଥିଲା । ତାଙ୍କର ଚେହେରାରେ ସବୁଠାରୁ ଦୃଷ୍ଟି ଆକର୍ଷକ ଥିଲା ତାଙ୍କର ବଡ଼ବଡ଼, ଗାଢ଼ ବାଦାମୀ, ଚକ୍‌ଚକ୍ କରୁଥିବା ଏବଂ ସେଥିରୁ ସ୍ନେହ ଓ ବାତ୍ସଲ୍ୟ ଉଛୁଳି ପଡୁଥିବା ଆଖିଦୁଇଟି । ସେ ନିଃସଙ୍କୋଚରେ ନିଜର ଦକ୍ଷିଣ ହସ୍ତ ମୋର ମୁଣ୍ଡ ଉପରେ ସ୍ଥାପନ କଲେ ଏବଂ କରୁଣାମିଶ୍ରିତ ସ୍ୱରରେ କହିଲେ, ''କୁଛ୍ ୟାଦ୍ ଆୟା'', ଯାହାର ଅର୍ଥ ହେଲା, ''କ'ଣ କିଛି ମନେପଡୁଛି ?''

ମୁଁ ପରିଷ୍କାରଭାବରେ ସେହି ଅଜଣା ଲୋକଙ୍କର କଥା ବୁଝିପାରିଲି କାରଣ ଆମର ପରିବାର କେତେ ପୁରୁଷ ଧରି କେରଳରେ ସ୍ଥାୟୀ ଭାବରେ ବସବାସ କରୁଥିଲେ ମଧ୍ୟ, ଆମେ ଏକପ୍ରକାରର ଉର୍ଦ୍ଦୁ କହୁଥିଲୁ ଯାହାକୁ 'ଦକ୍ଷିଣୀ' କୁହାଯାଉଥିଲା ଏବଂ ଯାହା ହିନ୍ଦୀ ସହିତ ବହୁ ଅଂଶରେ ସମାନ ଥିଲା । ''ନାଇ'' (ନାହିଁ) ମୁଁ କହିଲି ।

ତା'ପରେ ସେ ମୋ ମୁଣ୍ଡରୁ ହାତ ବାହାର କରି ମୋର ବକ୍ଷର ମଧ୍ୟସ୍ଥଳକୁ ଥାପୁଡ଼େଇ କହିଲେ, ''ବାଦ୍ ମେଁ ମାଲୁମ ହୋ ଜାୟେଗା । ଅବ୍ ୱାପସ୍ ଯାଓ ।'' (ପରେ ଜାଣିଯିବ । ଏବେ ଫେରିଯାଅ) । ତେବେ ବି ମୁଁ ବୁଝିପାରିଲି ନାହିଁ ଯେ ସେ କ'ଣ କହିବାକୁ ଚାହୁଁଥିଲେ, କିନ୍ତୁ ଘରକୁ ଫେରିଯିବାର ଆଜ୍ଞା ମୁଁ ତୁରନ୍ତ ପାଳନ କଲି । ମୁଁ ଯେତେବେଳେ ଶୀଘ୍ର ଶୀଘ୍ର ଘର ଆଡ଼କୁ ଯାଉଥିଲି, ମୋତେ ଲାଗୁଥିଲା, ଯେମିତି ତାଙ୍କର ସ୍ପର୍ଶରୁ ମୋର ସାରା ଶରୀର ହାଲୁକା ହୋଇଯାଇଛି । ଘରର ପଛପଟ ଦରଜାର ଶେଷ ପାହାଚରେ ପହଞ୍ଚିବା ପରେ ମୁଁ ସେଇ ପଣସଗଛ ତଳର ଅଜଣା ବ୍ୟକ୍ତିଙ୍କର ଶେଷ ଝଲକ ପାଇବାପାଇଁ ପଛକୁ ଚାହିଁଲି, କିନ୍ତୁ ସେ ଚାଲିଯାଇଥିଲେ । ସେଠାରେ କେହି ନ ଥିଲେ ।

ଏବେ ଅନ୍ଧାର ହୋଇ ଆସୁଥାଏ । ମୁଁ ଉତ୍ତେଜିତ ହୋଇ ରୋଷେଇଘରେ ପଶିଗଲି । ମୁଁ ଭାବିଥିଲି ମା'ଙ୍କୁ ଚମକେଇ ଦେବାପରି ଓ ଭଉଣୀ ଆଗରେ ବାହାଦୁରି ଦେଖାଇବା ପରି ଏହା ଏକ ଅପୂର୍ବ ଅନୁଭବ ଥିଲା । ରୋଷେଇଘରୁ ଗୋଟାଏ ସୁନ୍ଦର ବାସ୍ନା ଭାସି ଆସୁଥାଏ । ମୋର ମା' ରାତିରେ ଖାଇବାପାଇଁ ଚିଙ୍ଗୁଡ଼ି ତରକାରି ବନଉଥାନ୍ତି । ମୁଁ ମୋର କାହାଣୀ କହିବା ପାଇଁ ପାଟି ଖୋଲିଲି କିନ୍ତୁ ମୋ ପାଟିରୁ କୌଣସି ଶବ୍ଦ ବାହାରିଲା ନାହିଁ । ଲାଗୁଥାଏ ଯେମିତି କେହି ମୋର ପାଟିରେ ତାଲା ପକାଇଦେଇଛି ! ମୁଁ ପୁଣି ଚେଷ୍ଟା କଲି ଓ ତା'ପରେ ହାର୍ ମାନିଗଲି । ସେତେବେଳ ସୁଦ୍ଧା ଜୋର୍‌ରେ ନିଃଶ୍ୱାସ ନେବା ଆରମ୍ଭ

କରିଥାଏ । ''ତୁ ଧଇଁସଇଁ ହୋଇଯାଇଛୁ'' ମା' କହିଲେ, ''କ'ଣ ହେଲା, ଜୋର୍‌ରେ ଦୌଡୁଥିଲୁ କି ?'' ଦେଖିଲି, ମୁଁ କହୁଛି ''ହଁ'' ଏବଂ ସେହି ସାଙ୍ଗେ ସାଙ୍ଗେ ବୁଝିଗଲି ଯେ, ମୁଁ କେବଳ ସେହି ଅସାଧାରଣ ଘଟଣା ବିଷୟରେ କହିବାକୁ ଚେଷ୍ଟା କଲେ ହିଁ କିଛି କହିପାରୁ ନାହିଁ ।

ମୁଁ କେତେଥର ସେହି ଘଟଣା ବିଷୟରେ କହିବାକୁ ଚେଷ୍ଟା କଲି; କିନ୍ତୁ ସଫଳ ହେଲି ନାହିଁ । ମୋର ବିଶ୍ୱାସ ହୋଇଗଲା ଯେ, କୌଣସି ଅଜଣା ଶକ୍ତି ମୋତେ ସେହି ଘଟଣା ପ୍ରକାଶ କରିବାପାଇଁ ବାଧା ଦେଉଛି । ମୁଁ ଆଉ ଚେଷ୍ଟା କଲି ନାହିଁ । ଦଶବର୍ଷ ପର୍ଯ୍ୟନ୍ତ ମୁଁ କାହା ସହିତ ଏହି ଘଟଣା ବିଷୟରେ ଆଲୋଚନା କରିପାରି ନ ଥିଲି, ପ୍ରଥମେ ମୁଁ ଯେଉଁ ବ୍ୟକ୍ତିଙ୍କ ସହିତ ଏହି ବିଷୟରେ କଥାବାର୍ତ୍ତା କଲି, ସେ ଆଉ କେହି ନ ଥିଲେ, ସେହି ଅଜଣା ବ୍ୟକ୍ତି ଥିଲେ ଯାହାଙ୍କ ସହିତ ମୋର ପଣସଗଛ ତଳେ ସାକ୍ଷାତ ହୋଇଥିଲା – ମୋର ଗୁରୁ, ଯାହାଙ୍କ ସହିତ ମୋର ଦ୍ୱିତୀୟ ଥର ହିମାଳୟରେ ସାକ୍ଷାତ ହୋଇଥିଲା ପୂରାପୂରି ଭିନ୍ନ ପରିସ୍ଥିତିରେ । ସେହି ସାକ୍ଷାତ ବେଳେ ମୋତେ ବିଧିବଦ୍ଧ ଭାବରେ ଶିଷ୍ୟରୂପେ ସ୍ୱୀକାର କରାଯାଇଥିଲା । କିନ୍ତୁ ସେକଥା ମୁଁ ପରେ କହିବି ।

ପଣସଗଛ ତଳର ଘଟଣା ପରେ, ମୁଁ ଯେକୌଣସି ସାଧାରଣ ବାଳକ ପରି ଦିଶୁଥିଲେ ମଧ୍ୟ ମୋ ଭିତରେ ଗଭୀର ପରିବର୍ତ୍ତନ ଆସିଯାଇଥିଲା । ଦୈନନ୍ଦିନ ଜୀବନର ସାଧାରଣ କ୍ରିୟାକଳାପ ସହିତ ଏକ ଗୁପ୍ତ ଜୀବନ ମଧ୍ୟ ଆରମ୍ଭ ହୋଇଯାଇଥିଲା । ଅନ୍ତର୍ଯାତ୍ରା ଆରମ୍ଭ ହୋଇଯାଇଥିଲା ଏବଂ ତା'ର ସଙ୍କେତ ଥିଲା ଏହିପରି ଯେ ଧ୍ୟାନ ଶବ୍ଦର ଅର୍ଥ ନ ଜାଣି ମଧ୍ୟ ମୁଁ ଧ୍ୟାନ କରିବା ଆରମ୍ଭ କରିଦେଇଥିଲି ।

ସେକଥା ଏହିପରି – ଯଦିଓ ଏହି ଅସାଧାରଣ ଅନୁଭବ ବିଷୟରେ ମୁଁ କାହାକୁ କହିପାରି ନ ଥିଲି, ସେହି ସ୍ନେହମୟ ଆଖି ଦୁଇଟି ମୋର ହୃଦୟରେ ଘର କରି ରହିଗଲେ । ପ୍ରତିଦିନ ପରି ଦିନେ ସେହି ସୌମ୍ୟ ଦୃଷ୍ଟିଯୁକ୍ତ ବ୍ୟକ୍ତିଙ୍କ ବିଷୟରେ ଭାବି ଭାବି ମୁଁ ମୋର ମା' ଓ ଭଉଣୀଙ୍କ ପାଖରେ ଶୋଇଗଲି । ସାଧାରଣତଃ ମୁଁ ଗଭୀର ନିଦରେ ଶୋଉଥିଲି ଓ ସକାଳେ କେତେଥର ଡକାଡକି କଲା ପରେ ଉଠୁଥିଲି । କିନ୍ତୁ ସେଦିନ ରାତିଟା ଅଲଗା ଥିଲା, ପ୍ରାୟ ଅଧରାତି ବେଳକୁ ମୁଁ ହଠାତ୍ ଉଠିପଡ଼ିଲି ଓ ଛାତି ଭିତରେ ଏକ ସୁନ୍ଦର ଆନନ୍ଦାନୁଭୂତି ହେଲା । ଏମିତି ଲାଗୁଥାଏ ଯେମିତି କିଏ ଗୋଟାଏ ନରମ ପର ଦ୍ୱାରା ମୋର ହୃଦୟକୁ ସାଉଁଳେଇ ଦେଲା ଓ ଗୋଟାଏ ଶିର୍‌ଶିରେଇଲା ଭଳି ଅନୁଭୂତି ମୋର ମେରୁଦଣ୍ଡ ଦେଇ ଉପରକୁ ଉଠିବାକୁ ଲାଗିଲା । ମୁଁ ଉଠିକରି ବସିବାକୁ ଚାହୁଁଥିଲି କିନ୍ତୁ

ଭାବିଲି, ମା' ଉଠିପଡ଼ିବେ ଏବଂ ପଚରାଉଚୁରା କରିବେ । ତେଣୁ ମୁଁ ଶୋଇ ରହିଲି ଏବଂ ଆଖିବୁଜି ଭିତରକୁ ଦେଖିବାକୁ ଚେଷ୍ଟା କଲି ।

ପ୍ରଥମେ ସେହି ସ୍ନେହମୟ ଆଖି ଦୁଇଟି ଦିଶିଲା, ପୁଣି ଅଦୃଶ୍ୟ ହୋଇଗଲା । ତା'ର ସ୍ଥାନ ନେଲା ଥଣ୍ଡା ରୁପେଲି କିରଣ । ତାହା ମୋର ମେରୁଦଣ୍ଡ ଦେଇ ଊର୍ଦ୍ଧ୍ୱଗାମୀ ହେଲା ଓ ମୋର ହୃଦୟରେ ଭରିଗଲା । ଯଦି ସେହି ସମୟରେ ମୋତେ ଜଣାପଡ଼ିଥା'ନ୍ତା ଯେ କାମୋତ୍ତେଜନା ସମୟରେ କେମିତି ଲାଗେ ବୋଲି, ତେବେ ମୁଁ ସେହି ଅନୁଭବକୁ କୌଣସି ଯୌନୀୟ ଅର୍ଥ ନ କରି ହୃଦୟର କାମୋତ୍ତାପ କହିଥାଆନ୍ତି । କିନ୍ତୁ ମୁଁ ସେହି ପ୍ରକାରର ତୁଳନା କରିବା ପରି ବୟସରେ ନ ଥିଲି । ମୁଁ କେବଳ ଏତିକି ବୁଝିପାରିଲି ଯେ, ଏହି ପ୍ରକାରର ଆନନ୍ଦାନୁଭୂତି ଯେମିତି ମୋର ନିଶା ପାଲଟିଗଲା !

ମୋତେ ଜଣା ନ ଥିଲା ଯେ ଏହି ସ୍ଥିତି କେତେ ସମୟ ପର୍ଯ୍ୟନ୍ତ ରହିଲା, ସମାଧିର ଏହା ଥିଲା ପ୍ରଥମ ଅନୁଭବ । ମା'ଙ୍କ ଡାକରେ ମୁଁ ଉଠିଲି, "ଉଠ୍ ପୁଅ, ପ୍ରସ୍ତୁତ ହୋଇ ସ୍କୁଲ ଯିବାର ସମୟ ହୋଇଗଲା ।" କିଛି ହାଲ୍କା ଠେଲାଠେଲି ପରେ ମୁଁ ଆଖି ଖୋଲିଲି ଏବଂ ଉଠିବସିଲି । ନା କିଛି ଆନନ୍ଦାନୁଭୂତି, ନା କିଛି କିରଣ ଓ ନା କୌଣସି ଶିର୍‌ଶିରେଇବା ପରି ଅନୁଭବ, ଗୋଟାଏ ମୁହୂର୍ତ୍ତରେ ସବୁ ଉଭାନ୍ ହୋଇଯାଇଥାଏ । ମୁଁ ହାତମୁହଁ ଧୋଇ ଜଳଖିଆ କରି, ଡ୍ରେସ ପିନ୍ଧି ସ୍କୁଲ ଯିବାକୁ ପ୍ରସ୍ତୁତ ହେଲି । କିନ୍ତୁ ସେହି ଆଖି ଦୁଇଟି ମୋର ଅନୁଧାବନ କରୁଥାଏ ।

ତା' ପରଠୁଁ ପ୍ରତିଦିନ ରାତିରେ ଧ୍ୟାନ ଚାଲିଲା । ମୋର କିଛି ଅସାଧାରଣ ଅନୁଭବ ହେଲା, ଯାହା ବିଷୟରେ ମୁଁ ଆପଣମାନଙ୍କୁ କହିବି । କିନ୍ତୁ ଅଧିକ ମହତ୍ତ୍ୱପୂର୍ଣ୍ଣ କଥା ହେଲା ଯେ ସନ୍ଥ ଏବଂ ସିଦ୍ଧ ବ୍ୟକ୍ତିମାନେ ମୋ ଜୀବନକୁ ଆସିବାରେ ଲାଗିଲେ ଏବଂ ଯେଉଁ ଯେଉଁ ଗ୍ରନ୍ଥ ମୋର ପଢ଼ିବା ଉଚିତ, ସେସବୁ ମୋର ହାତକୁ ଆସିବାରେ ଲାଗିଲା, ଯେମିତି ସବୁକିଛି ପୂର୍ବ-ପ୍ରତିବନ୍ଧିତ ଥିଲା !



# ୩. ଗାୟତ୍ରୀ ମନ୍ତ୍ର

ଏବେ ମୁଁ ଆପଣମାନଙ୍କୁ ମୋର ଅସାଧାରଣ ଅନୁଭୂତିଗୁଡ଼ିକର ପ୍ରଥମାଂଶ ବିଷୟ କହିବି ।

ମୋର ବ୍ୟକ୍ତିତ୍ୱରେ ଯେଉଁ ପରିବର୍ତ୍ତନ ହେଉଥିଲା, ସେ କଥା କେବଳ ମୋର ନିକଟତମ କିଛି ମଣିଷ ଯେମିତି ମୋର ଆଈ ଓ ମୋର ମା'ଙ୍କ ବ୍ୟତୀତ କାହାରି ନଜରରେ ପଡୁ ନ ଥିଲା । ମୁଁ ପୂର୍ବଠାରୁ ଅଧିକ ଅନ୍ତର୍ମୁଖୀ ହୋଇଗଲି । ମୋର ମା' ପ୍ରାୟ ମୋତେ ପଣସ ଗଛ ତଳେ ଠିଆ ହୋଇ କିମ୍ବା ବସି ଆକାଶକୁ କିମ୍ବା କୌଣସି ଅନିର୍ଦ୍ଦିଷ୍ଟ ଦିଗକୁ ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଥିବାର ଦେଖୁଥିଲେ । ସେ କହୁଥିଲେ ଯେ ମୁଁ ବେଳେବେଳେ ନିଦରେ ଶୋଇଥିବା ବେଳେ କିଛି ଅଜବ ଭାଷା କହୁଥିଲି । କିନ୍ତୁ ସେ ଖୁସି ଥିଲେ କାରଣ ମୁଁ ଆଉ ସେ ବିଚିତ୍ର ବେମାରରୁ ଭୋଗୁ ନ ଥିଲି, ଯେଉଁ ବିଷୟରେ ମୁଁ ପ୍ରଥମ ଅଧ୍ୟାୟରେ ଉଲ୍ଲେଖ କରିଛି – ଚିତ୍କାର କରିବା, ନିଦବାଉଳାରେ ଘରୁ ବାହାରକୁ ଦୌଡ଼ିବା । ଯେଉଁଦିନ ମୁଁ ସେହି ଅଜଣାବ୍ୟକ୍ତିଙ୍କୁ ପଣସଗଛ ତଳେ ଭେଟିଥିଲି, ତା'ପରଠୁଁ ଯେଉଁ ପ୍ରେତାତ୍ମା ମୋତେ ନିଦ୍ରିତ ଅବସ୍ଥାରେ ଦୌଡ଼ାଉଥିଲା ଓ ମୋ ଉପରେ କବ୍‌ଜା କରିବାର ଚେଷ୍ଟା କରୁଥିଲା, ତା'ର ଚିହ୍ନବର୍ଣ୍ଣ ନ ଥିଲା, ସେ ଉଭାନ୍ ହୋଇଯାଇଥିଲା । ତା'ପରେ ମୁଁ ପ୍ରାୟ ସନ୍ଥ–ସୁଫିମାନଙ୍କ ବିଷୟ ଶୁଣିବାପାଇଁ ଆଈଙ୍କ ପାଖରେ ଜିଗର କରୁଥିଲି । ଯଦି ତାଙ୍କର କାହାଣୀ ପେଡ଼ି ଶେଷ ହୋଇଯାଉଥାଏ, ତେବେ ବାରମ୍ବାର ସେହି ସେହି ପୁରୁଣା କାହାଣୀ ଶୁଣି ବି ମୁଁ ଖୁସି ହେଉଥିଲି ।

ରାତିରେ ଧ୍ୟାନ ସମୟରେ ମୋତେ ଭାରି ପ୍ରସନ୍ନ ଲାଗୁଥାଏ । ବେଳେବେଳେ ଧ୍ୟାନ କରୁକରୁ ମୁଁ ଗଭୀର ନିଦରେ ହଜିଯାଉଥିଲି ଏବଂ ଜୀବନ୍ତ ଓ ଦୀର୍ଘ ସ୍ୱପ୍ନ ଦେଖୁଥିଲି । ସେଗୁଡ଼ିକ ଭିତରୁ କିଛି ମୁଁ ଭୁଲିଯାଉଥିଲି, କିଛି ମୋର ମୁଣ୍ଡରେ ଗଭୀର ଛାପ ଛାଡ଼ିଯାଉଥିଲା ଏବଂ ସେଗୁଡ଼ିକ ମୋର ଆଧ୍ୟାତ୍ମିକ ଯାତ୍ରାରେ ଆଗକୁ ଘଟିବାକୁ ଯାଉଥିବା ମହତ୍ତ୍ୱପୂର୍ଣ୍ଣ ଘଟଣାଗୁଡ଼ିକ ଆଡ଼କୁ ଇସାରା କରି ଯାଉଥିଲା । ସେମିତି ଗୋଟାଏ ସ୍ୱପ୍ନ ଦେଖିଲି, ପଣସଗଛବାଲା ଘଟଣାର ତିନିମାସ ପରେ ।

ମୁଁ ସ୍ୱପ୍ନରେ ଗୋଟିଏ ସୁନ୍ଦର ସବୁଜ ଉପତ୍ୟକା ଦେଖିଲି, ଯାହାର ଚାରିପଟେ ଉଚ୍ଚା ଉଚ୍ଚା ବରଫଢଙ୍କା ପାହାଡ଼ଗୁଡ଼ାଏ ଥିଲା । ସେମାନଙ୍କ ମଧ୍ୟରୁ ଗୋଟିଏ ଶୃଙ୍ଗର ତଳଦେଶରେ ଗୋଟାଏ ଗୁମ୍ଫା ଥିଲା, ଗୁମ୍ଫା ଭିତରୁ ସୁମଧୁର ମନ୍ତ୍ର-ଗାନର ଶବ୍ଦ ଆସୁଥିଲା । ତାହାର ଭାଷା ମୁଁ ବୁଝିପାରୁ ନ ଥିଲି, କିନ୍ତୁ ତେବେ ବି ତାହା ଯେମିତି ଗୋଟାଏ ପ୍ରକାର ଜଣାଶୁଣା ପରି ଲାଗୁଥିଲା । ମୁଁ ଗୁମ୍ଫାର ଦ୍ୱାର ପର୍ଯ୍ୟନ୍ତ ଗଲି ଏବଂ ଭିତରକୁ ଉଙ୍କି ମାରିଲି । ସେଇଟା ଗୋଟାଏ ବିରାଟ ଗୁମ୍ଫା ଥିଲା, ଚଟାଣର ମଝିରେ ଅଗ୍ନିକୁଣ୍ଡ ଥିଲା ଯେଉଁଥିରେ ଜଳୁଥିବା କାଠରୁ ନାରଙ୍ଗୀ ରଙ୍ଗର ଶିଖା ବାହାରୁଥିଲା । ଗୁମ୍ଫାର ଅନ୍ୟ ପଟେ ଗୋଟାଏ ବେଦି ଉପରେ ମୋ ଆଡ଼କୁ ଆଉ ନିଆଁ ଆଡ଼କୁ ମୁହଁକରି କଳା ବାଳଥିବା ମଧ୍ୟମ ବୟସର ଜଣେ ଦାଢ଼ିବାଲା ବ୍ୟକ୍ତି ବସିଥିଲେ । ତାଙ୍କର ନିମ୍ନାଙ୍ଗ ବାଦାମୀରଙ୍ଗର ଗଛର ବକଳ ଦ୍ୱାରା ଆବୃତ ଥିଲା ଏବଂ ତାଙ୍କ ଛାତି ଉପରେ ଶୁଭ୍ର ରଙ୍ଗର ଡୋର ପରି ଜିନିଷ ଥିଲା, ଯାହା ସୂତାରେ ତିଆରି ହେଲାପରି ଜଣାପଡୁଥିଲା । ସେ ମନ୍ତ୍ରୋଚ୍ଚାରଣ କରୁଥିଲେ ଯାହାକୁ କେତେଜଣ ବାଳକ ଦୋହରାଉଥିଲେ । ସେମାନଙ୍କ ବାଳ ଲମ୍ବା ଥିଲା ଏବଂ ସେମାନେ ମଧ୍ୟ ସେହି ଧରଣର ବସ୍ତ୍ର ଓ ସେହି ଧରଣର ପଇତା ଧାରଣ କରିଥିଲେ । ବାଳକମାନେ ନିଆଁ ଏବଂ ତାଙ୍କ ଆଡ଼କୁ ମୁହଁକରି ଅର୍ଦ୍ଧଗୋଲାକାର ଭାବରେ ବସିଥିଲେ । ମୁଁ ଅଚାନକ ଦେଖିଲି; ମନ୍ତ୍ରୋଚ୍ଚାରଣଦ୍ୱାରା ପ୍ରଭାବିତ ହୋଇ ମୁଁ ମଧ୍ୟ ଉଚ୍ଚସ୍ୱରରେ ସେମାନଙ୍କର ଅନୁକରଣ କରୁଛି ।

ମନ୍ତ୍ରୋଚ୍ଚାରଣ ହଠାତ୍ ବନ୍ଦ ହୋଇଗଲା । ବେଦି ଉପରେ ବସିଥିବା ବ୍ୟକ୍ତିଙ୍କ ଆଖି ମୋ ଉପରେ ପଡ଼ିଗଲା । ''ବସ୍ତ, ଆଗକୁ ଆସ'' ସେ କହିଲେ । ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେ, ସେ କୌଣସି ବିଚିତ୍ର ଭାଷାରେ କହୁଥିଲେ ମଧ୍ୟ ମୋତେ ତାଙ୍କର କଥା ଭଲ ଭାବରେ ବୁଝାଯାଉଥାଏ । ମୁଁ ଗୁମ୍ଫାରେ ପଶିଗଲି । ସେତେବେଳକୁ ସବୁ ବାଳକ ମୋ ଆଡ଼କୁ ଚାହିଁଥାଆନ୍ତି । ମୋତେ ଲାଜ ଲାଗୁଥାଏ କାରଣ ମୁଁ ହାଫ୍‌ପ୍ୟାଣ୍ଟ୍ ଓ ବିନା ହାତବାଲା ଗେଞ୍ଜି ପିନ୍ଧିଥାଏ ଏବଂ ମୋର ବାଳ ଛୋଟ ଛୋଟ ହୋଇ କଟା ହୋଇଥାଏ । ବାଳକମାନେ ହସିଲେ ଓ ପରସ୍ପର ମଧ୍ୟରେ ଫୁସ୍‌ଫାସ୍ ହେବାକୁ ଆରମ୍ଭ କଲେ ।

''ଚୁପ୍'' ସେହି ଲୋକଜଣକ କହିଲେ, ପିଲାଏ ଚୁପ୍‌ଚାପ୍ ହୋଇଗଲେ । ''ତୁମେ'' ସେ ମୋ ଆଡ଼କୁ ଚାହିଁ କହିଲେ, ''ଗାଅ'' । ମୁଁ ରହିରହି କରି ଗାଇଲି, ଏକଥା ଜାଣି ମଧ୍ୟ ଯେ ମୁଁ ଏକାବେଳକେ ବେସୁରା ଗାଏ ବୋଲି । ପିଲାଏ ପୁଣି ହସିଲେ, ''ଚୁପ୍'' ଗୁରୁ କହିଲେ । ''ତୁମେ ଠିକ୍ ଭାବରେ ଗାଇବା ଭୁଲିଯାଇଛ । ଘରକୁ ଫେରିଯାଅ ଏବଂ ପୁଣି ଥରେ ଶିଖ ।'' ''କିନ୍ତୁ କେମିତି ?'' ଏକଥା କହିବା ପୂର୍ବରୁ ସ୍ୱପ୍ନ ସମାପ୍ତ ହୋଇଯାଇଥିଲା ଓ ମୁଁ ମା'ଙ୍କ ସ୍ୱର ଶୁଣିଲି, ''ଉଠ, ଉଠ୍ ।''

ମୁଁ ସ୍ୱପ୍ନ ବିଷୟରେ ଭାବୁ ଭାବୁ ଉଠିଲି, ସେଦିନ ରବିବାର ଥିଲା । ମୁଁ ଖୁସି ଥିଲି କାରଣ ସ୍କୁଲ ଯିବାର ଆବଶ୍ୟକତା ନ ଥିଲା । ମୁଁ ପଛଆଡ଼େ ଏଣେତେଣେ ବୁଲାବୁଲି କରିପାରିଥାଆନ୍ତି କିମ୍ବା ଡ୍ରଇଂ ବା ପେଣ୍ଟିଂ କରିପାରିଥାଆନ୍ତି କିମ୍ବା ଆଟୁଘରେ ପଡ଼ିଥିବା ପୁରୁଣା ଘଣ୍ଟା ଓ କଳକବ୍‌ଜାରେ ଲାଗି ପାରିଥା'ନ୍ତି । ଆପ୍ପମ୍, ଆଳୁର ସିଝା ତରକାରି ଏବଂ ଆମ୍‌ଲେଟ୍ ଇତ୍ୟାଦିର ସୁସ୍ୱାଦୁ ଜଳଖିଆ ପରେ ମୁଁ ହଲରେ ପଡ଼ିଥିବା ବଡ଼ ବେତଚେଆର ଉପରେ ଯାଇ ବସିଲି ଏବଂ ଭାବିଲି ଯାପରେ କ'ଣ କରାଯିବ ।

ହଲ୍‌ର ଗୋଟାଏ ଅଂଶକୁ ବାପା ନିଜର କାର୍ଯ୍ୟାଳୟ ଭାବରେ ବ୍ୟବହାର କରୁଥିଲେ । ସେହି ଅଂଶରେ ଗାଟାଏ ବଡ଼ ଶିଶୁକାଠର ମେଜ ଥିଲା । ତା'ର ଡ୍ରୟର୍ ବାପା ସବୁବେଳେ ତାଲାବନ୍ଦକରି ରଖୁଥିଲେ । ମୋ ନଜର ସେଇ ଟେବୁଲ୍ ଉପରେ ପଡ଼ିଲା ଆଉ ମୁଁ ଦେଖିଲି ଯେ ଡ୍ରୟରର ଚାବି ତାଲାରୁ ଝୁଲୁଛି । ଭାବିଲି, ବୋଧହୁଏ ତାଲା ବନ୍ଦ ହୋଇ ନାହିଁ । ଏହା ଭିତରେ କ'ଣ ଅଛି ବୋଲି ଜାଣିବାକୁ ମୋର ସବୁବେଳେ ଉତ୍ସୁକତା ଥିଲା । ଏହା ମୋ ପାଇଁ ଏକ ସୁବର୍ଣ୍ଣ ସୁଯୋଗ ଥିଲା । ବାପା ସକାଳୁ ଡାକ୍ତରଙ୍କ ପାଖକୁ ଚେକ୍ ଅପ୍ ପାଇଁ ଯାଇଥିଲେ, ଟେବୁଲଟା ଯେମିତି ମୋତେ ଡାକୁଥିଲା !

ଆଖି ପିଛୁଳାକେ ମୁଁ ବାପାଙ୍କ ଚଉକିରେ ବସିପଡ଼ି ଚାବି ଖୋଲିବା ଅରମ୍ଭ କରିଦେଲି । ଡ୍ରୟର ଖୋଲିଗଲା ଓ ମୁଁ ଭିତରକୁ ଉଙ୍କି ମାରିଲି । ସେଥିରେ ପ୍ରକାର ପ୍ରକାରର ଫାଇଲ ଥିଲା । ହିସାବ ଲେଖିବାର ମୋଟା ରେଜିଷ୍ଟର, କ୍ୟାସ୍‌ମେମୋ, ମୋହର ମାରିବାପାଇଁ ସ୍ୟାହିର ଡବା, ଗୋଟାଏ ପୁରୁଣା ସୁନ୍ଦର ପାର୍କର କଲମ ଏବଂ କେତେଗୁଡ଼ିଏ ବଢ଼ିଆ ପେନ୍ସିଲ୍ । ମୁଁ ଇଆଡ଼କୁ ସିଆଡ଼କୁ ଚାହିଁ ଦେଖିନେଲି କାଳେ କିଏ ଦେଖୁଥିବ ବୋଲି । ତା'ପରେ ଭିତରଟା ଘାଣ୍ଟି ପକାଇଲି । ମୋଟା ଫାଇଲଗୁଡ଼ା ତଳେ ମୁଁ ଦି'ଟା ବହି ପାଇଲି । ଗୋଟାଏ ତ କମଳାରଙ୍ଗର ଗୋଟିଏ ଛୋଟ ବହି, ଯାହାର ନାଁ ଥିଲା "ଜପ ଯୋଗ ଏବଂ ଗାୟତ୍ରୀ" ଆଉ ଅନ୍ୟଟି ଥିଲା ଯୋଗ ଉପରେ ବହୁତ ଚିତ୍ରଥିବା ଗୋଟାଏ ବହି । ସେଥିରେ ଜଣେ ପରିଣତ ବୟସର ବ୍ୟକ୍ତିଙ୍କର ବିଭିନ୍ନ ଆସନରେ ବହୁତ ଫଟୋ ଥିଲା । ମୁଁ ବୁଝିଗଲି ଯେ ସେଗୁଡ଼ିକ ଜିମ୍‌ନାଷ୍ଟିକ୍ ବ୍ୟାୟାମର ଫଟୋ ଥିଲା । ତାହାକୁ ମୁଁ ଜିମ୍‌ନାଷ୍ଟିକ୍ ବ୍ୟାୟାମ ବିଷୟରେ ବୋଲି ଭାବିଲି ।

ପରେ ମୁଁ ଜାଣିଲି ଯେ, ସେହି ଛୋଟ ପୁସ୍ତିକାଟି ବେଦାନ୍ତର ଜଣାଶୁଣା ବ୍ୟାଖ୍ୟାକାର ଚିନ୍ମୟାନନ୍ଦଙ୍କଦ୍ୱାରା ଲିଖିତ । ଦ୍ୱିତୀୟଟି ଯୋଗାସନଗୁଡ଼ିକର ଏକ ଶାସ୍ତ୍ରୀୟ ପୁସ୍ତକ ଥିଲା । କିନ୍ତୁ ସେହି ସମୟରେ ପୁସ୍ତକଗୁଡ଼ିକ ମୋ ହାତରେ ପଡ଼ିଯାଇଥିବାରୁ ମୁଁ ଉତ୍‌ଫୁଲ୍ଲ ହୋଇଉଠିଥିଲି ଆଉ ଏପରି ଏକ ରାସ୍ତା ଖୋଜୁଥିଲି, ଯେମିତି ବହିଗୁଡ଼ିକ ମୋର ନିଜସ୍ୱ ହୋଇଯିବ ଏବଂ ବାପା ସେ ବିଷୟ ଜାଣିପାରିବେ ନାହିଁ ।

ଏଠି ମୋ' ବାପାଙ୍କ ବିଷୟରେ କିଛି ଜଣାଇବା ଦରକାର । ଜୀବିକା ଉପାର୍ଜନ ବ୍ୟତୀତ (ସେ ଘର ତିଆରି କରିବାର ଠିକାଦାରୀ କାମ କରୁଥିଲେ) ତାଙ୍କର ବିଶେଷ ଭାବରେ ଶରୀରକୁ ସୁଡୌଲ କରିବାପାଇଁ ବ୍ୟାୟାମ, କଲରୀ ପୟଟୁ (ଆତ୍ମ-ସୁରକ୍ଷା ଏବଂ ବିନା ହତିଆରରେ ଲଢ଼େଇର ମାଲୟାଲୀ ପ୍ରତିରୂପ), ହିନ୍ଦୁ ଦର୍ଶନ ଏବଂ ସିନେମା ଇତ୍ୟାଦିର ସଉକ ଥିଲା । ସେ କେରଳ ବିଶ୍ୱବିଦ୍ୟାଳୟରୁ ଭାରତୀୟ ଦର୍ଶନ ଶାସ୍ତ୍ରର ବୈକଳ୍ପିକ ବିଷୟ ସହିତ ମାଲୟାଲମ ସାହିତ୍ୟରେ ସ୍ନାତକ ଉପାଧି ପ୍ରାପ୍ତ ହୋଇଥିଲେ । ତାଙ୍କର ବେଦାନ୍ତରେ ଗଭୀର ଓ ଦୀର୍ଘକାଳୀନ ରୁଚି ଥିଲା ଏବଂ ସେହି ବିଷୟରେ ସେ ଅନେକ ବିଶେଷଜ୍ଞଙ୍କର ଭାଷଣ ଶୁଣିଥିଲେ । ଖୋଲାଖୋଲି ଭାବରେ ସେ ବହୁତ ବେଶି ଧାର୍ମିକ ନଥିଲେ, ହେଲେ ତାଙ୍କର ମୁସଲମାନୀ ମୂଳର କେବଳ ଗୋଟାଏ ଉଦାହାରଣ ଥିଲା ଯେ ସେ ବର୍ଷରେ ଦି'ଥର ରମଜାନ ଓ ବକରୀଦ ସମୟରେ ଜୁମା ମସ୍‌ଜିଦ୍‌ର ନମାଜରେ ଭାଗ ନେଉଥିଲେ । ଏହାଛଡ଼ା ସେ ଅତ୍ୟନ୍ତ ଆତ୍ମଭୋଳା ଥିଲେ, ନବତମ ସିନେମାଟା ସେ ନିଶ୍ଚୟ ଦେଖୁଥିଲେ ଏବଂ ନିୟମିତ ଯୋଗାଭ୍ୟାସ ଆରମ୍ଭ କରିବା ପୂର୍ବରୁ ସେ ଅତିରିକ୍ତ ଧୂମପାନ କରୁଥିଲେ । ଯୋଗାସନ ଆରମ୍ଭ କରିବା ପୂର୍ବରୁ ମଧ୍ୟ ସେ ନିୟମିତ ରୂପେ ସକାଳୁ ଶୀଘ୍ର ଉଠୁଥିଲେ ଏବଂ ଦେଢ଼ଘଣ୍ଟା ପର୍ଯ୍ୟନ୍ତ କଡ଼ା ଶାରୀରିକ ବ୍ୟାୟାମ କରୁଥିଲେ । କେବେକେବେ ସେ ମୋତେ ଉଠେଇ କିଛି ସରଳ ବ୍ୟାୟାମ ଶିଖାଉଥିଲେ ।

ସେଦିନ ବାପାଙ୍କ ଦେରାଜରୁ ଯେଉଁ ଦୁଇଟି ବହି ମିଳିଥିଲା, ସେଥି ମଧ୍ୟରୁ ଆସନ ବାଲା ବହିଟି ତୁଳନାରେ ଛୋଟ କମଳାରଙ୍ଗର ବହିଟି ମୋତେ ଅଧିକ ରୁଚିକର ଲାଗିଲା । କିନ୍ତୁ ମୁଁ ଦି'ଟାଯାକ ବାହାର କରିନେବାକୁ ଠିକ୍ କଲି । ତା'ପରେ ଦେରାଜ ବନ୍ଦ କରିଦେଲି ଓ ତାଲାରେ ଚାବିକୁ ପୂର୍ବପରି ଲଟକାଇ ଦେଲି । ପାଦ ଚିପିଚିପି ମୁଁ ଶୋଇବାଘରକୁ ଚାଲିଲି, ଯେଉଁଠି ମୋର ସ୍କୁଲ ବସ୍ତାନି ଥିଲା । ବହି ଦୁଇଟିକୁ ମୁଁ ତା' ଭିତରେ ଠେସିଦେଇ ହଲ୍‌କୁ ଚାଲିଆସିଲି । ମୁଁ ଖେଳାଖେଳି କରୁଥାଏ ଆଉ ସମୟ କଟାଉଥାଏ ଏଇକଥା ଭାବି ଯେ, କେବେ ଅନୁକୂଳ ଅବସର ଆସିବ ଏବଂ ମୁଁ ସେ ବହି ଦୁଇଟିକୁ ପଢ଼ିପାରିବି ।

ଦି'ପହରର ଖାଇବା ପିଇବାର କିଛି ସମୟ ପରେ ମୁଁ ସ୍କୁଲ ବସ୍ତାନିରୁ ବହି ବାହାର କଲି ଓ ବାଡ଼ି ପଟକୁ ପଳେଇଗଲି । ଗଲାବେଳେ ଦେଖିଲି, ମୋ' ଭଉଣୀ ତା'ର ହୋମ୍‌ୱାର୍କ କରୁଛି- ତେଣୁ ତା' ତରଫରୁ ତ କିଛି ଅସୁବିଧା ହେବାର ନ ଥିଲା । ପଣସଗଛ ପାଖରେ ପହଞ୍ଚି ମୁଁ ତା' ତଳେ ବସିଗଲି ଓ ବହି ଖୋଲିଲି ଏବଂ ଦେଖିଲି, ସେଥିରେ ସେହି ମନ୍ତ୍ର ଥିଲା, ଯାହାକୁ ମୁଁ ସ୍ୱପ୍ନରେ ଗାଇବାକୁ ଚାହୁଁଥିଲି କିନ୍ତୁ ଠିକ୍ ଭାବରେ ପାରୁ ନ ଥିଲି । ମୁଁ

ମୂଳ ଦେବନାଗରୀ ଲିପି ଠିକ୍ ଭାବରେ ପଢ଼ିପାରିଲି ନାହିଁ । କାରଣ ସ୍କୁଲରେ ଆମେ ହିନ୍ଦୀ ପଢ଼ିବା ଆରମ୍ଭ କରିଥିଲୁ । କିନ୍ତୁ ଇଂରେଜୀ ମାଧ୍ୟମର ବିଦ୍ୟାର୍ଥୀ ହୋଇଥିବାରୁ ମୁଁ ସୁନ୍ଦର ଇଂରେଜୀ ଶବ୍ଦାନୁବାଦକୁ ସହଜରେ ପଢ଼ିପାରିଲି ।

ଓଁ ଭୂଃ ଭୁବଃ ସ୍ୱଃ
ତତ୍ ସବିତୁର୍ ବରେଣ୍ୟମ୍
ଭର୍ଗୋ ଦେବସ୍ୟ ଧୀମହି
ଧିୟୋ ୟୋ ନଃ ପ୍ରଚୋଦୟାତ୍

ପୂର୍ବ ରାତିରେ ଦେଖିଥିବା ସ୍ୱପ୍ନର ସ୍ୱର ମୋ ମନରେ ଗୁଞ୍ଜରଣ କରୁଥାଏ, ତେଣୁ ଏହି ମନ୍ତ୍ରକୁ ପଢୁଥିବା ସମୟରେ ଏହାର ସଠିକ୍ ସ୍ୱର, ତାନ ଓ ଲୟ ମୋତେ ଆସିଗଲା । ସାଙ୍ଗେ ସାଙ୍ଗେ ତାକୁ ଗୁମ୍ଫାବାସୀମାନଙ୍କ ପରି ମଧୁରତା ଓ ଲାଳିତ୍ୟର ସହିତ ଗାଇପାରିଲି, ଆଉ ମୋତେ ଭାରି ଭଲ ଲାଗିଲା । ଯେତେବେଳେ ମୋତେ ଏକୁଟିଆ ହେବାର ସୁଯୋଗ ମିଳୁଥିଲା, ସେତେବେଳେ ମୁଁ ତାକୁ ଅଭ୍ୟାସ କରୁଥିଲି । ଯେତେବେଳେ ପାଖ ଆଖରେ ଲୋକବାକ ରହୁଥିଲେ, ସେତେବେଳେ ମୁଁ ତାକୁ ମନେ ମନେ ଉଚ୍ଚାରଣ କରୁଥିଲି । ବହିରେ ଲେଖାଥିଲା ଯେ, ଏହା ବୁଦ୍ଧିକୁ ତୀକ୍ଷ୍ଣ କରିବାପାଇଁ ସୂର୍ଯ୍ୟଦେବଙ୍କ ପ୍ରାର୍ଥନା, ବହୁ ବର୍ଷ ପରେ ମୋର ଗୁରୁଦେବ ଏହି ମନ୍ତ୍ରର ଅର୍ଥ ମୋତେ ବୁଝାଇଲେ । ସେ କହିଲେ ଯେ ସୂର୍ଯ୍ୟ ଅନ୍ତରାତ୍ମା ଅଟନ୍ତି । ସେ ହେଉଛନ୍ତି ଆମର ଚେତନାର କେନ୍ଦ୍ର । ଅନ୍ତିମ ପଙ୍କ୍ତିର ସଠିକ ଅନୁବାଦ ହେବ– ମୋର ବୁଦ୍ଧିକୁ ଆହୁରି ଜାଗ୍ରତ କର ।

ଦ୍ୱିତୀୟ ପୁସ୍ତକର କେବଳ ଗୋଟିଏ ଜିନିଷ ମୋର ଧ୍ୟାନକୁ ଆକର୍ଷଣ କଲା । ତାହା ଥିଲା ପଦ୍ମାସନ ନାମକ ଆସନର ଚିତ୍ର । ପିଲାଙ୍କର ଇତିହାସ ବହିରେ ବୁଦ୍ଧଙ୍କର ଏହି ଆସନରେ ବସିଥିବାର ଗୋଟିଏ ଚିତ୍ର ମୁଁ ଦେଖିଥିଲି । ଦେଖିଲି ସେହି ଆସନଟି କରିବା ଭାରି ସହଜ । ମୁଁ ଏକା ଥିବାବେଳେ ସେହି ଆସନରେ ବସିଯାଉଥିଲି ଏବଂ ନିଜକୁ ବୁଦ୍ଧ ବୋଲି କଳ୍ପନା କରୁଥିଲି । ଦିନେ ମା' ମୋତେ ଷ୍ଟୋର ଘରର ପୁରୁଣା କାଠବାକ୍ସ ଉପରେ ପଦ୍ମାସନରେ ବସିଥିବାର ଦେଖି ପକେଇଲେ । "ଏହା ତୁମକୁ କିଏ ଶିଖାଇଲା ?" ମୁଁ କହିଲି, "କେହି ନୁହେଁ", "ଏଇଟା ହେଉଛି ଯୋଗ", କହି ସେ ଚାଲିଗଲେ ।

ଯେହେତୁ ବାପା ବହି ବିଷୟରେ କେବେ କିଛି ପଚାରି ନ ଥିଲେ । ମୁଁ ଭାବିଥିଲି ଚୋରି ଧରାପଡ଼ି ନାହିଁ ବୋଲି । କିନ୍ତୁ ମୁଁ ବହିଗୁଡ଼ିକୁ ଯଥା ସ୍ଥାନରେ ରଖିଦେବାର ସୁଯୋଗ ପାଇଁ ଅପେକ୍ଷା କରିଥାଏ କାରଣ ମୋର ଆଉ ସେଗୁଡ଼ିକର ଆବଶ୍ୟକତା ନ ଥିଲା ।

ଦିନେ ସେପରି ସୁଯୋଗ ଆସିଲା ଏବଂ ତାଲାରୁ ଚାବି ଝୁଲୁଥିଲା । ଯେତେବେଳେ ଦେଖିଲି କେହି ଆଖ ପାଖରେ ନାହାନ୍ତି । ମୁଁ ବହିଗୁଡ଼ିକ ଫେରସ୍ତ ରଖିଦେଲି ଓ ସ୍ୱସ୍ତିର ନିଃଶ୍ୱାସ ପକାଇଲି । କିନ୍ତୁ ମୁଁ ଯାହା ଭାବୁଥିଲି ଯେ ବାପାଙ୍କୁ କିଛି ଜଣା ନ ଥିଲା ବୋଲି ତାହା ଭୁଲ୍ ପ୍ରମାଣିତ ହେଲା ।

ଦିନେ ଜଳଖିଆ ଖାଇବା ସମୟରେ ସେ କହିଲେ– ‘‘ଯେଉଁ ବହିଗୁଡ଼ା ତୁମେ ମୋ ଦେରାଜରୁ ନେଇଥିଲ, ସେଗୁଡ଼ିକ ଗୁରୁଙ୍କର ସହାୟତା ଦ୍ୱାରା ବୁଝିହେବ । ସଠିକ ମାର୍ଗ-ଦର୍ଶନ ବିନା ନିଜେନିଜେ କିଛି କରିବାର ଚେଷ୍ଟା କରନାହିଁ, ଯଦି ତୁମେ ଯୋଗାଭ୍ୟାସ କରିବାକୁ ଚାହଁ, ତେବେ ଇଷ୍ଟ ଫୋର୍ଟବାଲା ଶର୍ମାଜୀଙ୍କୁ ଦେଖାକରିପାର । ସେ ମୋତେ ମୋର ଯୋଗାସନ ପାଇଁ ସାହାଯ୍ୟ କରିବାକୁ କାଲି ସକାଳେ ଏଠାକୁ ଆସିବେ ।’’ ମୁଁ ଭାରି ଖୁସି ହୋଇଗଲି । ‘‘ନିଶ୍ଚେ’’ ମୁଁ କହିଲି ।

ତା’ପରେ, ପରଦିନ ମୁଁ ଶର୍ମାଜୀଙ୍କୁ ଭେଟିଲି । ସେ ଥିଲେ ଅଧାବୟସର ଦାଢ଼ିନିଶ ନଥିବା ବ୍ରାହ୍ମଣ । ସେ ମୋତେ ଯୋଗାସନ ଆଉ ପ୍ରାଣାୟାମ ଶିଖାଇବାକୁ ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । କିଛି ମାସ ପରେ ମୁଁ ସହଜରେ ସେଗୁଡ଼ିକର ଅଭ୍ୟାସ କରିବା ଆରମ୍ଭ କରିଦେଲି । ଦିନେ ସେ ବାପାଙ୍କୁ କହୁଥିବାର ଶୁଣିଲି, ‘‘ପିଲା ବୁଦ୍ଧିଆ ଅଛି । ଯଦି ପ୍ରତିଦିନ ଅଭ୍ୟାସ କରିଚାଲିବ ତେବେ ବହୁତ ଆଗକୁ ଚାଲିଯିବ ।’’ ସେବେଠାରୁ ମୁଁ ଯୋଗାଭ୍ୟାସ କରିଆସୁଛି । ଆଜି ବି ପ୍ରାୟ ଅଧଘଣ୍ଟା ଧରି କିଛି ଯୋଗାସନ ଓ ପ୍ରାଣାୟାମ କରୁଛି । ମୋର ସ୍ୱାସ୍ଥ୍ୟ, କ୍ଷମତା ଓ ପ୍ରଫୁଲ୍ଲତାପାଇଁ ଯୋଗାଭ୍ୟାସ ହିଁ ଦାୟୀ ବୋଲି ମୁଁ ଜାଣେ ।



# (4.) ଯୋଗୀ ଗୋପାଳସ୍ୱାମୀଙ୍କ ସହିତ ଭେଟ

ଏବେ ମୁଁ ଆପଣମାନଙ୍କୁ ଜଣେ ଅତ୍ୟନ୍ତ ବିକଶିତ–ଆତ୍ମା ବ୍ୟକ୍ତିଙ୍କ ସହିତ ମୋର ସାକ୍ଷାତ ବିଷୟରେ କହିବି । ସେ ମୋ ଘରଠୁଁ ବହୁତ ବେଶି ଦୂରରେ ରହୁ ନ ଥିଲେ । ସେତେବେଳକୁ ମୁଁ ପଞ୍ଚମ ଶ୍ରେଣୀ ପାସ୍ କରିସାରିଥାଏ । ହୋଲି ଆଂଜେଲ୍ସ କନ୍‌ଭେଣ୍ଟରେ ପଞ୍ଚମ ଶ୍ରେଣୀ ପରେ ପୁଅପିଲାମାନଙ୍କୁ ରଖାଯାଉ ନ ଥିବାରୁ ମୁଁ ଦି ମଡେଲ୍ ହାଇସ୍କୁଲରେ ନାଁ ଲେଖାଇଥାଏ ।

ଶ୍ରୀ କ୍ଲାର୍କ ନାମକ ଜଣେ ଇଂରେଜ ଦି ମଡେଲ ସ୍କୁଲର ଭିତ୍ତିସ୍ଥାପନ କରିଥିଲେ । ସ୍ୱତନ୍ତ୍ରତା ପରେ ତାହାକୁ ସରକାର ନେଇଗଲେ । ସେଇଟି ପୁରୁଣା ଇଂରେଜୀ ପବ୍ଲିକ ସ୍କୁଲ ଢାଞ୍ଚାରେ ଲାଲ ଇଟା ଓ ଗ୍ରାନାଇଟ୍‌ରେ ତିଆରି ହୋଇଥିଲା । ସେଥିରେ ବଡ଼ ପଡ଼ିଆ ଥିଲା ଓ ଏହା କେବଳ ବାଳକମାନଙ୍କପାଇଁ ଉଦ୍ଦିଷ୍ଟ ଥିଲା । କେବଳ ଉଚ୍ଚ ଦରର ଲେଖାପଢ଼ାପାଇଁ ନୁହେଁ, ତାହା ସଙ୍ଗୀତ, ନାଟକ, କଳା ଏବଂ ଶିଳ୍ପ ବିଭାଗଗୁଡ଼ିକ ପାଇଁ ମଧ୍ୟ ବିଖ୍ୟାତ ଥିଲା ।

ମୋର ଘରଠୁଁ ସ୍କୁଲ ତିନିଚାରି କିଲୋମିଟର ଦୂର ଥିଲା । ମୁଁ ପ୍ରତିଦିନ ଚାଲିକରି ଯାଉଥିବା ପିଲାମାନଙ୍କର ଗୋଟାଏ ବଡ଼ ଦଳରୁ ଜଣେ ଥିଲି । ଆମେ ପରସ୍ପର ଭିତରେ ବହୁତ ଥଟ୍ଟା–ମଜା କରି ହସାହସି କରୁଥିଲୁ । ସେମାନଙ୍କ ଭିତରୁ ମୋ' ଉପରେ ପଢୁଥିବା ଦି'ଜଣ ବାଳକ ମୋ ଘରଠୁଁ ଅଧକିଲୋମିଟର ଦୂରରେ ରହୁଥିଲେ । ସେମାନେ ପରସ୍ପରର ଭାଇ ଥିଲେ ଓ ପଢ଼ାରେ ଖୁବ୍ ବେଶି ଧ୍ୟାନ ଦେଉଥିଲେ । ସେମାନେ ପଡ଼ୋଶୀ ରାଜ୍ୟ ତାମିଲନାଡୁରୁ ଆସି ବସବାସ କରି ରହିଥିବା ଏକ ତାମିଲ ପରିବାରର ଥିଲେ ।

ସେମାନଙ୍କର ବାପାଙ୍କ ନାଁ ଥିଲା ଅନନ୍ତ ନାରାୟଣ ପିଲ୍ଲାଇ । ସେ ଥିଲେ ପୋଲିସ ବିଭାଗର ଜଣେ ସାମାନ୍ୟ କର୍ମଚାରୀ ଏବଂ ସେତେବେଳକୁ ସେ ଅବସର ଗ୍ରହଣ କରିସାରିଥା'ନ୍ତି । ସେମାନଙ୍କର ମା'ଙ୍କ ନାଁ ଥିଲା କମଳମ୍ମା । ସେ ଭାରି ସ୍ନେହୀ ଥିଲେ । ଭାଇମାନଙ୍କ ଭିତରେ ବଡ଼ ମାର୍ତ୍ତଣ୍ଡ ପିଲ୍ଲାଇକୁ ଘରେ ପେରିୟ ତମ୍ବି (ବଡ଼ପୁଅ) ଏବଂ ସାନ ଶିବାନନ୍ଦ ପିଲ୍ଲାଇକୁ ଚିନ୍ନ ତମ୍ବି (ସାନପୁଅ) ବୋଲି ଡାକୁଥିଲେ । ମାର୍ତ୍ତଣ୍ଡ ପିଲ୍ଲାଇ ଭାରି

ଅଧ୍ୟବସାୟୀ ଥିଲା । ପରେ ସେ ନ୍ୟୁରୋଲଜିଷ୍ଟ ହେଲା ଓ ଗୋଟାଏ ସମୟରେ ସେ ତ୍ରିଭାନ୍ଦ୍ରମ୍ ମେଡିକାଲ କଲେଜ ଓ ହସ୍‌ପିଟାଲ୍‌ର ନ୍ୟୁରୋଲଜି ବିଭାଗର ଅଧ୍ୟକ୍ଷ ଥିଲା । ତ୍ରିଭାନ୍ଦ୍ରମ୍‌ର ସହରତଳିରେ ବର୍ତ୍ତମାନ ତା'ର ବହୁ ବିଶେଷଜ୍ଞୀ ଏକ ନିଜସ୍ୱ ହସ୍‌ପିଟାଲ ରହିଛି । ଏହି ହସ୍‌ପିଟାଲଟିର ନାମ ହେଉଛି 'ଅନନ୍ତପୁରୀ' । ଶିବାନନ୍ଦ ଇଞ୍ଜିନିୟର ହେଲା ଏବଂ ତାମିଲନାଡୁ ସରକାରଙ୍କର ବିଦ୍ୟୁତ୍ ବିଭାଗର ଏକ ବରିଷ୍ଠ ଇଞ୍ଜିନିୟର ପଦରେ ଥିବା ସମୟରେ ଅବସର ନେଲା । ଏହା ଅସାଧାରଣ କୃତିତ୍ୱ ଥିଲା, କାରଣ ସେମାନଙ୍କ ଘରେ ବିଜୁଳିବତି ମଧ୍ୟ ନ ଥିଲା । ସେମାନେ ନିଜର ହୋମ୍‌ୱାର୍କ କିରୋସିନ ଲ୍ୟାମ୍ପର ଆଲୁଅରେ କରୁଥିଲେ ।

ପେରିୟ ତମ୍ବି ଓ ଚିନ୍ନ ତମ୍ବିଙ୍କ ପରିବାର ଗୋଟାଏ ବଡ଼ ହତାଥିବା ଛୋଟ ଘରେ ରହୁଥିଲେ । ହତାର ଗୋଟାଏ ଅଂଶକୁ କାଠ ଗୋଦାମରେ ପରିଣତ କରି ଦିଆଯାଇଥିଲା, ଯେଉଁଠାରେ ଜାଳେଣୀ କାଠ ବିକ୍ରି କରାଯାଉଥିଲା । ଶ୍ରୀ ଅନନ୍ତନାରାୟଣ ଅବସର ନେବା ପରେ କାଠ ଗୋଦାମ ଖୋଲିଲେ, କାରଣ ସେତେବେଳେ ସମସ୍ତଙ୍କ ଘରେ ଚୁଲିପାଇଁ କାଠ ଦରକାର ହେଉଥିଲା । ପ୍ରଥମେ ଆମର ସେମାନଙ୍କ ସହିତ ଚିହ୍ନା ହୋଇଥିଲା କାରଣ ଆମେ ତାଙ୍କ ଗୋଦାମରୁ କାଠ କିଣୁଥିଲୁ । କିନ୍ତୁ ପରେ ଆମେ ଜାଣିଲୁ ଯେ, ସେହି ପରିବାର ତାମିଲନାଡୁର କନ୍ୟାକୁମାରୀ ଜିଲ୍ଲାର ଏମିତି ଗୋଟାଏ ଜାଗାରୁ ଆସି ଏଠି ବସବାସ କରୁଛନ୍ତି ଯେଉଁଠାରେ ମୋର ମା'ଙ୍କର ଜେଜେବାପା ରହୁଥିଲେ । ଉଭୟ ପରିବାର ମଧ୍ୟ ପରସ୍ପରକୁ ଜାଣିଥିଲେ ।

ବନ୍ଧୁତା ଗଭୀରତର ହେଲା କାରଣ ମୁଁ ପ୍ରତିଦିନ ତମ୍ବି ଭାଇମାନଙ୍କୁ ଭେଟିବାପାଇଁ ତାଙ୍କ ଘରକୁ ଯାଉଥିଲି ଏବଂ ସେମାନଙ୍କ ସହିତ ସ୍କୁଲକୁ ଯିବାଆସିବା କରୁଥିଲି । ତାଙ୍କର ମା' କମଳାମ୍ମା ଭାରି କରୁଣାମୟୀ ଥିଲେ ଓ ମୋତେ ଭଲ ପାଉଥିଲେ । ସେ ସମୟରେ ମୋର ରଙ୍ଗ ଖୁବ୍ ଗୋରା ଥିଲା ଓ ମୋର ଗାଲ ପୂରିଲାପୂରିଲା ଥିଲା । ମୋର ଏବେ ମନେଅଛି ପାଦରେ ଚାଲିଚାଲି ତାଙ୍କ ଘରେ ପହଞ୍ଚିବା ବେଳକୁ ମୋର ଲାଲ୍ ପଡ଼ିଯାଇଥିବା ଗାଲକୁ ଦେଖି ସେ କିପରି ବ୍ୟସ୍ତ ହୋଇ ପଡୁଥିଲେ ଓ ଆଙ୍ଗୁଳିରେ ଆଉଁଶି ଦେଉ ଦେଉ ତାଙ୍କର ଝିଅକୁ ଡାକି କହୁଥିଲେ "ଆଇୟୋ, ଦେଖିଲୁ ତା' ଗାଲ କେମିତି ନାଲି ପଡ଼ିଯାଇଛି, ଯେମିତି ପାଚିଲା ବିଲାତିବାଇଗଣ, ବିଚରା ପିଲାଟା !"

ତାଙ୍କର ପରିବାର ବଡ଼ ଥିଲା । ତିନିପୁଅଙ୍କ ଛଡ଼ା (ସବୁଠୁଁ ସାନର ନାଁ ଥିଲା ଗୋପାଳ) ସେଇ ଛୋଟ ଘରେ ତାଙ୍କର ବାପାମା' ତାଙ୍କର ଦି'ଭଉଣୀ ଶ୍ୟାମଳା ଓ ତଙ୍ଗମ୍ ରହୁଥିଲେ । ପିଲାଙ୍କ ଭିତରୁ ସବୁଠୁଁ ବଡ଼ ଭଉଣୀ ଶାନ୍ତାର ବିବାହ କୋଲସୁ ପିଲ୍ଲାଇଙ୍କ ସହିତ ହୋଇଥିଲା

ଓ ସେ ସୁଚିନ୍ଦ୍ରମରେ ରହୁଥିଲେ । ବାକି ଦି'ଭଉଣୀଙ୍କ ଭିତରେ ବଡ଼ ଶ୍ୟାମଳା ଗୋଟିଏ ଘରୋଇ ସଂସ୍ଥାରେ ଟାଇପିଷ୍ଟ କାମ କରୁଥିଲା ଓ ତଙ୍ଗମ୍ ସେତେବେଳେ କଲେଜରେ ଥିଲା । ଶ୍ୟାମଳାର ବାହାଘର ତାଙ୍କର ବନ୍ଧୁବାନ୍ଧବ ରାମସ୍ୱାମୀଙ୍କ ସହିତ ହୋଇଥିଲା । ସେ ତମ୍ପି ପରିବାରଙ୍କ ସହିତ ରହୁଥିଲେ ଓ କେରଳ ସରକାରଙ୍କର ଜନଗଣନା ବିଭାଗରେ କାମ କରୁଥିଲେ । ସେ ଗଣିତରେ ଏମ୍.ଏସ୍‌ସି. କରିଥିଲେ । ଗୋଟାଏ ପ୍ରକାର କହିବାକୁ ଗଲେ ଏହି ରାମସ୍ୱାମୀଙ୍କ ଜରିଆରେ ହିଁ ମୋର ଗୋପାଳସ୍ୱାମୀଙ୍କ ସହିତ ସାକ୍ଷାତ ହେଲା ।

ଯେତେବେଳେ ମୁଁ ହୋଲି ଆଞ୍ଜେଲ୍ସ କନ୍‌ଭେଣ୍ଟରେ ପଢୁଥିଲି, ସେତେବେଳେ ଇଂରେଜୀ, ଇତିହାସ ଏବଂ ବିଜ୍ଞାନରେ ମୁଁ ବେଶ୍ ଆଗୁଆ ଥିଲି କିନ୍ତୁ ଗଣିତରେ ମୋର ଆଗ୍ରହ ନ ଥିଲା । ନୂଆ ସ୍କୁଲରେ ପାଠ୍ୟକ୍ରମ କଠିନତର ହେଲା ଓ ଗଣିତ ମୋତେ ଭାରି କଷ୍ଟ ଲାଗିଲା । ରାମସ୍ୱାମୀ ନିଜ ତରଫରୁ ମୋତେ ପଢ଼ାଇବାକୁ ଆଗେଇ ଆସିଲେ କେବଳ ତାଙ୍କର ଗଣିତ-ପ୍ରେମ ପାଇଁ । ଯେଉଁ ସାମାନ୍ୟ ପ୍ରାପ୍ୟଦ୍ୱାରା ତାଙ୍କର ରୋଜଗାର କିଛି ଅଂଶରେ ବଢୁଥିଲା, ତାହାକୁ ସେ କୁଣ୍ଠାର ସହିତ ଗ୍ରହଣ କରୁଥିଲେ । ଠିକଣା ହେଲା ଯେ ସପ୍ତାହରେ ତିନିଦିନ ମୁଁ ସନ୍ଧ୍ୟାବେଳେ ପିଲ୍ଲାଇଙ୍କ ଘରକୁ ଟ୍ୟୁସନ ହେବାକୁ ଯିବି ।

ଦିନେ ସନ୍ଧ୍ୟାରେ ଯେତେବେଳେ ମୁଁ ବହିପତ୍ର ଧରି ଟ୍ୟୁସନକୁ ଗଲି, ଦେଖିଲି ରାମସ୍ୱାମୀ ଦୁଆରେ ଠିଆ ହୋଇଛନ୍ତି । ସେ କହିଲେ ସେଦିନ ପଢ଼ାପଢ଼ି ନାହିଁ । ତାଙ୍କର ଅନ୍ୟ କାମ ଅଛି । ପଚାରିଲେ, ମୁଁ ପରଦିନ ଆସିପାରିବି କି ନାହିଁ । ''ନିଶ୍ଚୟ'' ମୁଁ କହିଲି । ମୁଁ ଖୁସି ଥିଲି, କାରଣ ମୁଁ ଘରକୁ ଫେରିଯାଇ ଖେଳିପାରିବି । ପଚାରିଲି, ''କିନ୍ତୁ ପେରିୟ ଥମ୍ପି ଓ ଚିନ୍ନ ଥମ୍ପି କାହାନ୍ତି ?'' ସେ କହିଲେ, ''ସେମାନେ ଘରେ କ'ଣ ସବୁ କରୁଛନ୍ତି ।'' ଏକଥା ଶୁଣି ମୁଁ ମୋର ଉତ୍ସୁକତା ବଢ଼ିଗଲା । କିଛି ବିଚିତ୍ର ଘଟଣା ଘଟୁଛି । ଘର ଭିତରୁ ଧୂପର ଗାଢ଼ ବାସ୍ନା ଆସୁଥାଏ । ସେତିକିବେଳେ ଶ୍ୟାମଳା, ତା'ର ବାପା ମା' ଏବଂ ଚିନ୍ନ ତମ୍ପି ଘରୁ ବାହାରିଲେ । ସମସ୍ତେ ଧୀରେ ଧୀରେ କଥାବାର୍ତ୍ତା କରୁଥିଲେ । ଘଟଣା ବିଷୟରେ ସିଧାସିଧା ଜାଣିନେବି ମୁଁ ଠିକଣା କଲି । ପଚାରିଲି, ''ଧୂପର ବାସ୍ନା ? ଏସବୁ କ'ଣ ?'' ସମସ୍ତେ ଚୁପ୍ ରହିଲେ । ସମସ୍ତେ ପରସ୍ପର ଆଡ଼କୁ ଚାହାଁଚାହିଁ କଲେ । ଶେଷରେ ମା' କହିଲେ, ''ସ୍ୱାମୀ ଆସିଛନ୍ତି । ତୁମେ ଦେଖା କରିବାକୁ ଚାହଁ ?''

ସ୍ୱାମୀ ବୋଲି ସାଧାରଣତଃ ବ୍ରାହ୍ମଣମାନଙ୍କୁ ସମ୍ବୋଧନ କରାଯାଏ । ତା'ଛଡ଼ା ଯେଉଁମାନେ ମାନସିକ କରୁଥିଲେ, କଳା ବସ୍ତ୍ର ପିନ୍ଧୁଥିଲେ ଓ ସାବରୀ ମାଳୟକୁ ତୀର୍ଥଯାତ୍ରାରେ ଯାଉଥିଲେ, ସେମାନଙ୍କୁ ମଧ୍ୟ ସ୍ୱାମୀ କୁହାଯାଉଥିଲା, 'ଅୟପ୍ପା ସ୍ୱାମୀ', ମୁଁ ଜାଣିପାରୁ

ନ ଥିଲି ଇଏ କି ପ୍ରକାରର ସ୍ୱାମୀ, କିନ୍ତୁ ତେବେ ମଧ୍ୟ ମୁଁ ଭେଟିବାର ନିଶ୍ଚୟ କରି ''ହଁ'' ବୋଲି କହିଲି ।

ଶ୍ରୀ ଅନନ୍ତନାରାୟଣ କହିଲେ, ''ରହ'' ଏବଂ ଭିତରକୁ ଚାଲିଗଲେ । କିଛି ମିନିଟ୍ ପରେ ଫେରିଆସି କହିଲେ, ''ଆସ'' । ମୁଁ ଭିତରକୁ ଗଲି । ଛୋଟ କୋଠରିର ମଝିରେ ଗୋଟାଏ ଆରାମ ଚୌକିରେ ବିରାଟ ଚେହେରାର ଜଣେ ବୃଦ୍ଧ ବସିଥିଲେ, ତାଙ୍କର ପାଦ ଏକ ପାଦପୀଠ ଉପରେ ରଖା ହୋଇଥିଲା । ସେ ନୀଳ ଓ ଧଳା ଗାର ପଡ଼ିଥିବା ଅଧା ହାତବାଲା ଜାମା ଓ ଏକ ସାଧାରଣ ଧଳା ବିନା ଧଡ଼ିର ମୁଣ୍ଡୁ ପିନ୍ଧିଥିଲେ । ମୁଁ ସେଠି ଠିଆ ହୋଇ ନିରୀକ୍ଷଣ କଲି । ତାଙ୍କର ଧଳା କେଶ ଛୋଟ ଛୋଟ କରି କଟାଯାଇଥିଲା ଓ ତାଙ୍କର ଚାରିକୋଣିଆ ଆକର୍ଷଣୀୟ ମୁହଁ ଦେଖି ଲାଗୁଥିଲା, ସେ ବେଶ୍ କିଛିଦିନ ହେଲା ଖିଅର ହୋଇ ନାହାନ୍ତି । କିଛି ସପ୍ତାହର ଧଳା ଦାଢ଼ିରେ ତାଙ୍କର ଚିବୁକ ଗାଲ ଓ ଓଠର ଉପର ଅଂଶ ଆବୃତ ହୋଇ ରହିଥିଲା । ସବୁ ବିଲ୍‌କୁଲ୍ ସାଧାରଣ ମନେ ହେଉଥିଲା, କେବଳ ତାଙ୍କର ଏକାବେଳକେ ସିଧା ଏବଂ ତେଜସ୍ୱୀ ଭଙ୍ଗି ବ୍ୟତୀତ । ତା'ପରେ ମୁଁ ତାଙ୍କର ଆଖି ଦୁଇଟି ଦେଖିଲି । ମୁଁ ସେପରି ଭେଦ କରିପାରୁଥିବା ଆଖି କେବେ ଦେଖି ନ ଥିଲି ।

ଅଜାଣତରେ ମୁଁ ମୋର ଲୁଗାପଟା ଅଣ୍ଡାଳିଲି । କାରଣ ମୁଁ କ'ଣ ଏବେ ବି ସେଗୁଡ଼ା ପିନ୍ଧିଛି ? ମୋତେ ଲାଗୁଥିଲା ଯେମିତି ମୋର ଏକ୍ସ-ରେ କରାହେଉଛି । ସେହି ଆଖି ମୋର ଅଭ୍ୟନ୍ତରକୁ ଦେଖୁଥାଏ, ଏପଟୁ ସେପଟକୁ ଦେଖୁଥାଏ । ମୁଁ ଭାବିଲି, ''ହେ ଭଗବାନ ! ଏଇ ଲୋକ ତ ମୋର ସବୁ ରହସ୍ୟ ଜାଣିଗଲା !'' ସେତିକିବେଳେ ସେ ମୃଦୁ ହସି ଡାକିଲେ, ''ବସ୍ସ, ଆସ'' । ସ୍ୱର ଆଶାତୀତ ଭାବରେ କୋମଳ ଥିଲା । ମୁଁ ପାଖକୁ ଗଲି ଓ ଆରାମ ଚଉକିର ବାଡ଼କୁ ପ୍ରାୟ ଲାଗିକରି ଠିଆ ହେଲି । ସେ ମୁରୁକି ମୁରୁକି ହସୁଥା'ନ୍ତି । ପୁଣି ସେ ନିଜ ଡାହାଣ ହାତ ବଢ଼େଇ ମୁହୂର୍ତ୍ତକପାଇଁ ମୋର କପାଳ ସ୍ପର୍ଶ କରି ନିଜର ହସ୍ତ ଅପସାରଣ କଲେ ।

ଅନିର୍ବଚନୀୟ ପରମାନନ୍ଦର ତରଙ୍ଗ ମୋର ମସ୍ତକରୁ ଉଠିଲା ଆଉ ମୋର ସାରା ଦେହରେ ଖେଳିଗଲା । ରାତିରେ ମୋର ଯେଉଁ ଅନୁଭୂତି ହେଉଥିଲା, ଏହା ତା'ଠାରୁ ଭିନ୍ନ ଥିଲା । ତା'ର କେବଳ ଏତିକି ବର୍ଣ୍ଣନା କରିପାରିବି ଯେ, ମୋତେ ଲାଗିଲା ଯେମିତି ସମୁଦ୍ରର ଗର୍ଜନ କରୁଥିବା ଲହରୀଗୁଡ଼ିକ ହଠାତ୍ ଶାନ୍ତ ହୋଇଗଲେ ଏବଂ ସମୁଦ୍ରବକ୍ଷ ଏପରି ଶାନ୍ତ ହୋଇଗଲା ଯେମିତି ତରଙ୍ଗରହିତ ହ୍ରଦ । ମୁଁ କୌଣସି ବାହାର ଶବ୍ଦ ଶୁଣୁ ନ ଥିଲି । ମୋର ମନର ଗଭୀରରୁ ଏକ ମନ୍ତ୍ରୋଚ୍ଚାରଣ ଉଠିଲା ଯାହାକୁ ମୁଁ ବୁଝିପାରିଲି ନାହିଁ ।

ମୋର ଆଖିରୁ ଲୁହ ଗଡ଼ି ପଡ଼ିଲା । ମୋତେ ଲାଗିଲା, ବାହାରକୁ ଯାଇ କେଉଁଠି ଚୁପ୍‌ଚାପ ଏକୁଟିଆ ବସିବା ଦରକାର । ମୁଁ ଫେରିପଡ଼ି ପଡ଼ିଉଠି କୋଠରିର ବାହାରକୁ ଆସିଲି । ହଠାତ୍ କାହାରି ଏହି କଥାରେ ଶାନ୍ତି ଭଙ୍ଗ ହେଲା, ''ନଇଁପଡ଼ି ଦଣ୍ଡବତ କର, ତାଙ୍କର ପାଦସ୍ପର୍ଶ କର ।'' ସେତେବେଳକୁ ମୁଁ ଦୁଆର ପାଖରେ । ତେଣୁ ମୁଁ ଶୀଘ୍ର ଦୁଆରବନ୍ଧକୁ ଛୁଇଁ ମୋର ମସ୍ତକକୁ ଛୁଇଁଲି, ଯେମିତି ଅନ୍ୟମାନଙ୍କୁ କରିବାର ଦେଖିଥିଲି, ଆଉ ଦୌଡ଼ି ଚାଲିଗଲି ।

ମୁଁ ସେହି ବ୍ୟକ୍ତିଙ୍କୁ ଆଉ କେବେ ଦେଖି ନାହିଁ । ମୋର ମନେ ଅଛି ମୁଁ ଜୋର୍‌ରେ ଦୌଡ଼ି କିଛି ମିନିଟ୍ ଭିତରେ ଘରେ ପହଞ୍ଚିଗଲି । କେହି ମୋତେ ଭିତରକୁ ଆସିବାର ଦେଖି ନ ଥିଲେ । ବାଡ଼ିପଟ ପାଚେରିକୁ ଲାଗିଥିବା ଗଳି ଭିତରଦେଇ ମୁଁ ମୋ ପଣସଗଛ ପାଖକୁ ଚାଲିଗଲି ଏବଂ ତା' ତଳେ ବସିଲି । ସେତେବେଳ ସୁଦ୍ଧା ଆନନ୍ଦର ଲହରୀ ଦବି ଯାଇଥାଏ କିନ୍ତୁ କିଛି ସମୟ ପର୍ଯ୍ୟନ୍ତ ଏକ ଅଜଣା ଶାନ୍ତି ବିରାଜୁଥାଏ । ମୋ ମା'ଙ୍କ ଡାକରେ ଧ୍ୟାନ ଭାଙ୍ଗିଗଲା । ସେ ପଛପଟ ଦୁଆରୁ ପାଟିକରି ପଚାରୁଥାଆନ୍ତି, ''କ'ଣ ହେଲା ? ଆଜି ଟ୍ୟୁସନ୍ ହେଲା ନାହିଁ ?'' ''ନା'' ମୁଁ ପାଟିକରି ଜବାବ ଦେଲି । ''ଆସିକିନା କିଛି ଖାଇନେ'', ସେ କହିଲେ । 'ଆସୁଛି', ମୁଁ କହିଲି । ମୋତେ ଖୁଆଇବା ମା'ଙ୍କର ଗୋଟାଏ ସଉକ ଥିଲା ।

ପରଦିନ ମୁଁ ଯେତେବେଳେ ଟ୍ୟୁସନପାଇଁ ଗଲି, ସେତେବେଳେ ରାମସ୍ୱାମୀ ଏବଂ ଅନ୍ୟମାନେ ମୋତେ ପୂର୍ବଦିନ କ'ଣ ହେଲା ବୋଲି ପଚାରିଲେ କିନ୍ତୁ ମୁଁ କିଛି କହିଲି ନାହିଁ, ମୋତେ ଲାଗିଲା ଯେ ଏଇ ପ୍ରକାରର ରହସ୍ୟକୁ, ପ୍ରେମିକ ପ୍ରେମିକାମାନଙ୍କ ରହସ୍ୟ ପରି ସୁନା ଓ ବେଶ ଦାମିକା ହୀରା-ଜହରତ ପରି ପେଡ଼ିରେ ବନ୍ଦ କରି ରଖିବା ଉଚିତ । ଠିକଣା ସମୟ ଆସିବା ପର୍ଯ୍ୟନ୍ତ ତାହାକୁ ପ୍ରକାଶ କରିବା ଉଚିତ ନୁହେଁ ।

ପିଲ୍ଲାଇଙ୍କ ପରିବାରରୁ ମୋତେ ଜଣାପଡ଼ିଲା ଯେ, ତାଙ୍କ ନାଁ ଗୋପାଳ ପିଲ୍ଲାଇ ଥିଲା ଏବଂ ସେମାନେ ଶ୍ରଦ୍ଧାରେ ତାଙ୍କୁ ଗୋପାଳ ସ୍ୱାମୀ ବୋଲି ଡାକୁଥିଲେ । କିଛି ବର୍ଷପରେ ମୁଁ ତାଙ୍କର ଉପଦେଶାବଳୀର ସଂଗ୍ରହ ଦେଖିଲି ଯାହାକୁ କୌଣସି ଜଣେ ଶ୍ରୀ ପ୍ରଭୁ 'ଅରୁଲ ମୋଡ଼ିଗଲ- ଜ୍ଞାନର ମଧୁର ବାଣୀ'- ନାଁରେ ଛପାଇ ପ୍ରକାଶିତ କରିଥିଲେ । ମୁଁ ବହିଟିର ପୃଷ୍ଠା ଓଲଟାଇବାରୁ ଯେଉଁ ପୃଷ୍ଠାରେ ମୋର ଦୃଷ୍ଟିପଡ଼ିଲା, ସେଠାରେ ଗୋପାଳସ୍ୱାମୀ ସବୁବେଳେ କହୁଥିବା ତାଙ୍କର ପ୍ରିୟ ଶବ୍ଦ ଲେଖା ହୋଇଥିଲା । 'ଆନନ୍ଦୋହମ୍, ଅଚଲ ପରୋହମ୍, ଅଚଲପରୋହମ୍ ।'

ସେତେବେଳେ ମୁଁ ଜାଣିଲି ଯେ ଏଇଟା ହିଁ ସେହି ମନ୍ତ୍ର ଥିଲା, ଯାହାକୁ ମୁଁ ଛ'ବର୍ଷ ପୂର୍ବରୁ ତାଙ୍କ ସହିତ ସାକ୍ଷାତ ସମୟରେ ଶୁଣିଥିଲି । ସେତେବେଳେ ମୁଁ ଶବ୍ଦଗୁଡ଼ିକୁ ଠିକ୍

ଭାବରେ ବୁଝି ପାରି ନ ଥିଲି କିନ୍ତୁ ଯେତେବେଳେ ମୁଁ ସେହି ଶବ୍ଦଗୁଡ଼ିକର ଅର୍ଥ ବୁଝିପାରିଲି, ସେତେବେଳେ ଜାଣିପାରିଲି ଯେ ଅଳ୍ପ କିଛି ସମୟପାଇଁ ହେଲେ ମଧ୍ୟ ମୁଁ ତାହା ହିଁ ଅନୁଭବ କରିଥିଲି– ଆନନ୍ଦୋହମ୍, ଅଚଲ ପରୋହମ୍, ଆନନ୍ଦୋହମ୍ ଅଚଲ ପରୋହମ୍ । ମୁଁ ଆନନ୍ଦ, ମୁଁ ଆନନ୍ଦ, ମୁଁ ଅଚଳ, ମୁଁ ଅଚଳ ।

ଗୋପାଳସ୍ୱାମୀ ଦକ୍ଷିଣ ତ୍ରାବାଙ୍କୋରରେ 1900 ମସିହାର ଅଗଷ୍ଟ ମାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ମା'ଙ୍କ ନାଁ ଥିଲା କୁନ୍ନୀ ପରମ୍ଭା ବିଟିଲ କୋଚ୍ଚୁ କୁଞ୍ଜମ୍ମା ଏବଂ ବାପାଙ୍କ ନାଁ ଥିଲା ଶ୍ରୀ ନାରାୟଣ ପିଲ୍ଲାଇ । ତାଙ୍କ ଦୁଇ ଭାଇ ଓ ଦୁଇ ଭଉଣୀ ଥିଲେ । ସେମାନେ ସମସ୍ତେ ତାଙ୍କଠାରୁ ବଡ଼ ଥିଲେ । ପରେ ସେହି ପରିବାର ତିରୁବନ୍ତପୁରମ୍‌କୁ ଚାଲି ଆସିଲେ । ବଡ଼ ଭାଇ ଶଙ୍କର ପିଲ୍ଲାଇ ଘରର ଦେଖାଶୁଣା କରୁଥିଲେ ।

ଗୋପାଳ ପିଲ୍ଲାଇଙ୍କର ପିଲାଦିନର ସାଙ୍ଗ ଥିଲେ ବିଦ୍ୱାନ୍ ଶ୍ରୀବରାହମ୍ ଇ.ବି. ପିଲ୍ଲାଇ । ସେ ହେଡ୍‌ମାଷ୍ଟର ହୋଇ ଅବସର ନେଇଥିଲେ । ତାଙ୍କର କଥା ଅନୁସାରେ ଫୋର୍ଟ ହାଇସ୍କୁଲର ଛାତ୍ର ଥିବା ସମୟରୁ ହିଁ ଗୋପାଳ ପିଲ୍ଲାଇଙ୍କର ବ୍ୟବହାର କିଛି ଅଂଶରେ ବିଚିତ୍ର ଥିଲା । ସେ ଆଖି ଖୋଲି ରଖି ଘଣ୍ଟା ଘଣ୍ଟା ଧ୍ୟାନରେ ବସି ରହୁଥିଲେ ଓ ପ୍ରାୟ ସମାଧିସ୍ଥ ହୋଇଯାଉଥିଲେ । ଯେତେବେଳେ ତାଙ୍କୁ ବାରବର୍ଷ ହୋଇଥିଲା, ସେ ଚକା ପକାଇ ସିଧା ମଧ୍ୟାହ୍ନ ସୂର୍ଯ୍ୟଙ୍କୁ ଚାହିଁ ବସି ରହିଥିବା ଦେଖାଯାଇଥିଲା । ତାଙ୍କର ପିଠି ଧନୁ ପରି ବଙ୍କା ହୋଇଯାଇଥିଲା । ତାଙ୍କର ଭାଇ ଶଙ୍କର ପିଲ୍ଲାଇଙ୍କୁ ଏହି ଖବର ଦେବାରୁ ସେ ଲେଖି ପଠେଇଲେ, ''ତା' କାମରେ କୌଣସି ହସ୍ତକ୍ଷେପ କର ନାହିଁ, ତା'ର ଯାହା ଇଚ୍ଛା, ତାହା କରିବାକୁ ଦିଅ ।''

କୋଡ଼ିଏ ବର୍ଷ ସୁଦ୍ଧା ସେ ଯେତେବେଳେ ସେକେଣ୍ଡାରୀ ସ୍କୁଲ ପାସ୍ କରିପାରିଲେ ନାହିଁ, ସେତେବେଳେ ତାଙ୍କ ମା' ତାଙ୍କୁ ଅଧିକ ପରିଶ୍ରମ କରି ପଢ଼ାପଢ଼ି କରିବାକୁ ଉପଦେଶ ଦେବାର ଚେଷ୍ଟା କଲେ । ଗୋପାଳସ୍ୱାମୀ ଉତ୍ତରଦେଲେ ''ମୁଁ ଚାହିଁଲେ ଖୁସିରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯିବି, କିନ୍ତୁ କାହିଁକି ? ଏମିତିରେ ତ ମୁଁ ଅର୍ଥ ବା କୌଣସି ଲାଭପାଇଁ କାମ କରିବି ନାହିଁ ବୋଲି ଠିକଣା କରିଛି । କିଏ ନା କିଏ ମୋର ଦେଖାଶୁଣା କରିବ ।'' ତା'ପରେ ସେ ସ୍କୁଲଯିବା ଛାଡ଼ିଦେଲେ ।

ଯୁବାବସ୍ଥାରେ ଗୋପାଳସ୍ୱାମୀଙ୍କର ଅଜବ ସବୁ ସ୍ଥାନରେ ବୁଲିବାର ସଉକ ଥିଲା । ତାଙ୍କର ପ୍ରିୟ ସ୍ଥାନମାନଙ୍କ ମଧ୍ୟରୁ ଗୋଟିଏ ସ୍ଥାନ ଥିଲା ମୁଚ୍ଚତରା । ତାଙ୍କ ପୂର୍ବରୁ ଶ୍ରୀ ନାରାୟଣ ଗୁରୁ ଓ ଚଟ୍ଟାମ୍ପି ସ୍ୱାମୀ ମଧ୍ୟ ପ୍ରାୟ ମୁଚ୍ଚତରା ଆସୁଥିଲେ । (ଏହି ବହିର ନାରାୟଣ ଗୁରୁଙ୍କ

କାହାଣୀ ଅଧ୍ୟାୟଟି ଦେଖନ୍ତୁ ।) ମୁଚ୍ଚତରାରେ ପ୍ରଥମେ ଖରାରେ ଚମକୁଥିବା ଏକର ଏକର ଧାନର ସବୁଜ କ୍ଷେତ ମଝିରେ ଚାଲିବାକୁ ପଡୁଥିଲା । ଯେଉଁଠି ଧାନର କ୍ଷେତ ଶେଷ ହୋଇଯାଉଥିଲା, ସେଠାରୁ ଗୁଡ଼ାଏ ସଫେଦ୍ ବାଲିର କୁଦ ପାରିହେବା ପରେ ଗାଢ଼ ନୀଳ ରଙ୍ଗର ଆରବ ସାଗର ଦୃଷ୍ଟିଗୋଚର ହେଉଥିଲା । କେତେବେଳେ ତା'ର ବଡ଼ ବଡ଼ ଲହରୀ ଗର୍ଜନ କରି କୂଳକୁ ଆଘାତ କରୁଥାଏ ତ କେତେବେଳେ ଧୀର ଭାବରେ ଗଡ଼ି ଆସି ତଟର ବାଲିସହିତ କୌତୁକ କରି ବିଭିନ୍ନ ରକମର ଶଙ୍ଖ ଓ ସାମୁଦ୍ରିକ ଖୋଳପା ଛାଡ଼ି ଯାଉଥାଏ ।

ତାଙ୍କର ପ୍ରିୟ ବନ୍ଧୁ ଇ.ବି. ପିଲ୍ଲାଇ କହିଛନ୍ତି ଯେ ସେ କେତେଥର ଗୋପାଳସ୍ୱାମୀଙ୍କ ସହିତ ମୁଚ୍ଚତରା ଯାଇଥିଲେ । ଧାନକ୍ଷେତ ମଧ୍ୟଦେଇ ଚାଲୁଚାଲୁ ସେ ବେଦାନ୍ତ ବିଷୟରେ ବହୁତ ଆଲୋଚନା କରୁଥିଲେ । ବାଲିକୁଦ ପାଖକୁ ଆସିଗଲେ ଗୋପାଳସ୍ୱାମୀ ଚୁପ୍ ହୋଇଯାଉଥିଲେ । ବୀରାସନ ମୁଦ୍ରାରେ ଘଣ୍ଟା ଘଣ୍ଟା ଧରି ହଲ୍‌ଚଲ୍ ନ ହୋଇ ବସି ରହୁଥିଲେ । ସମାଧିରୁ ବାହାରିବା ସମୟରେ ସେ ଅଜବ ଭାବରେ ବିଳିବିଳଉ ଥିଲେ ଏବଂ ବେଳେବେଳେ ଅକାରଣ ଉଚ୍ଚ ସ୍ୱରରେ ହସୁଥିଲେ । ତାହା ଦେଖି ଇ.ବି. ପିଲ୍ଲାଇ ଡରି ଯାଉଥିଲେ ।

ଇ.ବି. ପିଲ୍ଲାଇ ଲେଖିଛନ୍ତି ଯେ ମୁଚ୍ଚତରାଠାରୁ ଆଗକୁ ପୁନ୍ତରା ପାଖରେ ଗୋଟାଏ ପୂରାପୂରି ନିର୍ଜନ ଜଙ୍ଗଲ ଥିଲା, ଯାହାର ନାଁ ଥିଲା ଓଟ୍ଟପନ ମୁଡୁ । ଏକ ସମୟରେ କେନ୍ଦ୍ରୀୟ କାରାଗାରରେ ଫାଶୀ ଦିଆଯାଇଥିବା ହତ୍ୟାକାରୀମାନଙ୍କ ଶବକୁ ସେଠାରେ ପୋତି ଦିଆଯାଉଥିଲା । ସରକାରୀ ଶବ-ଗୃହରେ ଶଡୁଥିବା ଅଜଣା ଲାଶଗୁଡ଼ାକ ପାଇଁ ମଧ୍ୟ ଏହି ଜାଗାଟି ବ୍ୟବହୃତ ହେଉଥିଲା । ଦିନେ ଦି'ପହରେ ସେ ସେଠାକୁ ଗୋପାଳସ୍ୱାମୀଙ୍କ ସହିତ ଗଲେ ଏବଂ ଜଣେ କଙ୍କାଳସାର ବୁଢ଼ାକୁ ଦେଖିଲେ । ତା' ବାଳଗୁଡ଼ାକ ଜଟ ହୋଇ ଯାଇଥାଏ, ପୂରା ଲଙ୍ଗଳା ହୋଇ ସେ ଗରମ ବାଲି ଉପରେ ବସିଥାଏ । ଗୋପାଳସ୍ୱାମୀ ଆଉ ସେହି ବିଚିତ୍ର ବ୍ୟକ୍ତି ପରସ୍ପରକୁ ଆଲିଙ୍ଗନ କଲେ ଏବଂ ଇ.ବି. ପିଲ୍ଲାଇଙ୍କୁ ଗୋଟାଏ ତେନ୍ତୁଳି ଗଛ ତଳେ ଅପେକ୍ଷା କରିବାକୁ କହି ସେ ଦି'ଜଣ ଦୂରରେ ଥିବା ତାଳବଣ ଭିତରେ ଅଦୃଶ୍ୟ ହୋଇଗଲେ ।

ଘଣ୍ଟାଏ ପରେ, କ୍ଲାନ୍ତ ଓ ଚିନ୍ତିତ ଇ.ବି. ପିଲ୍ଲାଇ ସେହି ତାଳବଣ ପାଖକୁ ଗଲେ ଓ ଦେଖିଲେ, ଦି'ଜଣଯାକ ପରସ୍ପର ପାଖରେ ପଡ଼ି ରହିଛନ୍ତି ଯେମିତି ଗାଢ଼ ନିଦରେ ଶୋଇ ଯାଇଛନ୍ତି । ଯେତେବେଳେ ପିଲ୍ଲାଇ ପାଖରେ ପହଞ୍ଚିଲେ, ଦି'ଜଣ ଚମକି ପଡ଼ି ପୂରା ଉଠି ଠିଆ ହୋଇଗଲେ । ଗୋପାଳସ୍ୱାମୀ ତା'ପରେ ପିଲ୍ଲାଇଙ୍କ ସହିତ ଘରକୁ ଫେରିଆସିଲେ । ଇ.ବି. ପିଲ୍ଲାଇଙ୍କ କଥା ଅନୁସାରେ ଗୋପାଳ ସ୍ୱାମୀ ଓ ସେହି ବିଚିତ୍ର ବ୍ୟକ୍ତିଙ୍କର ପ୍ରାୟ ଭେଟ ହେଉଥିଲା । କିନ୍ତୁ ସେହି ବୁଢ଼ା ଲୋକ ବିଷୟରେ କିଛି ପଚାରିଲେ ଗୋପାଳ ସ୍ୱାମୀ

ଚୁପ୍ ହୋଇଯାଉଥିଲେ ।

କିଛି ବର୍ଷ ପରେ ଗୋପାଳ ପିଲ୍ଲାଇ, (ସେତେବେଳକୁ ଗୋଟିଏ ଆଧ୍ୟାତ୍ମିକ ଗୋଷ୍ଠୀର ଲୋକେ ତାଙ୍କୁ ଗୋପାଳସ୍ୱାମୀ ବୋଲି ସମ୍ବୋଧନ କରୁଥାଆନ୍ତି) ଅଧରାତିରେ ସହରର ହୋମିଓପ୍ୟାଥିକ୍ କ୍ଲିନିକରେ କ୍ଲାସ କରିବା ଆରମ୍ଭ କଲେ । ସେଠାରେ ବେଦାନ୍ତର ଗୂଢ଼ ତତ୍ତ୍ୱଗୁଡ଼ିକ ବିଷୟରେ ଆଲୋଚନା କରାଯାଉଥାଏ । ସେହି ସବୁ ଆଲୋଚନାଗୁଡ଼ିକ 'ଅରଳ ମୋଡ଼ୀଗଲ' ନାମରେ ପ୍ରକାଶିତ କରାଯାଇଥିଲା ।

ଗୋପାଳ ସ୍ୱାମୀଙ୍କର ଆହୁରି ଗୋଟିଏ ଆଡ୍ଡା ଥିଲା, ସମାଧି ତୋଟମ୍ । ସେହି ସ୍ଥାନରେ ଶ୍ରୀ ରାମଦାସ ସ୍ୱାମୀଙ୍କର ସମାଧି ଥିଲା । ସେ ଥିଲେ ଜଳନ୍ଧରର ଯୋଗୀ ହରିହର ବ୍ରହ୍ମଶାସ୍ତ୍ରୀଙ୍କ ଗୁରୁ । ହରିହର ବ୍ରହ୍ମଶାସ୍ତ୍ରୀ ତ୍ରାଭାଙ୍କୋରର ରାଜା ଆଇଲାୟମ୍ ତିରୁନାଲ (1805 – 1888)ଙ୍କ ରାଜତ୍ୱ ସମୟର ଲୋକ ଥିଲେ । ଏହାକୁ ଜୀବ ସମାଧିର ମାନ୍ୟତା ଦିଆଯାଇଛି, ଅର୍ଥାତ୍ ଏହା ଏପରି ଗୋଟିଏ ସ୍ଥାନ, ଯେଉଁଠାରେ ଜୀବିତ ଯୋଗୀ ସ୍ୱେଚ୍ଛାରେ ଗର୍ତ୍ତ ମଧ୍ୟକୁ ପ୍ରବେଶ କରନ୍ତି ଏବଂ ତାଙ୍କ ନିର୍ଦ୍ଦେଶାନୁସାରେ ତାଙ୍କର ଶିଷ୍ୟମାନେ ଗର୍ତ୍ତଟିକୁ ବନ୍ଦ କରିଦିଅନ୍ତି । ସମାଧି ତୋଟମ୍ ଥିଲା ସେହି ଶେଷ ସ୍ଥାନ ଯେଉଁଠାରେ ଗୋପାଳ ସ୍ୱାମୀ କିଛି ବିଧିବଦ୍ଧ ପୂଜା ସଂପନ୍ନ କରିଥିଲେ । ସେ ନିଜର ନିକଟତମ ଅନୁଗାମୀମାନଙ୍କୁ କହିଲେ ଯେ ସେ ସେଠାକୁ ଶେଷଥର ପାଇଁ ଯାଉଛନ୍ତି । ପରଦିନ ତାଙ୍କର ପେଟରେ କଷ୍ଟ ହେବା ଆରମ୍ଭ ହେଲା ଏବଂ ତୃତୀୟ ଦିନ ତାଙ୍କର ଶଲ୍ୟ ଚିକିତ୍ସା କରାଗଲା । ବହୁତ ବୁଝାଶୁଝା କଲାପରେ ସେ ଶଲ୍ୟ ଚିକିତ୍ସା ପାଇଁ ପ୍ରସ୍ତୁତ ହେଲେ ଓ କହିଲେ ଶଲ୍ୟ ଚିକିତ୍ସା ହେଲେ ତାହା ପୁଣି ଥରେ କରିବାକୁ ପଡ଼ିବ । ସତକୁ ସତ ଡାକ୍ତରମାନେ କହିଲେ, ଶଲ୍ୟ ଚିକିତ୍ସା ପୁନର୍ବାର କରିବାକୁ ପଡ଼ିବ ।

ଲୋକମାନେ କହନ୍ତି ଯେ, ଯେତେବେଳେ ସେ ଦ୍ୱିତୀୟଥର ଶଲ୍ୟ ଚିକିତ୍ସାପାଇଁ ଅପେକ୍ଷା କରୁଥିଲେ, ସେ ବିଛଣା ଉପରେ ଉଠି ପଡ଼ିଲେ । ଯେଉଁମାନେ ତାଙ୍କର ଦେଖାଶୁଣା କରିବାକୁ ଆସିଥିଲେ, ସେମାନେ ଭାବିଲେ ସେ ସମାଧିକୁ ଚାଲିଗଲେ ବୋଲି । ଯେତେବେଳେ ତାଙ୍କୁ ଅପରେଶନ ଥିଏଟରକୁ ନିଆଗଲା, ଚିକିତ୍ସକ ଓ ନିଶ୍ଚେତକମାନେ ମୃତ ଅଣାଯାଇଛି' ବୋଲି ଘୋଷଣା କଲେ । ଏହି ଘଟଣା ଘଟିଥିଲା 1960 ମସିହାରେ ମାର୍ଚ୍ଚ ମାସ 8 ତାରିଖ ଦିନ ।



# 5. ଭଗବଦ୍ ପ୍ରେମରେ ମତୁଆଲା ସୂଫୀ

ଗୋପାଳ ସ୍ୱାମୀଙ୍କ ସହିତ ସାକ୍ଷାତର ମାସକ ପରେ ମୋର ମା'ଙ୍କର କକା, ମୋର ଆଈ ଏବଂ ଆଉ ଜଣେ ଦୂରସମ୍ପର୍କୀୟା ମାଉସୀ ମୋତେ ସେମାନଙ୍କ ସହିତ ବୀମାପଲ୍ଲୀ ନେଇଗଲେ ।

ବୀମାପଲ୍ଲୀ ଜଣେ ମୁସଲମାନ ନାରୀ ସନ୍ଥଙ୍କର ସମାଧି । ଏହା ରହିଛି ତ୍ରିଭାନ୍ଦ୍ରମର ଉଡ଼ାଜାହାଜ ପଡ଼ିଆ ନିକଟରେ । ଏହି ସ୍ଥାନ ପ୍ରେତକୁ ତଡ଼ିବାପାଇଁ ବିଖ୍ୟାତ । ଯେଉଁମାନଙ୍କ ଦେହରେ ଡାଆଣୀ ବା ଭୂତ ଲାଗିଛି ବୋଲି କୁହାଯାଏ, ସେମାନଙ୍କୁ ଦୂରଦୂରାନ୍ତରୁ ଆଣି ଏଠି କିଛି ସମୟପାଇଁ ରଖାଯାଏ, ଯେଉଁମାନେ ହିଂସାତ୍ମକ ଆଚରଣ ଦେଖାନ୍ତି, ସେମାନଙ୍କୁ ଚେନ୍‌ଦ୍ୱାରା ପଥର ବା କାଠର ଖୁଣ୍ଟରେ ବାନ୍ଧି ରଖାଯାଏ । ଗୁରୁବାର ବା ଶୁକ୍ରବାର ଦିନ ଏହି ବିଚରାଗୁଡ଼ିକ ଗୋଟାଏ ପ୍ରକାରର ଅଜ୍ଞାନ ଅବସ୍ଥାକୁ ଚାଲିଯାଆନ୍ତି । ଏହାକୁ ଅତ୍ୟଧିକ ଉନ୍ମାଦ ଅବସ୍ଥା ବୋଲି କହିହେବ । ଜୋର୍‌ରେ ନିଜର ମୁଣ୍ଡକୁ ପିଟିଦେବେ, ଆଖି ଚକ୍ରିପରି ଘୂରେଇବେ, ଜୋର୍‌ରେ ଚିତ୍କାର କରିବେ ଏବଂ ବୀମାବିବିଙ୍କଠାରେ ଦୟାଭିକ୍ଷା କରିବେ ଯେ, ସେମାନଙ୍କୁ ଯେପରି ଆଉ କଷ୍ଟ ଦିଆ ନ ଯାଉ ବୋଲି । ଯେଉଁ ଶରୀରରେ ସେମାନେ ପ୍ରବେଶ କରିଛନ୍ତି ତାହାକୁ ଛାଡ଼ିଦେବାକୁ ପ୍ରତିଜ୍ଞା କରନ୍ତି ଓ ଶେଷରେ ମକବରାର ପାହାଚରେ ଜୋର୍‌ରେ ମୁଣ୍ଡପିଟି ଅଜ୍ଞାନ ହୋଇଯାଆନ୍ତି । ଏହି ସବୁ କ୍ରିୟାକଳାପ ପୀଡ଼ିତ ବ୍ୟକ୍ତିର ଶରୀରରେ ପଶିଥିବା ପ୍ରେତର ବୋଲି କୁହାଯାଏ । ପ୍ରେତଗ୍ରସ୍ତ ଲୋକ ପ୍ରେତାତ୍ମାଠାରୁ ନିଷ୍କୃତି ପାଇ ହୋସ୍ ଫେରିପାଇଲେ ଅନ୍ୟମାନଙ୍କ ପରି ସାଧାରଣ ଅବସ୍ଥାକୁ ଫେରିଆସେ ।

ବିଶ୍ୱାସ କରାଯାଏ ଯେ ବୀମାବିବିଙ୍କର ସିଧାସଳଖ ହସ୍ତକ୍ଷେପ ହେତୁ ଲୋକମାନେ ସୁସ୍ଥ ହୋଇଯାଆନ୍ତି । କିମ୍ବଦନ୍ତୀ ରହିଛି ଯେ ବୀମାବିବି ଓ ତାଙ୍କର ପୁଅର କଫିନ୍ ଆରବସାଗରର ଢେଉ ଦ୍ୱାରା ଆସି ସମୁଦ୍ରକୂଳର ଯେଉଁ ସ୍ଥାନରେ ଲାଗିଲା, ସେହିଠାରେ ତାଙ୍କର ସମାଧି ବା ମକବରା ରହିଛି । ସ୍ଥାନୀୟ ଲୋକେ ଯେତେବେଳେ ଦେଖିଲେ ଯେ, ପ୍ରେତାବିଷ୍ଟ ଲୋକମାନେ ବିବିଙ୍କର କଫିନ୍ ଛୁଇଁଲେ ସେମାନଙ୍କ ଦେହରୁ ପ୍ରେତାତ୍ମା ବାହାରିଯାଉଛି, ସେମାନେ ବିବିଙ୍କ ପାଇଁ ସେଠାରେ ସମାଧି ବନେଇଦେଲେ । ଏହି ସ୍ଥାନରେ

ରହୁଥିବା ମୁସଲମାନ କେଉଟମାନଙ୍କ ଅନୁସାରେ ବୀମାବିବି ଜଣେ ଆରବୀୟ ମୁସଲମାନ ସନ୍ଥ ଥିଲେ । ମକବରା, ଯାହାକୁ ଦରଗାହ ମଧ୍ୟ କୁହାଯାଏ, ତାହା ସହିତ ଏକ ମସ୍‌ଜିଦ୍ ବି ରହିଛି ।

ସେଦିନ ଥିଲା ଗୋଟିଏ ଶୁକ୍ରବାର ସନ୍ଧ୍ୟା । ସେପର୍ଯ୍ୟନ୍ତ ଗରମ ଥିବା ସଫେଦ ବାଲି ଉପରେ ଚାଲି ଚାଲି ଆମେ ଦରଗାହ ପାଖରେ ପହଞ୍ଚିଲୁ । ହତା ଭିତର ରୋଗୀମାନେ ଏବଂ ତାଙ୍କର ଯତ୍ନ ନେବାପାଇଁ ଆସିଥିବା ଲୋକମାନଙ୍କ ପାଇଁ କଦର୍ଯ୍ୟ ଭାବରେ ତିଆରି ହୋଇଥିବା କମରାଗୁଡ଼ିଏ ବିଛାଡ଼ି ହୋଇ ରହିଥାଏ । ଏଠି ସେଠି କିଛି ନଡ଼ିଆଗଛ ରହିଥାଏ । ପଥର ଓ କାଠର ଖମ୍ବ ଥାଏ । ଆମେ ଦେଖିଲୁ, କେତେକ ରୋଗୀଙ୍କୁ ନଡ଼ିଆଗଛ ଓ ଖମ୍ବଗୁଡ଼ିକରେ ବାନ୍ଧି ରଖାଯାଇଛି । ସେମାନଙ୍କ ଭିତରୁ କେତେଜଣଙ୍କ ଅବସ୍ଥା ଭାରି ଖରାପ ଥାଏ । ପୂରା କଙ୍କାଳସାର ହୋଇସାରି ଥାଆନ୍ତି ଓ ସେମାନେ ନିରୀହ ଭାବରେ କୋରଡ଼ ହୋଇଯାଉଥିବା ଆଖିରେ ଚାହିଁ ରହିଥାଆନ୍ତି । ଏମିତି ଭାବରେ ବନ୍ଧା ହୋଇଥିବା ଜଣେ ସ୍ତ୍ରୀଲୋକ ପାଖଦେଇ ଯେତେବେଳେ ଗଲୁ, ସେ ନିଜର ହଳଦିଆ ଦାନ୍ତ ବାହାର କଲା, ଆଖି ଘୂରେଇଲା ଓ ଆମକୁ ଦେଖି ଗର୍ଜନ କଲା । ମୋର ମାଉସୀ ଚିତ୍କାର କରି ଘୁଞ୍ଚିଗଲେ । ମୋ' ଛଡ଼ା ସମସ୍ତେ ହସିଲେ । ମୁଁ କହିବିନି ଯେ, ମୁଁ ଡରି ନ ଥିଲି କିନ୍ତୁ ଏହି ଭାଗ୍ୟହୀନ ଲୋକମାନଙ୍କୁ ଦେଖି ଡରଠାରୁ ଅଧିକ ମୋର ମନ ଗଭୀର ଅବସାଦରେ ଭରିଗଲା ।

ଆମେ ଦର୍‌ଗାହ ଭିତରେ ପଶିଲୁ । କବରର ସାମ୍ନାର ହଲ୍‌ରେ ଲୋକ ପୂରାପୂରି ଭର୍ତ୍ତି ହୋଇ ରହିଥାଆନ୍ତି । ଗୋଟାଏପଟ ରୋଗୀମାନଙ୍କପାଇଁ ଓ ଅନ୍ୟପଟଟା ଭକ୍ତମାନଙ୍କ ପାଇଁ ଉଦ୍ଦିଷ୍ଟ । ଆମେ କବର ଆଡ଼କୁ ଆଗେଇଲୁ ଓ ଦରଜା ପାଖରେ ଅପେକ୍ଷା କଲୁ । କବର ଚମକଦାର ସାଗୁଆ ମଖମଲ କନାରେ ଢଙ୍କା ହୋଇଥାଏ ଏବଂ ପାଖରେ ଲାଲ ମଖମଲ ପର୍ଦ୍ଦା ଥାଏ । ହତାର ଭିତର ଅଂଶ ସାଗୁଆ ଓ ଲାଲ୍ ବଲ୍‌ବ ଦ୍ୱାରା ଆଲୋକିତ ହୋଇଥାଏ । ତାହାଦ୍ୱାରା ଏକ ଅଲୌକିକ ବାତାବରଣ ସୃଷ୍ଟି ହୋଇଥାଏ ।

ମୁଲ୍ଲା (ଯାହାଙ୍କୁ ହିନ୍ଦୁ ପୂଜାରୀଙ୍କ ପ୍ରତିରୂପ କୁହାଯାଇପାରେ) ଆମେ ଆଣିଥିବା କଦଳୀ ଗ୍ରହଣ କଲେ ଏବଂ କୋରାନର ପଙ୍‌କ୍ତି ପଢ଼ିଲେ । ଆମେ ସମସ୍ତ ମସ୍ତକ ଆବୃତ କରି ପ୍ରାର୍ଥନା ପାଇଁ ହାତ ଯୋଡ଼ିଲୁ, ସବୁ ଶେଷ ହେଲା ପର୍ଯ୍ୟନ୍ତ 'ଆମିନ୍' 'ଆମିନ୍' ବୋଲି କହି ଠିଆହୋଇ ରହିଲୁ । ଏହାପରେ ଆମେ ନିଜ ନିଜର ମୁହଁକୁ ହାତରେ ମଲିଲୁ ଆଉ ମୁଲ୍ଲାଙ୍କଠାରୁ ପବିତ୍ର ଶୁଖିଲା ଗୋଲାପର ଟୁକୁରା ପାଇଲୁ । ଆମେମାନେ ମୁଣ୍ଡ ନୁଆଇଁ ମୟୂରର ପକ୍ଷୀରୁ ତିଆରି ଝାଡୁର ଗୋଟିଏ ଗୋଟିଏ ଛୁଆଁ ମଧ୍ୟ ପାଇଲୁ । ଏହାଦ୍ୱାରା ମୁଲ୍ଲା ବୀମାବିବିଙ୍କ ଆଶୀର୍ବାଦ ଆମ ନିକଟରେ ପହଞ୍ଚାଇଲେ । ଆଈ ସେଥିପାଇଁ

ରଖାହୋଇଥିବା ଡବାରେ କିଛି ପଇସା ପକେଇଲେ ଏବଂ ଆମେ କୋଠରିର ନୀରୋଗ ଲୋକଙ୍କପାଇଁ ଉଦ୍ଦିଷ୍ଟ ଭାଗରେ ଯାଇ ବସିଗଲୁ ।

ପାଖ ମସ୍‌ଜିଦ୍‌ରୁ ଯେମିତି ନମାଜର ଆଜାନ ଆସିଲା, ତଥାକଥିତ ପ୍ରେତାବିଷ୍ଟ ଲୋକଙ୍କ ମଧ୍ୟରୁ ଅନେକେ ଯେମିତି ସେମାନଙ୍କ ମଧ୍ୟରେ ବିଜୁଳିର କରେଣ୍ଟ ଚାଲିଗଲା ପରି ହଠାତ୍ ଉଠି ଠିଆହେଲେ । ସେମାନେ ଅଜବ ସବୁ ଶବ୍ଦ ଓ ଅଜବ କାମ ସବୁ କରିବା ଆରମ୍ଭ କରିଦେଲେ । ପରିସ୍ଥିତି ପ୍ରାୟ ଅସହ୍ୟ ହୋଇଉଠିଲା ।

ଜଣେ ମଧ୍ୟବୟସ୍କ ଲୋକ, ଯେ ତଥାକଥିତ ଭାବରେ ନିରୋଗ ଥିଲା ଓ ଆମମାନଙ୍କ ପାଖରେ ବସିଥିଲା, ହଠାତ୍ ଉଠି ଠିଆହେଲା ଓ ଅଜବ ବ୍ୟବହାର କରିବା ଆରମ୍ଭ କଲା । ସେ ନିଜର ଦେହକୁ ଗୋଲାକାର ଭାବରେ ଘୂରେଇବାକୁ ଲାଗିଲା ଓ ଅନ୍ୟପଟେ ବସିଥିବା ରୋଗୀମାନଙ୍କ ପରି 'ହୁମ୍' 'ହୁମ୍' ଶବ୍ଦ କରିଲାଗିଲା । ତା'ପରେ ସେ ସ୍ଥିର ହୋଇଗଲା ଓ ମୋ ଆଡ଼କୁ ଚାହିଁ କହିଲା, ''ତୁମେ ମୋତେ ଜାଳିବାକୁ ଚେଷ୍ଟା କଲ କିନ୍ତୁ ମୁଁ ଯିବି ନାହିଁ ।'' ସେ ଡେଇଁପଡ଼ି ସାମ୍ନାକୁ ଆସିଗଲା ଓ ମକବରାର ହତା ଆଡ଼କୁ ଥିବା ଦରଜା ପାଖକୁ ଧାଇଁଲା । ସେଠାରେ ସେ କବାଟରେ ନିଜର ମୁଣ୍ଡକୁ ପିଟିଲା ଓ ଚିତ୍କାର କରିଲାଗିଲା, ''ଆଚ୍ଛା ମୁଁ ଚାଲିଯାଉଛି, ଏଇ ପିଲାଟା ମୋତେ ଚିହ୍ନିପକାଇଲା । ବିବି, ମୁଁ ଚାଲିଯିବି, ମୋତେ ଜଳାଅ ନାହିଁ, ମୁଁ ଜଳିଯାଉଛି ।'' ଏତିକି କହି ସେ ଏକ ଭୟଙ୍କର ଚିତ୍କାର କଲା ଓ ବେହୋସ୍ ହୋଇଗଲା । ପ୍ରଥମଥର ପାଇଁ ମୁଁ ଭୟ ଓ ଘୃଣାରେ ଭରିଗଲି ।

ଏହା ମୋର ଆଇଙ୍କର ସହ୍ୟର ବାହାରେ ଥିଲା । ସେ ଧୀରେ ନିଜର ଭାଇକୁ କହିଲେ, ''ସାବଜାନ, ଏବେ ଆମେ ଏଠାରୁ ବାହାରିଯିବା ଦରକାର ।'' ଆମେ ସେଠାରୁ ବାହାରି ଆସିଲୁ । ଆଇ ମୋ ହାତକୁ ଜୋର୍‌ରେ ଜାବୁଡ଼ି ଧରିଥାଆନ୍ତି, ଯେମିତି କିଏ ମୋତେ ଛଡ଼େଇନେବ । ବାହାରକୁ ଆସି ଆମେ ଆହୁରି ଗୋଟାଏ ବିଚିତ୍ର ଦୃଶ୍ୟ ଦେଖିଲୁ । ଧଳା ବାଳ ଓ ଅଳ୍ପ ଦାଢ଼ି ଥିବା ଗୋଟାଏ ଲଙ୍ଗଳା ବୁଢ଼ା ବାଲି ଉପରେ ଦୌଡ଼ି ଦୌଡ଼ି ଆମ ଆଡ଼କୁ ମାଡ଼ି ଆସୁଥିଲା । ସେ ମନକୁମନ ହସୁଥିଲା ଓ ବେଳେବେଳେ ନିଜ ହାତରେ ଆକାଶକୁ ଇସାରା କରି ହସି ପକାଉଥାଏ । ତା'ର ମୁଣ୍ଡ ଉପରୁ ତଳକୁ ଝାଙ୍କି ହେଉଥାଏ ଓ ତା'ର ଦେହସାରା ବାଲିର ଆସ୍ତରଣ ପଡ଼ିଥାଏ, କଳା ଦେହ ଉପରେ ଧଳା ବାଲି ।

ଯେ ବି ହେଲେ ତାକୁ ପ୍ରେତାବିଷ୍ଟ ବୋଲି ଭାବିବା ସ୍ୱାଭାବିକ କିନ୍ତୁ ଫରକ ଏତିକି ଥିଲା ଯେ, କେତେଜଣ ସ୍ତ୍ରୀ-ପୁରୁଷ ତା'ର ଗତି ସହିତ ସମାନ ତାଳ ରଖିବାକୁ ଚେଷ୍ଟା କରୁଥାଆନ୍ତି ଓ ଶ୍ରଦ୍ଧାରେ ହାତ ଯୋଡ଼ି ଚାଲୁଥାଆନ୍ତି । ସେ ଆମ ବାଟ ଦେଇ ଚାଲିଗଲା । ତା'ପରେ ସେ ହଠାତ୍ ଥମିଗଲା ଓ ଫେରିଆସି ମୋ ସାମ୍ନାରେ ରହିଗଲା । କ୍ଷଣକପାଇଁ

ତାର ମୁହଁ ଗମ୍ଭୀର ହୋଇଗଲା ଓ ପ୍ରାୟ ଗାଢ଼ ଲାଲରଙ୍ଗର ଆଖିରେ ମୋତେ ଚାହିଁଲା । ପୁଣି ସେ ହସିପକାଇଲା, ଯେମିତି ମୁଁ ଗୋଟାଏ ହାସ୍ୟାସ୍ପଦ ଜୀବ ପରି ଦିଶୁଥିଲି । ତା'ପରେ ତାମିଲରେ କହିଲା, ''ସେରୀ, ସେରୀ, ପୋ ପୋ ଅପରୋ ବା ଡା'' (ଆଚ୍ଛା, ଆଚ୍ଛା, ଏବେ ଯା, ପରେ ଆସିବୁ, ପୁଅ) । କେଜାଣି କାହିଁକି ଏଥର ମୋତେ ଡର ମାଡ଼ିଲାନି ।

ଏକଥା ସତ ଯେ ମୁଁ ତାକୁ ପାଗଳ ବୋଲି ଭାବିଲି । ସେ ସମୟରେ ମୋତେ ଜଣାନଥିଲା ଯେ ପାଗଳାମୀ ଓ ଧାର୍ମିକ ଉଚ୍ଛ୍ୱାସକୁ ଏକ ଅତ୍ୟନ୍ତ ସୂକ୍ଷ୍ମ ରେଖା ବିଭାଜିତ କରେ । ମୋର ମା'ଙ୍କ କକା ପରେ କହିଲେ ଯେ, ସେହି ବ୍ୟକ୍ତିଙ୍କୁ କଲଡ଼ୀ ମସ୍ତାନ ବୋଲି କୁହାଯାଉଥିଲା ଓ ତାଙ୍କ ପାଖରେ ଅନେକ ସିଦ୍ଧି ଥିଲା । ସେ ଭଗବଦ୍ ପ୍ରେମରେ ମତୁଆଲା ଥିଲେ ଏବଂ ତାଙ୍କୁ ବାହାରର ସଂସାର ବିଷୟରେ ପୂରାପୂରି ହୋସ୍ ନ ଥିଲା । ''କେତେଜଣ ସାଧୁ-ସନ୍ଥ ଏମିତି ହୁଅନ୍ତି'' ସେ କହିଲେ । ଯେମିତି ଏତିକିରେ ସବୁ ଜିନିଷ ସ୍ପଷ୍ଟ ହୋଇଗଲା । କିନ୍ତୁ ମୁଁ କିଛି ବୁଝିପାରିଲି ନାହିଁ । ''ହେଲେ ସେ ଲଙ୍ଗଳା କାହିଁକି ହୋଇଥିଲେ ?'' ମୁଁ ପଚାରିଲି । ''ଜାଣେ ନାହିଁ'' ଅଜା କହିଲେ । ''ମଝିରେ ମଝିରେ କେହି କେହି ନୂଆ ଧୋତି ତାଙ୍କର ଅଣ୍ଟାରେ ବେଢ଼େଇ ଦିଅନ୍ତି ଆଉ କିଛି ସମୟ ଭିତରେ ସେ ତାକୁ କୌଣସି ଗରିବ ଭିକାରିକୁ ଦେଇ ଦିଅନ୍ତି ଓ ପୁଣି ଲଙ୍ଗଳା ହୋଇଯାଆନ୍ତି ।''

ଏକଥା ମୁଁ ବୁଝିଗଲି । ମୋ ନିଜକୁ ଲୁଗାପଟା ପିନ୍ଧିବାଟା ପସନ୍ଦ ନଥିଲା ବିଶେଷ ଭାବରେ ଗରମ ଦିନମାନଙ୍କରେ । ମୁଁ ମୋ ଲୁଗାପଟା କେଉଁ ଗରିବ ଭିକାରିକୁ ଦାନ କରି ଲଙ୍ଗଳା ହୋଇ ବୁଲିପାରିଥିଲେ ଖୁସି ହୋଇଥା'ନ୍ତି । କିନ୍ତୁ ମୁଁ ଜାଣିଥିଲି ଯେ ମୁଁ ସେମିତି କରିପାରିବି ନାହିଁ କାରଣ ମୋତେ ଜଣେ ସଭ୍ୟ ନାଗରିକ ହେବା ଆଶା କରାଯାଉଥିଲା ।

ସେ ଯାହା କହିଥିଲେ, ''ଠିକ୍ ଅଛି, ପୁଣି ଆସିବୁ ପୁଅ,'' ବେଶ୍ କିଛି ବର୍ଷ ପରେ ସତ୍ୟ ପ୍ରମାଣିତ ହେଲା । କିନ୍ତୁ ସେକଥା କାହାଣୀର କୌଣସି ଅନ୍ୟ ଅଧ୍ୟାୟରେ କହିବି ।



# ୬. ସୁବ୍ରମଣ୍ୟ ମନ୍ଦିରରେ

ଶ୍ରୀନିବାସ ରାଓ ମୋର ଜଣେ ସହପାଠୀ ଥିଲା ଏବଂ ମୋର ତା' ସହିତ ଭଲ ବନ୍ଧୁତା ଥିଲା । ସେଥିପାଇଁ ମୁଁ ପ୍ରଥମ ଥର କୌଣସି ହିନ୍ଦୁ ମନ୍ଦିରର ଭିତରକୁ ଯାଇପାରିଲି ।

ସ୍କୁଲ ଯିବାପାଇଁ ଦୁଇଟି ରାସ୍ତା ଥିଲା, ମୁଖ୍ୟ ରାସ୍ତା, ଯେଉଁଟା ସ୍କୁଲକୁ ପାଖ ଥିଲା ଭାରି ଭିଡ଼ ରହୁଥିଲା । ଆଉ ଗୋଟାଏ ବୁଲାଣି ରାସ୍ତା ଗଳି ଭିତର ଦେଇ ଥିଲା । ସେଇଟା ବେଶି ଦୂର ଥିଲା କିନ୍ତୁ ସେବାଟେ ପ୍ରାୟ ଯାନବାହନ ଚଳାଚଳ ନ ଥିଲା ବୋଲି କହିଲେ ଚଳେ । ମୁଁ ଓ ମୋର ସାଙ୍ଗମାନେ ଅଧିକ ବାଟ ଓ ଅପେକ୍ଷାକୃତ ଚୁପ୍‌ଚାପ ରାସ୍ତା ଦେଇ ଯିବାକୁ ପସନ୍ଦ କରୁଥିଲୁ । ଆମେମାନେ ଆରାମରେ ଯାଉଥିଲୁ, ଆମ୍ବ ପାରିବାକୁ ପଥର ଫିଙ୍ଗୁଥିଲୁ ଆଉ ଜୀବନର ନୂଆ ନୂଆ ଅନୁଭୂତି ବିଷୟରେ ନିଜର ଜିଜ୍ଞାସାକୁ ତୃପ୍ତ କରୁଥିଲୁ ।

ଏଇ ରାସ୍ତାରେ ଉଠାଣି ଚଢ଼ିବା ପରେ ଡାହାଣହାତି ବାଙ୍କ ଉପରେ ସୁବ୍ରମଣ୍ୟସ୍ୱାମୀଙ୍କର ମନ୍ଦିର ଥିଲା । ସେଇଟି ଗୋଟିଏ ମୁଣ୍ଡିଆ ଉପରେ ଥିଲା । ଖପରଛାତ ଥାଇ କେରଳୀ ଢଙ୍ଗରେ ତିଆରି ହୋଇଥିବା ମନ୍ଦିରକୁ ଲାଗି ଗୋଟିଏ ବଡ଼ ସବୁଜ ରଙ୍ଗର ପୋଖରୀ ଥିଲା । ଚାରିପଟୁ ଗ୍ରାନାଇଟର ସିଡ଼ି ଥିଲା । ଭକ୍ତମାନେ ପୋଖରୀରେ ସ୍ନାନ କରୁଥିଲେ ଓ ଉତ୍ସବ ଦିନମାନଙ୍କରେ ଦେବତାଙ୍କର ମୂର୍ତ୍ତିଙ୍କୁ ମଧ୍ୟ ସେଠାରେ ସ୍ନାନ କରାଉଥିଲେ । ପୋଖରୀ ପାଖରେ ଖପରଲି ଘର ଥିଲା ଯେଉଁଠି ପୂଜାରୀ ନିଜର ପରିବାର ସହିତ ରହୁଥିଲେ । ଶ୍ରୀନିବାସ ଥିଲା ପୂଜାରୀଙ୍କର ପୁଅ ଓ ସେଇ ଘରେ ନିଜର ମା'ବାପା ଓ ସୁନ୍ଦରୀ ଭଉଣୀ ସହିତ ରହୁଥିଲା ।

ପୂଜାରୀ ଶ୍ରୀ ରାଓ କର୍ଣ୍ଣାଟକର ଜଣେ ତୁଲୁ ବ୍ରାହ୍ମଣ ଥିଲେ । ତୁଲୁ ଲୋକମାନେ ଏକପ୍ରକାର ଭାଷା କହନ୍ତି, ଯାହାର କୌଣସି ଲିପି ନାହିଁ ଓ ଯାହା ସାଧାରଣତଃ କର୍ଣ୍ଣାଟକର ଭାଷା କନ୍ନଡ଼ର ଲିପିରେ ଲେଖା ଯାଏ । ତୁଲୁ ବ୍ରାହ୍ମଣମାନଙ୍କୁ କେରଳରେ 'ପୋଟୀ' କୁହାଯାଉଥିଲା । ସେମାନେ ବହୁତ ଭଲ ରୋଷେଇ କରନ୍ତି । 'ପୋଟୀ ହୋଟେଲ' ଶାକାହାରୀ ରେସ୍ତୋରାଁ ସ୍ତରର ଥିଲା ।

ଦିନେ ଯେତେବେଳେ ଶ୍ରୀନିବାସ ଓ ମୁଁ ସ୍କୁଲରୁ ପାଦ ଘୋଷାଡ଼ି ଘୋଷାଡ଼ି ଫେରୁଥିଲୁ, ଶ୍ରୀନିବାସ ମୋତେ ତା' ଘରକୁ ଡାକିଲା । ''ଆ ତୁ ମୋ ଘରେ ମୟୂର ଦେଖିବୁ'' ? ସେ କହିଲା । ସେମାନଙ୍କର ଗଛବୃଛ ଭର୍ତ୍ତି ବାରିରେ ମୟୂର ଥିଲେ । ତେଣୁ ମୁଁ ତା'ସହିତ ଚାଲିଗଲି । ବଗିଚା ସୁନ୍ଦର ଥିଲା । ସବୁଜ ରଙ୍ଗର ପାଣିବାଲା ପୋଖରୀ ଅଦ୍‌ଭୁତ ଲାଗୁଥିଲା ଓ ପ୍ରକୃତରେ ଝଲମଲ୍ ପୁଚ୍ଛ ହଲାଉଥିବା ଅନେକ ମୟୂର ଥିଲେ । କିଛି ଗଛ ଉପରେ ବସିଥିଲେ, କିଛି ଘାସରେ ଥଣ୍ଟ ମାରିମାରି ହତାରେ ବୁଲୁଥିଲେ । ଗୋଟାଏ ନିଜର ବହୁରଙ୍ଗୀ ପୁଚ୍ଛକୁ ପଂଖାପରି ମେଲେଇ ନାଚୁଥିଲା ।

ଘର ଭିତରୁ ଶ୍ରୀନିବାସର ବାପା ବାହାରକୁ ଆସିଲେ । ତାଙ୍କର ଦେହ ସୁଡ଼ୌଲ ଥିଲା । ସେ ଗୋରା ଥିଲେ, ନଗ୍ନ ଦେହରେ ପଇତା ଧାରଣ କରିଥିଲେ ଓ ଘିଅ ରଙ୍ଗର ରେଶମର ଧୋତି ପିନ୍ଧିଥିଲେ । ତାଙ୍କର ବାଳ ଲମ୍ବା ଓ କଳା ଥିଲା, ଯାହାକୁ ଗଣ୍ଠି ପରି ବାନ୍ଧି ପଛରେ ଝୁଲାଇ ଦିଆଯାଇଥିଲା । କିନ୍ତୁ ତାଙ୍କର ଆକୃତିର ସବୁଠାରୁ ପ୍ରଭାବଶାଳୀ ଅଙ୍ଗ ଥିଲା ତାଙ୍କର ନାକ– ମୋଡ଼ି ହୋଇଯାଇଥିବା ଗରୁଡ଼ୀୟ ନାକ, ଯେପରି ଜୁଲିୟସ୍ ସିଜ୍‌ରଙ୍କର ବୋଲି କୁହାଯାଏ । ତାଙ୍କର ତେଜସ୍ୱୀ ଆଖି କୌଣସି ଏକଛତ୍ରପତି ଶାସକର ଆଖିଠାରୁ କମ୍ ଦୃଢ଼ ନଥିଲା । ଅସଲ କଥା ହେଲା, ମୁଁ ତାଙ୍କୁ ଦେଖି କିଛିଟା ସଂକୁଚିତ ହୋଇଗଲି ।

ମୋ ସାଙ୍ଗ ଶ୍ରୀନିବାସ ତୁଡୁରେ କ'ଣ ସବୁ କହିଲା, ମୁଁ କେବଳ ମୋ ନାଁଟା ବୁଝିପାରିଲି । ଏଥର ତା' ବାପା ମୋତେ ଗମ୍ଭୀରତାର ସହିତ ମନଦେଇ ଦେଖୁଥାଆନ୍ତି । ''ମୁସଲମାନ ?'' ସେ ପଚାରିଲେ ।

: ''ହଁ ।''

: ''ହୁଁ,...... ତୁମକୁ ମୟୂର ଭଲ ଲାଗନ୍ତି ?''

: ''ହଁ ।''

''ଭଗବାନ ସୁବ୍ରମଣ୍ୟଙ୍କ ବାହନ ହେଉଛି ମୟୂର । ସେ ମୟୂର ପିଠିରେ ଚଢ଼ି ଜୋର୍‌ରେ ଉଡ଼ନ୍ତି ।''

: ''ଆପଣ ତାଙ୍କୁ ଉଡ଼ିବାର ଦେଖିଛନ୍ତି ?''

ଟିକିଏ ରହିଯାଇ ସେ କହିଲେ, ''ସମସ୍ତେ ଦେଖିପାରିବେ ନାହିଁ । ଉତ୍ତମ ଓ ପବିତ୍ର ଲୋକହିଁ ଦେଖିପାରିବେ । ଆମେ ମନ୍ଦିରରେ ତାଙ୍କର ମୂର୍ତ୍ତିକୁ ପୂଜା କରୁ ।''

''ମୁଁ କ'ଣ ତାଙ୍କୁ ଦେଖିପାରିବି ?''

ଏଥର ତାଙ୍କର ଭଙ୍ଗୀ ଗମ୍ଭୀର ହୋଇଗଲା ଆଉ ମୋତେ ଲାଗିଲା ସେ ମନା କରିଦେବେ । କିଛି ସମୟ ପରେ ସେ ଗଭୀର ନିଃଶ୍ୱାସ ନେଲେ ଓ ହସିଲେ, ''ମୁଁ ସେଇଠାକୁ ଯାଉଥିଲି । ଆସ, କିନ୍ତୁ ଗର୍ଭଗୃହ ବାହାରୁ ଦେଖିନେବ । ମୋ ଛଡ଼ା ଆଉ କାହାକୁ ଭିତରକୁ ଯିବାର ଆଜ୍ଞା ନାହିଁ । ଠିକ୍ ?''

ଶ୍ରୀନିବାସ ଘର ଭିତରକୁ ଚାଲିଗଲା ଆଉ ମୁଁ ପୂଜାରୀଙ୍କ ସହିତ ଗଲି । ସେ ମୋତେ ହଲ୍‌ରେ ଛାଡ଼ି ଗର୍ଭଗୃହରେ ଅଦୃଶ୍ୟ ହୋଇଗଲେ । କିଛିସମୟ ପରେ ସେ ଭାରୀ ଦରଜାଟାକୁ ଖୋଲିଦେଲେ । ମୁଁ ଯେଉଁଠି ଠିଆ ହୋଇଥିଲି, ସେଠାରୁ ମୁଁ ଗୋଟିଏ ଛୋଟ ମୂର୍ତ୍ତି ଦେଖିପାରିଲି, ତାଙ୍କର ଦି'ପାଖରେ ଦୁଇଟି ଛୋଟ ଛୋଟ ମୂର୍ତ୍ତି ଥିଲେ । ମୋ ଆଖି ଅଳ୍ପ ଆଲୁଅକୁ ଅଭ୍ୟସ୍ତ ହୋଇଯିବା ପରେ ମୁଁ ଯୁଆନ୍ ଆଉ ପୂରିଲା ଗାଲ ଥିବା ସୁବ୍ରମଣ୍ୟଙ୍କୁ ନିଜର ମୟୂର ଉପରେ ବସିଥିବାର ଦେଖିଲି । ତାଙ୍କର ଗୋଟିଏ ହାତରେ ବର୍ଚ୍ଛା ଥିଲା ଓ ଅନ୍ୟ ହାତ ଥିଲା ଆଶୀର୍ବାଦର ମୁଦ୍ରାରେ । ତାଙ୍କର ବାଁ ଡାହାଣରେ ସୁନ୍ଦର ଯୁବତୀ ଦି'ଜଣଙ୍କର ମୂର୍ତ୍ତି ଥିଲା ।

ମୋତେ ଦେଖି ଖୁସି ଲାଗିଲା ଯେ, ସୁବ୍ରମଣ୍ୟଙ୍କ ମୁହଁ ପରିଷ୍କାର ଥିଲା ଓ ପ୍ରଫୁଲ୍ଲ ଥିଲା । ଗମ୍ଭୀର ମୁହଁବାଲା ଦାଢ଼ିଯୁକ୍ତ ଭଗବାନଙ୍କ ରୂପ, ଯାହା ଅଗ୍ନି ଉଦ୍‌ଗୀରଣପାଇଁ ସବୁବେଳେ ପ୍ରସ୍ତୁତ ଥାଏ, ସେହି ରୂପ କଳ୍ପନା କରିବାରେ ମୁଁ ଅଭ୍ୟସ୍ତ ଥିଲି ।

''ସେ ହାତରେ କେଉଁ ଅସ୍ତ୍ର ଧରିଛନ୍ତି ?'' ମୁଁ ପଚାରିଲି ।

''ଭେଲ୍, ଗୋଟାଏ ପ୍ରକାରର ବର୍ଚ୍ଛା, ମଣିଷକୁ ରକ୍ଷା କରିବାପାଇଁ ।'' ସେ କହିଲେ ।

''ଦି'ପଟେ ଦି'ଜଣ ସ୍ତ୍ରୀ କିଏ ?''

''ପତ୍ନୀମାନେ'', ସେ କହିଲେ ଓ ଆଖିରେ ଚମକ ଆଣି କହିଲେ, ''ମୁସଲମାନମାନଙ୍କ ପରି ଆମର ଦେବତାମାନେ ବହୁ ପତ୍ନୀ ରଖିପାରନ୍ତି'' । ଏହି ଶେଷ ବାକ୍ୟଟି ମୁଁ ବୁଝିପାରିଲି ନାହିଁ କାରଣ ମୋତେ ଜଣା ନ ଥିଲା ଯେ, ମୁସଲମାନମାନେ ବହୁବିବାହ କରିପାରନ୍ତି ବୋଲି । କିନ୍ତୁ ସେକଥା ସେଇଠି ଛାଡ଼ି ଯେଉଁ କଦଳୀଟିକୁ ସେ ମୋତେ ବଢ଼େଇଦେଇଥିଲେ, ତାକୁ ଖାଇବା ଆରମ୍ଭ କରିଦେଲି ଆଉ ଭାବୁଥାଏ ଯେଉଁ ବିଭୂତି ସେ ମୋତେ ଦେଲେ, ତାକୁ କ'ଣ କରିବି । ''ତୁମେ ତାକୁ ଖାଇପାର'', ସେ କହିଲେ, ''ମୁସଲମାନମାନେ ତାକୁ ମୁଣ୍ଡରେ ଲଗାନ୍ତି ନାହିଁ'', ମୁଁ ସେଇ ଟିପେ ପାଉଁଶକୁ ପାଟିରେ ପକେଇଦେଲି ।

ବାହାରକୁ ଆସି ଦେଖିଲି ଶ୍ରୀନିବାସ ଗୋଟିଏ ଷ୍ଟିଲ୍ ଗ୍ଲାସ୍‌ରେ ମୋ ପାଇଁ କଫି ଧରି ଠିଆହୋଇଛି । ''ମୋ ମା' ତୁମ ପାଇଁ ବନେଇଛନ୍ତି'', ସେ କହିଲା । ମୁଁ ପୋଖରୀ କୂଳରେ ଠିଆହୋଇ ସେହି ସୁସ୍ୱାଦୁ କଫି ପିଇ ସାରିବା ପରେ ଘରକୁ ଚାଲିଲି । ଟିକିଏ ଦୂରରେ ହିଁ ମୋ ସାଙ୍ଗ ଶାନ୍ତିକୁମାର ରହୁଥିଲା, ଯେ ଏବେବି ମୋର ବନ୍ଧୁ । ସେ ମୋତେ ମନ୍ଦିରରୁ ବାହାରିବାର ଦେଖିଥିଲା । ''ତୁମେ ମନ୍ଦିରକୁ ଯାଇଥିଲ ?'' ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା । ''ହଁ, ଶ୍ରୀନିବାସ ମୋତେ ତା' ଘରକୁ ଡାକିଥିଲା । ମୁଁ ଠାକୁରଙ୍କ ମୂର୍ତ୍ତି ବି ଦେଖିଲି ।''

ସେଦିନ ସନ୍ଧ୍ୟାରେ ମୋର ମା' ମୋତେ ଦେଉଥିବା ଗରଗ ଗରମ ଦୋସା ଓ ସମ୍ବର ଖାଉ ଖାଉ ମୁଁ ପଚାରିଲି, ''ମୁସଲମାନମାନଙ୍କର କ'ଣ ଏକାଧିକ ସ୍ତ୍ରୀ ଥାଆନ୍ତି ?'' ''ହଁ ମୁସଲମାନମାନେ ସେମିତି କରିପାରିବେ'', ସେ କହିଲେ ଓ ଗର୍ବର ସହିତ ଯୋଗ କଲେ, ''କିନ୍ତୁ ମୋ' ପରିବାରରେ ଗତ ତିନିପୁରୁଷ ଧରି କାହାର ଗୋଟିଏରୁ ଅଧିକ ସ୍ତ୍ରୀ ନାହାନ୍ତି ।'' ମୁଁ ଖାଉ ଖାଉ ଭାବିଲି, ଦି'ଜଣ ମା' ଥିଲେ କେତେ ଗୋଳମାଳିଆ ହୋଇଥାଆନ୍ତା !



# 7. ଆରୋହଣର ପ୍ରସ୍ତୁତି

ମୁଁ ଆପଣମାନଙ୍କୁ ହିମାଳୟର ଉଚ୍ଚ ଶିଖରକୁ ନେଇଯିବାକୁ ଉତ୍ସୁକ ହେଲେ ମଧ୍ୟ ମୁଁ ମୋ ନିଜର ବିକାଶର ଏହି ବର୍ଷଗୁଡ଼ିକର ପାଦଦେଶରେ ଆଉ କିଛି ସମୟ କଟାଇବାକୁ ଚାହେଁ । ଏହି ବର୍ଷଗୁଡ଼ିକ ମହତ୍ତ୍ୱପୂର୍ଣ୍ଣ; କାରଣ ସେତେବେଳେ ଆରୋହଣର ପ୍ରସ୍ତୁତି ଚାଲିଥିଲା ।

ମଡେଲ ହାଇସ୍କୁଲ ଦିନଗୁଡ଼ିକ ପ୍ରକୃତରେ ଭାରି କୌତୁକପୂର୍ଣ୍ଣ ଓ ବହୁତ ଶିକ୍ଷାପ୍ରଦ ଅନୁଭବ ଥିଲା । ଲେଖା–ପଢ଼ା ଛଡ଼ା, ଯାହା ନିଶ୍ଚିତ ଭାବରେ ଶିକ୍ଷିତ ଓ ସମର୍ପିତ ଶିକ୍ଷକମାନଙ୍କ ହାତରେ ଥିଲା, ମୋର କଳା, ଶିଳ୍ପ ଏବଂ କ୍ରୀଡ଼ାରେ ମଧ୍ୟ ଆଗ୍ରହ ଥିଲା ।

ମୋର ଗୋଟିଏ ଛୋଟିଆ ଦଳ ଥିଲା । ସେହି ଦଳର ପିଲାମାନେ ଡ୍ରଇଂ, ପେଣ୍ଟିଂ ଓ ବଢ଼େଇକାମ ଆଦିରେ ଆଗୁଆ ଥିଲେ । (ରେଖାଙ୍କନ ଏବଂ ପେଣ୍ଟିଂ ଏବେ ମଧ୍ୟ ମୋର ଗୋଟିଏ ପ୍ରିୟ ସଉକ୍) । ଫୁଟବଲ୍ ଓ ହକି ମ୍ୟାଚ୍‌ଗୁଡ଼ିକ ମଧ୍ୟ ବେଶ୍ ମଜାଦାର ହେଉଥିଲା । ଆମମାନଙ୍କ ପରି କେତେଜଣ ଯେଉଁମାନେ ନିଜକୁ ବଳୁଆ ବୋଲି ଭାବୁଥିଲେ, ସେମାନେ ବାଲି କବଡ୍ଡି ଖେଳୁଥିଲେ । କବଡ୍ଡିରେ ବହୁତ ପଂଝା କଷାକଷି, ହାତ ମୋଡ଼ାମୋଡ଼ି, ଟଣା–ଓଟରା ହେଉଥିଲା ଆଉ ବଲରି ଓ ଯୁଯୁତ୍ସୁରେ ଓସ୍ତାଦ୍ ମୋର ବାପାଙ୍କଠାରୁ ଶିଖିଥିବା ଲଢ଼େଇର ପେଞ୍ଚଗୁଡ଼ିକ ପ୍ରଦର୍ଶନ କରି ମୁଁ ଆନନ୍ଦ ଅନୁଭବ କରୁଥିଲି । ଠିକ୍ ଟେକ୍ନିକ୍ ଜାଣିଥିଲେ ନିଜର ଦୁଇଗୁଣ ମାପର ଗୁଣ୍ଡାକୁ ମଧ୍ୟ ମାଟିରେ ପକେଇଦେଇ ହେବ । ମୋର ଏହି କ୍ଷମତା ଏବଂ ମୋର ଦୁର୍ବଳଙ୍କୁ ଗୁଣ୍ଡାଶ୍ରେଣୀୟ ଲୋକଙ୍କଠାରୁ ରକ୍ଷା କରିବାର ମନୋବୃତ୍ତି ହେତୁ ମୋର ପାଖଆଖରେ 'ଭଲ କାମ କରିବାବାଲା' ଓ 'ସୁରକ୍ଷା ପ୍ରଦାନ କରିବାବାଲା' ଗୋଟାଏ ଛୋଟ ଦଳ ପ୍ରସ୍ତୁତ ହେବାରେ ଲାଗିଲା ।

ବୟସ ବଢ଼ିବା ସହିତ ମୋ ସାମ୍ନାରେ ଉନ୍ମୋଚିତ ହେଉଥିବା ନୂତନ ଦୁନିଆ ବିଷୟରେ ମୋର ବୁଝାମଣା ବଢୁଥାଏ । ପୁରୁଣା ବିଶ୍ୱାସ ଏବଂ ସେଇ ଘଷାମଜା ଧାରଣାସବୁ ଧୀରେ ଧୀରେ ଚାଲିଯିବାକୁ ଆରମ୍ଭ କଲା । ଉଦାହରଣ ସ୍ୱରୂପ, ଖାଇବା ସମ୍ବନ୍ଧୀୟ ଧାରଣା ।

ଖାଇବା ଛୁଟିରେ ଅଧିକାଂଶ ପିଲା (ଯେଉଁମାନଙ୍କ ଘର ସ୍କୁଲ ପାଖରେ ଥିଲା ସେମାନଙ୍କ ବ୍ୟତୀତ) ଶ୍ରେଣୀଠାରୁ ବେଶ୍ ଦୂରରେ ଥିବା ତଥାକଥିତ ସାର୍ବଜନୀନ ଭୋଜନ-କକ୍ଷରେ ଏକାଠି ବସୁଥିଲେ । ଏହି କମରାଗୁଡ଼ିକ କେତେବର୍ଷ ପୂର୍ବର ପରିତ୍ୟକ୍ତ ଶ୍ରେଣୀଗୃହ ଥିଲା ଏବଂ ସମୟ ବିତିବା ସହିତ ବେଶ୍ ଭାଙ୍ଗିରୁଜି ଯାଇଥିଲା । ସେଗୁଡ଼ିକରେ ପ୍ରାୟ ବିଛା, ତେଲୁଣିପୋକ ଓ ବିରାଟ ବିରାଟ ସାମ୍ବାକୁଆ ବାହାରୁଥିଲେ, ସେମାନଙ୍କୁ ଛୁଇଁଦେଲେ ସେମାନେ ମୋଡ଼ିମାଡ଼ି ହୋଇ ଗୋଲ ହୋଇଯାଉଥିଲେ । ଅନେକ ଜାଗାରେ କାନ୍ଥରେ ବଡ଼ ବଡ଼ ଫାଟ ଥିଲା ଏବଂ ସିମେଣ୍ଟ ଚଟାଣ ନଷ୍ଟ ହୋଇଯାଇଥିଲା । ସେଠି ଟେବୁଲ ଚେଆର ନ ଥିଲା । କଣରେ ଖାଲି ଗୋଟାଏ ପାଣିକଳ ଥିଲା ।

ଆମ ପାଇଁ ଖାଇବାଛୁଟିଟା ଭାରି ମଜାଦାର ସମୟ ଥିଲା କାରଣ ଆମ ଉପରେ ନଜର ରଖିବାପାଇଁ ଶିକ୍ଷକମାନେ ନ ଥିଲେ । ନିଜର ମା'ମାନେ ତିଆରି କରିଥିବା ଖାଦ୍ୟ ଆଲୁମିନିୟମର ଟିଫିନ୍‌ବାକ୍ସରେ ଆଣୁଥିଲୁ । ମୋ' ମା' ମୋର ଟିଫିନ୍ ଡବାରେ ବ୍ରେନ୍ ମସାଲା, କିଡ୍‌ନୀ ଫ୍ରାଇ, ଭଜାମାଛ, ଆମ୍‌ଲେଟ୍ ଆଦି ଠେସିକିନା ଭର୍ତ୍ତି କରିଦେଉଥିଲେ ଯେମିତି ସେସବୁ ଖାଇଲେ ମୁଁ ଟାଣୁଆ ଓ କୁଶାଗ୍ର ବୁଦ୍ଧିଯୁକ୍ତ ହେବାପାଇଁ ଯଥେଷ୍ଟ ପ୍ରୋଟିନ୍ ପାଇପାରିବି । ତାଙ୍କର ଧାରଣା ଥିଲା, ପୋଷଣର ପ୍ରଶ୍ନ ଉଠିଲେ, ମାଂସ ଓ ମାଛର ସ୍ଥାନ କିଛି ନେଇପାରିବ ନାହିଁ ।

ସେ ସମୟରେ ମୋର କେତେଜଣ ଘନିଷ୍ଠ ବନ୍ଧୁ ପାଲଘାଟ ଆୟାର ଥିଲେ । ସେମାନେ ମୂଳରୁ ତାମିଲ ବ୍ରାହ୍ମଣ ଥିଲେ, ଯେଉଁମାନଙ୍କର ପୂର୍ବପୁରୁଷମାନେ ପାଲଘାଟରେ ସୀମା ପ୍ରଦେଶକୁ ଚାଲିଆସି ବସବାସ କରୁଥିଲେ । ତା'ପରେ ସେମାନେ କେରଳର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ବସବାସ କରିବା ଆରମ୍ଭ କଲେ । ସେମାନଙ୍କର କୁଶାଗ୍ର ବୁଦ୍ଧି ଓ କୌଶଳପାଇଁ ସେମାନେ ଜଣାଶୁଣା ଥିଲେ । ପୁରୁଷ ପୁରୁଷ ଧରି ସେମାନେ ପ୍ରଶାସନ, ସାଂସ୍କୃତିକ ଓ ବୌଦ୍ଧିକ କ୍ଷେତ୍ରଗୁଡ଼ିକରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପଦଗୁଡ଼ିକ ଅଧିକାର କରିବା ସହିତ ସେମାନେ ବସବାସ କରୁଥିବା ସ୍ଥାନର ସଂସ୍କୃତିକୁ ଏପରି ଭାବରେ ନିଜର କରିନେଇଥିଲେ ଯେ, ସେମାନେ ଯେଉଁ ତାମିଲ ଭାଷାରେ ଘରେ କଥାବାର୍ତ୍ତା କରୁଥିଲେ, ତାହା ମାଲୟାଲମ୍ ପରି ଶୁଭୁଥିଲା । ସେମାନେ ନିଜକୁ ମାଲୟାଲୀ ବୋଲି କହି ଗର୍ବ ଅନୁଭବ କରୁଥିଲେ ।

ମୋର ଏହି ସାଙ୍ଗମାନେ, ଅର୍ଥାତ୍ ଶଙ୍କରନାରାୟଣନ୍, ଅନନ୍ତନାରାୟଣନ୍, ବିଶ୍ୱନାଥ ଆୟାର, ଭେଙ୍କଟେଶ, କ୍ରିଷ୍ଣମଣି ଏବଂ ଅନ୍ୟମାନେ ମୋତେ ନିଜ ଦଳରେ ସାମିଲ କରିନେଇଥିଲେ । ଆମେ ଖାଇବାଛୁଟିରେ ଆମର ଟିଫିନ୍‌ବାକ୍ସ ଧରି ବସୁଥିଲୁ,

ଗପସପ ହେଉଥିଲୁ ଏବଂ ଖାଉଖାଉ ମଜା କରୁଥିଲୁ । ପ୍ରାୟ ସେମାନେ ମୋର ଟିଫିନ୍‌ବାକ୍ସରୁ ବାହାରୁଥିବା ମସଲାର ତୀବ୍ର ସୁଗନ୍ଧରେ ଆକର୍ଷିତ ହୋଇ ଉଙ୍କିମାରି ଚାହୁଁଥିଲେ, ସେତେବେଳେ ମୋ'ଠାରୁ ସେଗୁଡ଼ିକ କ'ଣ ବୋଲି ଜାଣି ଆତଙ୍କିତ ହୋଇ ପଛକୁ ଘୁଞ୍ଚିଯାଉଥିଲେ । ମୁଁ କହିବି ଯେ, ସେଇଟା ଥିଲା ତାଙ୍କର ବଡ଼ପଣିଆ । କାରଣ ମୁଁ ମାଂସାହାରୀ ବୋଲି ଜାଣି ମଧ୍ୟ ସେମାନଙ୍କର ମନରେ ମୋ ବିରୁଦ୍ଧରେ କିଛି ନ ଥିଲା । ଆମେ ଏତେ ଘନିଷ୍ଠ ଥିଲୁ ଯେ, ସେମାନେ ମୋ ସହିତ ବସି ସାଦାସିଧା ଖାଦ୍ୟ ଖାଉଥିଲେ ।

ମୁଁ ଆଶ୍ଚର୍ଯ୍ୟ ହେଉଥିଲି ଯେ, ସେମାନଙ୍କର ଭୋଜନ ସବୁବେଳେ ଶୁଦ୍ଧ ଶାକାହାରୀ ଦହି–ଭାତ, ପରିବା ତରକାରି ଓ ଆଚାର ଥିଲା । କେତେବେଳେ ଇଡ୍‌ଲୀ ଆଉ ଚଟଣି କିମ୍ବା ସମ୍ବର । ପ୍ରତିଦିନ ସାଧା ଶାକାହାରୀ ଭୋଜନ କରୁଥିଲେ ଆଉ ଯେତେବେଳେ ଷାଣ୍ମାସିକ ବା ବାର୍ଷିକ ପରୀକ୍ଷାର ଫଳ ବାହାରୁଥିଲା, ସେତେବେଳେ ସେହି ପିଲାମାନେ ଗଣିତ ଓ ବିଜ୍ଞାନରେ ସବୁଠୁଁ ଅଧିକ ନମ୍ବର ପାଉଥିଲେ ଆଉ ମୁଁ ଓ ମୋର ଆଉ ଏକ ସାଙ୍ଗ ସିଦ୍ଧିକି କୌଣସିମତେ ପାସ୍ କରିଯାଉଥିଲୁ ।

ଦିନେ ସକାଳେ ଯେତବେଳେ ମା' ମାଛଭଜା, ମାଛ ତରକାରି, ଭାତ ଇତ୍ୟାଦି ଅଧିକରୁ ଅଧିକ ପରିମାଣରେ ଟିଫିନ୍‌ବାକ୍ସରେ ଚାପିଚୁପି ଭର୍ତ୍ତି କରୁଥିଲେ, ମୁଁ କହିଲି, ''ମା, ଖାଇବା ବିଷୟରେ ତୁମର ସବୁ ଧାରଣା ଭୁଲ । ଦହିଭାତ ଓ ଆଚାରରେ ଯେତିକି ଶକ୍ତି ରହିଛି ସେତିକି ଅଛି ତୁମର ମାଛମାଂସରେ ।'' ଏକଥା ସତ ଯେ, ସେ ମାନିବାକୁ ପ୍ରସ୍ତୁତ ନ ଥିଲେ । ମୁଁ ଯେତେବେଳେ ଯୁକ୍ତି କରିବା ଆରମ୍ଭ କଲି, ସେ କହିଲେ, ଯେ ଆମର ପାଖିତ୍ରନ ପୂର୍ବପୁରୁଷମାନେ ବଳୁଆ ଥିଲେ କାରଣ ସେମାନେ ମାଂସ ଖାଉଥିଲେ ।

ମୁଁ ତାଙ୍କ ସହିତ ସହମତ ନ ଥିଲି ଆଉ ସେବେଠୁଁ ଖାଦ୍ୟ ବିଷୟରେ ମୋର ଧାରଣା ବଦଳିଗଲା । ଉତ୍ତମ ପୋଷଣର ଆବଶ୍ୟକତା ରହିଛି କିନ୍ତୁ ମୋ ମତରେ ଶାକାହାରୀ ଭୋଜନ ସେଥିପାଇଁ ଯଥେଷ୍ଟ । ଅବଶ୍ୟ ଆପଣ ଚାହିଁଲେ ମାଂସ ଖାଇପାରନ୍ତି । କିନ୍ତୁ ମାନବ ଶରୀର ଏହା ବିନା ଅକାମି ହୋଇଯିବ, ଏକଥା ଭାବିବା ହେଉଛି ନିର୍ବୋଧପଣିଆ ।

ଯେଉଁ ଅଧ୍ୟାପକମାନେ ମୋର ଜୀବନକୁ ପ୍ରଭାବିତ କରିଛନ୍ତି, ମୋର ସେମାନଙ୍କ ବିଷୟରେ କହିବାକୁ ଭୁଲିଯିବା ଉଚିତ ନୁହେଁ । ତାଲିକାର ଶୀର୍ଷରେ ଅଛନ୍ତି ଟାଇଗର କୁଞ୍ଚନ ପିଲ୍ଲାଇ, ଆମର ପ୍ରଧାନଶିକ୍ଷକ ଯେ ଆମକୁ ଅନୁଶାସନର ଶିକ୍ଷା ଦେଇଥିଲେ । ସେ ଅତି କଠୋର ଭାବରେ ଶାସନ କରିବାରେ ବିଶ୍ୱାସ କରୁଥିଲେ । ଅନ୍ୟମାନଙ୍କ ମଧ୍ୟରେ

ଥିଲେ ଅକ୍ସଫୋର୍ଡରେ ଶିକ୍ଷାଲାଭ କରିଥିବା ମିଷ୍ଟର ଜର୍ଜ ଯେ ଆମମାନଙ୍କୁ ଇଂରେଜୀ ଭାଷାର ସୂକ୍ଷ୍ମ ପାର୍ଥକ୍ୟଗୁଡ଼ିକ ସହିତ ପରିଚିତ କରାଇଥିଲେ ଏବଂ ହରିହରନ୍ ଯେ ବିଜ୍ଞାନ ଶିକ୍ଷକ ତ ଥିଲେ କିନ୍ତୁ କୋନନ୍ ଡଏଲ୍‌ଙ୍କର 'ହାଉଣ୍ଡ୍ ଅଫ୍ ବାସ୍କରଭିଲେ'କୁ ଯେପରି ନାଟକୀୟ ଭାବରେ ପାଠ କରୁଥିଲେ, ତାହା ମୋ' ସ୍ମୃତିରେ ଆଜିପର୍ଯ୍ୟନ୍ତ ଅଙ୍କିତ ହୋଇ ରହିଛି । ଗୋପାଳକୃଷ୍ଣ ମୋର ଅଗାଣିତିକ ମସ୍ତିଷ୍କ ଭିତରକୁ ମଧ୍ୟ କିଛିଟା ଗଣିତ ପୂରେଇବାକୁ ସମର୍ଥ ହୋଇଥିଲେ । ଜୀବବିଜ୍ଞାନର ଅଧ୍ୟାପକ ଟାର୍ଜନ ଦାମୋଦରନ ପିଲ୍ଲାଇ ପ୍ରଥମକରି ଏହି ତଥ୍ୟ ପ୍ରତି ଆମର ଆଖି ଖୋଲି ଦେଇଥିଲେ ଯେ ଏତେ କୁଟୀଳ ଦିଶୁଥିବା ଜୀବନ (ଲାଇଫ୍)ର ପ୍ରାରମ୍ଭ ଏକ-କୋଷୀୟ ଜୀବରୁ ଆରମ୍ଭ ହୋଇଥିଲା । ଏନ୍.ସି.ସି.ର କମାଣ୍ଡର ଓ ସମାଜବିଜ୍ଞାନର ଅଧ୍ୟାପକ ମାଧବନ ନାୟାର ଏମିତି ଧବ୍‌ଧବ୍ ଧଳା ଓ କଡ଼ା ଇସ୍ତ୍ରୀ ହୋଇଥିବା ଲୁଗାପଟା ପିନ୍ଧୁଥିଲେ ଯେ, ତାଙ୍କ ନାଁ ଦିଆହୋଇଥିଲା 'ଆଇରନ୍ ବକ୍ସ' । ମିଷ୍ଟର ନାୟକମ୍, ଯେ ନବମ ଶ୍ରେଣୀରେ ଆମର ଶ୍ରେଣୀଶିକ୍ଷକ ହେଲେ, ତାଙ୍କର ଭବିଷ୍ୟତକୁ ଦେଖିପାରିବାର ଏକ ଅଦ୍ଭୁତ ଶକ୍ତି ଥିଲା, ସେ ଭବିଷ୍ୟତବାଣୀ କରି କହିଥିଲେ ଯେ ଜୀବନରେ ମୋର ପ୍ରଧାନ ଲକ୍ଷ୍ୟ ରହିବ ସତ୍ୟର କିମ୍ବା ଭଗବାନଙ୍କର ସନ୍ଧାନ ବା ଏହିପରି କିଛିର ।

ଶ୍ରେଣୀଶିକ୍ଷକ ଭାବରେ ଶ୍ରୀ ନାୟକମ୍ ପ୍ରଥମ ଦିନ ନିଜର ସଂକ୍ଷିପ୍ତ ପରିଚୟ ଦେଲେ । ଆମ ଭିତରୁ କେତେଜଣ ନିଜ ନିଜର ଡେସ୍କ ପଛପଟେ ଥଙ୍ଗା କରି ହସୁଥାଆନ୍ତି କାରଣ ସେ ଥିଲେ ପ୍ରଥମ ଶ୍ରେଣୀଶିକ୍ଷକ ଯାହାଙ୍କ କପାଳରେ ଲମ୍ବା ଲମ୍ବା ବିଭୂତିର ରେଖା ଅଙ୍କା ହୋଇଥିଲା । ସେ କହିଲେ ଯେ ସେ ଭଗବାନ ଶିବଙ୍କୁ ବିଶ୍ୱାସ କରୁଥିଲେ ଓ ବିଭୂତି ଥିଲା ଶିବଙ୍କର ପ୍ରତୀକ । ଶୀଘ୍ର ଚର୍ଚ୍ଚା ଧର୍ମ ଆଡ଼କୁ ଟାଣି ହୋଇଗଲା । ସେ ଆମ ସମସ୍ତଙ୍କୁ ଜଣ ଜଣ କରି ଠିଆ କରେଇ ପଚାରିଲେ ଆମର ଭଗବାନଙ୍କ ପ୍ରତି ବିଶ୍ୱାସ ଅଛି କି ନାହିଁ ବୋଲି । ଜଣକୁ ଛାଡ଼ି ସମସ୍ତେ କହିଲେ ଯେ ସେମାନଙ୍କର ଭଗବାନଙ୍କ ପ୍ରତି ବିଶ୍ୱାସ ଅଛି । ସେଇ ଜଣେ ଥିଲି ମୁଁ । "ମୁଁ ଭଗବାନଙ୍କୁ ବିଶ୍ୱାସ କରେ ନାହିଁ", ମୁଁ କହିଲି । "କାହିଁକି ?" ପଚାରିଲେ ଶ୍ରୀ ନାୟକମ୍ । "କାହିଁକି ନୁହେଁ ସାର୍ ?" ମୁଁ କହିଲି, "ମୁଁ ଭଗବାନଙ୍କୁ ଦେଖିନି କି ମୋ ପାଖରେ କିଛି ପ୍ରମାଣ ନାହିଁ । ଯଦି କେବେ ମୁଁ ପ୍ରମାଣ ପାଇବି, ମୋର ବିଶ୍ୱାସ କରିବାର ଆବଶ୍ୟକତା ରହିବ ନାହିଁ । ତଥ୍ୟ ବିଶ୍ୱାସ କରିବାର ଅପେକ୍ଷା ରଖେ ନାହିଁ ।"

କିଛି ସମୟ ଚୁପ୍ ରହିବା ପରେ ସେ କହିଲେ, "ମୋର ଜଣେ ସହପାଠୀ ଥିଲା । ସେ ଭଗବାନଙ୍କୁ ବିଶ୍ୱାସ କରୁ ନ ଥିଲା । ତିରିଶ ବର୍ଷ ପରେ ମୁଁ ଯେତେବେଳେ ତାକୁ ଭେଟିଲି, ସେ ଲଣ୍ଡା ହୋଇ ସନ୍ନ୍ୟାସୀମାନଙ୍କ ପରି ଲୁଗା ପିନ୍ଧିଥିଲା । ସେ ରାମକୃଷ୍ଣ ମିଶନର

ସନ୍ନ୍ୟାସୀ ହୋଇଯାଇଥିଲା । ହଉ ଦେଖିବା, ହୁଏତ ଏହା ତୁମର ଭଗବତ୍‌–ସନ୍ଧାନର ଆରମ୍ଭ । ମୋତେ ଖୁସି ଲାଗୁଛି ଯେ ତୁମେ ସତ୍ୟବାଦୀ । ତୁମର ନାଁ କ'ଣ ?'' ମୁଁ ଯେତେବେଳେ ତାଙ୍କୁ ମୋର ନାଁ କହିଲି, ସେ ଆଶ୍ଚର୍ଯ୍ୟ ହୋଇଗଲେ । ବୋଧହୁଏ ସେ ମୋ ଧର୍ମର ଜଣେ ବାଳକଠାରୁ ଏକଥା ଶୁଣିବାର ଆଶା କରି ନ ଥିଲେ ଯେ ସେ ଆଲ୍ଲାହଙ୍କୁ ବିଶ୍ୱାସ କରେ ନାହିଁ । ମୁଁ ତାଙ୍କୁ ରାତିରେ ଯାହା ଯାହା ସବୁ ଘଟୁଥିଲା ମୋ ସହିତ, ସେସବୁ କହିବାକୁ ଆଗ୍ରହୀ ଥିଲି କିନ୍ତୁ କୌଣସି ଗୋଟାଏ ଅଜଣା ଶକ୍ତି ମୋତେ କାହା ସହିତ ନିଜର ଅନୁଭବକୁ ବାଣ୍ଟିବାପାଇଁ ଦେଲା ନାହିଁ ।

ସବାଶେଷରେ ଅଛନ୍ତି ଶ୍ରୀ କୁଞ୍ଚନ ଆଚାରୀ । ତାଙ୍କର ମହତ୍ତ୍ୱ କିନ୍ତୁ କମ୍ ନୁହେଁ । ସେ ଡ୍ରଇଂ, ପେଣ୍ଟିଂ ଓ ବେଳେବେଳେ ବଢ଼େଇକାମ ମଧ୍ୟ ଶିଖାଉଥିଲେ । କିନ୍ତୁ ସବୁଠାରୁ ବଡ଼ କଥା ଥିଲା ଯେ, ସେ ସ୍କୁଲ ନାଟକମଣ୍ଡଳୀର ପ୍ରେରଣାସ୍ରୋତ ଥିଲେ । ତାଙ୍କର ମାର୍ଗଦର୍ଶନରେ ମାଲୟାଲମ ଓ ଇଂରେଜୀ ଭାଷାର ନାଟକସବୁ ମଞ୍ଚସ୍ଥ କରାଯାଉଥିଲା । ଆମେ, ଯେଉଁମାନେ ଇଂରେଜି ମାଧ୍ୟମରେ ଶିକ୍ଷା ପାଉଥିଲୁ, ସେମାନେ ସେକ୍ସପିୟରଙ୍କର 'ମର୍ଚ୍ଚେଣ୍ଟ୍ ଅଫ୍ ଭେନିସ୍'ର ଗୋଟାଏ କୋର୍ଟ ଦୃଶ୍ୟରେ ଅଭିନୟ କରିଥିଲୁ । ମୁଁ ହୋଇଥିଲି ଏଣ୍ଟୋନିଓ, କିନ୍ତୁ ଫର୍ଣ୍ଣାଣ୍ଡିଜ୍ ସାଇଲକର ପାର୍ଟ୍‌ରେ ଏତେ ସୁନ୍ଦର ଅଭିନୟ କରିଥିଲା ଯେ ଆମର ନାଟକ ରାଜ୍ୟସ୍ତରୀୟ ଯୁବା–ମେଳାପାଇଁ ମନୋନୀତ ହେଲା ଓ ପୁରସ୍କାର ପାଇଲା । କେଭିନ୍ ଫର୍ଣ୍ଣାଣ୍ଡିଜ ପରେ ସେନାବାହିନୀର ମେଡିକାଲ କଲେଜରେ କାମ କଲା ଓ ଏଆର୍ କମାଣ୍ଡର ହୋଇ ରିଟାୟାର କଲା ।

ମୋର ସ୍ନେହୀ ପ୍ରକୃତି ପାଇଁ ସ୍କୁଲରେ ମୋର ବହୁତ ସାଙ୍ଗ ଥିଲେ, କିନ୍ତୁ କେତେଜଣଙ୍କ ସହିତ ମୋର ବିଶେଷ ଘନିଷ୍ଠତା ଥିଲା । ସେମାନଙ୍କ ଭିତରେ ଜଣେ ଥିଲା ଗୁଜୁରାଟୀ ଭାଷା କହୁଥିବା ପିଲା ମେମନ ସିଦ୍ଧିକି, ଯାହାର ପୂର୍ବପୁରୁଷ ପୋରବନ୍ଦରରୁ ଆସିଥିଲେ । ତା'ର ଜେଜେବାପାଙ୍କର ଉଡୁଥିବା ଲମ୍ବା ଧଳା ଦାଢ଼ି ଓ ଗମ୍ଭୀର ମୁହଁ ହେତୁ ସେ ଓଲ୍ଡ୍ ଟେଷ୍ଟାମେଣ୍ଟ୍‌ର (old testament) ସନ୍ଥ ଭଳି ଦିଶୁଥିଲେ । ତା'ର ଜେଜେବାପା ଅବଦୁଲ୍ଲା ଇବ୍ରାହିମଙ୍କର ଚାଲାଇ ବଜାରରେ ସବୁଠାରୁ ବଡ଼ ହୋଲ୍‌ସେଲ୍ ଦୋକାନ ଥିଲା । ସିଦ୍ଧିକି ନିଜେ ଥିଲା ଦୁର୍ବଳ, ପତଳା ଓ ରୋଗଣା ପିଲା । ସେ ବୟସରେ ମଧ୍ୟ ସେ ଆଖିର ଗୁରୁତର ବେମାରିରୁ ଭୋଗୁଥିଲା ଓ ତା'ର ଗୋଟିଏ ଆଖି ପ୍ରାୟ ନଷ୍ଟ ହେବାକୁ ଯାଉଥିଲା । ମୁଁ ଭାବୁଥିଲି ଯେ ତା'ର ସ୍କୁଲର ଗୁଣ୍ଡା ଶ୍ରେଣୀର ପିଲାଙ୍କଠାରୁ ସୁରକ୍ଷା ଦରକାର । ତେଣୁ ମୁଁ ତା'ର ଘନିଷ୍ଠ ହୋଇଥିଲି ।

ତା' ଘର ମୋ' ଘରଠୁଁ ବେଶି ଦୂରରେ ନ ଥିଲା । ସେ ନିଜର ବାପା ମା' ଓ ବଡ଼ଭଉଣୀ ସହିତ ସେଠାରେ ରହୁଥିଲା । ମୁଁ ପ୍ରାୟ ତାଙ୍କ ଘରକୁ ଯାଉଥିଲି ଓ ତା' ମା'ଙ୍କ ସହିତ ମୋର ଗୋଟାଏ ସୌହାର୍ଦ୍ୟ ଗଢ଼ିଉଠିଥିଲା । ସେ ମୋତେ ଖୁଆଇବାକୁ ଭଲ ପାଉଥିଲେ । ଯଦିଓ ମୁଁ ତାଙ୍କୁ କୌଣସି କଥା କହି ନ ଥିଲି, ସେ ମୋର ମନ ଭିତରର ପରିସ୍ଥିତିକୁ ସଠିକ୍ ଭାବରେ ଅନୁମାନ କରିନେଇଥିଲେ । ସେ ସୂଫୀ ସନ୍ଥମାନଙ୍କର ଓ ଆଶ୍ଚର୍ଯ୍ୟ ଭାବରେ ବେମାର ଇତ୍ୟାଦି ଭଲ କରିଦେଉଥିବା (healers) ଲୋକମାନଙ୍କ ବିଷୟରେ କହି ମୋତେ ମୁଗ୍ଧ କରିଦେଉଥିଲେ ।

ଛୁଟିମାନଙ୍କରେ ସିଦ୍ଧିକି ପ୍ରାୟ ବମ୍ବେ ଯାଉଥିଲା । ମୁଁ ତା'ଠାରୁ ସେହି ବିରାଟ ଓ ଲୋଭନୀୟ ସହରର ନିଷିଦ୍ଧ ଆକର୍ଷଣର କାହାଣୀସବୁ ଶୁଣିବାପାଇଁ ସେ ଆସିବାର ଅପେକ୍ଷା କରୁଥାଏ । ସେ ସେଇସବୁ କାହାଣୀ ଶୁଣେଇବାର କଳାରେ ଓସ୍ତାଦ୍ ଥିଲା । ହିନ୍ଦୀ ସିନେମାର ନାୟକ ଓ ନାୟିକାମାନେ, ଅର୍ଥ ବଦଳରେ ଶଯ୍ୟାସଙ୍ଗିନୀ ହେବାକୁ ପ୍ରସ୍ତୁତ ଥିବା ନାରୀମାନେ, ବିଖ୍ୟାତ ତାଜମହଲ ହୋଟେଲ, ଗେଟଓ୍ୱେ ଅଫ୍ ଇଣ୍ଡିଆ, ଏଇସବୁ ଥିଲା ସିଦ୍ଧିକିର ପ୍ରିୟ ବିଷୟ ଆଉ ମୋର ଓ ଅନନ୍ତନାରାୟଣର କିଶୋର-କଳ୍ପନାପାଇଁ ଏହି କାହାଣୀଗୁଡ଼ିକ ଭାରି ଉତ୍ତେଜକ ଥିଲା ।

ଅନନ୍ତନାରାୟଣ, ସିଦ୍ଧିକି ଓ ମୋର ବନ୍ଧୁତା ପଛରେ ଏକ ଛୋଟ କିନ୍ତୁ କମ୍ ମହତ୍ତ୍ୱପୂର୍ଣ୍ଣ କାରଣ ନ ଥିଲା । ମୋତେ ଆଉ ସିଦ୍ଧିକିକୁ ଇଡ୍‌ଲି-ସମ୍ବର ଭାରି ପସନ୍ଦ ଥିଲା । ଯଦିଓ ମୋର ମା' ମଧ୍ୟ ଭାରି ଭଲ ଇଡ୍‌ଲି-ସମ୍ବର କରୁଥିଲେ କିନ୍ତୁ ଆମେ ଦେଖିଲୁ ଯେ ବନ୍ଧୁ ଅନନ୍ତନାରାୟଣର ମା' ଶାକାହାରୀ ଓ ବ୍ରାହ୍ମଣ ଥିବାରୁ ଏହି କାମରେ ଅଧିକ ନିପୁଣା ଥିଲେ । ସେ ଥିଲେ ଅତ୍ୟନ୍ତ ଅତିଥିପରାୟଣା । ନିଜ ପୁଅର ଆମ ପରି ଦି'ଜଣ ମୁସଲମାନ ସାଙ୍ଗଙ୍କୁ ନିଜର ସଂସ୍କାରୀ ବ୍ରାହ୍ମଣ ପରିବାରକୁ ସବୁବେଳେ ହସି ହସି ସ୍ୱାଗତ କରୁଥିଲେ ଓ ଆମର ପ୍ରିୟ ଖାଦ୍ୟ ପେଟପୂରା ଖାଇବାକୁ ଦେଉଥିଲେ; ତା' ଉପରେ ପୁଣି ଥିଲା ବଡ଼ କପ୍‌ରେ ଧୂଆଁ ଉଠୁଥିବା ଫିଲ୍‌ଟର କଫି ।

ବିଶ୍ୱନାଥ ଆୟାରଙ୍କ ପୁଅ ଅନନ୍ତନାରାୟଣର ମଧ୍ୟ ବମ୍ବେ ସହିତ ସମ୍ବନ୍ଧ ଥିଲା । ତା'ର ବାପା ସେଠାରେ ଜୀବନବୀମା ନିଗମରେ କାମ କରୁଥିବା ହେତୁ ସେ ଷଷ୍ଠଶ୍ରେଣୀ ପର୍ଯ୍ୟନ୍ତ ସେଠାରେ ପଢ଼ିଥିଲା । ବଦଳି ହେବାରୁ ବିଶ୍ୱନାଥ ଆୟାର ପରିବାର ସହିତ ତ୍ରିଭେନ୍ଦ୍ରମ ଚାଲିଆସିଲେ ।

ଜାଣେ ନାହିଁ ସୁସ୍ୱାଦୁ ଖାଦ୍ୟପାଇଁ ଆକର୍ଷଣ ନା ତା'ର ବଡ଼ ଭଉଣୀ ପ୍ରତି ମୋର ଆକର୍ଷଣ କି ଉଭୟ ପ୍ରତି ଆକର୍ଷଣ ହେତୁ ମୁଁ ତାଙ୍କ ଘରକୁ ସ୍ୱଳ୍ପ ବ୍ୟବଧାନରେ ଯାଉଥିଲି । ତେଣୁ ମୁଁ ବ୍ରାହ୍ମଣ ପରିବାର ବିଷୟରେ କେତେଗୁଡ଼ିଏ କଥା ଜାଣିଗଲି । ଯେମିତିକି ତାଙ୍କର ମାସିକ ଋତୁସ୍ରାବ ସମୟରେ ଅନନ୍ତନାରାୟଣର ମା'ଙ୍କୁ ରୋଷେଇଘର ମନା ଥିଲା । ଖାଦ୍ୟ ସେତେବେଳେ ଆହୁରି ସୁସ୍ୱାଦୁ ହେଉଥିଲା କାରଣ ବିଶ୍ୱନାଥ ଆୟାର ତାଙ୍କଠାରୁ ମଧ୍ୟ ଭଲ ରାନ୍ଧୁଣିଆ ଥିଲେ ।

ଏସବୁ ବ୍ୟତୀତ ଭାରତୀୟ ଜୀବନବୀମା ନିଗମରେ ଟାଇପିଷ୍ଟ ଭାବରେ କାମ କରୁଥିବା ଶ୍ରୀ ବିଶ୍ୱନାଥ ଆୟାରଙ୍କର ସେହି ଛୋଟ ଘରେ ଏମିତି ଗୋଟାଏ ଘଟଣା ଘଟିଲା, ଯାହା ପରବର୍ତ୍ତୀ ସମୟରେ ମୋର ଆଧ୍ୟାତ୍ମିକ ଜୀବନପାଇଁ ଭାରି ମହତ୍ତ୍ୱପୂର୍ଣ୍ଣ ସିଦ୍ଧ ହେଲା । ସେମାନଙ୍କ ଘରର ଗୋଟିଏ କୋଠରି ଖାଲି ପୂଜାପାଇଁ ଉଦ୍ଦିଷ୍ଟ ଥିଲା । ସେଥିରେ ଅନେକ ହିନ୍ଦୁ ଦେବ-ଦେବୀଙ୍କ ଚିତ୍ର ଥିଲା । ଭାରି ଧୈର୍ଯ୍ୟର ସହିତ ମୋତେ ସେମାନଙ୍କର ପରିଚୟ ଦିଆଯାଇଥିଲା । ସେମାନଙ୍କ ଭିତରେ ସବୁଠାରୁ ବଡ଼ ଓ କାନ୍ଥର ମୁଖ୍ୟ ସ୍ଥାନରେ ଜଣେ ବ୍ୟକ୍ତିଙ୍କର ଚିତ୍ର ଥିଲା, ଯେ ଚିରାଫଟା ଲୁଗା ପିନ୍ଧି ନିଜର ମଥାରେ ନିଜ ଢଙ୍ଗରେ କପଡ଼ା ଗୁଡ଼େଇ, ଜଣେ ମୁସଲମାନ ଫକିର ପରି ଦିଶୁଥିଲେ ।

ମୁଁ ଏଇ ପ୍ରଥମଥର ଶିରିଡ଼ିର ସାଇଁବାବାଙ୍କ ଚିତ୍ର ଦେଖିଲି । 1918 ରେ ତାଙ୍କର ଦେହାନ୍ତ ହୋଇଯାଇଥିଲା । ଏଠି ଏହି ବ୍ରାହ୍ମଣ ପରିବାରରେ ସେହି ମୁସଲମାନ ଫକିରଙ୍କୁ ଦେବତାଙ୍କର ସ୍ଥାନ ଦିଆଯାଇଥିଲା । ସେମାନେ ତାଙ୍କର ସ୍ତୁତି କରୁଥିଲେ, ଭଜନ ଗାଉଥିଲେ, ଘଣ୍ଟି ବଜାଉଥିଲେ ଓ ଆରତି କରୁଥିଲେ । ମୋର କୌତୂହଳ ହେଲା । କେତେଥର ଗୁରୁବାର ଦିନ (ଯେଉଁ ଦିନଟି ସାଇଁବାବାଙ୍କର ବିଶେଷ ଦିନ ବୋଲି କୁହାଯାଏ), ମୁଁ ବି ପ୍ରାର୍ଥନାରେ ସାମିଲ ହୋଇଯାଉଥିଲି । ଏମିତିକି ସେତିକିବେଳେ ମୁଁ ହିନ୍ଦୀରେ ମୋର ପ୍ରଥମ ଭଜନ ଲେଖିଲି– 'ହେ ପ୍ରଭୁ, ହେ ସାଇଁନାଥ' । ଶ୍ରୀ ବିଶ୍ୱନାଥ ଆୟାର ମୋତେ ଶିରିଡ଼ିର ସାଇଁବାବାଙ୍କର ସଂକ୍ଷିପ୍ତ ପରିଚୟ ଦେଲେ ଓ ତାଙ୍କ ଅନୁସାରେ ସେ ସାଇଁବାବାଙ୍କୁ ଭଗବାନ ବୋଲି ବିଶ୍ୱାସ କରନ୍ତି ବୋଲି କହିଲେ । ମୁଁ ତାଙ୍କ କଥା ଶୁଣିଲି ଓ ମୋର ମନ ଆଶ୍ଚର୍ଯ୍ୟରେ ଭରିଗଲା ।

ଦିନେ ରାତିରେ ମୁଁ ଯେତେବେଳେ ନିୟମିତ ଆଶୁ-ଧ୍ୟାନମଗ୍ନ ଥିଲି, ସେତିକିବେଳେ ସାଧାରଣତଃ ମୋ ହୃଦୟରେ ପ୍ରକଟ ହେଉଥିବା ଜ୍ୟୋତିରେ ସାଇଁବାବାଙ୍କ ଆକୃତି

ଦିଶିଲେ, ମୋ ସାମ୍ନାରେ ଆସି ଠିଆ ହୋଇଗଲେ ଏବଂ ପୁଣି ସେଇ ଅସାଧାରଣ ଯୋଗୀଙ୍କର ରୂପରେ ପରିବର୍ତ୍ତିତ ହୋଇଗଲେ, ଯାହାଙ୍କୁ ମୁଁ ପଣସଗଛ ତଳେ ଦେଖିଥିଲି । ସେ ଘଟଣା ବିଷୟରେ କାହାକୁ ଜଣା ନାହିଁ କାରଣ ସେକଥା ମୁଁ କାହାକୁ କହିପାରି ନ ଥିଲି । ମୁଁ ଶିରିଡ଼ି ସାଇଁବାବାଙ୍କ ସହିତ ନିଜର ସମ୍ବନ୍ଧ ବିଷୟରେ, ନିଜର ପ୍ରଥମ ଶିରିଡ଼ି ଯାତ୍ରା ବିଷୟରେ ଆପଣମାନଙ୍କୁ ବର୍ତ୍ତମାନ କିଛି କହୁ ନାହିଁ, ଉଚିତ ସମୟରେ ସେକଥା କହିବି ।

କେରଳର ତ୍ରିଚୁରଠାରେ ଥିବା ଗୁରବାୟୁର ମନ୍ଦିରକୁ ମୋର ପ୍ରବେଶ ପଛରେ ମଧ୍ୟ ବିଶ୍ୱନାଥ ଆୟାରଙ୍କର ଭୂମିକା ଥିଲା ।



# ୪. ଶ୍ରୀ ନାରାୟଣ ଗୁରୁଙ୍କ କାହାଣୀ

ମୋର ଆହୁରି କେତେଜଣ ଘନିଷ୍ଠ ବନ୍ଧୁ ଥିଲେ, ଯେମିତି ନାରାୟଣ ପ୍ରସାଦ, ଯେ ଡାକ୍ତର ହେଲା ଏବଂ ଜାକାରିୟା ଓ ତା'ର ଭାଇ ମାମେନ ଜାକାରିୟା । ଜାକାରିୟାର ବାପା ଖ୍ରୀଷ୍ଟଧର୍ମ ବିଷୟରେ ପ୍ରବଚନ ଦେଉଥିଲେ (ଇଭାଙ୍ଗେଲିଷ୍ଟ) । ଜାକାରିୟା ବି ଡାକ୍ତର ହେବାପରେ ଆମେରିକା ଚାଲିଗଲା । ସେଠାରେ ସେ ଥିଲା ପୂର୍ବତନ ରାଷ୍ଟ୍ରପତି ଜର୍ଜ ଡବ୍‌ଲିଉ ବୁଶ୍‌ଙ୍କର ବ୍ୟକ୍ତିଗତ ହୃଦ୍‌ରୋଗ ବିଶେଷଜ୍ଞ ଏବଂ ସେ ରିପବ୍ଲିକାନ୍ ପାର୍ଟିପାଇଁ ଚାନ୍ଦା ମଧ୍ୟ ଆଦାୟ କରୁଥିଲା ।

ଶୋହନ ଦାସ, ସୁଧୀର, ଭେଙ୍କଟେଶ୍ୱର, ଯେ ସେତେବେଳେ ମଧ୍ୟ ନିଜକୁ ଜଣେ ବୈଜ୍ଞାନିକ ବୋଲି ଭାବୁଥିଲା ଏବଂ ଅନ୍ୟ କେତେଜଣ ମଧ୍ୟ ଥିଲେ । କିନ୍ତୁ ଯାହା ସହିତ ମୋର ବିଶେଷ ବନ୍ଧୁତା ଥିଲା, ସେ ଥିଲା ରଞ୍ଜିତ ସଦାଶିବନ୍ ।

ନବମ ଶ୍ରେଣୀରେ ରଞ୍ଜିତ୍ ମଡେଲ ହାଇସ୍କୁଲକୁ ଆସିଲା । ସେ ଥିଲା ନବମ ଶ୍ରେଣୀର 'ବି' ବିଭାଗରେ ଓ ମୁଁ ଥିଲି 'ଏ' ବିଭାଗରେ । ପ୍ରଥମଦେଖାରୁ ହିଁ ଆମ ମଧ୍ୟରେ ପରସ୍ପର ପ୍ରତି ସ୍ନେହ ଓ ଆକର୍ଷଣର ଭାବ ଆସିଯାଇଥିଲା, ଯାହା ବର୍ଷ ପରେ ବର୍ଷ ବଢ଼ିଚାଲିଲା । ସେ ଥିଲା ଲମ୍ବାଚଉଡ଼ା ସାହସୀ ପିଲା, ସେ କାହାକୁ ଡରୁ ନଥିଲା ଏବଂ ଅନ୍ୟାୟ ବିରୁଦ୍ଧରେ ଲଢ଼ିବାକୁ ସଦାବେଳେ ପ୍ରସ୍ତୁତ ଥିଲା । ସେ ସେନାଦ୍ୱାରା ପରିଚାଳିତ ସୈନିକ ସ୍କୁଲରୁ ମଡେଲ ସ୍କୁଲକୁ ଆସିଥିଲା । ତା' ଯୋଗୁ ମୋର ବନ୍ଧୁତା ହେଲା ବେଲାୟୁଧନ ନାୟାର ସହିତ, ଯେ ପରେ ଏୟାର କମୋଡର ହେଲା; ମାଧବନ ନାୟାର ସହିତ, ଯେ ଭାଇସ୍ ଆଡମିରାଲ ହେଲା; ରାଧାକୃଷ୍ଣନ ସହିତ ଯେ ଏୟାର ଭାଇସ୍ ମାର୍ଶାଲ ହେଲା; ଆଉ ମୋହନ ଚାନ୍ଦ ସହିତ ଯେ ୱିଙ୍ଗ କମାଣ୍ଡର ଥିଲାବେଳେ ସ୍ୱେଚ୍ଛାରେ ଅବସର ନେଲା ଓ ଭାରତୀୟ ସେନା ଅକାଦେମୀରେ ପ୍ରବେଶ କରିବାକୁ ଇଚ୍ଛୁକ ଥିବା ଯୁବକମାନଙ୍କୁ ପ୍ରଶିକ୍ଷଣ ଦେବାର ଏକ ସ୍କୁଲ ଖୋଲିଲା ।

ରଂଜିତ୍ ଇଢ଼ବା ଜାତିର ପିଲା ଥିଲା । ଶହେ ପଚାଶ ବର୍ଷ ତଳେ ମଧ୍ୟ ସେମାନେ ସମାଜର ନିମ୍ନ ସ୍ତରରେ ଥିଲେ । ମହାନ ଶ୍ରୀ ନାରାୟଣ ଗୁରୁଙ୍କର କାର୍ଯ୍ୟ ଏବଂ ଆଶୀର୍ବାଦରୁ

ଇଡ଼ବା ଜାତି ନିମ୍ନ ସ୍ତର ତ୍ୟାଗକରି ସଫଳତାର ଶିଡ଼ି ଚଢ଼ିବା ଆରମ୍ଭ କଲା । ମୁଁ ଯେଉଁ ସମୟ କଥା କହୁଛି, ସେମାନେ ସେତେବେଳକୁ ଶିକ୍ଷିତ ଓ ବିତ୍ତଶାଳୀ ହୋଇ ସାରିଥିଲେ ଏବଂ ସାମାଜିକ ଓ ରାଜନୈତିକ ସ୍ତରରେ ମଧ୍ୟ ଈର୍ଷା ଉଦ୍ରେକକାରୀ ସ୍ଥିତିରେ ଥିଲେ ।

ଶ୍ରୀ ନାରାୟଣ ଗୁରୁ 1854 ମସିହାର ପାଖାପାଖି ସମୟରେ ତ୍ରିଭେନ୍ଦ୍ରମ ସହରର ବାହାରେ ଚେମ୍ପଲନ୍ତୀ ଗାଆଁରେ ଏକ ଇଡ଼ବା ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାପା ମଦନ ଆସନ କେବଳ ଜଣେ କୃଷକ ନ ଥିଲେ, ଜଣେ ବିଦ୍ୱାନ ମଧ୍ୟ ଥିଲେ । ଜ୍ୟୋତିର୍ବିଦ୍ୟା ଓ ଆୟୁର୍ବେଦୀୟ ଔଷଧ ବିଷୟରେ ତାଙ୍କର ଗଭୀର ଜ୍ଞାନ ହେତୁ ସେ ଜଣେ ପଣ୍ଡିତ ଭାବରେ ଜଣାଶୁଣା ଥିଲେ । ଗାଆଁ ଲୋକେ ତାଙ୍କୁ 'ଆସନ' ବୋଲି ସମ୍ବୋଧନ କରୁଥିଲେ, ଯାହା ସଂସ୍କୃତର 'ଆଚାର୍ଯ୍ୟ' ଶବ୍ଦର ଅପଭ୍ରଂଶ ଥିଲା । ସେ ରାମାୟଣ ଓ ମହାଭାରତର ବ୍ୟାଖ୍ୟା ମଧ୍ୟ କରୁଥିଲେ ।

ଏଠି ମନେରଖିବା ଉଚିତ ଯେ ସେ ସମୟରେ ସଂସ୍କୃତ ଭାଷାର ଜ୍ଞାନ ନମ୍ବୁଦ୍ରି ବ୍ରାହ୍ମଣମାନଙ୍କର କଡ଼ା ପହରାରେ ଥିଲା ଏବଂ ଅବ୍ରାହ୍ମଣମାନଙ୍କୁ ବେଦପାଠର ଅଧିକାର ନ ଥିଲା । ଅବ୍ରାହ୍ମଣମାନଙ୍କ ମଧ୍ୟରେ କେବଳ ବୈଦ୍ୟମାନଙ୍କୁ, ଯେଉଁମାନେ ଆୟୁର୍ବେଦ ପ୍ରୟୋଗ କରି ଲୋକମାନଙ୍କର ଚିକିତ୍ସା କରୁଥିଲେ, ସେମାନଙ୍କୁ ସଂସ୍କୃତ ଶିଖି ଆୟୁର୍ବେଦର ଗ୍ରନ୍ଥ ଯେପରି ଚରକ ସଂହିତା, ସୁଶ୍ରୁତ ସଂହିତା ଅଧ୍ୟୟନ କରିବାର ଅଧିକାର ଦିଆଯାଇଥିଲା । କିନ୍ତୁ ସେମାନଙ୍କପାଇଁ ଅନ୍ୟ କୌଣସି ସଂସ୍କୃତ ଗ୍ରନ୍ଥ ପଢ଼ିବା ନିଷିଦ୍ଧ ଥିଲା ।

ନାରାୟଣଙ୍କୁ ପନ୍ଦର ବର୍ଷ ହୋଇଥିଲାବେଳେ ଓ ତାଙ୍କର ମା'ଙ୍କୁ ତିରିଶ ବର୍ଷ ହୋଇଥିଲାବେଳେ ତାଙ୍କର ପିତାଙ୍କର ଦେହାନ୍ତ ହୋଇଗଲା । ସେତେବେଳକୁ ନାରାୟଣ, ଯାହାଙ୍କୁ ନାନୁ ବୋଲି ଡାକୁଥିଲେ, ତାଙ୍କୁ ଲୋକମାନେ 'ନାନୁ ଆସନ' ବୋଲି ସମ୍ବୋଧନ କରିବା ଆରମ୍ଭ କରିଦେଇଥିଲେ ଅର୍ଥାତ୍ 'ନାନୁ ପଣ୍ଡିତ' । ସେ ଚାରିଆଡ଼େ ବୁଲି ବୁଲି ଶିକ୍ଷା ଦେଉଥିଲେ ଓ ଭିକ୍ଷା ଉପରେ ନିର୍ଭର କରି ଚଳୁଥିଲେ । କେତେ ମାସରେ ଥରେ ଲେଖାଏଁ ଘରକୁ ଆସୁଥିଲେ ।

ସେ ଆୟୁର୍ବେଦର ଅଧ୍ୟୟନରୁ ଆଗକୁ ଯିବାର ସାହସ କଲେ । ବେଦ ଓ ବୈଦାନ୍ତିକ ଗ୍ରନ୍ଥଗୁଡ଼ିକର ଗଭୀର ଅଧ୍ୟୟନ କଲେ ଏବଂ କେତେଜଣ ବିଦ୍ୟାର୍ଥୀଙ୍କୁ ସଂସ୍କୃତ ପଢ଼ାଇଲେ । ରକ୍ଷଣଶୀଳ ଲୋକମାନେ ନୀଚଜାତିର ଲୋକମାନଙ୍କୁ ଅଲଗା ରଖିବାକୁ ଚାହୁଁଥିଲେ ମଧ୍ୟ ନାନୁଙ୍କୁ ଜଣେ ଜଣେ ଅସାଧାରଣ ଉଚ୍ଚଜାତିର ସଂସ୍କୃତ ଶିକ୍ଷକ ମିଳିଗଲେ, ଯେ ସମସ୍ତଙ୍କୁ ସମାନ ବୋଲି ଭାବୁଥିଲେ । ଖୁବ୍‌ଶୀଘ୍ର ନାନୁ କାବ୍ୟ, ନାଟକ, ସାହିତ୍ୟିକ ଆଲୋଚନା, ଅଳଙ୍କାର ଶାସ୍ତ୍ରର ଅଧ୍ୟୟନ ସାରିଦେଲେ । ଉପନିଷଦ ତ ସେ ନିଜେନିଜେ ହିଁ ପଢୁଥିଲେ । ସେ ଦୂରଦୂରାନ୍ତକୁ ଯାତ୍ରା କରୁଥିଲେ । ଦକ୍ଷିଣର

କନ୍ୟାକୁମାରୀଠାରୁ ଉତ୍ତରର ମାଙ୍ଗାଲୋର ପର୍ଯ୍ୟନ୍ତ ଅଧ୍ୟୟନ କରି, ଧ୍ୟାନ କରି ଓ ଆତ୍ମଚେତନାର ଅନ୍ୱେଷଣ କରି ସେ ଘୂରିବୁଲୁଥିଲେ ।

ଆଉ ଦି'ଜଣ ଶିକ୍ଷକ ନାନୁଙ୍କୁ ପ୍ରଭାବିତ କରିଥିଲେ । ଜଣେ ଥିଲେ କୁଂଜନ ପିଲ୍ଲାଇ, ଯାହାଙ୍କୁ ଚଟ୍ଟମ୍ବୀ ସ୍ୱାମୀ ନାଁରେ ବି ଲୋକମାନେ ଜାଣୁଥିଲେ । ରମଣ ପିଲ୍ଲାଇଙ୍କର ଅଳଙ୍କାର ଶାସ୍ତ୍ରର ଶ୍ରେଣୀରେ ସେ ପ୍ରଧାନ ଶିଷ୍ୟ ଥିଲେ । ପରେ ସେ ନାନୁଙ୍କର ଭ୍ରମଣସଙ୍ଗୀ ହୋଇଗଲେ । ଅନ୍ୟ ଜଣେ ତାମିଲମୂଳର ଠୈକାଡ଼ ଆୟାଭୂ ନାମକ ବ୍ୟକ୍ତି ଥିଲେ । ସେ ତ୍ରିଭେନ୍ଦ୍ରମରେ ବ୍ରିଟିଶ ରେସିଡେଣ୍ଟଙ୍କର ବଙ୍ଗଳାର ମ୍ୟାନେଜର ଥିଲେ । ତାଙ୍କଠାରୁ ନାନୁ ତାମିଲ ଆଧ୍ୟାତ୍ମିକ ପରମ୍ପରାର ସୁରକ୍ଷିତ ଗୁପ୍ତ ଯୋଗଶିକ୍ଷାଗୁଡ଼ିକ ଶିଖିଲେ । ସଂକ୍ଷେପରେ କୁହାଯାଇ ପାରିବ ଯେ, ନାରାୟଣ ଗୁରୁ ଏମିତି ଜଣେ ବ୍ୟକ୍ତି ଭାବରେ ଉଭା ହେଲେ, ଯେ ନିଜର ଚେତନାର ଗଭୀରତା ମଧ୍ୟକୁ ଲମ୍ଫ ପ୍ରଦାନ କରିସାରିଥିଲେ ଏବଂ ସର୍ବବ୍ୟାପୀ ଆତ୍ମନ୍‌ଙ୍କର ସାକ୍ଷାତ ଲାଭ କରିସାରିଥିଲେ । ଏହାର ଉଲ୍ଲେଖ ଉପନିଷଦଗୁଡ଼ିକରେ କରାଯାଇଛି ।

ଆନ୍ତରିକ ଅନୁଭବ ତ ଗୋଟାଏ ପଟରେ ଆଧ୍ୟାତ୍ମିକ ଶିକ୍ଷା ରୂପରେ ପ୍ରସ୍ଫୁଟିତ ହେଲା, ଦ୍ୱିତୀୟପଟେ ସମାଜ ସଂସ୍କାର ରୂପରେ ମଧ୍ୟ ପ୍ରକଟିତ ହେଲା ବିଶେଷ ଭାବରେ ତାଙ୍କର ପତ୍ନୀଙ୍କର ମୃତ୍ୟୁ ପରେ (ଅବଶ୍ୟ ତାଙ୍କ ସହିତ ନାରାୟଣଙ୍କର ନାମମାତ୍ର ସମ୍ପର୍କ ଥିଲା) । ନାନୁ ପୂର୍ଣ୍ଣଭାବରେ ଘୂରିବୁଲୁଥିବା ସନ୍ନ୍ୟାସୀରେ ପରିଣତ ହେଲେ । ତାଙ୍କର ଅନେକ ଅନୁଗାମୀ ଥିଲେ । ଲୋକମାନେ ତାଙ୍କୁ ଶ୍ରୀ ନାରାୟଣ ଗୁରୁ ବୋଲି ଡାକିବା ଆରମ୍ଭ କଲେ । ସେ ପୁରୁଣା ପରିତ୍ୟକ୍ତ ମନ୍ଦିରଗୁଡ଼ିକର ଜୀର୍ଣ୍ଣୋଦ୍ଧାର କରି ପ୍ରଥା ଅନୁଯାୟୀ ବ୍ରାହ୍ମଣ ନ ଡାକି ନିଜେ ଦେବ-ମୂର୍ତ୍ତି ସ୍ଥାପନା କଲେ । ଗୋଟିଏ ମନ୍ଦିରରେ, ଯେଉଁଠାରେ ମୂର୍ତ୍ତି ନ ଥିଲେ, ସେଠାରେ ସେ ଗୋଟିଏ ଦର୍ପଣ ସ୍ଥାପିତ କଲେ ଓ ସେ ବେଦାନ୍ତର ଉକ୍ତି 'ମାନବ ତୁ ନିଜକୁ ଜାଣ'ର ପ୍ରଦର୍ଶନ କଲେ ।

ସେ ଆଲୱେ ନିକଟରେ ଏକ ଆଶ୍ରମ ସ୍ଥାପିତ କଲେ । ଅନ୍ୟ ଗୋଟିଏ ଆଶ୍ରମ ବର୍କଲାରେ ଗୋଟିଏ ପର୍ବତ ଉପରେ ସ୍ଥାପନ କରି ତାକୁ 'ଶିବଗିରି' ନାଁ ଦେଲେ । ଏହା ତ୍ରିଭେନ୍ଦ୍ରମଠାରୁ ଦୂର ନୁହେଁ । ଏହି ଶିବଗିରି ଆଶ୍ରମରେ କେରଳରେ ପ୍ରଥମଥର ପାଇଁ ବ୍ରାହ୍ମଣେତର ଛାତ୍ରମାନଙ୍କୁ ବୈଦିକ ଶାସ୍ତ୍ରଗୁଡ଼ିକର ଅଧ୍ୟୟନପାଇଁ ସୁଯୋଗ ଦିଆଗଲା । (ମୁଁ ମଧ୍ୟ ମୋର ଭ୍ରମଣ ସମୟରେ ଶିବଗିରି ଆଶ୍ରମରେ ଦି' ମାସ ବିତାଇଥିଲି ।)

ବେଦାନ୍ତର ମହାନ ସତ୍ୟଗୁଡ଼ିକୁ ସରଳ ଭାଷାରେ ବ୍ୟକ୍ତ କରିବାକୁ ଯାଇ ସେ କହିଥିଲେ, ''ମନୁଷ୍ୟର ଗୋଟିଏ ଜାତି, ଗୋଟିଏ ଧର୍ମ ଏବଂ ତା'ର ଗୋଟିଏ ଈଶ୍ୱର ।

ସମସ୍ତେ ଗୋଟିଏ ଗର୍ଭରୁ ଜନ୍ମ ନେଇଛନ୍ତି, ସମସ୍ତଙ୍କର ଏକ ପ୍ରକାରର ଆକାର, କୌଣସି ଭିନ୍ନତା ସେମାନଙ୍କ ମଧ୍ୟରେ ନାହିଁ ।'' ସେ ନିଜର ଅନୁଗାମୀମାନଙ୍କୁ ନିଜର ଦୀନ ଭାବନାଗୁଡ଼ିକୁ ପରିତ୍ୟାଗପୂର୍ବକ ଅନନ୍ତ ଉଚ୍ଚତାକୁ ସ୍ପର୍ଶ କରିବାକୁ କହିଥିଲେ । ଚଉସ୍ତରି ବର୍ଷ ବୟସରେ 1928 ମସିହା ସେପ୍ଟେମ୍ବର 20 ତାରିଖ ଦିନ ତାଙ୍କର ମୃତ୍ୟୁ ହୋଇଥିଲା । ସେ ନିଜ ପଛରେ ଏକ ମହାନ୍ ଆଧ୍ୟାତ୍ମିକ ଓ ସାମାଜିକ ପରମ୍ପରା ଛାଡ଼ିଯାଇଥିଲେ ।

ଆସନ୍ତୁ ରଞ୍ଜିତ୍ ପାଖକୁ ପୁଣି ଫେରିଯିବା । ମୋତେ ତା'ର ଗୋଟାଏ ଗୁଣ ଭାରି ଭଲ ଲାଗୁଥିଲା । ସେହି ଗୁଣଟି ଥିଲା, ବନ୍ଧୁର ରକ୍ଷାପାଇଁ ଯେକୌଣସି ବିପଦର ସାମ୍ନା କରିବାକୁ ସେ ପ୍ରସ୍ତୁତ ଥିଲା । ଏହା ବାରମ୍ବାର ପ୍ରମାଣିତ ହୋଇଥିଲା, କାରଣ ବେଳେବେଳେ ଆମର କୌଣସି ଉତ୍ତମ ବନ୍ଧୁକୁ ଅସାମାଜିକ ବ୍ୟକ୍ତିଙ୍କଠାରୁ ରକ୍ଷା କରିବାପାଇଁ ତାକୁ ଗଳିମାନଙ୍କରେ ଝଗଡ଼ା କରିବାକୁ ପଡୁଥିଲା ।

ଏହାଛଡ଼ା ରାମକୃଷ୍ଣ ପରମହଂସ ଦେବଙ୍କ ଭାଷାରେ ରଞ୍ଜିତ୍ ମୋର 'ଯୋଗାଣଦାର' ହୋଇଯାଇଥିଲା । ଯେତେବେଳେ ମୋତେ କୌଣସି ସ୍ଥାନକୁ ଏକାନ୍ତବାସ ପାଇଁ ଯିବାକୁ ଇଚ୍ଛା ହେଉଥିଲା, ସେତେବେଳେ ରଞ୍ଜିତ୍ ମୋର ଯାତ୍ରା ପାଇଁ ଖର୍ଚ୍ଚବାର୍ଚ୍ଚର ବନ୍ଦୋବସ୍ତ କରୁଥିଲା । ସେ ହିଁ ଜଣେ ଥିଲା, ଯାହା ପାଖରେ ମୋର ଖବର ରହୁଥିଲା । ମୁଁ କେଉଁଠି ଅଛି, ମୋତେ କେମିତି ଖବର ଦିଆଯାଇ ପାରିବ ଇତ୍ୟାଦି ସବୁ ବିଷୟରେ ସେ ଅବଗତ ଥିଲା । ସେ ମୋର ମା' ବାପାଙ୍କୁ ସାନ୍ତ୍ୱନା ଦେଇ କହୁଥିଲା ଯେ, ସେ ମୋ' ସହିତ ସମ୍ପର୍କରେ ଅଛି ଏବଂ କୌଣସି ଜରୁରୀ ପରିସ୍ଥିତିରେ ସେ ମୋତେ ଫେରେଇ ଆଣିପାରିବ । ସେ ସଦାବେଳେ କୌଣସି ପ୍ରଶ୍ନ ନ କରି ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲା । ତା'ରି ଘରେ ହିଁ ମୁଁ ପ୍ରଥମେ ଶ୍ରୀ ନାରାୟଣ ଗୁରୁଙ୍କର ଫଟୋ ଦେଖିଥିଲି ।



# ୭. ଅଦ୍ଭୁତ ଏବଂ ସମୟୋଚିତ ଜ୍ଞାତବ୍ୟ

ଆନ୍ତରିକ ପରିବର୍ତ୍ତନର ପ୍ରକ୍ରିୟା ଆରମ୍ଭ ହୋଇସାରିଥିଲା । ମୋର ଅସ୍ତିତ୍ୱର ଅଭ୍ୟନ୍ତରରେ ଚେତନାର ନଦୀ ନୂତନ ଉପନଦୀମାନଙ୍କୁ ଜନ୍ମ ଦେଉଥିଲା । ଯେଉଁଗୁଡ଼ିକ ଅନନ୍ତ ମହାସମୁଦ୍ରରେ ମିଶିଯିବାକୁ ଯାଉଥିଲେ । ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାପାଇଁ ବାହ୍ୟ ସାମଗ୍ରୀଗୁଡ଼ିକ ମୋତେ ଜୁଟିଯାଉଥିଲା । ଯଦି ମୋତେ ଯୋଗାଭ୍ୟାସ ବା ଦର୍ଶନର ସୂକ୍ଷ୍ମ ପ୍ରଶ୍ନଗୁଡ଼ିକର ଉତ୍ତର ଆବଶ୍ୟକ ହେଉଥିଲା, ତେବେ ଯେମିତି ମନ୍ତ୍ରବଳରେ ମୋତେ ଏପରି ସବୁ ପୁସ୍ତକ ମିଳିଯାଉଥିଲା, ଯେଉଁଥିରେ ସେହି ବିଷୟଗୁଡ଼ିକର ଆଲୋଚନା ରହିଥିଲା । ବଡ଼ ହେଲାପରେ ମୋତେ ଏକା ଏକା ବୁଲିବାର ଅନୁମତି ମିଳିଲା ଆଉ ମୁଁ ତ୍ରିଭେନ୍ଦ୍ରମର ସାର୍ବଜନୀନ ପାଠାଗାରକୁ ଯିବା ଆରମ୍ଭ କରିଦେଲି । ସେଇଟି ଗୋଟିଏ ଭିକ୍ଟୋରୀୟ କୋଠା ଥିଲା ଏବଂ ଦର୍ଶନ, ଧର୍ମ ଓ ଆନୁଷ୍ଠାନିକ ମନ୍ତ୍ରତନ୍ତ୍ର ଆଦିର ମଧ୍ୟ ଏକ ଅମୂଲ୍ୟ ଭଣ୍ଡାର ଥିଲା ।

ଜଣେ ଲମ୍ବା ବାଳ ଓ ଦାଢ଼ି ରଖିଥିବା ବ୍ୟକ୍ତି ସେହି ପାଠାଗାରର ଅଧ୍ୟକ୍ଷ ଥିଲେ । ତାଙ୍କର ନାଁ ଆଉ ମୋର ମନେ ନାହିଁ କିନ୍ତୁ ସେ ନିଜେ ନିଜେ ନିଜକୁ ମୋର ମାର୍ଗଦର୍ଶକ ଭାବିନେଲେ ଏବଂ ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା, ସେ ଠିକଣା ସମୟରେ ଠିକଣା ବହି ପଢ଼ିବାର ପରାମର୍ଶ ଦେଲେ । ଏହିପରି ଭାବରେ ମୁଁ ସ୍ୱାମୀ ବିବେକାନନ୍ଦଙ୍କର ସବୁ ଲେଖା, ରାମକୃଷ୍ଣ ପରମହଂସଙ୍କ କଥାମୃତ, ମାଡାମ୍ ବ୍ଲାଭାଟ୍‌ସ୍କିଙ୍କର 'Isis Unveiled', 'The Secret Doctrine', 'The Zohar', ଉପନିଷଦଗୁଡ଼ିକ, ଭଗବଦ୍ ଗୀତା ଏବଂ ଗ୍ରୀସୀୟ ଦାର୍ଶନିକ ଆରିଷ୍ଟୋଟଲ୍, ପ୍ଲାଟୋ ଏବଂ ଅନ୍ୟ ଅନେକଙ୍କ ଦ୍ୱାରା ଲିଖିତ ବହିଗୁଡ଼ିକ ପଢ଼ିଲି ।

ଦି'ଟା ଘଟଣା ଏପରି ବିଚିତ୍ର ଥିଲା ଯେ ମୁଁ ସେଗୁଡ଼ିକୁ କେବଳ ସଂଯୋଗ ବୋଲି ମାନିବାକୁ ପ୍ରସ୍ତୁତ ନୁହେଁ । ଦିନେ ମୁଁ ବ୍ରିଟିଶ କାଉନ୍‌ସିଲର ପାଠାଗାରକୁ ଯାଇଥିଲି । ଏହା ଆମ ଘରଠାରୁ ବେଶି ଦୂରରେ ନ ଥିଲା । ବେଦାନ୍ତର ଶାସ୍ତ୍ରୀୟ ପୁସ୍ତକ ବିଦ୍ୟାରଣ୍ୟଙ୍କ

ଦ୍ୱାରା ରଚିତ ପଞ୍ଚଦଶୀ ପଢୁଥିବାବେଳେ ମୋତେ କିଛି ତଥ୍ୟ ପରସ୍ପରବିରୋଧୀ ପରି ଲାଗିଲା । ବ୍ରିଟିଶ କାଉନ୍‌ସିଲ୍ ପାଠାଗାରରେ ଏମିତି କିଛି ବହିର ସନ୍ଧାନ କରୁଥିଲି ଯାହା ମୋର ସନ୍ଦେହ ଦୂର କରିପାରିବ । ମୁଁ ଦର୍ଶନ ଓ ଧର୍ମ ସମ୍ବନ୍ଧୀୟ ବିଭାଗର ବହିପତ୍ର ଘାଣ୍ଟି ମୋର ଆବଶ୍ୟକୀୟ ପୁସ୍ତକ ପାଇଲି ନାହିଁ ।

ସେତିକିବେଳେ ମୁଁ ଥାକର ତଳେ ଥିବା ଡକ୍ଟର ରାଧାକୃଷ୍ଣନ୍‌ଙ୍କଦ୍ୱାରା ଅନୂଦିତ ହୋଇଥିବା ଓ ତାଙ୍କଦ୍ୱାରା ବ୍ୟାଖ୍ୟା କରାଯାଇଥିବା ପୁସ୍ତକଟିକୁ ଦେଖିଲି । ମୁଁ ତାକୁ ବାହାର କରିବାପାଇଁ ଟାଣୁଥିବା ସମୟରେ ତିନିଟା ବନ୍ଧେଇ ହୋଇଥିବା ବହି ସବା ଉପରଥାକରୁ ଖସି ମୋର ବେକ ଉପରେ ପଡ଼ିଲା । ମୁଁ ବେକ ଆଉଁଶୁ ଆଉଁଶୁ ସେଗୁଡ଼ିକୁ ଉଠେଇଲି । ସେଥିରୁ ଗୋଟିଏ ଥିଲା ଆଲ୍‌ଡସ୍ ହକ୍ସଲେଙ୍କର 'ଦି ପେରିନିଆଲ୍ ଫିଲସୋଫି' ଅନ୍ୟ ଦୁଇଟି ଥିଲା ଜେ. କୃଷ୍ଣମୂର୍ତ୍ତିଙ୍କର 'ଦି କମେଣ୍ଟରିଜ୍ ଅନ୍ ଲିଭିଙ୍ଗ୍'ର ପ୍ରଥମ ଦ୍ୱିତୀୟ ଖଣ୍ଡ । ଏହା ଥିଲା କୃଷ୍ଣମୂର୍ତ୍ତିଙ୍କ ଦର୍ଶନ ସହିତ ମୋର ପ୍ରଥମ ପରିଚୟ । ଏଇଠି ମୁଁ କହିରଖିବା ଉଚିତ ଯେ, ଯଦ୍ୟପି ମୁଁ ବିଭିନ୍ନ ବିଷୟ ଉପରେ କୃଷ୍ଣମୂର୍ତ୍ତିଙ୍କ ବିଚାରଧାରା ସହିତ ପୂରାପୂରି ଭାବରେ ସହମତ ନ ଥିଲି, 'ଦି କମେଣ୍ଟରିଜ୍ ଅନ୍ ଲିଭିଙ୍ଗ୍' କିନ୍ତୁ ମୋର ବେଦାନ୍ତ-ବିଷୟକ ଅନେକ ସନ୍ଦେହର ସମାଧାନ କରିବାରେ ନିଶ୍ଚିତ ରୂପରେ ସହାୟକ ହୋଇଥିଲା । କିନ୍ତୁ ମୁଁ ବୁଝିପାରିଲି ନାହିଁ, ବହିଗୁଡ଼ିକ ଉପରୁ ଖସି ମୋ ଉପରେ ପଡ଼ିଲା କେମିତି, ସେଠାରେ ତ ମୋ' ଛଡ଼ା ଆଉ କେହି ନ ଥିଲେ !

ଦ୍ୱିତୀୟ ଘଟଣା ଏହାଠାରୁ ମଧ୍ୟ ଅଧିକ ଆଶ୍ଚର୍ଯ୍ୟଜନକ ଥିଲା । ମୋର ବୟସ ଥିଲା ଚଉଦ ବର୍ଷ ଓ ସେତେବେଳ ସୁଦ୍ଧା ମୁଁ ଯୋଗ, ଦର୍ଶନ, ଧର୍ମ, ରହସ୍ୟବାଦ ଇତ୍ୟାଦି ବିଷୟରେ ଅନେକଗୁଡ଼ିଏ ବହି ପଢ଼ିସାରିଥିଲି । ମୋର ହୃଦୟ ମଧ୍ୟରେ ଆବିର୍ଭୂତ ହେଉଥିବା ଆଲୋକ ଉପରେ ମୋର ସ୍ୱତଃସ୍ଫୂର୍ତ୍ତ ଧ୍ୟାନ ଚାଲୁରହିଥାଏ । କିନ୍ତୁ ମୁଁ କିଛି କଠିନ ସମସ୍ୟାର ସାମ୍ନା କରୁଥିଲି । ବିଭିନ୍ନ ଗୁରୁ, ଆଉ ବିଭିନ୍ନ ଗ୍ରନ୍ଥ ହୃଦୟଚକ୍ରର ସ୍ଥାନ ପରିବର୍ତ୍ତନ କରିଦେଉଥିଲେ । ରମଣ ମହର୍ଷିଙ୍କ କଥା ଅନୁସାରେ ହୃଦୟଚକ୍ର ଛାତିର ଡାହାଣପଟେ ଥାଏ । କବୀର-ପନ୍ଥୀମାନେ ଓ ରାମକୃଷ୍ଣ ପରମହଂସ କହୁଥିଲେ ଯେ ହୃଦୟଚକ୍ର ପ୍ରକୃତରେ ରହିଛି ଛାତିର ବାଁ ପଟେ ।

ହଠଯୋଗ ପ୍ରଦୀପିକା ସହିତ ଯୋଗଶାସ୍ତ୍ରର ଗ୍ରନ୍ଥଗୁଡ଼ିକରେ ଛାତିର ମଧ୍ୟଭାଗରେ ହୃଦୟଚକ୍ର ରହିଛି ବୋଲି ଉଲ୍ଲେଖ କରାଯାଇଛି ଏବଂ ଏହାକୁ ଅନାହତଚକ୍ର ବୋଲି ନାମିତ

କରାଯାଇଛି । (ଏହା ହେଉଛି ସେହି ଚକ୍ର, ଯାହା ମୋ ଶରୀରରେ ମନକୁମନ କ୍ରିୟାଶୀଳ ହୋଇଯାଇଥିଲା) ରାମକୃଷ୍ଣ ପରମହଂସ ଓ ରମଣ ମହର୍ଷି, ଯେଉଁମାନେ ମୋର ବ୍ୟକ୍ତିଗତ ମତ ଅନୁସାରେ ଆଧ୍ୟାତ୍ମିକ ଅନୁଭବର ସର୍ବୋଚ୍ଚ ଶିଖରରେ ପହଞ୍ଚି ସାରିଥିଲେ, ସେମାନେ ଏକ ମହତ୍ତ୍ୱପୂର୍ଣ୍ଣ ଆତ୍ମିକ କେନ୍ଦ୍ରର ସ୍ଥାନ ବିଷୟରେ ପରସ୍ପର ବିରୋଧୀ ମତପୋଷଣ କରୁଥିଲେ – ଏହା ମୋତେ ବିଚଳିତ କରୁଥିଲା । ଯଦି ଜଣେ ଠିକ୍ କଥା କହୁଥିଲେ, ତେବେ ଅନ୍ୟ ଜଣକଙ୍କ କଥା ଭୁଲ ଥିଲା । ମୋର ତ ଏହି କେନ୍ଦ୍ରଗୁଡ଼ିକର ସ୍ଥିତି ବିଷୟରେ ଘୋର ସନ୍ଦେହ ହେଲା, କ'ଣ ଏହା ସବୁ ନିଛକ କଳ୍ପନା ଥିଲା ମୋର ଓ ଅନ୍ୟମାନଙ୍କର ମଧ୍ୟ ?

ମୋ ମତରେ ମୋର ଆଧ୍ୟାତ୍ମିକ ଯାତ୍ରାରେ ଏହା ପ୍ରଥମ ଘୋର ସଂକଟ ଥିଲା । ମୁଁ ଠିକଣା କଲି ଯେ, ମୋତେ ଶୀଘ୍ର ଏଥିରୁ ବାହାରି ଆସିବାକୁ ପଡ଼ିବ । ମୁଁ ଗୋଟାଏ ଯୋଜନା ପ୍ରସ୍ତୁତ କଲି । ସେତେବେଳକୁ ମୋର ଟ୍ୟୁସନ ଶିକ୍ଷକ ଶ୍ରୀ ରାମସ୍ୱାମୀ ଆମ ଘରଠୁଁ ବେଶ୍ ଦୂର ମନକାଡ଼ ବୋଲି ଗୋଟିଏ ଜାଗାରେ ଯାଇ ରହୁଥିଲେ । ମୁଁ ତାଙ୍କ ଘରକୁ ଯିବା ବନ୍ଦ କରିଦେଇଥିଲି । ଦିନେ ମୁଁ ମୋ ସ୍କୁଲରେ ପଢୁଥିବା ତାଙ୍କର ଶ୍ୟାଳକକୁ କହିଲି ଯେ, ଗଣିତର କେତେଗୁଡ଼ିଏ କଠିନ ବିଷୟ ବୁଝିବାପାଇଁ ମୁଁ ରାମସ୍ୱାମୀଙ୍କ ସହିତ ଦେଖା କରିବାକୁ ଚାହେଁ । ମୋ ବାପା ମା'ଙ୍କୁ ମଧ୍ୟ ସେଇ କଥା କହିଲି ଓ ଜିଦ୍ କରି କହିଲି ଯେ, ଯଦି ଡେରି ହୋଇଯାଏ, ତେବେ ମୁଁ ସେହିଠାରେ ହିଁ ଶୋଇଯିବି ଓ ପରଦିନ ଫେରିଆସିବି । ପରଦିନଟା ଥିଲା ରବିବାର ।

ଏଇଥରଟା ମୁଁ ପ୍ରଥମକରି ଘର ବାହାରେ ରାତି କଟେଇବାକୁ ଯାଉଥିଲି । ପ୍ରଥମେ କିଛିଟା ବ୍ୟସ୍ତ ହେଲେ ମଧ୍ୟ ମା' ରାଜି ହୋଇଗଲେ । ପ୍ରକୃତରେ ଜ୍ୟାମିତିରେ ଏମିତି ଗୋଟାଏ କଠିନ ପ୍ରଶ୍ନ ଥିଲା, ଯାହାର ସମାଧାନ କେବଳ ରାମସ୍ୱାମୀଙ୍କ ସାହାଯ୍ୟରେ ହିଁ କରିହେବ, କିନ୍ତୁ ଯିବାର କାରଣ ଭାବରେ ଏହା କେବଳ ଅର୍ଦ୍ଧସତ୍ୟ ଥିଲା ।

ଶ୍ରୀ ରାମସ୍ୱାମୀଙ୍କ ଘରଠାରୁ ଅଳ୍ପ ଦୂରରେ ଗୋଟିଏ ନିର୍ଜନ ଜଙ୍ଗଲ ଥିଲା, ଯାହାକୁ ସମାଧିତୋଟମ୍ କୁହାଯାଉଥିଲା । ମୁଁ ଠିକଣା କରିଥିଲି ଯେ ଟ୍ୟୁସନ ପରେ ମୁଁ ଘରକୁ ଯାଉଛି ବୋଲି ରାମସ୍ୱାମୀଙ୍କୁ କହି ଘରକୁ ନ ଯାଇ ସମାଧିତୋଟମ୍କୁ ଯାଇ ସେଠାରେ ରାତିଟା ବିତାଇବି, ଏହା ଥିଲା ସତ୍ୟର ବାକି ଅର୍ଦ୍ଧେକ । ମୋର ଏହି ସାହସିକ ପଦକ୍ଷେପ ବିଷୟରେ କହିବା ପୂର୍ବରୁ, ମୁଁ ସମାଧିତୋଟମ୍ ବିଷୟରେ ଓ ମୁଁ ସେଠାକୁ କାହିଁକି ଯିବାକୁ ଚାହୁଁଥିଲି, ସେ ବିଷୟରେ କହିବି ।

ମନକାଡ଼ର ଗୋଟାଏ ନିର୍ଜନ କୋଣରେ ନଡ଼ିଆ ଓ ଅନ୍ୟାନ୍ୟ ଗଛର ଗୋଟାଏ ଅବହେଳିତ ବଣ ପରି ଜାଗା ଥିଲା । କେହି ତାହାର ଦେଖାଶୁଣା କରୁ ନ ଥିଲେ ଓ ପ୍ରାୟ

କୁକୁର ଓ ଶିଆଳମାନେ ସେଠି ବୁଲଚାଲ କରୁଥିଲେ । ସେହିଠାରେ ଗୋଟାଏ ବୁଢ଼ା ବରଗଛ ତଳେ ତ୍ରିଭେନ୍ଦ୍ରମର ମହାରାଜା ଆଇଲ୍ୟମ୍ ତିରନାଲଙ୍କ ଶାସନକାଳ (୧୮65–୧୮୮0)ରେ ରହୁଥିବା ଜଣେ ମହାନ୍ ଯୋଗୀ ରାମଦାସ ବାବାଜିଙ୍କର ସମାଧି ରହିଛି । ଯେମିତି ମୁଁ ପୂର୍ବରୁ କହିଛି, ସମାଧି ଏମିତି ଗୋଟାଏ ପ୍ରକାରର କବର ବୋଲି କୁହାଯାଏ, ଯାହା ଭିତରେ କିଛି ମହାତ୍ମା ଓ ଯୋଗୀ ସ୍ୱେଚ୍ଛାରେ ପ୍ରବେଶ କରିଥାଆନ୍ତି । ଜୀବସମାଧି ତ ଆହୁରି ସ୍ୱତନ୍ତ୍ର । ଏଥିରେ ଯୋଗୀ ନିଜେ ନିଜେ ଯାଇ ପୋତାହେବାପାଇଁ ଖୋଳା ହୋଇଥିବା ଗାତରେ ଚକା ପକାଇ ବୁଦ୍ଧ ମୁଦ୍ରାରେ ବସିଯାଆନ୍ତି ଏବଂ ନିଜର ଶିଷ୍ୟମାନଙ୍କୁ ଗାତଟି ପୋତି ଦେବାର ନିର୍ଦ୍ଦେଶ ଦିଅନ୍ତି ।

ମନକାଡ଼ର ସମାଧିକୁ 'ଜୀବ ସମାଧି' ବୋଲି କୁହାଯାଉଥିଲା । ମୁଁ ଶୁଣିଥିଲି ଯେ ପୂର୍ବରୁ ଶ୍ରୀ ଗୋପାଳସ୍ୱାମୀଙ୍କ ସହିତ ଅନେକ ବଡ଼ ବଡ଼ ସନ୍ନ୍ୟାସୀ ସମାଧିତୋଟମ୍‌ରେ ଧ୍ୟାନ କରିଛନ୍ତି ଏବଂ ସେମାନଙ୍କୁ ପ୍ରବୁଦ୍ଧ କରିବା ପରି ଅନୁଭୂତି ମଧ୍ୟ ଲାଭ କରିଛନ୍ତି । ମୁଁ ଭାବିଲି, ମୁଁ ବି ସେପରି କରିବି, ହୁଏତ ମୋର ସନ୍ଦେହମୋଚନ ହୋଇଯିବ । ଏଇଟା ସତ ଯେ, ମୁଁ ସମାଧି-ତୋଟା ଯାଉଛି ବୋଲି ଘରେ ବା ଟ୍ୟୁସନ ସାର୍‌ଙ୍କ ଘରେ, କେଉଁଠାରେ ମଧ୍ୟ କହି ନ ଥିଲି ।

ମୋର ସାଙ୍ଗ ମାର୍ତ୍ତଣ୍ଡ ପିଲ୍ଲାଇ ସହିତ ମୋର ହଠାତ୍ ଦେଖା ହୋଇଗଲା । କିଛି ବାଟ ମୋ ସହିତ ସେ ଗଲା, କିନ୍ତୁ କୌଣସିମତେ ତା' କବଳରୁ ଖସି ଏକୁଟିଆ ସମାଧି-ତୋଟା ଆଡ଼କୁ ଚାଲିଲି । ଥରେ ଦି'ଥର ଠିକଣା ପଚାରି ମୁଁ ସମାଧିରେ ପହଞ୍ଚିଗଲି । ବୋଧହୁଏ ସାଢ଼େ ନ'ଟା ବାଜିଥିବ, କିନ୍ତୁ ମୁଁ ଠିକ୍‌ରେ କହି ପାରିବିନି କାରଣ ମୋ ପାଖରେ ଘଣ୍ଟା ନ ଥିଲା ।

ଗୋଟାଏ ଛୋଟ ଫାଟକ ଥିଲା, ଯେଉଁଟା ଖୋଲା ଥିଲା । ଭିତରେ କିଛି ଆଲୁଅ ନ ଥିଲା । କେବଳ ସମାଧି ଉପରେ ଥିବା ଗୋଟିଏ ଦୀପପାଇଁ ଉଦ୍ଦିଷ୍ଟ ଛୋଟ ଘର ଭିତରେ ତେଲର ଦୀପ ଜଳୁଥିଲା । ପବନ ହେତୁ ଶିଖାଟା କମ୍ପୁଥିଲା । ମୋତେ ଭାରି ଡର ଲାଗୁଥାଏ । ଟିକିଏ ଦୂରରୁ ଶିଆଳମାନଙ୍କର ଭୁକା ସ୍ୱର ଭାସିଆସୁଥାଏ । କୌଣସି ଜନମାନବ ପାଖଆଖରେ ନ ଥାନ୍ତି । ଧିମା ଆଲୁଅରେ ପବନରେ ହଲୁଥିବା ଗଛଲଟାବୁଦା ଭିତରେ ବିଚିତ୍ର ଜନ୍ତୁଜାନୁଆରମାନଙ୍କର ବିଷୟରେ କଳ୍ପନା ମୋ ମନକୁ ଆସୁଥାଏ । ମୁଁ କିଛିଟା କମ୍ ପବନ ଲାଗୁଥିବା ସମାଧିର ପଛପଟେ ବସିଗଲି । ହଠାତ୍ ପବନ ଜୋର୍‌ରେ ବହିବା ଆରମ୍ଭ କଲା । ଜହ୍ନର ଅଧା ବାଦଲ ଉହାଡ଼ରୁ ବାହାରି ଆସିଲା, ଗୋଟାଏ

ଅପାର୍ଥିବ ଶାନ୍ତି ମୋର ଦେହ-ମନକୁ ଢାଙ୍କିଦେଲା । ମୁଁ ସମାଧିକୁ ଲାଗି ବସିଗଲି ଏବଂ ଖୁବ୍‌ଶୀଘ୍ର ଶୋଇପଡ଼ିଲି କାରଣ ମୁଁ ଭାରି ଥକିଯାଇଥିଲି ।

କହିପାରିବି ନାହିଁ ମୁଁ କେତେ ସମୟ ଯାଏଁ ଶୋଇରହିଥିଲି । କିନ୍ତୁ ଉଠିପଡ଼ିଲି କାରଣ ମୋତେ ଲାଗିଲା କିଏ ଯେମିତି ମୋର ଗୋଡ଼କୁ ଧରି ହଲଉଛି । ମୁଁ ଉଠିଯାଇ ବସିପଡ଼ିଲି । ମୋର ରୁମଗୁଡ଼ା ଠିଆ ହୋଇଗଲା ଓ ସାରା ଶରୀର ରୋମାଞ୍ଚିତ ହୋଇଗଲା । ମୁଁ ଡରରେ ପଥର ପାଲଟିଗଲି । ମୋ ପାଖରେ କିଏ ଜଣେ ବସିଥିଲେ । ସହାନୁଭୂତିର ସହିତ ତାଙ୍କୁ ବର୍ଣ୍ଣନା କଲେ ଏହିପରି ହେବ – ବିକୃତ ଓ ଭୟ ଉଦ୍ରେକକାରୀ ସେ ଜଣେ ଅତି ପତଳା, ପ୍ରାୟ କଙ୍କାଳସାର, କଳା, ଲଙ୍ଗଳା ଲୋକ ଥିଲେ । ତାଙ୍କର ଆଖି ପଶିଯାଇଥିଲା ଓ ଲମ୍ବା ଲମ୍ବା ଜଟା ଓ ଦାଢ଼ି ଥିଲା । କେବଳ ଗୋଟାଏ ସାନ୍ତ୍ୱନାର କଥା ଥିଲା ଯେ, ତାଙ୍କର ଅପରିଷ୍କାର ଦେହରୁ ତୀବ୍ର ସୁଗନ୍ଧ ବାହାରୁଥିଲା ।

ନିଜର ଲମ୍ବା ନଖ ଥିବା ସରୁ ସରୁ ଆଙ୍ଗୁଠିରେ ମୋର କାନ୍ଧକୁ ଥାପୁଡ଼େଇ ସେ କହିଲେ, 'ଡର ନାହିଁ' ଓ ନିଜର ହଳଦିଆ ହଳଦିଆ ଦାନ୍ତ ଦେଖାଇ ବିଚିତ୍ର ଭାବରେ ହସିଲେ । ତାଙ୍କର ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାରରେ ଉତ୍ସାହିତ ହୋଇ ମୁଁ ପଚାରିଲି, "ଆପଣ କିଏ ?" "ମୁଁ ? ହା ! ହା ! ହା ! କେହି ନୁହେଁ,କେହି ନୁହେଁ, କେବଳ ଧୂଆଁ, ଆଉ ବାଷ୍ପ ।" ମୁଁ ଚୁପ୍ ହୋଇ ରହିଲି । "ଆଚ୍ଛା, ତା'ହେଲେ ତୁମର ଗୋଟାଏ ସମସ୍ୟା ଅଛିନା ? ଜାଣିପାରୁ ନାହଁ ହୃଦୟଚକ୍ର କେଉଁଠାରେ ଅଛି, ନୁହେଁ ? ସେ ସବୁଠାରେ ଅଛି, ଏଠି, ସେଠି, ସବୁଠି, ହା ! ହା ! ଭିନ୍ନ ଭିନ୍ନ ଲୋକଙ୍କ କ୍ଷେତ୍ରରେ ଭିନ୍ନ ଭିନ୍ନ ସ୍ଥାନରେ ପ୍ରକଟ ହୁଏ । ସେଥିରେ କୌଣସି ବିବାଦ ନାହିଁ ।" ତା'ପରେ ମୋର ଛାତିର ମଧ୍ୟଭାଗକୁ ଥାପୁଡ଼େଇଲେ । "ତୁମର ଠିକ୍ ଏଇଠି ଅନାହତ, ତୁମେ ଏହା ଉପରେ ସ୍ଥିର ହୁଅ, ଏହା ବାବାଜୀଙ୍କର ଆଜ୍ଞା ।"

ଗୋଟାଏ ବାଇଗଣୀ ରଙ୍ଗର ଆଲୋକରେ ମୋର ହୃଦୟଚକ୍ର ଭରିଗଲା । ଏପରି ଆଲୋକ ମୁଁ ପୂର୍ବରୁ କେବେ ଦେଖି ନ ଥିଲି । ଆଖି ଖୋଲା ଥାଇ ମଧ୍ୟ ମୁଁ ତାହାକୁ ଅନୁଭବ କରୁଥାଏ । ତାଙ୍କର କଥାର ଉତ୍ତର ଦେବା ପୂର୍ବରୁ ସେ ଅଚାନକ ଠିଆ ହୋଇପଡ଼ିଲେ ଓ ଅନ୍ଧାର ଭିତରକୁ ଦୌଡ଼ି ଚାଲିଗଲେ । ମୋତେ ଲାଗିଲା ଯେମିତି ବହୁ ଦୂରରେ ଏକ ଶ୍ୱେତ ଆଲୋକର ଶିଖା ଜଳିଉଠିଲା କିମ୍ବା ମୁଁ ଖାଲି କଳ୍ପନା କରୁଥିଲି ? ସେଇଟା ଥିଲା

ମୋର ତାଙ୍କ ସହିତ ଶେଷ ସାକ୍ଷାତ ।

ମୋର ଆଖି ସେପର୍ଯ୍ୟନ୍ତ ଖୋଲା ଥାଏ । ମୁଁ ବାଇଗଣୀ ଆଲୋକର ଆନନ୍ଦ ଉପଭୋଗ କଲି । କିଛି ଡର ଭୟ ନ ଥାଏ । ଧୀରେ ଧୀରେ ଭୋର ହୋଇଆସିଲା ଓ ରାତିର ଅନ୍ଧାର ମିଳେଇଗଲା । ତାହା ସହିତ ବାଇଗଣୀ ଆଲୋକ ମଧ୍ୟ ଲୁପ୍ତପ୍ରାୟ ହୋଇଗଲା । ମୁଁ ଠିଆ ହୋଇଗଲି । କେହି କେଉଁଠି ନ ଥାନ୍ତି । ମୁଁ ପ୍ରାୟ ତିନି କିଲୋମିଟର ଚାଲିବା ପରେ ମୋତେ ଗୋଟାଏ ବସ୍ ମିଳିଗଲା । ତେନ୍ତୁଳିଗଛ ପାଖରେ ଥିବା ବସ୍ ଷ୍ଟପ୍‌ରେ ଓହ୍ଲେଇ ଘରେ ପହଞ୍ଚିଗଲି ।

କେବଳ ମୋ' ମା'ଙ୍କ ଛଡ଼ା ଆଉ କେହି କିଛି ପଚାରିଲେ ନାହିଁ । ମା' ପଚାରିଲେ, "ଟ୍ୟୁସନ୍ କେମିତି ହେଲା ?" ମୁଁ କହିଲି, "ଠିକ୍‌ଠାକ୍ ।" "ଏବେ ଯାଇ ଗାଧୋଇପଡ଼ ଆଉ ଜଳଖିଆ କର । ମୁଁ ଇଡିଅପ୍ପମ୍ ଆଉ ଆଳୁ ତରକାରି ବନେଇଛି ।"

ଜଳଖିଆ ଖାଉଥିଲାବେଳେ ମୁଁ ରାତିର ଅଭିଯାନର ଅଭିଜ୍ଞତା ଭିତରେ ହଜିଯାଇଥିଲି ।



# 10. ମସ୍ତାନଙ୍କର ଆଶୀର୍ବାଦ

ସାଢ଼େ ପନ୍ଦର ବର୍ଷ ବୟସରେ ମୁଁ ଦଶମଶ୍ରେଣୀ ପାସ୍ କରିଗଲି । ନ' ନମ୍ବର ପାଇଁ ପ୍ରଥମଶ୍ରେଣୀ ପାଇଲି ନାହିଁ କାରଣ କଷ୍ଟକର ଗଣିତ ଆଉ ହିନ୍ଦୀ ନ ପଢ଼ି ମୁଁ ବିଦ୍ୟାରଣ୍ୟ ବେଦାନ୍ତ ଉପରେ ଲେଖିଥିବା ପଞ୍ଚଦଶୀର ଇଂରେଜୀ ଅନୁବାଦ ପଢ଼ିବାରେ ବ୍ୟସ୍ତ ରହିଲି ।

ଯେଉଁ କେତେଜଣ ପିଲାଙ୍କୁ ସେମାନଙ୍କର ମା' ବାପା ଲୟଲା କଲେଜରେ ପଢ଼େଇବାକୁ ଠିକଣା କଲେ, ସେମାନଙ୍କ ଭିତରେ ମୁଁ ଜଣେ ଥିଲି । ଏହି କଲେଜ ତ୍ରିଭେନ୍ଦ୍ରମର ବାହାରପଟେ କିଛିଦିନ ତଳେ ହିଁ ଶ୍ରୀକାର୍ଯମ୍‌ରେ ଖୋଲା ହୋଇଥିଲା । କେତେଜଣ ସାଙ୍ଗ ସରକାରୀ ମାଧ୍ୟମିକ ବିଦ୍ୟାଳୟ ଗଲେ । କେତେଜଣ ମାର୍ ଇଭେନିୟସ୍ ଏବଂ ମହାତ୍ମାଗାନ୍ଧୀ ବିଦ୍ୟାଳୟକୁ ଗଲେ । କିଛି ପୁରୁଣା ବନ୍ଧୁତାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା, କିଛି ନୂଆ ଆରମ୍ଭ ହେଲା । ମୋର କେତେଜଣ ପୁରୁଣା ସାଙ୍ଗ ଲୟଲା କଲେଜର ଛାତ୍ରାବାସରେ ରହୁଥିଲେ । ମୁଁ ଦିବାଧାୟୀ ଛାତ୍ର ହେବି ବୋଲି ଠିକଣା କଲି । ବସ୍‌ରେ କଲେଜ ଯିବାକୁ ମୋତେ ଘଣ୍ଟାକରୁ ଅଧିକ ସମୟ ଲାଗୁଥିଲା ।

ମୁଁ ମୋର କେତେଜଣ ସାଙ୍ଗଙ୍କୁ ଭୁଲିଯିବା ଉଚିତ ହେବ ନାହିଁ । ସେମାନେ ହେଲେ ଥମାସ କୁରିୟନ, ରାଜରାଜା ବର୍ମା, ଜନି ଜୋସେଫ । ସେଇଟା ସେଇ ସମୟ ଥିଲା ଯେତେବେଳେ ମୁଁ ସ୍ୱାଧୀନ ହେବା ଆରମ୍ଭ କରିଥିଲି । ଏବେ ମୁଁ ଦରକାର ପଡ଼ିଲେ ଏଣୁତେଣୁ ବାହାନା କରି ଅଳ୍ପ ସମୟପାଇଁ ଘର ବାହାରେ ରହିପାରୁଥିଲି । ଚଉଦ ବର୍ଷରୁ ଊଣେଇଶ ବର୍ଷ ପର୍ଯ୍ୟନ୍ତ ସମୟ ଭିତରେ ମୋର ଅନେକ ସାଧାରଣ ଓ ଅସାଧାରଣ ଅନୁଭୂତି ହୋଇଥିଲା ।

ପଛକୁ ଫେରି ଚାହିଁଲେ ନିଶ୍ଚିତ ଭାବରେ ମୋତେ ଲାଗୁଛି ଯେ, ଉଚ୍ଚତର ଆଧ୍ୟାତ୍ମିକ ପରିମଣ୍ଡଳକୁ ଆରୋହରଣ କରିବାପାଇଁ ମୋର ମସ୍ତିଷ୍କକୁ ପରିପକ୍ୱ ଏବଂ ଶକ୍ତ କରିବାପାଇଁ ସେହିସବୁ ଅନୁଭୂତିର ଆବଶ୍ୟକତା ଥିଲା । ଯାହାପାଇଁ ସାଧାରଣ ପରିସ୍ଥିତିରେ ଡଜନ ଡଜନ ବର୍ଷର ଆବଶ୍ୟକତା ହୁଏ, ତାହା ସାନ୍ଦ୍ରିତ ରୂପରେ

ପାଞ୍ଚବର୍ଷ ମଧ୍ୟରେ ଘଟିଗଲା ।

ସାଂସାରିକ ରୂପରେ ମୋତେ ସେହିସବୁ ଜିନିଷର ସ୍ୱାଦ କରାଇ ଦିଆଗଲା, ଯାହା ସବୁ ନିଷିଦ୍ଧ ବୋଲି ଜଣାଯାଏ । ସେସବୁ ଥିଲା ଡ୍ରଗ୍, ମଦ ଏବଂ ଆହୁରି ବହୁତ ସବୁ ଜିନିଷ, ଯାହା ସେହି ବୟସର ନବଯୁବକମାନେ କରୁଥିଲେ । କିନ୍ତୁ ସମୟ ଥାଉ ଥାଉ ମୋତେ ସେହି ସବୁରେ ବୁଡ଼ିଯିବାରୁ ବଞ୍ଚେଇ ଦିଆଗଲା । କୌଣସି ବ୍ୟକ୍ତି ବା କିଛି ଜିନିଷ ମୋ ଉପରେ ନଜର ରଖିଥିଲା ଆଉ ମୋତେ ରକ୍ଷା କରୁଥିଲା । ପରେ ମୋର ଗୁରୁ ମୋର ଏହି ସମୟକୁ ମୋର 'ତାନ୍ତ୍ରିକ ଚରଣ' ବୋଲି କହୁଥିଲେ । ଆଜି ବି ମୁଁ ମୋର ସେହିସବୁ ସାଙ୍ଗମାନଙ୍କୁ ଏବଂ ଚିହ୍ନାପରିଚିତଙ୍କୁ, ଯେଉଁମାନଙ୍କର ମୋର ସେହିସବୁ ଅନୁଭବରେ ହାତ ଥିଲା, ସେମାନଙ୍କୁ ମୋର ଉପ-ଗୁରୁ ବୋଲି ମାନେ ଓ ଆନ୍ତରିକ ଧନ୍ୟବାଦ ଦିଏ ।

ମୋତେ ସେତେବେଳେ ଜଣା ନ ଥିଲା ଯେ, ମଦ୍ୟପୀ, ଡ୍ରଗ୍-ଆସକ୍ତ ଏବଂ ଅତ୍ୟନ୍ତ ପଥଭ୍ରଷ୍ଟ ଲୋକମାନେ ମୋ ପାଖକୁ ମୋର ସହାୟତାପାଇଁ ଆସିବେ । ଯଦି ମୁଁ ସେହି ପାଞ୍ଚବର୍ଷରେ ଉକ୍ତ ବିଷୟଗୁଡ଼ିକରେ ଗଭୀର ଜ୍ଞାନ ଆହରଣ କରି ନ ଥାନ୍ତି, ତାହାହେଲେ ହୁଏତ ମୁଁ ସେମାନଙ୍କ ସମସ୍ୟା ବୁଝିପାରି ନ ଥାନ୍ତି ଏବଂ ସେମାନଙ୍କୁ ସାହାଯ୍ୟ କରିପାରି ନ ଥାନ୍ତି । ଏମିତି ମଧ୍ୟ ହୋଇପାରିଥାନ୍ତା ଯେ ମୁଁ ନିଜେ ସେମାନଙ୍କ ପରି ଦୟନୀୟ ଓ ଭୟଙ୍କର ଜୀବନ ଆଡ଼କୁ ଆକର୍ଷିତ ହୋଇଯାଇଥାଆନ୍ତି ।

ଆଧ୍ୟାତ୍ମିକ ସ୍ତରରେ କ'ଣ ହେଲା, ସେହି ବିଷୟରେ ମୁଁ କିଛି ବିସ୍ତାରିତ ଭାବରେ କହିବାକୁ ଚାହେଁ କାରଣ ଏହି ପୁସ୍ତକଟି ହେଉଛି ମୋର ଆଧ୍ୟାତ୍ମିକ ଜୀବନ ଚରିତ ।

ପ୍ରଥମେ ମୁଁ ଆପଣଙ୍କୁ ମୋର କଲଡ଼ି ମସ୍ତାନଙ୍କ ସହିତ ସାକ୍ଷାତ ବିଷୟରେ କହୁଛି । ଆପଣମାନଙ୍କର ମନେଥିବ ମୁଁ ପଞ୍ଚମ ଅଧ୍ୟାୟରେ ବର୍ଣ୍ଣନା କରିଥିଲି ଯେ, କିପରି ମୋର ସମୁଦ୍ର କୂଳରେ ସୁଫୀ ସନ୍ଥଙ୍କ ସମାଧି ପାଖରେ ଜଣଙ୍କ ସହିତ ଦେଖା ହୋଇଥିଲା, ଯେ ପାଗଳ ପରି ଦିଶୁଥିଲା ବୋଲି । ସେ ମୋ ଆଡ଼କୁ ଚାହିଁଥିଲା, ହସିଥିଲା ଓ କହିଥିଲା, "ଆଚ୍ଛା ଆଚ୍ଛା, ଯା, ପରେ ଆସିବୁ ବାପା ।" ସେତେବେଳେ ମୁଁ ତାଙ୍କ କଥାରେ ବେଶି ଗୁରୁତ୍ୱ ଦେଇ ନ ଥିଲି, କିନ୍ତୁ ବର୍ତ୍ତମାନ, ପାଞ୍ଚ ଛ' ବର୍ଷ ପରେ ମୁଁ ପୁଣି ସେହି ବ୍ୟକ୍ତିଙ୍କ ସାମ୍ନାରେ ଥିଲି । ମୋର ଏହା ଥିଲା ତାଙ୍କ ସହିତ ଦ୍ୱିତୀୟ ସାକ୍ଷାତ ।

ଷୋ'ଳ ବର୍ଷ ବୟସରେ କଲେଜରେ ବର୍ଷେ ବିତାଇବା ପରେ ମୁଁ ଏନ୍.ସି.ସି.ରେ ଭର୍ତ୍ତି ହୋଇଗଲି ଓ ମୋତେ ମହାତ୍ମାଗାନ୍ଧି କଲେଜ ପଡ଼ିଆରେ ସେନା ସହିତ ସଂଯୁକ୍ତ କ୍ୟାମ୍ପପାଇଁ ବଛାଗଲା । କ୍ୟାମ୍ପରେ ତିନିଦିନ ରହିବା ପରେ ମୁଁ ଜର, ମୁଣ୍ଡବିନ୍ଧା ଓ ଆଣ୍ଠୁଗଣ୍ଠି

ବିନ୍ଧା ହେଉଛି ବୋଲି ଛୁଟି ଦରଖାସ୍ତ କରିଦେଲି । କ୍ୟାମ୍ପରୁ ବାହାରି ଆସିବା ପରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଦେଖିଲି, ମୁଁ ପୂରା ସୁସ୍ଥ । ଘରେ ସମସ୍ତେ ଜାଣିଥିଲେ ଯେ, ମୁଁ ସପ୍ତାହେ ପରେ ଫେରିବି । ମୋ ପାଖରେ ଯଥେଷ୍ଟ ସମୟ ଥିଲା ଆଉ ମୁଁ ଏଣେତେଣେ ଘୂରିବୁଲିବାକୁ ଠିକଣା କଲି । ଦି'ଟା ବସ୍ ବଦଳେଇ ମୁଁ ଦି'ପହର ପରେ ସମୁଦ୍ରକୂଳରେ ବୀମାପଲ୍ଲୀର ମକବରା ଓ ଦରଗାହରେ ପହଞ୍ଚିଗଲି ।

ଦରଗାହର ଦରଜାରେ ଠିଆହୋଇ ମୁଁ ଦେଖିଲି ଯେ ସଂଗଠିତ ଧର୍ମର ପ୍ରଭାବ ସମୁଦ୍ରକୂଳର ସେହି ଛୋଟ ଗାଆଁରେ ମଧ୍ୟ ପଶିଯାଇଛି । ଦରଗାହ ପାଖର ଛୋଟ ମସଜିଦ୍ ସ୍ଥାନରେ ଗୋଟାଏ ବିରାଟ ରଙ୍ଗିନ ମସଜିଦ୍ ଠିଆ ହୋଇଛି, ଯେଉଁଟି ବୋଧହୁଏ ପ୍ରବାସୀମାନଙ୍କ ସାହାଯ୍ୟରେ ତିଆରି ହୋଇଛି । ସେଦିନ ଶୁକ୍ରବାର ଥିଲା ଆଉ ନିଜକୁ ପ୍ରେତାବିଷ୍ଟ ବୋଲି ଭାବୁଥିବା ଲୋକଙ୍କର ପାଟିତୁଣ୍ଡ ଭିତରୁ ଭାସିଆସୁଥିଲା । ତେଣୁ ମୁଁ ଭିତରକୁ ପଶିବି ନାହିଁ ବୋଲି ଠିକଣା କଲି ଆଉ ଗୋଟାଏ ସୈନିକ ପରି ନିଜର ହୋଲ୍ଡ୍ଅଲ୍କୁ ବୋହି ବାଲି ଉପରେ ଚାଲି ସଡ଼କ ପାରିହୋଇ ଚା' ଦୋକାନ ସନ୍ଧାନରେ ବାହାରି ପଡ଼ିଲି । ମୋତେ ଲାଗିଲା, ପ୍ରଥମେ ମୋର ଗୋଟାଏ କପ୍ କଡ଼ା ଚା' ଦରକାର ।

ମୋ' ସାମ୍ନାରେ ହିଁ ଗୋଟାଏ ଦୋକାନ ଥିଲା । ନାଁ ଥିଲା 'ଦରଗାହ ଟି ଷ୍ଟଲ୍' । ସେଇଟା ସାମ୍ନାରେ ସାମାନ୍ୟ ଉଚ୍ଚା ବାରଣ୍ଡା ଥିବା ଗୋଟାଏ ଚାଳିଆ ଥିଲା । ଦେଖିଲି, ପ୍ରାୟ ଡଜନେ ଲୋକ ବାରଣ୍ଡା ପାଖରେ ଠିଆ ହୋଇଥିଲେ । ସେମାନଙ୍କ ପଛପଟ ମୋ ଆଡ଼କୁ ଥିଲା । ମୁଁ ବି ସେମାନଙ୍କ ସହିତ ମିଶିଗଲି । ସମସ୍ତେ ଜଣେ ଅସୁନ୍ଦର, ରୋଗିଣା, ଲଙ୍ଗଳା ଲୋକକୁ ଦେଖୁଥିଲେ, ଯେ ଚଟାଣରେ କୁଜା ହୋଇ ବସିଥିଲା ଓ ମନେ ମନେ ହସୁଥିଲା ।

ଗରମ ଦିନ ବୋଲି ତାଙ୍କର ଧଳା ବାଳ ଛୋଟ ଛୋଟ ହୋଇ କଟା ହୋଇଥିଲା । କଟା ହୋଇଥିବା ଧଳା ଛୋଟ ଛୋଟ ଦାଢ଼ି ତାଙ୍କର କାଳିଆ ମୁହଁକୁ ଘେରି ରହିଥିଲା, କିନ୍ତୁ ତାଙ୍କ ଆଖି ଚିତ୍ତାକର୍ଷକ ଥିଲା । ବଡ଼ବଡ଼ ଆଉ ପ୍ରେମରେ ଭରପୂର ଆଖି ବର୍ତ୍ତମାନ ମୋତେ ଚାହିଁଥିଲା । ମୋର ମନଶ୍ଚକ୍ଷୁରେ ଗୋଟାଏ ଦୃଶ୍ୟ ଖେଳିଗଲା, ଇଏ ହେଉଛନ୍ତି ସେହି ବ୍ୟକ୍ତି ଏବଂ ମୁଁ ତାଙ୍କର ଭବିଷ୍ୟତବାଣୀ ଅନୁଯାୟୀ ସେଠାକୁ ଫେରିଆସିଛି ।

ତାଙ୍କର ପ୍ରଥମ ଶବ୍ଦଗୁଡ଼ିକ ମୋର ଧାରଣାକୁ ପ୍ରମାଣ କଲା । ମୋର ଆଖିକୁ ସ୍ଥିର ଦୃଷ୍ଟିରେ ଚାହିଁ ସେ କହିଲେ, ''ବନ୍ଦିତାନ୍, ସୋନ୍ନା, ମାଦିରି, ବନ୍ଦିତାନ୍...'' ମୁଁ କହିଥିବା ପରି ଆସିଛି । ତା'ପରେ ଜୋର୍‌ରେ ହସିଉଠିଲେ । ହସୁ ହସୁ ସେ କହିଲେ, ''ବିରାଟ ଦସ୍ୟୁ, ମୋର ଧନସମ୍ପତ୍ତି ଚୋରେଇ ନେବାକୁ ଆସିଛି'' । ପ୍ରାଥମିକ ଧକ୍କାଟା କଟିଗଲା ପରେ ମୁଁ ଦେଖିଲି ଯେ ସେ ଗ୍ଲାସ୍‌ରୁ ଚା' ପିଉଥିଲେ ଆଉ ସିଗାରେଟ ମଧ୍ୟ ପିଉଥିଲେ,

କିଏ ଜଣେ ତାଙ୍କ ପାଇଁ ସିଗାରେଟ୍ ଲଗେଇ ଦେଇଥିଲା । ସେ ସିଗାରେଟ୍ ଫିଙ୍ଗିଦେଲେ ଓ ଇସାରା କଲେ, ''ଏଠି ବସ'' ।

ମୁଁ ବେଡିଂକୁ ବାରଣ୍ଡାରେ ଫିଙ୍ଗିଦେଇ ବସିଗଲି । 'ଚାଲ, ସମସ୍ତେ ଯାଆ'', ସେ ତାମିଲରେ କହିଲେ ଓ ଭିଡ଼ ଭାଙ୍ଗିଗଲା । ଚା' ଦୋକାନୀ ତାଙ୍କୁ ଆହୁରି ଗୋଟାଏ କପ୍ ଚା' ଦେଲା । ''ତାକୁ ପଇସା ଦିଅ'', ବୁଢ଼ା ଜଣକ କହିଲେ, ମୁଁ ଆଠ'ଣା ଦେଇଦେଲି । ସେ ଅଧା ଚା' ପିଇଲେ ଓ ବାକି ମୋତେ ଦେଇ କହିଲେ, ''ଚା' ପିଅ'' । ତାଙ୍କର ହଳଦିଆ ଦାନ୍ତକୁ ଦେଖି ଜଣାପଡୁଥାଏ ଯେମିତି ଜୀବନସାରା ଦାନ୍ତ ଘଷି ନାହାନ୍ତି ! ତେଣୁ ମୁଁ ଟିକିଏ ଦୋଦୋପାଞ୍ଚ ହେଲି । ଦୋକାନୀ ଫୁସ୍‌ଫୁସ୍‌କିନା କହିଲା, ''ପିଇଦିଅ, ପିଇଦିଅ, ତୁମେ ଜାଣ ନାହିଁ ତୁମେ କେତେ ଭାଗ୍ୟବାନ୍ । ସେ ଏମିତି କରିବାଟା ହେଉଛି ଅତି ବିରଳ ଘଟଣା ।'' କାହିଁକି ନୁହେଁ, ମୁଁ ନିଜକୁ କହିଲି ଓ ସେଇ ସ୍ନେହପୂର୍ଣ୍ଣ ଆଖିର ଆକର୍ଷଣ ହେତୁ ଆଖିବୁଜି ଚା' ପିଇନେଲି । ସେତେବେଳକୁ ଅନ୍ଧାର ହୋଇଆସୁଥାଏ । ବୁଢ଼ା ଜଣକ ଡେଇଁପଡ଼ି ଠିଆ ହୋଇଗଲେ ଓ ଚିତ୍କାର କଲେ, ''ଚାଲ, ଚାଲ'',ଆଉ ଦୌଡ଼ିବାକୁ ଆରମ୍ଭ କଲେ । ମୁଁ ମୋର ବେଡିଂ ବିଷୟରେ ବିଲ୍‌କୁଲ୍ ଭୁଲିଯାଇ ତାଙ୍କ ପଛେ ପଛେ ଦୌଡ଼ିଲି ।

ଆମେ ଶୀଘ୍ର ଯାଇ ସମୁଦ୍ରକୂଳରେ ପହଞ୍ଚିଗଲୁ । ସେ ନୋଳିଆମାନଙ୍କର ଏକ ପରିତ୍ୟକ୍ତ କୁଡ଼ିଆ ସାମ୍ନାରେ ରହିଗଲେ । କୁଡ଼ିଆର ଛାତ ଉଡ଼ିଯାଇଥାଏ । ସେ ସମୁଦ୍ର ଆଡ଼କୁ ମୁହଁ କରି ବସିଗଲେ, ''ବସ'' ସେ କହିଲେ । ତାଙ୍କ ପାଖରେ ଚକା ପକେଇ ମୁଁ ବସିଗଲି । ଆମ ସାମ୍ନାରେ ଆରବ ସାଗର । ''ସେ ହିମାଳୟରୁ ଆସିଥିଲେ ନା ?'' ସେ କହିଲେ ।

''କିଏ ?''

: ''ସେ ତୁମର ମସ୍ତକ ସ୍ପର୍ଶ କରିଥିଲେ, ବହୁତ ଗୋରା, ଜଟାବାଲା ?''

: ''ହଁ'', ମୁଁ କହିଲି ଏବଂ ଆଶ୍ଚର୍ଯ୍ୟ ହେଲି ସେ କେମିତି ଜାଣିଲେ ବୋଲି ।

: ''ଆଚ୍ଛା, ମୁଁ ଏବେ ତୁମର ମସ୍ତକ ସ୍ପର୍ଶ କରିବି । ଚୋର ସର୍ଦାର, ମୋ ଭଣ୍ଡାର ଖାଲି କରିବାକୁ ଆସିଛି !''

''କ୍ଷମା କରିବେ'', ଏଥର ମୁଁ ରାଗରେ କହିଲି, ''ମୁଁ ଚୋର ନୁହେଁ, ମୁଁ କିଛି ଚୋରେଇ ନାହିଁ ।''

: ''କନ୍ନନଙ୍କ ପରି କ୍ରିଷ୍ଣନ୍‌ଙ୍କ ପରି ଲହୁଣୀ ଚୋରି କରୁଛୁ, ଗୋପୀମାନଙ୍କ ହୃଦୟ

ଚୋରି କରୁଛୁ । ସ୍ନେହପୂର୍ଣ୍ଣ ଚାହାଣି ଚୋରି କରୁଛୁ । ଚୋରି କରୁଛୁ ? ଚୋର ସର୍ଦାର !''

''ସେଠୁ କ'ଣ ହେଲା ?''

''ଆହା, ଆହା'', ସେ କହିଲେ ଓ ଛାତିକୁ ସ୍ପର୍ଶ କଲେ, ତା'ପରେ ତାଙ୍କର ଡାହାଣ ହାତର ଆଙ୍ଗୁଳିଗୁଡ଼ିକ ଦ୍ୱାରା ମୋର କପାଳ ସ୍ପର୍ଶ କଲେ ।

ପ୍ରଥମେ ଗୋଟାଏ ରୁପେଲି ଆଲୋକରେ ମୋର ହୃଦୟ ପୂର୍ଣ୍ଣ ହୋଇଗଲା, ତା'ପରେ ମୋର ମସ୍ତିଷ୍କରେ ବିସ୍ଫୋରଣ ଘଟିଲା । କେବଳ ସେଇ ଆଲୋକର ଅସ୍ତିତ୍ୱ (ଯାହା ମୋର କପାଳ ଓ ହୃଦୟ ମଧ୍ୟରେ ପ୍ରବାହିତ ହେଉଥାଏ) ବ୍ୟତୀତ ମୁଁ ସବୁକିଛି ଭୁଲିଗଲି । ଅପୂର୍ବ ଉନ୍ମାଦନାର ଢେଉରେ ମୋର ହୃଦୟ ଓ ସେଠାରୁ ମୋର ସାରା ଶରୀର ପୂର୍ଣ୍ଣ ହୋଇଗଲା । ମୋର ବାଳଗୁଡ଼ା ଠିଆଠିଆ ହୋଇଗଲା ଓ ମୁଁ ସାରା ପୃଥିବୀକୁ ଆଲିଙ୍ଗନ କରିବାକୁ ଚାହିଁଲି । ଜାଣିପାରିଲି ନାହିଁ ମୁଁ କେତେ ସମୟ ସେଠାରେ ବସିରହିଲି କିମ୍ବା ବାହ୍ୟ ଜଗତରେ କ'ଣ ଘଟୁଛି ବୋଲି ।

ଯେତେବେଳେ ଉନ୍ମାଦନା କିଛି ଅଂଶରେ ପ୍ରଶମିତ ହେଲା, ମୁଁ ଆଖି ଖୋଲି ଦେଖିଲି ମୁଁ ସେହି ନୋଳିଆମାନଙ୍କର କୁଡ଼ିଆ ସାମ୍ନାରେ ବସିଛି । ବୁଢ଼ା ଜଣକ ମୋ ସାମ୍ନାରେ ବସିଛନ୍ତି ଏବଂ ବାଲ୍‌ଟିଏ ବାଲି ମୋ ମୁଣ୍ଡରେ ଢାଳି କହୁଛନ୍ତି, ''ଯଥେଷ୍ଟ, ଯଥେଷ୍ଟ, ଫେରିଆସ, ବିଚରା ପିଲାଟା !''

ମୁହଁରୁ ବାଲି ପୋଛି ମୁଁ ଠିଆହେଲି ଓ ଜାଣିଲି ଯେ ମୁଁ ପୂରାପୂରି ନଗ୍ନ । ଲଜ୍ଜିତ ହୋଇ ମୁଁ ପଚାରିଲି, ''ମୋ ଲୁଗାପଟା କୁଆଡ଼େ ଗଲା ?''

ମୋ ପାଖରେ ଠିଆ ହୋଇଥିବା ଚା' ଦୋକାନ ମାଲିକ କହିଲା, ''ସବୁ ଅଛି, ତୁମେ ଯାଅ ଗାଧୋଇ ଆସ ।'' ସେ ମୋତେ ଗୋଟାଏ ତଉଲିଆ ଗୁଡ଼େଇ ହେବାକୁ ଦେଲା ଓ ତା ଘରକୁ ଗାଧୋଇବାପାଇଁ ନେଇଗଲା । ଭୋର ହୋଇଆସୁଥାଏ । ତେବେ ବି ମୁଁ ଅପୂର୍ବ ଆନନ୍ଦର ମୃଦୁ ପ୍ରଭାବ ଅନୁଭବ କରୁଥାଏ । ସବୁ କାମ ସାରିବା ପରେ, ସେହି ଚା' ଦୋକାନୀ ପୂର୍ବରୁ ସଫାକରି, ଇସ୍ତ୍ରୀକରି ପ୍ରସ୍ତୁତ ରଖିଥିବା ମୋର ଲୁଗାପଟା ମୋତେ ଦେଲା । ମୁଁ ସେଗୁଡ଼ିକ ପିନ୍ଧି ବାହାରି ଆସିଲି ।

ହମିଦ କହିଲା ଯେ ମୁଁ ଚାରିଦିନ ଧରି ପାଗଳ ପରି ଉନ୍ମାଦନାରେ ଥିଲି । ଚାରିଆଡ଼େ ଲଙ୍ଗଳା ହୋଇ ଘୂରି ନ ବୁଲିବାପାଇଁ ମୋତେ ଶାରୀରିକ ଭାବରେ ଧରି ରଖିବାକୁ ପଡୁଥିଲା ।

ବୁଢ଼ା ଲୋକଙ୍କର ଆଦେଶ ଅନୁସାରେ ସେ ମୋର ବେଡିଂ ଓ ମୋର ପକେଟରେ ଥିବା ଟଙ୍କାପଇସା ସାବଧାନରେ ରଖିଥିଲା । ସେ କହିଲା, ''ମସ୍ତାନ ସାହେବ ବାହାରେ ଅପେକ୍ଷା କରିଛନ୍ତି, ଏବେ ଶୀଘ୍ର ଯାଅ ।''

ହମିଦ ଯାହାଙ୍କୁ 'କଲଡ଼ି ମସ୍ତାନ' ବୋଲି କହୁଥିଲା, ସେ ବାହାରେ ଚା' ଦୋକାନର ବାରଣ୍ଡାରେ ବସିଥିଲେ । ସେ କେବେହେଲେ କୌଣସି ଦୋକାନ ବା ଘର ଭିତରକୁ ଯାଉ ନ ଥିଲେ । ମୋତେ ଦେଖିବାମାତ୍ରେ ସେ ଜୋର୍‌ରେ ହସିବା ଆରମ୍ଭ କଲେ ଓ କହିଲେ, ''ପୁଦୁ ମାପଲୌ (ନୂଆ ବୋହୂ) ବିରାଟ ଚୋର, ଏଠାକୁ ଫେରି ଆସିବୁ ନାହିଁ । ଆଉ କିଛି ଗୁପ୍ତଧନ ନାହିଁ । ଯା ।'' ମୁଁ ନଇଁପଡ଼ି ତାଙ୍କର ଅପରିଷ୍କାର ପବିତ୍ର ପାଦକୁ ଚୁମ୍ବନ କଲି । ସବୁବେଳ ପରି ସେ ଲଙ୍ଗଳା ଥିଲେ । ତା'ପରେ ସେ ଉଠି ଠିଆହେଲେ ଓ ଚାଲିଗଲେ । ପରେ ଏମିତି ପରିସ୍ଥିତି ସବୁ ଉପୁଜିଲା ଯେ ମୋର କଲଡ଼ି ମସ୍ତାନଙ୍କ ନିକଟକୁ ଯିବାରେ ବାଧା ପଡ଼ିଲା । ଯେତେବେଳେ ଯିବାକୁ ସମର୍ଥ ହେଲି ସେତେବେଳେ ମୁଁ କେବଳ ତାଙ୍କର ସମାଧି ଦେଖିପାରିଲି ।

ମୋତେ ଜଳଖିଆ ଦେବାପରେ ହମିଦ, ଯେ କଲଡ଼ି ମସ୍ତାନଙ୍କ ବିଷୟରେ କିଛି ଜାଣିଥିଲା, ସେସବୁ ମୋତେ କହିଲା । ସେସବୁ ଏମିତି ବେଶି କିଛି ନ ଥିଲା । ସେ ଦିନେ ଅଚାନକ ପ୍ରକଟ ହୋଇଥିଲେ, ଲଙ୍ଗଳା ଓ ଅପରିଷ୍କାର ସଦ୍ୟଜାତ ଶିଶୁ ପରି ଏବଂ ବହୁତ ସମୟ ଯାଏଁ ତାଙ୍କୁ ପାଗଳ ବୋଲି ଲୋକେ ଭାବୁଥିଲେ । ଥରେ ବିରାଟ ଝଡ଼ ହେଲା ଓ ହାଇଟେନ୍‌ସନ୍ ତାର ଛିଣ୍ଡି ପାଣିଭର୍ତ୍ତି ସଡ଼କରେ ପଡ଼ିଗଲା । ଯାତାୟାତ ବନ୍ଦ ହୋଇଗଲା । କେହି ହେଲେ ସଡ଼କ ପାରି ହୋଇପାରୁ ନ ଥାନ୍ତି । ପାଣିର ସଂସ୍ପର୍ଶରେ ଆସିଲେ ବିଜୁଳିର ଆଘାତରେ ମୃତ୍ୟୁ ନିଶ୍ଚିତ ଥିଲା । ଦି' ଜଣ ସେତେବେଳକୁ ମରିଯାଇ ଥାଆନ୍ତି । ସୈନ୍ୟବାହିନୀ ଓ ପୁଲିସ ମୃତ୍ୟୁମୁଖରୁ ବଞ୍ଚାଇବାପାଇଁ ଚାରିକଡ଼େ ବାଡ଼ ବାନ୍ଧି ମଣିଷ ଓ ଜନ୍ତୁଜାନୁଆରଙ୍କର ସେପଟକୁ ଯିବା ବନ୍ଦ କରିଦେଇ ଥାଆନ୍ତି ।

ଠିଆ ହୋଇଥିବା ଲୋକଙ୍କ ଭିଡ଼ ସାମ୍ନାରେ ହିଁ କେହି ବନ୍ଦ କରାଇବା ପୂର୍ବରୁ କଲଡ଼ି ମସ୍ତାନ ବାଡ଼ ଡେଇଁ, ଆଣ୍ଠୁଏ ପାଣିରେ ପଶି ସଡ଼କ ପାର୍ ହୋଇଗଲେ । ତାଙ୍କୁ ବିଜୁଳିର ଆଘାତ ହେଲା ନାହିଁ ବା ତାଙ୍କର କୌଣସି କ୍ଷତି ହେଲା ନାହିଁ । ବରଂ କିଛି କଥାକୁ ଖାତିର୍ ନ କରି ହଲିଦୋହଲି ସମୁଦ୍ର ଆଡ଼କୁ ଚାଲିଗଲେ । ସର୍ବପ୍ରଥମେ ଜଣେ ସୈନିକ ତାଙ୍କର ପାଦ ଛୁଇଁ ସାଷ୍ଟାଙ୍ଗ ପ୍ରଣାମ କଲା ।

ତା'ପରେ ସେ ସ୍ଥାନୀୟ ଲୋକଙ୍କ ନିକଟରେ ଭାରି ପ୍ରିୟ ହୋଇଉଠିଲେ । ସେ

ବହୁତ ଚା' ପିଉଥିଲେ, ତେଣୁ ଲୋକେ ତାଙ୍କୁ ଚା' ଦେବା ଆରମ୍ଭ କଲେ । ସେ ପ୍ରାୟ କିଛି ଖାଉ ନ ଥିଲେ, ବେଳେବେଳେ ସିଗାରେଟ୍ ଟାଣୁଥିଲେ ଓ ଯେତେ ଚେଷ୍ଟା କଲେ ମଧ୍ୟ ଲୁଗାପଟା ପିନ୍ଧିବାର ବିରୋଧ କରୁଥିଲେ । କଠୋରପନ୍ଥୀ ମୁସଲମାନ ତାଙ୍କଠାରୁ ଦୂରରେ ରହୁଥିଲେ । କାରଣ ଇସଲାମରେ ଲଙ୍ଗଳା ହୋଇ ଘୂରିବା ନିଷିଦ୍ଧ ଥିଲା । ଯେଉଁମାନଙ୍କର ସୂଫୀ ନିୟମର କିଛି ଜ୍ଞାନ ଥିଲା, ସେ ତାଙ୍କୁ ରାବିୟା ଓ ଲଙ୍ଗଳା ମନ୍ସୁର ହଲ୍ଲାଜଙ୍କ ସହିତ ତୁଳନା କରୁଥିଲେ । ସେମାନେ ତାଙ୍କୁ ଏକ ସନ୍ଥ ପରି ସମ୍ମାନ କରୁଥିଲେ । ହିନ୍ଦୁ କେଉଟମାନେ ତାଙ୍କୁ ଅବଧୂତ ବୋଲି ମାନ୍ୟ କରୁଥିଲେ । ସଂସାରର ନୀତିନିୟମକୁ ତୁଚ୍ଛ କରି ଯେଉଁମାନେ ଭଗବତ୍ ଉନ୍ମାଦନାରେ ବୁଡ଼ିରହନ୍ତି, ସେମାନଙ୍କୁ ଅବଧୂତ କୁହାଯାଏ ।

ସେହି ଛୋଟ ଗାଁର ଲୋକମାନଙ୍କ ଧାରଣା ଥିଲା ଯେ ମସ୍ତାନଙ୍କୁ କିଛି ଖାଇବାକୁ ଦେଲେ ସେମାନଙ୍କ ଭାଗ୍ୟରେ କିଛି ଉନ୍ନତି ହେବ । କିଛି ଉତ୍ତମ ଘଟଣା ଘଟିବ । ହମିଦ ଜୋର୍‌ଦେଇ କହୁଥିଲା ଯେ, ମସ୍ତାନ ସାହେବ ଜଣେ ଭଗବତ୍ ପ୍ରେମରେ ମତ୍ତ ସୂଫୀ ସନ୍ଥ ଥିଲେ । ସେ ତାମିଲନାଡୁରୁ ଆସିଥିଲେ ଏବଂ ଲୋକମାନେ ଏ ବିଷୟରେ ଜାଣି ନ ଥିଲେ ମଧ୍ୟ ତାଙ୍କର ଏକ ବଡ଼ ଅନୁଗାମୀ ଦଳ ଥିଲା ଆଉ ସେ ନିଜେ ସେ ଦଳରେ ଜଣେ ଥିଲା । ତା'ର ବିଶ୍ୱାସ ଥିଲା ଯେ, ଆହୁରି ଅଧିକ ଆଧ୍ୟାତ୍ମିକ ପ୍ରଗତିପାଇଁ ମସ୍ତାନ ମୋତେ ବିଶେଷ ଭାବରେ ଆଶୀର୍ବାଦ ଦେଇଥିଲେ । ଏହି ଘଟଣାର ବର୍ଷେ ପରେ ହମିଦର ମୃତ୍ୟୁ ହୋଇଯାଇଥିଲା ।



# ତିନି ସନ୍ନ୍ୟାସୀ

ମୁଁ ଏବେ ଆପଣମାନଙ୍କୁ କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ସଂସର୍ଗ ବିଷୟରେ କହୁଛି । ସେମାନଙ୍କ ମଧ୍ୟରେ ତିନିଜଣ ସନ୍ନ୍ୟାସୀ ଥିଲେ, ଜଣେ ଅନ୍ୟଜଣଙ୍କଠାରୁ ପୂରାପୂରି ଭିନ୍ନ । ସେମାନଙ୍କର ନାମ ହେଉଛି ସ୍ୱାମୀ ଅଭେଦାନନ୍ଦ, ଚେମ୍ପଲନ୍ତି ସ୍ୱାମୀ ଏବଂ ରାମକୃଷ୍ଣ ମିଶନର ସ୍ୱାମୀ ତପସ୍ୟାନନ୍ଦ ।

ଆପଣମାନଙ୍କର ମନେଥିବ, ମୁଁ ପ୍ରଥମ ଅଧ୍ୟାୟରେ ହିନ୍ଦୁମାନଙ୍କର ଭକ୍ତି ପ୍ରଥା ସହିତ ମୋର ପ୍ରଥମ ପରିଚୟ ବିଷୟରେ କହିଥିଲି । ଏହା ମଧ୍ୟ କହିଥିଲି ଯେ କିପରି ମୁଁ ମୃଦଙ୍ଗ ଓ ମନ୍ଦିରାର ତାଳ ଦ୍ୱାରା ଅଭିଭୂତ ହୋଇ ଘରୁ ବାହାରକୁ ଟାଣିହେବା ପରି ଚାଲିଆସିଥିଲି । ସେତେବେଳେ ଦଳେ ଲୋକଙ୍କୁ ଜଣେ ଡେଙ୍ଗା,ଗୋରା ଓ ପବନରେ ଉଡୁଥିବା ଲମ୍ବା ପାଚିଲା ଦାଢ଼ିବାଲା ଜଣେ ଲୋକଙ୍କର ପାଖଆଖରେ ନାଚି ନାଚି ଗୀତ ଗାଉଥିବାର ଦେଖିଥିବା କଥା ମଧ୍ୟ କହିଥିଲି । ସେ ଥିଲେ ସ୍ୱାମୀ ଅଭେଦାନନ୍ଦ ।

ସ୍ୱାମୀ ଅଭେଦାନନ୍ଦଙ୍କର ଆଶ୍ରମ ଇଷ୍ଟ ଫୋର୍ଟ ଇଲାକାରେ ଥିଲା । ଏବେ ମୋ ପାଖରେ ସାଇକେଲ ଥିଲା । ମୁଁ ପ୍ରାୟ ସାଇକେଲ ଚଲେଇ ଇଷ୍ଟ ଫୋର୍ଟ ଇଲାକା ପର୍ଯ୍ୟନ୍ତ ଯାଇ ମୋର ଏହି ନବ-ଅର୍ଜିତ ଗତିଶୀଳତାର ଉତ୍ସବ ପାଳନ କରୁଥିଲି । ଇଷ୍ଟ ଫୋର୍ଟ ଇଲାକା ତ୍ରାଭାଙ୍କୋରର ମହାରାଜା ଶ୍ରୀ ପଦ୍ମନାଭ ସ୍ୱାମୀଙ୍କର ମନ୍ଦିରର ସୁରକ୍ଷା ଦୃଷ୍ଟିରୁ ତିଆରି କରିଥିଲେ । ଏଠାରେ 'ଅଗ୍ରହରମ୍' କୁହାଯାଉଥିବା ବ୍ରାହ୍ମଣମାନେ ବସବାସ କରୁଥିଲେ । କାଳକ୍ରମେ ଏହା ଦୋକାନ, ରେସ୍ତୋରାଁ ବଡ଼ ବଡ଼ ଅଳଙ୍କାର ଦୋକାନ ଥିବା ଏକ ଛୋଟ ସହରରେ ପରିଣତ ହୋଇଥିଲା । ସୌଭାଗ୍ୟବଶତଃ ମନ୍ଦିରର ପୋଖରୀ ଆଜି ମଧ୍ୟ ରହିଛି ।

ପୋଖରୀର ପଶ୍ଚିମତଟରେ ଅଭେଦାନନ୍ଦଙ୍କର ଆଶ୍ରମ ଥିଲା । ସେ ସମୟରେ ଆଶ୍ରମରେ ଏହିସବୁ ଘରଦ୍ୱାର ଥିଲା- ସ୍ୱାମୀଜୀଙ୍କର ରହିବାପାଇଁ ଏକ ଛୋଟ କୁଡ଼ିଆ, ଆଶ୍ରମଠାରୁ ଅଳ୍ପଦୂରରେ ସ୍ଥାୟୀ ନିବାସୀମାନଙ୍କପାଇଁ କେତେକ କୋଠରି, ଗୋଟିଏ ଖୋଲା

ସଭାଭବନ ଓ କୀର୍ତ୍ତନପାଇଁ ବ୍ୟବହୃତ ହେଉଥିବା ଗୋଟିଏ ଛୋଟ ହଲ୍ ସାମ୍ନାରେ ରାଧା-କୃଷ୍ଣଙ୍କର ମନ୍ଦିର ।

ସ୍ୱାମୀ ଅଭେଦାନନ୍ଦ ସନ୍ନ୍ୟାସୀ ଥିଲେ, ଯେ ସବୁକିଛି ତ୍ୟାଗକରି ଦେଇଥିଲେ, ଏପରିକି ଅଧିକାଂଶ ଲୁଗାପଟା ମଧ୍ୟ । ସେ ଲେଙ୍ଗୁଟି (ଯାହାକୁ ପରମ୍ପରାଗତ ଭାଷାରେ କୌପୀନ କୁହାଯାଏ) ମାରି ରହୁଥିଲେ । ମୁଁ ଯେତେବେଳେ ତାଙ୍କ ସହିତ ସାକ୍ଷାତ କରିବାକୁ ଗଲି, ତାଙ୍କୁ ପ୍ରାୟ ପଞ୍ଚାବନ ବର୍ଷ ହୋଇଥିଲା । ହିମାଳୟସ୍ଥିତ ତୀର୍ଥଗୁଡ଼ିକ ସହିତ ଭାରତର ସବୁ ତୀର୍ଥଗୁଡ଼ିକର ଭ୍ରମଣ କରିସାରିବା ପରେ ସେ ସେତେବେଳକୁ ସେଠାରେ ସ୍ଥାୟୀ ଭାବରେ ବାସ କରୁଥିଲେ ।

ସେ ଡେଙ୍ଗା, ଗୋରା ଓ ସୁଦର୍ଶନ ଥିଲେ । ତାଙ୍କର କାନ୍ଧ ପର୍ଯ୍ୟନ୍ତ ଥିବା ବାଳ କୁଞ୍ଚୁକୁଞ୍ଚିଆ ଥିଲା ଓ ତାଙ୍କର କଞ୍ଚା ପାଚିଲା ଦାଢ଼ି ଥିଲା । ସବୁ ମିଶିଯାଇ ତାଙ୍କ ରୂପ ରାଜକୀୟ ଥିଲା । ମୁଁ ଯେତେ ଲୋକଙ୍କୁ ଦେଖିଛି, ସେମାନଙ୍କ ଭିତରେ ସେ ସବୁଠାରୁ ଅଧିକ କୋମଳ-ହୃଦୟ ଥିଲେ । ତାଙ୍କର କଥା ସବୁବେଳେ ନରମ ଓ ସ୍ନେହପୂର୍ଣ୍ଣ ଥିଲା । ସେ କୌଣସି ବୁଦ୍ଧିବାଦୀ ବେଦାନ୍ତୀ ନ ଥିଲେ କିନ୍ତୁ ଭକ୍ତିରସରେ ବୁଡ଼ି ରହିଥିଲେ । ଏପରି ଏକ ଭକ୍ତ ଥିଲେ ଯାହାଙ୍କର ଗୋପାଳକୃଷ୍ଣ ବହୁତ ପ୍ରିୟ ଥିଲେ ଓ ଯେ ତାଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିଦେଇଥିଲେ ।

ମୁଁ ତାଙ୍କଠାରୁ ମଧୁରଭାବ ବିଷୟରେ ଜାଣିଲି । ମଧୁରଭାବ ଅର୍ଥାତ୍ ନିଜକୁ ବୃନ୍ଦାବନର ଗୋପୀମାନଙ୍କ ପରି କୃଷ୍ଣଙ୍କର ପ୍ରେମିକା ବୋଲି ଭାବିବା । ଯେତେବେଳେ ସେ ଭକ୍ତିରସାତ୍ମକ ଗୀତ ଗାଉଥିଲେ, ତାଙ୍କର ସ୍ୱର ସ୍ତ୍ରୀମାନଙ୍କର ସ୍ୱର ପରି ହୋଇଯାଉଥିଲା ଏବଂ ଭକ୍ତିରେ ତଦ୍‌ଗତ ହୋଇଯାଉଥିବା ହେତୁ ତାଙ୍କର ଆଖିରୁ ଲୁହ ବହିଯାଉଥିଲା ଓ ସେ ସମାଧିସ୍ଥ ହୋଇଯାଉଥିଲେ ।

ଯେତେବେଳେ ମୁଁ ତାଙ୍କ ଆଶ୍ରମକୁ ଯାଉଥିଲି, କେବଳ ସେ ବିଶ୍ରାମ କରୁଥିବା ସମୟ ବ୍ୟତୀତ ଅନ୍ୟ ସବୁ ସମୟରେ ତାଙ୍କ ସହିତ ସାକ୍ଷାତ କରିବାର ଅନୁମତି ମୋର ଥିଲା । ତାଙ୍କର ଭକ୍ତମାନଙ୍କର ଗୋଟିଏ ଛୋଟ ଦଳ ସହିତ ବସି ତାଙ୍କର ପ୍ରବଚନ ଶୁଣିବାକୁ ମୋତେ ଭାରି ଭଲ ଲାଗୁଥିଲା । ଭକ୍ତି ଥିଲା ମୁଖ୍ୟ ବିଷୟ । ସ୍ୱାମୀ ସବୁବେଳେ ମୃଦୁ ହସି ମୋତେ ସ୍ୱାଗତ କରୁଥିଲେ ଆଉ ଦି'ପହରର ଖାଇବା ତାଙ୍କ ସହିତ ନ ଖୁଆଇ ଛାଡୁ ନ ଥିଲେ ।

ଗୋଟାଏ ଶୁକ୍ରବାର ଦିନ ଆଶ୍ରମରେ ପହଞ୍ଚି ସ୍ୱାମୀଙ୍କୁ ପୂରା ଏକୁଟିଆ ଥିବାର ଦେଖିଲି । ସେ ଏମିତି ଭାବରେ ମୋତେ ସ୍ୱାଗତ କଲେ, ଯେମିତି ମୋର ପ୍ରତୀକ୍ଷା କରୁଥିଲେ ।

ସେ ଆରାମ ଚଉକିରୁ ଉଠି ମୋର ବହୁତ ପାଖରେ ତଳେ ବସିଗଲେ । ସ୍ନେହଭରା ଆଖିରେ ଚାହିଁ ମୋର ଓଠକୁ ସ୍ପର୍ଶ କଲେ ଓ କହିଲେ, ‘‘କେବଳ ପ୍ରେମ ଆବଶ୍ୟକ, ସବୁ ଚର୍ଚ୍ଚା ଓ ତର୍କ ଅସୀମ ପର୍ଯ୍ୟନ୍ତ ପହଞ୍ଚେ ନାହିଁ, କେବଳ ପ୍ରେମ ପହଞ୍ଚେ । ନିଜର ହୃଦୟ ଉନ୍ମୁକ୍ତ କର ଓ କୃଷ୍ଣଙ୍କୁ ଦର୍ଶନ କର, ତାଙ୍କୁ ଗୋପୀମାନଙ୍କ ପରି ପ୍ରେମ କର ।’’

ତା’ପରେ ମୋ’ କାନ୍ଧ ଉପରେ ହାତ ରଖି ସେ ସମାଧିସ୍ଥ ହୋଇଗଲେ । ଗାଲଦେଇ ଲୁହ ଧାର ଧାର ହୋଇ ବହିବାକୁ ଲାଗିଲା । କିଛି ସମୟ ପରେ ହଠାତ୍ ତାଙ୍କର ଦେହ ଥରିବାକୁ ଲାଗିଲା ଓ ସେ ସାଧାରଣ ଚେତନାସ୍ତରକୁ ଫେରିଆସିଲେ । ‘‘ତୁମେ ଦୂର ହିମାଳୟ ପର୍ଯ୍ୟନ୍ତ ଯିବ’’, ସେ କହିଲେ, ‘‘ଗୁରୁ ତୁମର ପ୍ରତୀକ୍ଷା କରୁଛନ୍ତି, ସାବଧାନରେ ରହିବ, ରାଧା–କୃଷ୍ଣ ତୁମକୁ ରକ୍ଷା କରନ୍ତୁ ।’’ ମୋ ମୁଣ୍ଡ ଉପରେ ହାତରଖି ସେ କାନ୍ଦିଲେ ଓ ମୋତେ ଆଶୀର୍ବାଦ ଦେଲେ । ସେଇଟା ଥିଲା ମୋର ତାଙ୍କ ସହିତ ଶେଷ ସାକ୍ଷାତ ।

ସେଦିନ ରାତିରେ ନିଜର ନିୟମିତ ଧ୍ୟାନ ସମୟରେ ମୁଁ ଏକ ଅପୂର୍ବ ଦୃଶ୍ୟ ଦେଖିଲି । ମୁଁ ଏକ ସୁନ୍ଦର ବନର ପ୍ରାନ୍ତରେ ଥିଲି, ଯେଉଁଠାରେ ଗୋଟିଏ ନଦୀ ଧୀରେ ଧୀରେ ବହୁଥିଲା । ବହୁତ ଦୂର କେଉଁଠାରୁ ବଂଶୀର ମଧୁର ସ୍ୱନ ଭାସିଆସୁଥିଲା । ଝିଅମାନଙ୍କର ହସିବା ଶବ୍ଦ ଶୁଣି ମୁଁ ଆଖପାଖକୁ ଚାହିଁବାରୁ ଦେଖିଲି ରଙ୍ଗିନ ଲୁଗା ଓ ଅଳଙ୍କାର ପିନ୍ଧି ଅଧଡଜନେ ସୁନ୍ଦରୀ କିଶୋରୀ ମୋ ପାଖରେ ଠିଆ ହୋଇଛନ୍ତି ।

‘‘ଯା’’, ସେମାନଙ୍କ ଭିତରୁ ଜଣେ ମୋତେ ଚିଡ଼େଇକରି କହିଲା, ‘‘ପ୍ରେମର ଦେବତା ତୁମର ପ୍ରେମିକ ବଂଶୀ ବଜେଇ ତୁମକୁ ଡାକୁଛନ୍ତି’’ । ଅନ୍ୟମାନେ ମଜାରେ ହିଁ ହିଁ ହୋଇ ହସୁଥାଆନ୍ତି । ମୁଁ ନିଜର ଚୁଡ଼ିପିନ୍ଧା ହାତ ଏବଂ ଠୁନ୍‌ଠୁନ୍ ଆୱାଜ କରୁଥିବା ପାଉଁଜିଗୁଡ଼ିକୁ ଦେଖିଲି ଆଉ ହଠାତ୍ ଜାଣିପାରିଲି ଯେ, ମୁଁ ମଧ୍ୟ ସେହି କିଶୋରୀମାନଙ୍କ ମଧ୍ୟରୁ ଜଣେ ।

‘‘ନିଅ’’, ମୋର ସଙ୍ଗିନୀମାନଙ୍କ ମଧ୍ୟରୁ ଜଣେ କହିଲା, ‘‘ଦର୍ପଣ ଦେଖ ଓ ନିଜର ବେଶଭୂଷା ଠିକ୍ କରିନିଅ ।’’ ସେ ମୋତେ ଗୋଟିଏ ଗୋଲାକାର ଦର୍ପଣ ଦେଲା । ମୁଁ ଦର୍ପଣରେ ଜଣେ ସୁନ୍ଦରୀ ସୁବେଶା କିଶୋରୀ ମୋତେ ଚାହିଁ ହସୁଥିବାର ଦେଖିଲି । ମୁଁ ପୂରା ଲାଜେଇଗଲି । ଦର୍ପଣରେ ମୁଁ ମୋର ଗାଲ ଲାଲ ହୋଇଯିବାର ଦେଖିଲି । ‘‘ଇଏ

ଲାଜ କରୁଛି'', ମୋର ସଙ୍ଗିନୀ ହସି ହସି କହିଲା । ମୁଁ ମୋର ଧନୁ ପରି ଭ୍ରୂ, ଘନ ପକ୍ଷ୍ମ ଆଉ ନାଲି ଓଠକୁ ଦେଖିଲି । ସବୁ ଠିକ୍‌ଠାକ୍ ଥିଲା । ମୁଁ ନିଜର ପ୍ରିୟତମଙ୍କ ସହିତ ମିଳିତ ହେବାପାଇଁ ପ୍ରସ୍ତୁତ ଥିଲି ।

ମୁଁ ଲଜ୍ଜା ଓ ଉତ୍ତେଜନାରେ କମ୍ପୁଥାଏ । ସେତିକିବେଳେ ସଙ୍ଗୀତ ବନ୍ଦ ହୋଇଗଲା । ଘୋରା ଚନ୍ଦନର ଗଭୀର ସୁଗନ୍ଧରେ ପବନ ଭରିଗଲା । କିଏ ଜଣେ ମୋର କାନ୍ଧକୁ ପଛରୁ ଧରିଲେ । ନିଜର ଚୁଡ଼ି ଓ ପାଉଁଜି ରୁଣୁଝୁଣୁ କରି କିଶୋରୀମାନେ ଦୌଡ଼ି ଚାଲିଗଲେ । ମୁଁ ଫେରିପଡ଼ି, ନିଜର ପ୍ରିୟତମ କୃଷ୍ଣଙ୍କର କମଳ-ନୟନକୁ ଚାହିଁଲି ଏବଂ ବେହୋସ ହୋଇଗଲି । ଉଠିଲାବେଳକୁ ସକାଳ ହୋଇଯାଇଥାଏ । କେବଳ ଆଉ ଥରେ ମାତ୍ର ମୋ' ଜୀବନରେ ଏପରି ଅନୁଭୂତି ହୋଇଥିଲା । ସେ ଥିଲା ବୃନ୍ଦାବନରେ, ବହୁ ବର୍ଷ ପରେ ।

ସ୍ୱାମୀ ଅଭେଦାନନ୍ଦ ତ୍ରିଭେନ୍ଦ୍ରମ ସହରରେ ନଗର ସଂକୀର୍ତ୍ତନ ପ୍ରଥା ଆରମ୍ଭ କଲେ । ସେଥିରେ ସାମୂହିକ ଭାବରେ ଗୀତ ବୋଲାଯାଉଥିଲା । ସେ ହିଁ ପ୍ରଥମେ ଅଖଣ୍ଡ ନାମ ସଂକୀର୍ତ୍ତନ ଆରମ୍ଭ କରିଥିଲେ । ଏଥିରେ ବିରତିବିହୀନ ଭାବରେ ଦେବତାଙ୍କର ପବିତ୍ର ନାମ ଜପ କରାଯାଏ । ସେ ପ୍ରଥା ଆଜି ବି ଚାଲିଛି । ଲୋକମାନେ ପାଳିକରି ଅଭେଦାନନ୍ଦଙ୍କ ଆଶ୍ରମରେ ଭଜନ କରନ୍ତି, ନାମୋଚ୍ଚାରଣ କେବେ ବନ୍ଦ ହୁଏ ନାହିଁ । ମୋ ପାଇଁ ଏହିସବୁ ପ୍ରଥାର ଦୋଷ-ଗୁଣ ବିଚାର କରିବା ଉଚିତ ହେବ ନାହିଁ, ହୁଏତ କିଛି ଲୋକଙ୍କପାଇଁ ଏହା ଉପଯୋଗୀ । ଯାହା ବି ହେଉ ଅଭେଦାନନ୍ଦଙ୍କର ସରଳ, ଶିଶୁସୁଲଭ ଭକ୍ତି ମୋ ମଧ୍ୟରେ ଏକ ଗଭୀର ଭକ୍ତିଭାବ ଜାଗ୍ରତ କଲା, ଯାହା ମୋର ଚେତନାର ସ୍ତରଗୁଡ଼ିକର ଏତେ ଗଭୀରରେ ଲୁଚିରହିଥିଲା ଯେ ମୁଁ ନିଜେ ସେ ବିଷୟରେ ଜାଣି ନ ଥିଲି ।

× × × ×

ଚେମ୍ପଲନ୍ତି ସ୍ୱାମୀ ଭିନ୍ନ ଥିଲେ, ସେ ସୁଦର୍ଶନ ନ ଥିଲେ । ତାଙ୍କର ଶରୀର ଦୁର୍ବଳ ଥିଲା, ହାଡ଼କଙ୍କାଳସାର କହିଲେ ଚଳେ, ଆଉ ତାଙ୍କର ଜଟା ବିଚିତ୍ର ଟୋପୀ ପରି ଗୁଡ଼ାହୋଇ ମୁଣ୍ଡ ଉପରେ ଥାଏ । ସେ ବହୁତ କମ୍ କଥା କହୁଥିଲେ । ତାଙ୍କୁ ଯଦି କେହି ଗଳିରେ ଦେଖୁଥିଲା ତେବେ ତାଙ୍କୁ ପାଗଳ ବୋଲି ଭାବୁଥିଲା । ସେ ସାଧାରଣତଃ ନିଜର ଅଣ୍ଟାରେ ଗୋଟାଏ ଧଳା ତଉଲିଆ ବାନ୍ଧୁଥିଲେ ଗୋଟିଏ ଛପର ହୋଇଥିବା ଏକ ଚାଳିଆରେ ଚକା ପକାଇ ବସୁଥିଲେ ।

ଚମ୍ପେଲନ୍ତି ତ୍ରିଭେନ୍ଦ୍ରମର ନଗର ବାହାରେ ଗୋଟିଏ ଛୋଟ ଗାଆଁର ନାଁ । ସେଇ ଗାଆଁ ପୂର୍ବରୁ ହିଁ ନାରାୟଣସ୍ୱାମୀଙ୍କର ଜନ୍ମସ୍ଥାନ ବୋଲି ବିଖ୍ୟାତ ଥିଲା । ଯେଉଁ ଲୟଲା

କଲେଜରେ ମୁଁ ଡିଗ୍ରୀ ପୂର୍ବରୁ ପଢୁଥିଲି, ସେଇ କଲେଜ ଚେମ୍ପଲନ୍ତି ନିକଟରେ ହିଁ ଥିଲା । ତେଣୁ ସ୍ୱାମୀଙ୍କ ସହିତ ସାକ୍ଷାତ ମିଳିବ କି ନାହିଁ ବୋଲି ବୁଝିବାପାଇଁ ମୁଁ ଦିନେ ସେଠାରେ ପହଞ୍ଚିଗଲି ।

ଆମେ ଘର ବଦଳେଇ ସାରିଥାଉ । ମୋର ନୂଆ ପଡ଼ୋଶୀ ମୋତେ ସ୍ୱାମୀଙ୍କ ବିଷୟରେ କହିଥିଲେ । ସେହି ପଡ଼ୋଶୀ, ଯାହାଙ୍କ ନାଁ ବର୍ତ୍ତମାନ ମନେପଡୁ ନାହିଁ, ସେ ହିଁ ମୋତେ କହିଥିଲେ ଯେ ପ୍ରଥମେ ସ୍ୱାମୀ ଚେମ୍ପଲନ୍ତିରେ ଗୋଟିଏ ଚା' ଦୋକାନ କରିଥିଲେ । ଦିନେ ରାତିରେ ଉତ୍ତରାଞ୍ଚଳର ଜଣେ ଭ୍ରମଣ କରୁଥିବା ସାଧୁ ତାଙ୍କୁ ଶ୍ରୀରାମଙ୍କର ମନ୍ତ୍ରଦୀକ୍ଷା ଦେଲେ । କ୍ରମାଗତ ନାମ ଜପୁ ଜପୁ ସେ ଦେଖିଲେ ଯେ ନାମ ତାଙ୍କୁ ଅଧିକାର କରିନେଲା ସେ ଏତେ ଉନ୍ମତ୍ତ ହୋଇଗଲେ ଯେ, କୌଣସି ଶାରୀରିକ କାର୍ଯ୍ୟ କରିପାରିଲେ ନାହିଁ । ସେ ଚା' ଦୋକାନ ବନ୍ଦ କରିଦେଲେ ଓ ଏକ ଦୀର୍ଘ ସମୟ ଜଙ୍ଗଲରେ ବାସ କରି ବିତେଇଲେ ।

ବେଳେବେଳେ ରାମଭକ୍ତ କପିଦେବ ହନୁମାନଙ୍କ ଭାବ ତାଙ୍କୁ ଅଧିକାର କରିନେଉଥିଲା ଓ ସେ ମାଙ୍କଡ଼ ପରି ବ୍ୟବହାର କରୁଥିଲେ । ଫଳ-ମୂଳ ଖାଉଥିଲେ ଆଉ ଗୋଟାଏ ଗଛରୁ ଆଉ ଗୋଟାଏ ଗଛକୁ ଚଢୁଥିଲେ । କୁହାଯାଉଥିଲା ଯେ ଥରେ ତାଙ୍କର ଇଷ୍ଟଦେବତା ରାମଚନ୍ଦ୍ରଙ୍କର ଦର୍ଶନ ହେବାପରେ ସେ ଓହ୍ଲେଇ ଆସିଲେ ଓ ରାମଙ୍କର ଏକ ଛୋଟ ମନ୍ଦିର ପାଖରେ କୁଡ଼ିଆ ତିଆରି କରି ରହିଲେ । ମୁଁ ତାଙ୍କ ସହିତ ସାକ୍ଷାତ କରିବାପାଇଁ ସେଇଠାକୁ ଗଲି ।

କୁଡ଼ିଆ ବାହାରେ କେବଳ ଜଣେ ଲୋକ ଥିଲା । ମୁଁ ଯେତେବେଳେ ତାକୁ ମୋର ମନକଥା ଜଣେଇଲି, ସେ କୁଡ଼ିଆ ଭିତରକୁ ଗଲା ଓ ଶୀଘ୍ର ଫେରିଆସିଲା । ''ତୁମେ ଭିତରକୁ ଯାଇପାର'', ସେ ସହଜ ଭାବରେ କହିଲା । ଗୋବର ଓ ମାଟିରେ ଲିପାହୋଇଥିବା ଗୋଟିଏ ବେଦି ଉପରେ ମୁଁ ଦୁର୍ବଳ ଦେହ, ଜଟାଜୁଟଧାରୀ ସ୍ୱାମୀଙ୍କୁ ବସିଥିବାର ଦେଖିଲି । ସେ ବାଉଁଶବୁଣା ଚଟେଇ ଉପରେ ବସିଥିଲେ । ''ଆସ'', ସେ ଇସାରା କଲେ । ମୁଁ ତାଙ୍କ ପାଖରେ ବସିଗଲି ।

''ବସ'', ସେ କହିଲେ । ମୁଁ ତାଙ୍କ ସାମ୍ନାରେ ବସିଗଲି ।

''ରାମାୟଣମ ?'' ସେ ମୋତେ ତୀକ୍ଷ୍ଣଦୃଷ୍ଟିରେ ଚାହିଁ କହିଲେ । ''ମୁଁ ପଢ଼ିଛି'', ମୁଁ କହିଲି, ''କିନ୍ତୁ...''

''ଯଥେଷ୍ଟ ନୁହେଁ'', ସେ ମୋର କଥା ମଝିରେ କହିଉଠିଲେ ।

''ତା'ହେଲେ ?''

''ରା...ମା...ୟଣମ୍'' ସେ କହିଲେ ।

ଏଥର ମୁଁ ବୁଝିଗଲି । ଶବ୍ଦ ଉପରେ ଚାପ ସ୍ପଷ୍ଟ ଥିଲା । ସେ ଶବ୍ଦକୁ ଦି' ଭାଗ କରିଦେଇଥିଲେ । ରା ଏବଂ ମାୟଣମ୍ । ସେ କହିଲେ, ''ରା' ମାନେ ରାତି, ଅନ୍ଧାର, ଇତ୍ୟାଦି । ଏହି ଅନ୍ଧାର ହଟିଯିବା ଦରକାର । ତେବେ ତୁମକୁ ରାମ ଦେଖାଯିବେ ।''

ମୋତେ ମୋର ନିଜର କାନକୁ ବିଶ୍ୱାସ ହେଲା ନାହିଁ । ଆଗରୁ ଚା' ବିକୁଥିବା ଅଶିକ୍ଷିତ ଲୋକ ଜଣକ କି ସରଳ ଭାଷାରେ ବେଦାନ୍ତର ମହାସତ୍ୟକୁ ବୁଝାଉଥିଲେ ! ଅଜ୍ଞାନର ଅନ୍ଧକାର ଅପସରିଯିବା ଦରକାର, ତା'ପରେ ଯାଇ କେହି ରାମ ଅର୍ଥାତ୍ ସତ୍ୟର ଦର୍ଶନ ପାଇପାରିବ । ଇଏ କ'ଣ ସେଇ ଲୋକ, ଯେ ଗଛରୁ ଗଛକୁ ଡେଉଁଥିଲେ, ଫଳମୂଳ ଖାଉଥିଲେ ଓ ମାଙ୍କଡ଼ ପରି ବ୍ୟବହାର କରୁଥିଲେ ?

ସେ ମୌନ ହୋଇଗଲେ । ଯିବା ପୂର୍ବରୁ ମୁଁ ଅଧଘଣ୍ଟା ଅପେକ୍ଷା କଲି । ମୁଁ ଯିବାପାଇଁ ଉଠି ଠିଆହେଲି ଏବଂ ତାଙ୍କର ପାଦ ସ୍ପର୍ଶ କଲି । ସେ ପରିଷ୍କାରଭାବରେ ମାଙ୍କଡ଼ ପରି ଆୱାଜ କଲେ ଓ ନିଜର ଡାହାଣ ହାତର ଆଙ୍ଗୁଳିଦ୍ୱାରା ମୋର ମସ୍ତକ ସ୍ପର୍ଶ କଲେ । ବହୁତ ଡେରି ହୋଇଯାଇଥାଏ, ତେଣୁ ମୁଁ ଶୀଘ୍ର ଶୀଘ୍ର ବସ୍‌ଷ୍ଟାଣ୍ଡ ଆଡ଼କୁ ଚାଲିଲି । ବସ୍‌ରେ ବସି ବସି ମୁଁ ଭାବୁଥାଏ, ଅନ୍ଧାର ଅପସରିଯିବା ଦରକାର, ହଁ, ଅନ୍ଧାର ଦୂର ହୋଇଯିବା ଦରକାର ।

× × ×

ସ୍ୱାମୀ ତପସ୍ୟାନନ୍ଦ ଏହି ଦୁଇ ବ୍ୟକ୍ତିଙ୍କଠାରୁ ଭିନ୍ନ ଥିଲେ । ସେ ସେତେବେଳେ ଶାସ୍ତମଙ୍ଗଳମ୍‌ରେ ଥିବା ରାମକୃଷ୍ଣ ମିଶନର ଅଧ୍ୟକ୍ଷ ଥିଲେ । ରାମକୃଷ୍ଣ ମିଶନ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ମଧ୍ୟ ଚଳାଉଥିଲେ । ମୁଁ ମହାନ ସନ୍ଥ ରାମକୃଷ୍ଣ ପରମହଂସ ଏବଂ ତାଙ୍କର ଯଶସ୍ୱୀ ଶିଷ୍ୟ ବିବେକାନନ୍ଦଙ୍କ ବିଷୟ ପଢ଼ିସାରିଥିଲି କିନ୍ତୁ ତ୍ରିଭେନ୍ଦ୍ରମରେ ରାମକୃଷ୍ଣ ମିଶନର ଶାଖା ଅଛି ବୋଲି ଜାଣି ନ ଥିଲି । ମୋତେ ଏହିପରି ଭାବରେ ସେ ବିଷୟ ଜଣାପଡ଼ିଲା –

ତ୍ରିଭେନ୍ଦ୍ରମ ପବ୍ଲିକ ଲାଇବ୍ରେରୀ, ଯେଉଁଠାରେ ମୁଁ ପ୍ରଥମେ ''ଦି କମ୍ପ୍ଲିଟ୍ ୱର୍କସ୍ ଅଫ୍ ବିବେକାନନ୍ଦ'' ନାମକ ଅଦ୍ଭୁତ ପୁସ୍ତକମାଳାଗୁଡ଼ିକ ପଢ଼ିଥିଲି, ସେଠାରୁ ଅଳ୍ପ ଦୂରରେ

ଅଛି 'ଦି ମ୍ୟୁଜିୟମ୍ ଗାର୍ଡେନ୍' ନାମକ ଏକ ସୁନ୍ଦର ଉଦ୍ୟାନ । ମୋର ଅଭ୍ୟାସ ଥିଲା ଯେ ମୁଁ ପୁସ୍ତକାଳୟରୁ ଚାଲି ଚାଲି ବଗିଚାକୁ ଚାଲିଯାଉଥିଲି ଓ ସେଠାରେ ପଡ଼ିଥିବା ବେଞ୍ଚ ଉପରେ ଚୁପ୍‌ଚାପ୍ ବସିଯାଉଥିଲି । ଦିନେ ମୁଁ ଗେରୁଆ ବସ୍ତ୍ର ପିନ୍ଧିଥିବା ତେଜୋଦୀପ୍ତ ଚେହେରାର ଜଣେ ଯୁବକ ସନ୍ୟାସୀ ସେଠାରେ ବସିଥିବାର ଦେଖିଲି । କୌତୂହଳୀ ହୋଇ ମୁଁ ତାଙ୍କୁ ତାଙ୍କର ପରିଚୟ ପଚାରିଲି । ସେ ପିଲାଙ୍କ ପରି ହସିଉଠିଲେ ଓ କହିଲେ, ସେ ରାମକୃଷ୍ଣ ମିଶନର ଲୋକ ଏବଂ ରାମକୃଷ୍ଣ ମିଶନ ସେଠାରୁ ଦୂର ନୁହେଁ । ମୁଁ ତାଙ୍କୁ ପଚାରିଲି, ''ମୁଁ କ'ଣ ଆଶ୍ରମକୁ ଆସିପାରିବି ?''

''ଅବଶ୍ୟ'', ସେ ହସି ହସି କହିଲେ, ''ଏବଂ ତୁମେ ଆମର ଅଧ୍ୟକ୍ଷ ମହାତ୍ମା ସ୍ୱାମୀ ତପସ୍ୟାନନ୍ଦଙ୍କୁ ସାକ୍ଷାତ କରିବା ଉଚିତ । ଆସ କେବେ, ମୋ' ନାଁ ଗୋଲକାନନ୍ଦ ।''

ତେଣୁ ମୁଁ ଥରେ ରବିବାର ଦିନ ସକାଳୁ ସେଠାରେ ପହଞ୍ଚିଗଲି । ସ୍ୱାମୀ ଗୋଲକାନନ୍ଦ ମୋତେ ସ୍ୱାମୀ ତପସ୍ୟାନନ୍ଦଜୀଙ୍କ ପରିଚୟ କରାଇଦେଲେ । ରାମକୃଷ୍ଣ ମଠର ପ୍ରଥାନୁଯାୟୀ ସେ ଗେରୁଆ କୁର୍ତ୍ତା ଓ ଧୋତି ପିନ୍ଧିଥିଲେ । ତାଙ୍କୁ ଦେଖିଲେ ପ୍ରଥମ କଥା ଯାହା ମନକୁ ଆସେ ତାହା ହେଉଛି ଅନୁଶାସନ ଓ କଠୋରତା । ଦିନ ବିତିଯିବା ସହିତ ସେ ଜାଣିଶୁଣି ଧାରଣ କରିଥିବା ବର୍ମ ତଳର କୋମଳତା ଓ ସ୍ନେହକୁ ଅନୁଭବ କଲି ।

ମୁଁ ତାଙ୍କଠାରୁ ବହୁତ କିଛି ଶିଖିଲି । ବିଶେଷଭାବରେ ରାମକୃଷ୍ଣ-ବିବେକାନନ୍ଦଙ୍କ ଆନ୍ଦୋଳନ ବିଷୟରେ ଏବଂ ପ୍ରଥମକରି ଏହି କଥାର ଅର୍ଥ ବୁଝିପାରିଲି ଯେ ମାନବତାର ସେବା ହେଉଛି ଭଗବାନଙ୍କର ସେବା । ମୁଁ ଜାଣିଲି ଯେ କେମିତି ମହାନ ସନ୍ୟାସୀ ବିବେକାନନ୍ଦଙ୍କର ପ୍ରେମପୂର୍ଣ୍ଣ ହୃଦୟରୁ ମାନବତାର ପୀଡ଼ା ହେତୁ ରକ୍ତକ୍ଷରଣ ହେଉଥିଲା । ତପସ୍ୟାନନ୍ଦ ମୋତେ ରାମକୃଷ୍ଣ ଆନ୍ଦୋଳନ ବିଷୟରେ କହିଲେ ଏବଂ ସେହି ନିର୍ଭୀକ ପୁରୁଷମାନଙ୍କ ବିଷୟରେ କହିଲେ, ଯେଉଁମାନେ ରାମକୃଷ୍ଣଙ୍କର ଶ୍ରେଷ୍ଠ ଶିଷ୍ୟ ବିବେକାନନ୍ଦଙ୍କର ନିର୍ଦ୍ଦେଶ ଅନୁସାରେ ଅକଥନୀୟ ପରିଶ୍ରମ କରୁଥିଲେ । ସେ ନିଜେ ସ୍ୱାମୀ ଶିବାନନ୍ଦଙ୍କର ଶିଷ୍ୟ ଥିଲେ, ଯାହାଙ୍କୁ ମହାପୁରୁଷ ମହାରାଜ ବୋଲି ସମସ୍ତେ ଜାଣନ୍ତି । ଶିବାନନ୍ଦ ଶ୍ରୀରାମକୃଷ୍ଣ ପରମହଂସଙ୍କର ଶିଷ୍ୟ ଥିଲେ । ଶ୍ରୀ ତପସ୍ୟାନନ୍ଦ ରାମକୃଷ୍ଣଙ୍କର ପତ୍ନୀ ଶାରଦା ଦେବୀଙ୍କର ମଧ୍ୟ ବେଶ୍ କିଛି ବର୍ଷ ଧରି ସେବା କରିଥିଲେ ଏବଂ ବହୁବାର ତାଙ୍କର ଆଶୀର୍ବାଦ ଲାଭ କରିଥିଲେ ।

ସ୍ୱାମୀ ତପସ୍ୟାନନ୍ଦଜୀ ମୋର ପରିଚୟ ପ୍ରଫେସର ବାଳକୃଷ୍ଣନଙ୍କ ସହିତ କରାଇଥିଲେ ଯେ ତାଙ୍କ ମତରେ ସ୍ତ୍ରୀ ଓ ସନ୍ତାନମାନଙ୍କ ସହିତ ପାରିବାରିକ ଜୀବନ

ବ୍ୟତୀତ କରୁଥିଲେ ମଧ୍ୟ ବେଦାନ୍ତର ସର୍ବୋଚ୍ଚ ଶିଖର ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲେ । ଅନେକ ରବିବାର ଦିନ 'କଲରୀ' (ଏକ ପ୍ରକାରର କୁସ୍ତି) ଶିଖିବାପାଇଁ ଶଂଗୁମୁଖମ୍ ସମୁଦ୍ରକୂଳକୁ ଗଲାବେଳେ ମୁଁ ରାମକୃଷ୍ଣ ନାୟାରଙ୍କ ଘରକୁ ଚାଲିଯାଉଥିଲି ଓ ସେ ସରଳ ଭାଷାରେ ବେଦାନ୍ତ ବିଷୟରେ କହୁଥିବା କଥା ଶୁଣୁଥିଲି । ସେ ମୁଖ୍ୟତଃ ରାମକୃଷ୍ଣ ପରମହଂସଙ୍କର କାହାଣୀଗୁଡ଼ିକ ମାଧ୍ୟମରେ ବେଦାନ୍ତ-ଚର୍ଚ୍ଚା କରୁଥିଲେ ।

ବହୁବର୍ଷ ପରେ, ଯେତେବେଳେ ସ୍ୱାମୀ ତପସ୍ୟାନନ୍ଦ ଚେନ୍ନାଇ ଶାଖାର ଅଧ୍ୟକ୍ଷ ଥିଲେ ଏବଂ ରାମକୃଷ୍ଣ ଶୃଙ୍ଖଳାର ଉପାଧ୍ୟକ୍ଷ ମଧ୍ୟ ଥିଲେ, ସେତେବେଳେ ସେ ମୋତେ କୃପା କରି ରାମକୃଷ୍ଣଙ୍କର ମନ୍ତ୍ର-ଦୀକ୍ଷା ଦେଲେ । ରାମକୃଷ୍ଣ ଶୃଙ୍ଖଳାର ବିଭିନ୍ନ କେନ୍ଦ୍ରଗୁଡ଼ିକରେ କାର୍ଯ୍ୟ କରିଥିଲେ ମଧ୍ୟ ମୁଁ ସେପର୍ଯ୍ୟନ୍ତ ସେଥିରୁ ବଞ୍ଚିତ ଥିଲି । ସେଥିପାଇଁ ମୁଁ ତାଙ୍କ ନିକଟରେ ଚିର ଋଣୀ ।



# ୧୬ ମାଈ ମାଁ

ଏବେ ମୁଁ ଆପଣମାନଙ୍କୁ ସେହି ଆଶ୍ଚର୍ଯ୍ୟଜନକ ନଗ୍ନିକା ନାରୀ ମାଈ ମାଁଙ୍କ ବିଷୟରେ କହିବି ଏବଂ ମୋର ତାଙ୍କ ସହିତ ସାକ୍ଷାତ ବିଷୟରେ ମଧ୍ୟ ବର୍ଣ୍ଣନା କରିବି । ଶ୍ରୀ ଅନନ୍ତନାରାୟଣଙ୍କ ଘରେ ମୋର ଶ୍ରୀ ଗୋପାଳସ୍ୱାମୀଙ୍କ ସହିତ ଭେଟ ହୋଇଥିଲା । ସେ କହିଥିଲେ ଯେ, ମାଈ ମାଁ ଜଣେ ଅବଧୂତ ଥିଲେ । ସେ ସାମାଜିକ ଶିଷ୍ଟତାର ଧାର ଧାରୁ ନ ଥିଲେ ମଧ୍ୟ ଆଧ୍ୟାତ୍ମିକ ଉଚ୍ଚତାର ଶିଖରରେ ପହଞ୍ଚି ଯାଇଥିଲେ । ସେ କନ୍ୟାକୁମାରୀର ସମୁଦ୍ରକୂଳରେ ରହୁଥିଲେ ଓ ଗୁଡ଼ାଏ ବୁଲାକୁକୁର ତାଙ୍କର ସାଥୀ ଥିଲେ ।

ଏକଥା ଶୁଣିବା ମାତ୍ରେ ମୁଁ ଦି' ଦିନ ପରେ ସକାଳୁ ସକାଳୁ କନ୍ୟାକୁମାରୀ ଯାଉଥିବା ବସ୍ ଧରିଲି । ସେଦିନ ରବିବାର ଥାଏ । ବସ୍ ଦି'ପହରର କିଛି ପୂର୍ବରୁ କନ୍ୟାକୁମାରୀ ପହଞ୍ଚିଗଲା । ସେଇଟି ଗରମ ଦିନର ଗୋଟାଏ ତାତିଲା ଦି'ପହର ଥାଏ । କନ୍ୟାକୁମାରୀ– କେପ୍ କୋମରିନ୍, ଭାରତର ଦକ୍ଷିଣତମ ସୀମାରେ ରହିଛି । ବଙ୍ଗୋପସାଗର, ଭାରତ ମହାସାଗର ଓ ଆରବ ସାଗର ଏହିଠାରେ ମିଳିତ ହୋଇଛନ୍ତି ।

ଏହା ଏକ ସୁନ୍ଦର ଜାଗା । ବିଶେଷ ଭାବରେ ସୂର୍ଯ୍ୟାସ୍ତ, ସୂର୍ଯ୍ୟୋଦୟ ଓ ପୂର୍ଣ୍ଣିମାର ରାତି ଏଠାରେ ଭାରି ସୌନ୍ଦର୍ଯ୍ୟପୂର୍ଣ୍ଣ । ମୁଁ ଯେଉଁ ସମୟର କଥା କହୁଛି, ସେତେବେଳେ ସେଠାରେ ସିମେଣ୍ଟ ଓ ଇଟାର ବଡ଼ ବଡ଼ ଢାଞ୍ଚା, ଯେଉଁଗୁଡ଼ିକ ଯେକୌଣସି ସ୍ଥାନର ସୁନ୍ଦରତା ଓ ପବିତ୍ରତାକୁ ନଷ୍ଟ କରିଦିଅନ୍ତି, ସେସବୁ ନ ଥିଲା । ସେତେବେଳେ ଭଟ୍ଟା ସମୟରେ ପହଁରି ପହଁରି ସେଇ ବିରାଟ ପଥରର ଚଟାଣ, ଯାହାକୁ ବିବେକାନନ୍ଦ ରକ୍ କହନ୍ତି, ସେପର୍ଯ୍ୟନ୍ତ ଯାଇହେଉଥିଲା ଏବଂ ସେଠାରେ ଗର୍ଜୁଥିବା ଲହରୀମାନଙ୍କର ବୈଭବ ମଝିରେ ଧ୍ୟାନରେ ବସି ହେଉଥିଲା । ସେଠାରେ ଧ୍ୟାନରେ ବସିଥିବା ବେଳେ ସ୍ୱାମୀ ବିବେକାନନ୍ଦଙ୍କୁ ଗରିବ ଓ ପଛୁଆ ଲୋକଙ୍କ ପାଇଁ କାମ କରିବାର ପ୍ରେରଣା ମିଳିଥିଲା ।

କନ୍ୟାକୁମାରୀର ସମୁଦ୍ର ଆଡ଼କୁ ମୁହଁକରି ବସିଥିବା କୁମାରୀ ଦେବୀ କନ୍ୟାକୁମାରୀଙ୍କର ପୌରାଣିକ ମନ୍ଦିର ରହିଛି । କଥା ଅଛି ଯେ ପ୍ରାଚୀନ ସମୟରେ ଦେବୀଙ୍କର ନୋଥରେ ଥିବା ଗୋଟିଏ ହୀରା ଆକାଶଦୀପ ପରି କାର୍ଯ୍ୟ କରୁଥିଲା, ଯାହାଦ୍ୱାରା

ନାବିକମାନଙ୍କୁ ନିଜର ଜାହାଜ ଚଳେଇବାପାଇଁ ସହାୟତା ମିଳୁଥିଲା । ସବୁ ପୌରାଣିକ କଥାଗୁଡ଼ିକ ପରି ଏହା ସତ୍ୟ ନା ମିଥ୍ୟା ପ୍ରମାଣ କରିବାର ଉପାୟ ନାହିଁ । ହୁଏତ ସେତେବେଳେ ସେହିପରି ଗୋଟିଏ ବହୁ ମୂଲ୍ୟବାନ ହୀରା ଥିଲା, ବର୍ତ୍ତମାନ ନାହିଁ । ଦେବୀମାନେ ମଧ୍ୟ ମଣିଷର ଧନଲିପ୍‌ସାର ଶିକାର ହୁଅନ୍ତି ।

ମୁଁ ପ୍ରଥମେ ମନ୍ଦିର ଯିବାପାଇଁ ଠିକଣା କଲି । କାରଣ ମୁଁ ଜାଣିଥିଲି ଯେ, ଦି'ପହରେ ମନ୍ଦିର ବନ୍ଦ ହୋଇଯାଏ । ମୋତେ ଦେବୀ ଭାରି ସୁନ୍ଦର ଲାଗିଲେ, ଯଦିଓ ତାଙ୍କ ନୋଥରେ ଶସ୍ତା ନକଲି ହୀରା ଲାଗିଥିଲା । ଯେମିତି ସାଧାରଣତଃ ହୁଏ, ପୂଜାରୀ ମୋର ପକେଟରେ ପଇସା ଦେଖି ଦେବୀଙ୍କ ସାମ୍ନାରେ ଆରତି କରିବା ଆରମ୍ଭ କଲା । ଦୀପରେ ସଜା ହୋଇଥିବା ଥାଳି ମୋ ପାଖକୁ ଅଣାଗଲା ଓ ମୁଁ ଗୋଟିଏ ଟଙ୍କା ପକେଇଦେଲି । ଗୋଟିଏ ଜମନ୍ତୀ ଫୁଲ ଓ ଚନ୍ଦନର ଲେପ ଉଠେଇଲି, ନଇଁପଡ଼ି ପ୍ରଣାମ କଲି ଏବଂ ବାହାରକୁ ଚାଲିଆସିଲି ।

ଏବେ ମୋତେ ମାଈ ମାଁଙ୍କର ସନ୍ଧାନ ନେବାର ଥିଲା । କିନ୍ତୁ ମୋତେ ହଠାତ୍ ଭାରି ଭୋକ ହେଲା, କାରଣ ମୁଁ ଜଳଖିଆ ଖାଇ ନ ଥିଲି । ଭାବିଲି ପ୍ରଥମେ କିଛି ଖାଇନେବି ତା'ପରେ ମାଈ ମାଁଙ୍କର ଠିକଣା ଖୋଜିବି । ଯେଉଁ ରେଷ୍ଟୋରାଁ ମୋତେ ପ୍ରଥମେ ଦେଖାଗଲା, ମୁଁ ସେଇ ଭିତରେ ପଶିଗଲି ଓ କାଉଣ୍ଟରର ସବୁଠୁଁ ପାଖରେ ଥିବା ଟେବୁଲରେ ବସିଗଲି । ରେଷ୍ଟୋରାଁର ନାଁ ଥିଲା ହୋଟେଲ ମୁରଗବିଳାସ । ସ୍ୱାଦିଷ୍ଟଦୋସା ଖାଉ ଖାଉ ମୁଁ ଚଷମାପିନ୍ଧା, ୱାଲରସ ମାଛ ପରି ନିଶ ରଖିଥିବା ଓ କାଉଣ୍ଟରରେ ବସିଥିବା ଜଣେ ଲୋକ, ଯେ ରେଷ୍ଟୋରାଁର ମାଲିକ ପରି ଜଣାପଡୁଥିଲେ, ତାଙ୍କୁ ପଚାରିଲି – ''ହଁ'', ସେ କହିଲେ, ''ମୁଁ ମାଈ ମାଁଙ୍କୁ ଜାଣେ ।'' ମୁଁ ତାଙ୍କୁ ପଚାରିଲି, ସେ କେଉଁଠାରୁ ଆସିଲେ ? ''କେହି ଜାଣନ୍ତି ନାହିଁ'', ସେ କହିଲେ, ''ତିରିଶବର୍ଷ ତଳେ ସେ ଅଚାନକ କନ୍ୟାକୁମାରୀରେ ପ୍ରକଟ ହୋଇଥିଲେ ।'' ସେ କହିଲେ ଯେ, ତାଙ୍କର ପିଲାଦିନୁ ସେ ଯେମିତି ଦେଖିଥିଲେ, ମାଈ ମାଁ ଠିକ୍ ସେମିତି ରହିଛନ୍ତି । କେତେବେଳେ କେମିତି ସେ ଲୁଗା ପିନ୍ଧୁଥିଲେ ଓ କୁକୁରମାନେ ତାଙ୍କୁ ଘେରି ରହୁଥିଲେ । ସେ ନିଜର ଖାଦ୍ୟର ଭାଗ କୁକୁରମାନଙ୍କୁ ଦେଉଥିଲେ ।

ସେତିକିବେଳେ ଜଣେ ଅଧାବୟସର ୱେଟର୍ ଆମ କଥାବାର୍ତ୍ତାରେ ସାମିଲ ହୋଇଗଲା । ତା'ର ମତ ଥିଲା ଯେ ମାନବୀ ରୂପରେ ସେ ବ୍ରହ୍ମାଣ୍ଡର ମାତା ଥିଲେ । ଯେତେବେଳେ ପଚାରିଲି ସେ ଏକଥା କେମିତି ଜାଣିଲା ବୋଲି, ସେ କହିଲା ଯେ ତା'ର ଏତେ ପ୍ରକାରର ଅନୁଭୂତି ରହିଛି, ଯେଉଁଗୁଡ଼ିକ ସେ ଟାଳିଦେଇ ପାରିବ ନାହିଁ । ପଚାରିଲି, ''ତାଙ୍କୁ ଖାଦ୍ୟ କେଉଁଠୁ ମିଳେ ?'' ''ପ୍ରଥମେ ପ୍ରଥମେ ଲୋକେ ତାଙ୍କୁ ପାଗଳୀ ଭାବି

ଖାଦ୍ୟ ଦେବାକୁ ମନା କରିଦେଲେ । ସେ ତା'ପରେ ସମୁଦ୍ରକୂଳକୁ ଗଲେ, ଖାଲି ହାତରେ ମାଛ ଧରିଲେ, ଓଦା ସମୁଦ୍ରଘାସକୁ ଏକାଠି କରି କେତେଥର ସେଇ ଗଦାକୁ ଫୁଙ୍କିଲେ । ଦେଖୁଦେଖୁ ନିଆଁ ଜଳିଉଠିଲା ଏବଂ ମାଛ ଭାଜିହୋଇ ଖାଇବା ଯୋଗ୍ୟ ହୋଇଗଲା । ଏହି ଘଟଣା ପରେ ଲୋକମାନେ ତାଙ୍କୁ ଖାଦ୍ୟ ଦେବାକୁ ଲାଗିଲେ, କେତେଜଣ ରେସ୍ତୋରାଁ ମାଲିକଙ୍କର ଏବେ ଏମିତି ବିଶ୍ୱାସ ଥିଲା ଯେ ମାଈ ମାଁ ଯଦି କୌଣସି ରେସ୍ତୋରାଁକୁ ଯାଇ ଖାଇବା ମାଗିବେ, ତେବେ ତାହା ହେବ ସୌଭାଗ୍ୟର ପକ୍କା ସୂଚନା । ସେମାନେ ତାଙ୍କୁ ପୂରାପେଟ ଖାଇବାକୁ ଦେଉଥିଲେ । କିନ୍ତୁ ପ୍ରାୟ ସେ ଏପରି କାମ କରୁ ନ ଥିଲେ'', ସେମାନେ କହିଲେ ।

''କେଉଁଠି ମିଳିବେ ?'' ମୁଁ ପଚାରିଲି । ମନ୍ଦିର ପାଖରେ ଥିବା ପଥୁରିଆ ଅଞ୍ଚଳରେ ବୋଲି ସେମାନେ କହିଲେ । ସାଧାରଣତଃ ସେ ସମୁଦ୍ର କୂଳରେ ଏଠି ସେଠି ପଡ଼ିଥିବା ପଥରଗୁଡ଼ିକ ମଝିରେ ବସିଥାଆନ୍ତି । କୁକୁରମାନେ ତାଙ୍କୁ ଘେରି ରହିଥାଆନ୍ତି ।

ମୁଁ ଖାଇସାରିଲି । ମୋତେ ଖବର ଦେଇଥିବା ଲୋକର କଥା ଅନୁଯାୟୀ ସାଙ୍ଗରେ କିଛି ଦୋସା ନେଇ କଷ୍ଟରେ ଦେଖାମିଳୁଥିବା ମାଈ ମାଁଙ୍କ ସନ୍ଧାନରେ ବାହାରିପଡ଼ିଲି । ବାଲିରେ ପାଦ ପୋଡ଼ି ଯାଉଥାଏ । ଭାଗ୍ୟ ଭଲ ଯେ ସ୍ୟାଣ୍ଡଲ୍ ପିନ୍ଧିଥିଲି ।

କେତେବେଳେ ବାଲି ଉପରେ, ପୁଣି କେତେବେଳେ ପଥରଗୁଡ଼ିକ ଉପରେ ଚଢ଼ି ଓହ୍ଲେଇ ମୁଁ ସମୁଦ୍ର କୂଳେକୂଳେ ଚାଲୁଥାଏ । କୁକୁରମାନଙ୍କ ଭୁକିବା ଶବ୍ଦ ଶୁଣି ଥମିଗଲି । ଭିନ୍ନଭିନ୍ନ ରଙ୍ଗ ଓ ଉଚ୍ଚତାର ଅଧଡଜନେ କୁକୁର ଗୋଟାଏ ବଡ଼ ପଥର ସାମ୍ନାରେ ଅର୍ଦ୍ଧଚନ୍ଦ୍ରାକାର ଭାବରେ ଠିଆ ହୋଇ ଆଉ ଦାନ୍ତ ଦେଖାଇ ମୋ ଆଡ଼େ ଚାହିଁ ରହିଥିଲେ । ମୁଁ ଆଉ ତ କିଛି କରିପାରିଲି ନାହିଁ, ଖାଲି ସେମାନଙ୍କଆଡ଼କୁ ଚାହିଁରହିଲି ଯେମିତି ସେମାନେ ମୋ ଉପରକୁ ଡେଇଁ ନ ପଡ଼ିବେ ବୋଲି । ପଥରର ପଛରୁ ଗୋଟିଏ ସଙ୍ଗୀତମୟ ଓ ଗୀତଗାଇଲା ପରି ନାରୀ କଣ୍ଠ ଶୁଣାଗଲା । ମୁଁ କଥା ତ କିଛି ବୁଝିଲି ନାହିଁ କିନ୍ତୁ ଶବ୍ଦ ଥିଲା ମନକୁ ଶାନ୍ତି ଦେବାପରି । କୁକୁରମାନେ ଗର୍ଜନ ବନ୍ଦ କରିଦେଲେ ଓ ପଥର ପଛକୁ ଚାଲିଗଲେ । ମୋର ସାହସ ବଢ଼ିଗଲା ଓ ମୁଁ ଆଗକୁ ଯାଇ ପଥରର ପଛକୁ ଚାହିଁଲି ।

ସେଠାରେ ସେ ବସିଥିଲେ ପଥରକୁ ଆଶ୍ରା କରି, ଶିଶୁ ପରି ନଗ୍ନ । ମୁଁ ନିଜକୁ ରୋକିପାରିଲି ନାହିଁ ଓ ଭାବିଲି, ଦିନେ ଏହି ଖରାରେ ପୋଡ଼ି କଳା ପଡ଼ିଯାଉଥିବା ଚେହେରା କେତେ ସୁନ୍ଦର ହୋଇ ନ ଥିବ ! ତାଙ୍କର ଅଧୌତ ଶୁଭ୍ରକେଶ ଘନ ଓ ପ୍ରଚୁର ଥିଲା । ଯେତେବେଳେ ସେ ହସିଲେ, ତାଙ୍କର ଚେହେରା ଉଦ୍‌ଭାସିତ ହୋଇଉଠିଲା । ତାଙ୍କର ଆଖିଗୁଡ଼ିକ, ମୁଁ କେମିତି ତା'ର ବର୍ଣ୍ଣନା କରିବି ? ''ଆସ'' ସେ ନିଜ ପିଲାକୁ ସ୍ନେହମୟୀ

ମା' ଡାକିବା ପରି ଡାକିଲେ ।

ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି ଯେ, ମୋ ଆଖିରୁ ଲୁହର ଧାର ଛୁଟିଲା ଓ ଗୋଟିଏ ଶିଶୁ ପରି ମୁଁ ଜୋର୍‌ରେ କାନ୍ଦି ଚାଲିଲି । ମୋର ସାରା ଦେହ ହଲୁଥାଏ । କାନ୍ଦ ମୋର ଛାତି ଫଟାଇ ବାହାରି ଆସିବା ପରି ଲାଗୁଥାଏ । ମୁଁ ସେହି ସ୍ତନରୁ କରୁଣାର ଦୁଗ୍ଧପାନ କରିବାକୁ ଚାହିଁଲି କିନ୍ତୁ ମୋର ଲାଳନପାଳନର ପଦ୍ଧତି ମୋତେ ସେଥିପାଇଁ ବାଧା ଦେଲା ।

ମାଇ ମାଁ ହାତ ବଢ଼େଇ ମୋ ଦେହର ପ୍ରତିଟି ଅଂଶକୁ ପ୍ରେମର ସହିତ ଆଉଁଶିଦେଲେ । ସେ ନିଜର ସଙ୍ଗୀତମୟ ସ୍ୱରରେ କିଛି କହିଯାଉଥାଆନ୍ତି, କିଛି ବୁଝିପାରୁ ନ ଥାଏ । କିଛି ସମୟ ପରେ ମୋତେ ହାଲ୍କା ଲାଗିଲା । ଯେମିତି ଲୁହ ବୋହିଗଲା ପରେ ମୋର ସବୁ ବୋଝ ଓହ୍ଲାଇ ଗଲା । ମୁଁ ନିଜକୁ ସମ୍ଭାଳି ନେଲି । ମନେପଡ଼ିଲା ଯେ ମୁଁ ଦୋସା ଆଣିଥିଲି, ତାଙ୍କ ଆଡ଼କୁ ବଢ଼ାଇଦେଲି ।

ମାଇ ମାଁ ପୁଡ଼ିଆ ଖୋଲି ଗୋଟିଏ ଦୋସା ନିଜ ପାଇଁ ରଖି ବାକି ସାଥୀ କୁକୁରମାନଙ୍କୁ ବାଣ୍ଟିଦେଲେ । ଖଣ୍ଡେ ମୋ ପାଟିରେ ରଖିଲେ, ମୋର ମୁହଁକୁ ଥାପୁଡ଼େଇଲେ ଏବଂ ଏମିତି ଗୋଟିଏ ଶବ୍ଦ କହିଲେ, ଯାହା ମୁଁ ବୁଝିପାରିଲି, ''ଯା, ଯା'' । ଏହାକୁ ଏବେ ଯିବାର ଇସାରା ବୁଝି ମୁଁ ତାଙ୍କର ପାଦ ତଳେ ଲୋଟିଯାଇ ସାଷ୍ଟାଙ୍ଗ ପ୍ରଣାମ କଲି ଏବଂ ଉଠିପଡ଼ି ଚାଲିବା ଆରମ୍ଭ କଲି ।

ମୁଁ ଯେବେବେଳେ ବସ୍‌ଷ୍ଟାଣ୍ଡକୁ ଯାଉଥିଲି, ଦୂରରେ ଥିବା 'ବିବେକାନନ୍ଦ ରକ୍' ଦେଖିଲି, ଯାହାକୁ ତିନୋଟି ସାଗର ବାରମ୍ବାର ବିଧୌତ କରୁଥିଲେ । ମୁଁ ଭାବିଲି ନିଜର ପ୍ରିୟ ଗୁରୁ ରାମକୃଷ୍ଣଙ୍କ ସହିତ ସାକ୍ଷାତ ହେବାପରେ କ'ଣ ବିବେକାନନ୍ଦଙ୍କର ମଧ୍ୟ ଏହିଭଳି ଅନୁଭୂତି ହୋଇଥିଲା ? ଗୋଟାଏ ତ୍ରିଭେନ୍ଦ୍ରମ୍ ଯାଉଥିବା ବସ୍ ଠିଆ ହୋଇଥିଲା ମୁଁ ସେଥିରେ ବସି ତ୍ରିଭେନ୍ଦ୍ରମରେ ପହଞ୍ଚିଗଲି ।

ଘରେ ପହଞ୍ଚିବା ବେଳକୁ ଡେରି ହୋଇଯାଇଥିଲା । ମା' ସେପର୍ଯ୍ୟନ୍ତ ଚାହିଁ ବସିଥିଲେ । ସେ ଶୋଇବା ପାଇଁ ଚାଲିଗଲେ । ଯିବା ପୂର୍ବରୁ କେବଳ ଏତିକି କହିଲେ, ''ବହୁତ ଡେରି ହେଲାଣି, ଖାଇଦେଇ ଶୋଇ ପଡ଼ ।''

ସେଦିନ ରାତିରେ ମୁଁ ଗୋଟାଏ ସ୍ୱପ୍ନ (ଭିଜନ) ଦେଖିଲି । ଗୋଟାଏ ଚୌଛକି ପାଖରେ ଗୋଟାଏ ବିରାଟ ବରଗଛ ଠିଆ ହୋଇଛି । ଗଛ ତଳେ ବୁଦ୍ଧଙ୍କ ପରି ଚକା

ପକାଇ ମୁଁ ବସିଛି । ମୁଁ ଦୁର୍ବଳ ଥିଲି ଓ ମୋର ଦେହ ନଗ୍ନ ଥିଲା ।, କେବଳ ଗୋଟିଏ କୌପୀନ ମାରିଥିଲି । ମୋର ବାଳ ଜଟା ହୋଇଯାଇଥିଲା ଓ ମୋର କଳା ଦାଢ଼ି ଥିଲା ।

ଗୋଟାଏ ପଟୁ ଜଣେ ଗୋଟାଏ ବାଡ଼ି ଧରି ଆସୁଥିବାର ଦିଶିଲା, ପାଖକୁ ଆସିବାରୁ ମୁଁ ତାଙ୍କୁ ଚିହ୍ନିପାରିଲି । ସେ ମାଈ ମାଁ ଥିଲେ କିନ୍ତୁ ଏବେ ସେ ଜାମୁକୋଳିଆ ରଙ୍ଗର ଶାଢ଼ି ପିନ୍ଧିଥିଲେ । ମୁଁ ଦେଖୁ ଦେଖୁ ତାଙ୍କର ଉଚ୍ଚତା ବଢ଼ିବାରେ ଲାଗିଲା । ସେ ପ୍ରାୟ ବରଗଛ ପରି ଉଚ୍ଚା ହୋଇଗଲେ । ସେ ତଳକୁ ମୁହଁ କରି ମୋତେ ଚାହିଁ ମୃଦୁ ହସିଲେ ଏବଂ କହିଲେ, ‘‘ଭାରି ଭୋକ ହେଉଛି । କିଛି ଖାଇବାକୁ ଦେ ।’’ ମୁଁ ବିପଦରେ ପଡ଼ିଗଲି, ଯେତେଦୂର ମୋର ମନେଥିଲା, ମୋ ପାଖରେ କିଛି ଖାଇବା ଜିନିଷ ନଥିଲା ।

‘‘ନିଜର ଭିକ୍ଷା-ପାତ୍ରକୁ ଚାହାଁ’’, ସେ କହିଲେ । ମୁଁ ଚାହିଁଲି, ଆଉ ଗୋଟିଏ ଚାଉଳର ଦାନା ଦେଖିଲି । ମୁଁ କୁଣ୍ଠିତ ଭାବରେ ସେଇଟି ତାଙ୍କୁ ବଢ଼େଇ ଦେଲି । ସେ ବଡ଼ ଆଗ୍ରହରେ ତାକୁ ଖାଇଲେ, ପୁଣି ଦକ୍ଷିଣ ହସ୍ତରେ ମୋର ମସ୍ତକ ସ୍ପର୍ଶ କଲେ । ‘‘ଆଖି ବନ୍ଦ କର’’, ସେ କହିଲେ । ଏକ ଅନିର୍ବାଚନୀୟ ଆନନ୍ଦର ଲହରୀ ମୋର ମସ୍ତକରୁ ବାହାରି ମୋ ମୋର ପ୍ରତି ରୁମ ମୂଳକୁ ସଞ୍ଚରିଗଲା । ମୁଁ ଉଠି ପଡ଼ିଲି । ବହୁ ପୂର୍ବରୁ ସକାଳ ହୋଇଯାଇଥିଲା । ବଡ଼ ଆଶ୍ଚର୍ଯ୍ୟ କଥା, ମୋର ଶରୀର ସେପର୍ଯ୍ୟନ୍ତ ଆନନ୍ଦୋଚ୍ଛ୍ୱାସରୁ ଏପରି ଶିହରି ଉଠୁଥାଏ ଯେ, ନିଶାଗ୍ରସ୍ତ ଏକ ବ୍ୟକ୍ତି ପରି ମୁଁ ସଠିକ ଭାବରେ ପାଦ ଉପରେ ଠିଆ ହୋଇପାରୁନଥାଏ ।

ଟଳି ଟଳି ମୁଁ କୌଣସି ପ୍ରକାରେ ବାଥ୍‌ରୁମ୍‌କୁ ଗଲି, ପରିସ୍ରା କଲି ଓ ବିଛଣା ଉପରେ ଯାଇ ପୁଣି ଶୋଇପଡ଼ିଲି । ମା’ଙ୍କୁ କହିଲି ଯେ, ମୋର ଦେହ ଭଲ ନାହିଁ ଓ ମୁଁ କଲେଜ ଯାଇପାରିବି ନାହିଁ । ସେ ମୋ କପାଳରେ ହାତ ଦେଇ ଜାଣିପାରିଲେ ଯେ ମୋତେ ବହୁତ ଜର । ଜଳଖିଆରେ ମୋତେ ସେଦିନ କେବଳ କାଞ୍ଜି (ବହୁତ ପାଣିରେ ସିଝା ହୋଇଥିବା ଚାଉଳ) ଖାଇବାକୁ ମିଳିଲା । ସନ୍ଧ୍ୟା ସୁଦ୍ଧା ସେହି ଅନୁଭୂତି ଛାଡ଼ିଗଲା ଓ ମୁଁ ସାଧାରଣ ଅବସ୍ଥାକୁ ଚାଲିଆସିଲି । କିନ୍ତୁ ସେ ଘଟଣାର ସ୍ମୃତି ସବୁଦିନପାଇଁ ରହିଗଲା ।



# 13. ପବିତ୍ର ପାଗଳପଣକୁ ବୁଝିବାର ଶକ୍ତି

ଆଗକୁ ଯିବା ପୂର୍ବରୁ ମୁଁ ଆଉ ଗୋଟିଏ ଅଜବ ସାକ୍ଷାତ ବିଷୟରେ କହିବାକୁ ଚାହେଁ । ଜଣେ ପରିଚିତ କାଠମିସ୍ତ୍ରୀଠାରୁ ଜଣେ ଆଶ୍ଚର୍ଯ୍ୟ ଧରଣର ସାଧୁ, ଯେ ଲୋକମାନଙ୍କୁ ଗୋଇଠା ମାରୁଥିଲେ, ତାଙ୍କ ବିଷୟରେ ଶୁଣିବାକୁ ପାଇଲି । ବୀମାପଲ୍ଲୀ, ଯେଉଁଠାରେ ମୋର କଲଡ଼ି ମସ୍ତାନଙ୍କ ସହିତ ସାକ୍ଷାତ ହୋଇଥିଲା, ତାହାର ନିକଟରେ ଥିବା ପୁନ୍ତରାରେ ରହୁଥିଲେ ସେହି ସାଧୁଜଣକ । ବଡ଼ଦିନ ଛୁଟିଥାଏ । ଯିବି ନ ଯିବି, ଏମିତି ଇତସ୍ତତଃ ହେଉଥିବାବେଳେ, କୌତୂହଳକୁ ଚାପିରଖି ନ ପାରି ଗୋଟାଏ ଶୁକ୍ରବାର ଦିନ ମୁଁ ପୁନ୍ତରା ଯିବାର ବସ୍ ଧରିଲି । ସେଠି ପହଞ୍ଚି ଦେଖିଲି, ଦଳେ ଲୋକ ବାଲି ଉପରେ ବସିଥିବା ଜଣେ ଆଶ୍ଚର୍ଯ୍ୟ ଧରଣର ଲୋକକୁ ଘେରିରହିଛନ୍ତି ।

ତାଙ୍କର ଦୁର୍ବଳ କଳା ଦେହରେ ପରସ୍ତପରସ୍ତ ମଇଳା ଜମିଥିଲା । ସେ ଗୋଟିଏ ଧୋତି ଛଡ଼ା ଆଉ କିଛି ପିନ୍ଧି ନ ଥିଲେ । ତାଙ୍କର ଜଟା ଓ ଦାଢ଼ି ଏତେ ଲମ୍ବା ଥିଲା ଯେ, ଭୂଇଁରେ ଲୋଟୁଥିଲା ଏବଂ ତାଙ୍କର ଆଖି ଭୟାଳ ଥିଲା । ଆଖି କ୍ଷଣକପାଇଁ ମଧ୍ୟ ସ୍ଥିର ହୋଇ ରହିପାରୁ ନଥିଲା । ଜାଲରେ ଛନ୍ଦି ହୋଇଯାଇଥିବା କୌଣସି ଜାନୁଆରର ଆଖିପରି ତାହା ଜଙ୍ଗଲୀ ଥିଲା । ମୁଁ ବି ଯାଇ ଭିଡ଼ରେ ମିଶିଗଲି ଏବଂ କିଛି ସମୟପରେ ଯେତେବେଳେ ମୁଁ ଭାବୁଥିଲି ଯେ ଏଠାରୁ ବାହାରିଯିବାଟା ବୁଦ୍ଧିମାନର କାମ ହେବ ବୋଲି, ସେହି ବିଚିତ୍ର ଲୋକ ସେତିକିବେଳେ ମୋତେ ଇସାରାରେ ଡାକିଲେ । ମୁଁ ଥମିଗଲି, ମୋ ପାଖରେ ଠିଆ ହୋଇଥିବା କିଏ ଜଣେ କହିଲା, "ଯା, ଭାଗ୍ୟବାନ ଲୋକ ତୁମେ" ।

ଇତସ୍ତତଃ ହୋଇ ମୁଁ ସାମ୍ନାକୁ ଗଲି ଓ ତାଙ୍କ ପାଖରେ ଯାଇ ଠିଆ ହେଲି । ସେ ଇସାରାରେ ମୋତେ ନଇଁବାକୁ କହିଲେ । ମୁଁ ଆଣ୍ଠୁମାଡ଼ି ବସି ତାଙ୍କ ଆଡ଼କୁ ମୁଣ୍ଡ ନୁଆଇଁଲି । ମୁଁ ଅତି ଦୁର୍ଗନ୍ଧର ଧକ୍କାର ଆଶା କରିଥିଲି କିନ୍ତୁ ଆଶ୍ଚର୍ଯ୍ୟ କଥା, ମୋତେ ହୋମ ସାମଗ୍ରୀର ସୁଗନ୍ଧ ମିଳିଲା । କିନ୍ତୁ କୌଣସି ଅନ୍ୟ ଗୋଟାଏ ଜିନିଷ ମୋତେ ଧକ୍କା ଦେଲା, ବେଶ ଟାଣୁଆ ଧକ୍କା ।

କିଛି ସାବଧାନବାଣୀ ନ ଶୁଣେଇ ସେ ବସିବସି କହୁଣୀ ଉପରେ ଭରା ଦେଇ ମୋର ଡାହାଣ ଗାଲକୁ ଏକ ଶକ୍ତ ଗୋଇଠା ପକାଇଲେ । ମୋ ଆଖି ଆଗରେ ଆଲୁଅ ଖେଳିଗଲା, ମୁଁ ଭୂଇଁରେ ପଡ଼ିଗଲି ଓ ଗୋଟାଏ ଗଡ଼ା ଖାଇଲି । ତା'ପରେ ଉଠି ଠିଆହେଲି ଓ ଗାଲକୁ ଆଉଁଶିଲି । ଆମ ଭିତରେ କିଛି କଥାବାର୍ତ୍ତା ହେଲା ନାହିଁ । ସ୍ୱାମୀଙ୍କର ମୋ ପ୍ରତି ଆଉ କୌଣସି ଆଗ୍ରହ ଅବଶିଷ୍ଟ ନ ଥିଲା ଏବଂ ସେ ମଧ୍ୟ ଅନ୍ୟତ୍ର ଦେଖୁଥିଲେ । ସେଠାରେ ରହିବାର କିଛି କାରଣ ନ ଥିଲା । ମୁଁ ବସ୍‌ଷ୍ଟାଣ୍ଡ ଆଡ଼କୁ ଚାଲିଲି ।

ବସ୍‌ରେ ଚଢ଼ିଲା ପରେ ମୋତେ ଲାଗିଲା, କିଛି ମାସ ତଳେ ଶୀର୍ଷାସନ କରିବାବେଳେ ପଡ଼ିଯିବାରୁ ମୋ' ପିଠି ତଳର ଡାହାଣ ପଟେ ଯେଉଁ କଷ୍ଟ ହେଉଥିଲା, ତାହା ଉଭାନ୍ ହୋଇଯାଇଛି । ମୁଁ ଭାବୁଥିଲି ଫେରିଯାଇ ତାଙ୍କୁ ଧନ୍ୟବାଦ ଦେବି କି ନାହିଁ ବୋଲି, ଏହି ସମୟରେ ବସ ଚାଲିବା ଆରମ୍ଭ କରିଦେଲା । ସେହି ଅଜବ ବ୍ୟକ୍ତିଜଣଙ୍କୁ ମୁଁ ମନେ ମନେ ଧନ୍ୟବାଦ ଦେଲି । ତାଙ୍କ ସହିତ ମୋର ଆଉ ଦେଖା ହୋଇ ନାହିଁ । ପୁନ୍ତରା ସ୍ୱାମୀଙ୍କର ମୋର ଆଧ୍ୟାତ୍ମିକ ବିକାଶରେ କ'ଣ ପ୍ରଭାବ ପଡ଼ିଲା, ସେକଥା ତ ମୁଁ କହିପାରିବି ନାହିଁ କିନ୍ତୁ ମୁଁ ସଂଶୟୀ ପ୍ରକୃତିର ହୋଇଥିଲେ ମଧ୍ୟ ଭାବୁଛି, ମୋର ପିଠିର କଷ୍ଟ ଚାଲିଯିବାଟା କ'ଣ ସତରେ ଆକସ୍ମିକ ଥିଲା ?

ମୋର ସାକ୍ଷାତଗୁଡ଼ିକର ଉପରଲିଖିତ ବିବରଣୀ ପଢ଼ି ଆପଣ ହୁଏତ ଭାବିବେ ସେମାନଙ୍କ ମଧ୍ୟରୁ ବହୁ ମହାନୁଭବ ବ୍ୟକ୍ତି କାହିଁକି ଅସାମାନ୍ୟ ଜୀବନ ବିତାଉ ଥିଲେ–ନଗ୍ନ, ଅପରିଷ୍କାର ଏବଂ ଅଜବ ଆଚରଣକାରୀ ଥିଲେ । ହିନ୍ଦୁ ପରମ୍ପରାରେ ଏମିତି ପାଗଳ ପରି ଦିଶୁଥିବା ସନ୍ଥମାନଙ୍କୁ ଅବଧୂତ କୁହାଯାଏ, ସୂଫୀ ପରମ୍ପରାରେ ସେମାନଙ୍କୁ ମସ୍ତ କିମ୍ବା ମସ୍ତାନ୍ କୁହାଯାଏ ।

ଅବଧୂତ ଏବଂ ମସ୍ତାନମାନଙ୍କୁ ଆଧ୍ୟାତ୍ମିକ ଭାବରେ ଉଚ୍ଚ ସ୍ତରରେ ପହଞ୍ଚିଥିବା ବ୍ୟକ୍ତିମାନଙ୍କର ସେହି ଶ୍ରେଣୀରେ ନିଆଯାଏ, ଯେ ଅପ୍ରତିବନ୍ଧ ସତ୍ୟ ସହିତ ନିଜର ତଥାକଥିତ ସାକ୍ଷାତକାର ହେତୁ ତଥାକଥିତ ସଭ୍ୟ ସମାଜଦ୍ୱାରା ଲୋକଙ୍କ ଉପରେ ଲଗାଯାଇଥିବା ପ୍ରତିରୋଧଗୁଡ଼ିକରୁ ନିଜନିଜକୁ ସ୍ୱତନ୍ତ୍ର କରି ନେଇଥାଆନ୍ତି । ସାଧାରଣ ସାମାଜିକ ବ୍ୟବହାରରୁ ମୁକ୍ତ ହୋଇଯାଇଥିବା ହେତୁ ସେ ସୁସ୍ଥ–ଚିତ୍ତ ହୋଇ ମଧ୍ୟ ପାଗଳ ପରି ମନେ ହୁଅନ୍ତି । ସେମାନଙ୍କ ଭିତରୁ ଜଣଙ୍କୁ ଯେତେବେଳେ ତାଙ୍କର ପାଗଳ ପରି ଆଚରଣ ବିଷୟରେ ପଚରା ହେଲା, ସେତେବେଳେ ସେ କହିଲେ ଯେ ତାଙ୍କୁ ତ ପୃଥିବୀ ସାରା କେଉଁଠାରେ ହେଲେ ସୁସ୍ଥ–ଚିତ୍ତ ଥିବା ମଣିଷ ମିଳିଲେ ନାହିଁ । ''ସମସ୍ତେ'' ସେ କହିଲେ, ''କିଛି ନା କିଛି ଜିନିଷପାଇଁ ପାଗଳ ।'' ତାଙ୍କର ମତ ଥିଲା ପାଗଳଖାନାର ଭିତରେ ଥିବା ଲୋକ ଓ ବାହାରର ଲୋକଙ୍କ ମଧ୍ୟରେ ଏତିକି ଫରକ ଯେ, ସେମାନେ ଭିତରେ ଓ ଅନ୍ୟମାନେ ବାହାରେ ।

ଏମିତି କିଛି ସାଧୁ ଅଛନ୍ତି, ଯେଉଁମାନେ ଅବଧୂମାନଙ୍କର ସ୍ଥିତିର ଅନୁକରଣ କରି ନଗ୍ନ ହୋଇ ଘୂରି ବୁଲନ୍ତି କିମ୍ବା ବିଚିତ୍ର ବ୍ୟବହାର କରନ୍ତି । ନାଗା ସାଧୁ ଏବଂ ଦିଗମ୍ବର ଜୈନ ମୁନି କହନ୍ତି ଯେ, ସେମାନଙ୍କର ନଗ୍ନତା ହେଉଛି ବସ୍ତ୍ର ସହିତ ସବୁକିଛି ତ୍ୟାଗ କରି ଶିଶୁର ପ୍ରାକୃତିକ ସରଳତାକୁ ଫେରିଆସିବାର ପ୍ରତୀକ ।

ସୂଫୀ ପରମ୍ପରାରେ ମସ୍ତ କୁହାଯାଉଥିବା ସନ୍ଥଙ୍କୁ ଏହି ନାମ ଦିଆଯାଇଛି କାରଣ କୁହାଯାଏ ଯେ ସେହି ଲୋକମାନେ ସଦାବେଳେ ନିଜର ପ୍ରେମାସ୍ପଦଙ୍କ ପ୍ରେମରେ ଓ ତାଙ୍କ ସହିତ ମିଳିତ  ହେବାର ଆନନ୍ଦଉଚ୍ଛ୍ୱାସରେ ମସ୍ତ ବା ମତ୍ତ ହୋଇ ରହିଥାଆନ୍ତି । ଆପଣ ଦେଖିପାରିବେ ଯେ ଏକ ସାଧାରଣ ପାଗଳ ଓ ଏକ ସନ୍ଥ-ପାଗଳଙ୍କ ମଧ୍ୟରେ ଏତେକମ୍ ପାର୍ଥକ୍ୟ ଥାଏ ଯେ କେତେଥର ସନ୍ଥଙ୍କୁ ପାଗଳ ଓ ପାଗଳଙ୍କୁ ସନ୍ଥ ବୋଲି ଜଣାପଡ଼ିପାରେ । ବାସ୍ତବରେ ଏମିତି କେତେଥର ହୁଏ । ଏପରି ବହୁତ କମ୍ ନିର୍ଦ୍ଦେଶନାମା ଅଛି, ଯାହାଦ୍ୱାରା ଜଣକୁ ଅନ୍ୟଜଣଙ୍କଠାରୁ ଅଲଗା କରି ଚିହ୍ନିହେବ । ସାଧକମାନଙ୍କପାଇଁ ସବୁଠୁଁ ଭଲ ହେଉଛି ପାଗଳପରି ଦିଶୁଥିବା ବ୍ୟକ୍ତିମାନଙ୍କଠାରୁ ମାର୍ଗଦର୍ଶନ ନ ନେବା ।

ସନ୍ଥମାନଙ୍କର ଆଉ ଏକ ଶ୍ରେଣୀ ବିଚିତ୍ର ବ୍ୟବହାର କରନ୍ତି । ଏହିମାନେ ଏକା ଥିବାବେଳେ ପୂରା ସହଜ ହୁଅନ୍ତି କିନ୍ତୁ ବେକାରରେ ପାଖରେ ଲାଗି ରହୁଥିବା ଲୋକଙ୍କୁ ଘଉଡ଼ାଇବାପାଇଁ ବିଚିତ୍ର ଏବଂ ଲଜ୍ଜାଜନକ ବ୍ୟବହାର କରନ୍ତି । ସେହିପରି ଏକ ସଂପ୍ରଦାୟ ହେଲା ସୂଫୀମାନଙ୍କର ମଲାମତୀ ସଂପ୍ରଦାୟ ।

× × ×

ଏବେ ମୁଁ ବନ୍ଧୁବାନ୍ଧବ, ସାଙ୍ଗସୁଖ ଇତ୍ୟାଦିଙ୍କର ପରିଚିତ ବନ୍ଧନକୁ ତ୍ୟାଗକରି ବିଶାଳତର ଚେତନାର ସନ୍ଧାନରେ ଯିବାର ତତ୍ପରତାର ଦ୍ୱାରଦେଶରେ ଥିଲି । ଦୁଇଟି ଏମିତି କଥା ଥିଲା,ଯାହା ମୋତେ ଏହି ନିର୍ଣ୍ଣୟ ନେବାରେ ବାଧା ଦେଇପାରିଥାଆନ୍ତା କିମ୍ବା ଭ୍ରମାତ୍ମକ ଦିଗକୁ ନେଇଯାଇ ପାରିଥାଆନ୍ତା । ମୋ ଜାଣତରେ ସେହି ଦୁଇଟି କଥାର ସନ୍ତୋଷଜନକ ସମାଧାନ ହୋଇଯାଇଥିଲା । ସେଇ କଥା ବୁଝାଇ ଦେଉଛି ।

ପ୍ରଥମ କଥା, ରକ୍ଷଣଶୀଳ ମୁସଲମାନମାନେ ମୋର ରହସ୍ୟମୟ ବ୍ୟବହାର ଦେଖି ନାସିକା କୁଞ୍ଚନ କରୁଥିଲେ, ସେମାନଙ୍କ ଭ୍ରୂଲତା କପାଳକୁ ଉଠିଯାଉଥିଲା । ମୁଁ ଯଦି ୱାହବୀ ପରମ୍ପରାରେ ଶିକ୍ଷିତ ହୋଇଥାଆନ୍ତି, ତେବେ ମୁଁ ସାମାଜିକ ଦାୟିତ୍ୱରୁ ଅଳ୍ପ ସମୟ ପାଇଁ ମଧ୍ୟ ଖସିଯିବା କଥା ଚିନ୍ତା କରିପାରି ନ ଥାନ୍ତି ।

ସୌଭାଗ୍ୟବଶତଃ ମୋତେ ଓ ମୋର ଭଉଣୀଙ୍କୁ କୋରାନ ଓ ଶେରିୟତ୍ ପଢ଼ାଇବା ପାଇଁ ଯେଉଁ ମୌଲବୀ ନିଯୁକ୍ତ ହୋଇଥିଲେ, ସେ ସୂଫୀ ଥିଲେ । ସୂଫୀ ଶିକ୍ଷାର ଅନ୍ତର୍ନିହିତ ରହସ୍ୟକୁ ମୋତେ ବୁଝାଇଥିବା ହେତୁ ମୁଁ ସବୁବେଳେ ତାଙ୍କ ନିକଟରେ ଋଣୀ ରହିବି ।

କେତେଥର, ବିଶେଷତଃ ଯେତେବେଳେ କୌଣସି କାରଣରୁ ମୋ ଭଉଣୀ ଅନୁପସ୍ଥିତ ରହୁଥିଲା, ସେ ସୁନ୍ଦର ଭାବରେ ଆଧ୍ୟାତ୍ମିକ ରାସ୍ତାରେ ଯାଇଥିବା ଯାତ୍ରୀମାନଙ୍କର ଶିକ୍ଷା ବିଷୟରେ ଆଲୋକପାତ କରୁଥିଲେ । ସେଥିରୁ ମୋତେ ନିଜେ ଆଧ୍ୟାତ୍ମିକ ଭଣ୍ଡାରର ସନ୍ଧାନ କରିବାର ପ୍ରେରଣା ଓ ପ୍ରୋତ୍ସାହନ ମିଳୁଥିଲା । ସେଥିପାଇଁ ମୁଁ ଯେକୌଣସି ବଳିଦାନ କରିବାକୁ ପଶ୍ଚାତ୍‌ପଦ ନ ଥିଲି ।

ଦ୍ୱିତୀୟ କଥା, ସିଦ୍ଧିଲାଭ କରିଥିବା ସାଧକମାନଙ୍କଦ୍ୱାରା ସବୁ ସାଧକମାନଙ୍କୁ ଚେତାବନୀ ଦିଆଯାଇଛି ଯେ, ଚମତ୍କାରୀ ସିଦ୍ଧିଗୁଡ଼ିକର ଆକର୍ଷଣ ଓ ସେଗୁଡ଼ିକୁ ଲାଭ କରିବାର ଇଚ୍ଛାରୁ ସେମାନେ ନିଜକୁ ରକ୍ଷା କରନ୍ତୁ । ରାମକୃଷ୍ଣ ପରମହଂସ ଏକଥା ମଧ୍ୟ କହିଛନ୍ତି ଯେ, ଯଦି କୌଣସି ମହାତ୍ମା ଯାଦୁକରୀ ଶକ୍ତି ପ୍ରଦର୍ଶନ କରୁଛନ୍ତି, ତେବେ ତାଙ୍କଠାରୁ ଦୂରଦୂରାନ୍ତକୁ ପଳାଇଯିବା ଉଚିତ । ପିଲାଦିନୁ ମୋର ଯାଦୁ ଓ ତଥାକଥିତ ଅଲୌକିକ ଶକ୍ତିଗୁଡ଼ିକ ପ୍ରତି ଆଗ୍ରହ ଥିଲା । ତେଣୁ ମୁଁ ଚତୁର ଯୁକ୍ତି ଏବଂ ଆନୁଷ୍ଠାନିକ ଯାଦୁ ସମ୍ପର୍କରେ ପ୍ରଭୂତ ସାହିତ୍ୟ ସହିତ ପରିଚିତ ଥିଲି । କେବଳ ସେତିକି ନୁହେଁ, ମୁଁ ବହୁତ ଯାଦୁକରଙ୍କୁ ଭେଟିଥିଲି ଏବଂ ନିଜେ ସେମାନଙ୍କଠାରୁ ଯାଦୁ ଶିଖି ନେଇଥିଲି । ଏମିତିକି ମୁଁ କଲେଜ ଏବଂ ଅନ୍ୟ ଛୋଟକାଟିଆ ସମାରୋହଗୁଡ଼ିକରେ ଯାଦୁର ପୂରା 'ଶୋ' କରିପାରୁଥିଲି, ସେଥିରେ ଥିଲା ବଳେବଳେ ଉପରକୁ ଉଠିଯିବା, ଭାରତୀୟ ରଶିର ଖେଳ ଓ ଗୋଟାଏ ଯୁବତୀକୁ ଦି'ଫାଳ କରି ଚିରିଦେବା ।

ଛୋଟ ଛୋଟ କରାମତି ଯେପରି ହାୱାରୁ ବିଭୂତି ସଂଗ୍ରହ କରିବା, ସୁନାମୁଦି ଓ ସ୍ଫଟିକର ଶିବଲିଙ୍ଗ ବାହାର କରିବା ମୋ ପାଇଁ ପିଲାଖେଳ ଥିଲା । ମୁଁ ବହୁ ସନ୍ଥଙ୍କୁ ସେମାନଙ୍କର ଶିଷ୍ୟମାନଙ୍କ ସାମ୍ନାରେ ଏହିସବୁ କରାମତି ଦେଖାଇ ଅସନ୍ତୁଷ୍ଟ କରିଦେଇଥିଲି । ଏଠାରେ ଯେଉଁ କଥା ପ୍ରାସଙ୍ଗିକ, ତା' ହେଉଛି, ଯାଦୁ ଓ ତଥାକଥିତ ଚମତ୍କାରର ଗଭୀର ଅଧ୍ୟୟନ କରିସାରିଥିବାରୁ ମୁଁ ତାହାଦ୍ୱାରା ପ୍ରଭାବିତ ନ ଥିଲି ଏବଂ ସେସବୁର ପ୍ରଦର୍ଶନକୁ କିଛି ବଡ଼ କଥା ବୋଲି ମାନୁ ନ ଥିଲି । ତେଣୁ ସେସବୁର ଉପଯୋଗ କରି ସରଳ ଲୋକମାନଙ୍କୁ ଆକର୍ଷିତ କରି ସେମାନଙ୍କୁ ଶୋଷଣ କରୁଥିବା ତଥାକଥିତ ମହାତ୍ମାମାନଙ୍କ କବଳରେ ପଡ଼ିଯିବାର ବିପଦରୁ ମୁକ୍ତ ଥିଲି । ମୁଁ ଜଣେ ବାସ୍ତବିକ ଆଧ୍ୟାତ୍ମିକ ଗୁରୁଙ୍କର ସନ୍ଧାନପାଇଁ ପ୍ରସ୍ତୁତ ଥିଲି । ସେହି ସନ୍ଧାନ ଯେତେ କଷ୍ଟସାଧ୍ୟ ହେଲେ ମଧ୍ୟ ସେଥିପାଇଁ ପ୍ରସ୍ତୁତ ଥିଲି । ମୁଁ ଆଉ ଗେରୁଆ-ବସ୍ତ୍ରଧାରୀ ଯାଦୁକରମାନଙ୍କ ଦ୍ୱାରା ଠକି ଯିବାର ସମ୍ଭାବନା ନ ଥିଲା ।



# 14. ଅଭ୍ୟାସ ଦୌଡ଼

ଏବେ ମୁଁ ବାହାରି ପଡ଼ିବାକୁ ବ୍ୟାକୁଳ ଥିଲି । ହିମାଳୟର ଆକର୍ଷଣ ଅପ୍ରତିରୋଧ ହୋଇ ଉଠିଥାଏ । ଯେତେବେଳେ ବି ମୁଁ ବଡ଼ ବାଦଲର ଭେଳା ଦେଖୁଥିଲି, ମୋର କଳ୍ପନାରେ ବରଫର ଶିଖର ମନ୍ତ୍ରବତ୍ ଉଭା ହେଉଥିଲେ । ପାହାଡ଼ଗୁଡ଼ିକୁ ମଧ୍ୟ ମୁଁ ନିଜର ହିମାବିଷ୍ଟ ମନରେ ଶୁଭ୍ର ରଙ୍ଗ ଦେଉଥିଲି । ଦୂରରୁ ହିମର ନିଳୟ ମୋତେ ଆହ୍ୱାନ କରୁଥିଲା । ମୁଁ ସ୍ୱପ୍ନରେ ଉଚ୍ଚାଉଚ୍ଚା ରୁପେଲି ପାହାଡ଼ଗୁଡ଼ିକର ଗୁମ୍ଫାରେ ଯୋଗୀମାନଙ୍କୁ ଧ୍ୟାନରେ ବସିଥିବାର ଦେଖୁଥିଲି । ଥରେ ସ୍ୱପ୍ନରେ, ମୋର ପୂରା ବିଶ୍ୱାସ ମୁଁ ସେହି ଯୋଗୀଙ୍କୁ ଦେଖିଲି ଯାହାଙ୍କୁ ମୁଁ ସାଢ଼େ ନ'ବର୍ଷ ବୟସରେ ପଣସଗଛ ତଳେ ଦେଖିଥିଲି । ସେ ହିମାଳୟରେ ଗୋଟିଏ ଗୁମ୍ଫା ପାଖରେ ଠିଆ ହୋଇ ମୋର ପ୍ରତୀକ୍ଷା କରୁଥିଲେ ।

ତା'ପରେ ମୁଁ ହିମାଳୟ ଉପରେ ବହୁତ ସାହିତ୍ୟ ପଢ଼ି ନେଲି, ଯାତ୍ରା ବୃତ୍ତାନ୍ତ ଓ ରେଳବାଇ ଗାଇଡ୍ ପଢ଼ିନେଲି ଏବଂ ଏକ ଯୋଜନା ପ୍ରସ୍ତୁତ କରିଦେଲି ।

ବାସ୍ତବତା ଦୃଷ୍ଟିରୁ ମୁଁ ଠିକଣା କଲି ଯେ, ଗୁରୁଙ୍କ ସହିତ ଅସଲ ମିଳନ ପୂର୍ବରୁ ଥରେ ଘର ଛାଡ଼ିଲେ କେମିତି ହେବ ଦେଖିବା ଉଚିତ । ସେଥିପାଇଁ ଘରଛାଡ଼ି ଦଶଦିନ ଖଣ୍ଡେ କୁଆଡ଼େ ଚାଲିଗଲେ ହେବ । ପ୍ରଥମତଃ ମୋତେ ଜଣାପଡ଼ିବ ଯେ, ମୁଁ ଏତେଦିନ ଘର ଛାଡ଼ି ଏକଲା ରହିପାରିବି କି ନାହିଁ । ଦ୍ୱିତୀୟତଃ, ଦଶଦିନ ପରେ ଫେରିଆସି ମୁଁ ଜାଣିପାରିବି ଯେ ଯଦି ମୁଁ ପ୍ରକୃତରେ ଚାଲିଯିବି, ତେବେ ମୋର ମା-ବାପାଙ୍କୁ କେମିତି ଲାଗିବ, ବିଶେଷ ଭାବରେ ମୋର ମା'ଙ୍କୁ ଯେ ମୋତେ ବହୁତ ଭଲ ପାଉଥିଲେ । ତୃତୀୟ କଥା ହେଲା, ମୋର ଅତ୍ୟନ୍ତ ପ୍ରିୟ ମୋର ସାଢ଼େ ପାଞ୍ଚବର୍ଷର ସାନ ଭଉଣୀକୁ ଛାଡ଼ି ଚାଲିଗଲେ, ତା'ର ପ୍ରଭାବ ମୋ' ଉପରେ କେମିତି ପଡ଼ିବ, ସେକଥା ମଧ୍ୟ ଜଣାପଡ଼ିଯିବ ।

ମୋର ଜଣେ ଆତ୍ମୀୟ ଅବସରପ୍ରାପ୍ତ ମାଜିଷ୍ଟ୍ରେଟ ଥିଲେ । ତାଙ୍କଠାରୁ ଶୁଣିଥିଲି ଯେ ତିରୁନଲବେଲୀ ନିକଟରେ ତାମ୍ରପର୍ଣ୍ଣୀ ନଦୀକୂଳରେ ଥିବା ଗୋଟାଏ ଛୋଟ ଗାଆଁ

ପୋଟଲପୁତ୍ତୂରରେ ଥିବା ମକବରାରେ ହଳେ ସ୍ୟାଣ୍ଡଲ୍ ରଖାଅଛି । କୁହାଯାଏ, ସେହି ସ୍ୟାଣ୍ଡଲ୍ ଦୁଇଟି ହେଉଛି ସୂଫୀ ସନ୍ଥ ଅବ୍‌ଦୁଲ୍ ଖାଦର ଜିଲାନୀଙ୍କର, କାଦରିୟା ସଂପ୍ରଦାୟର ସୂଫୀ ଫକିରମାନଙ୍କର ଗୋଟିଏ ଛୋଟ ଦଳ ସେଠାରେ ରହୁଥିଲେ ।

ମୋତେ ଏକଥା ମଧ୍ୟ ସେ କହିଥିଲେ ଯେ, ସେଇ ପାଖରେ ହିଁ ଘନ ଜଙ୍ଗଲ ଭିତରେ ଗୋଟିଏ ଛୋଟ ପାହାଡ଼ରେ ଗୋଟିଏ ଗୁମ୍ଫା ଅଛି । ସେଇ ଗୁମ୍ଫାରେ ଜଣେ ଅଜଣା ସନ୍ଥଙ୍କର ସମାଧି ରହିଛି । ଉକ୍ତ ସୂଫୀ ଦଳର ଲୋକମାନେ ସେଠାକୁ ଯିବା ଆସିବା କରୁଥିଲେ । ଶୁଣାଯାଏ ଯେ, କିଛି ବିଶେଷ ଦିନର ରାତିରେ କେତେଗୁଡ଼ିଏ ଅଜବ ଜୀବ ଗୁମ୍ଫାକୁ ଆସୁଥିଲେ ।

ମୁଁ ପୋଟ୍ଟଲପୁତ୍ତୂର ଯିବାକୁ ଠିକଣା କଲି । ସେ ଜାଗା ତ୍ରିଭେନ୍ଦ୍ରମରୁ ବେଶି ଦୂରରେ ନ ଥିଲା । ମୋ ପାଖରେ ପକେଟ ଖର୍ଚ୍ଚରୁ ବଳିଥିବା ପଇସା ଥିଲା । ତେଣୁ ଟିକେଟ କିଣିବାପାଇଁ ଅସୁବିଧା ହେଲା ନାହିଁ । ମୁଁ ପ୍ରଥମେ ନାଗରକୋଇଲ ଯାଉଥିବା ବସ ଧରିଲି ଏବଂ ସେଠାରୁ ତିରୁନଲବେଲୀ ଯାଉଥିବା ବସ୍‌ରେ ବସିଲି । ସନ୍ଧ୍ୟା ସୁଦ୍ଧା ମୁଁ ପୋଟ୍ଟଲପୁତ୍ତୂର ପହଞ୍ଚିଗଲି । ମୋ ପାଖରେ ମୋ' ପିନ୍ଧାଲୁଗା ଛଡ଼ା ଆଉ ଅନ୍ୟ କପଡ଼ା ନ ଥିଲା– ଧଳା କମିଜ, ଧଳା ଧୋତି ଆଉ ଏକ ବଡ଼ ଧଳା ତଉଲିଆ, ଯାହାକୁ ମୁଁ ବେକରେ ଗୁଡ଼ାଇଥିଲି । ଘରେ ମୁଁ କୁଆଡ଼େ ଯାଉଛି ବୋଲି କେହି ଜାଣି ନ ଥିଲେ ।

ପୋଟ୍ଟଲପୁତ୍ତୁରରେ ପହଞ୍ଚିବା ମାତ୍ରେ ସମୟ ନଷ୍ଟ ନ କରି ମୁଁ ଯେଉଁ ସୂଫୀମାନଙ୍କ ବିଷୟରେ ଶୁଣିଥିଲି, ସେମାନଙ୍କର ସନ୍ଧାନ କରିବା ଆରମ୍ଭ କରିଦେଲି । ଶୁଣିଲି, ମକବାରା ଏବଂ ତାକୁ ଲାଗିଥିବା ମସ୍‌ଜିଦ୍ ପାଖରେ ଥିବା ବିରାଟ ଧଳା ବଙ୍ଗଳା ଜମାତର ଆନୁବଂଶିକ ମୁଖିଆ ଶେଖ୍ ସାହେବଙ୍କର ନିବାସ ଥିଲା । ତାଙ୍କୁ 'ଇନାମନଦାର' କୁହାଯାଉଥିଲା । ମୁଁ ଶେଖଙ୍କର ବଙ୍ଗଳାରେ ପହଞ୍ଚିଗଲି ଏବଂ କିଛି ସମୟ ଅପେକ୍ଷା କଲା ପରେ ମୋତେ ତାଙ୍କ ସାମ୍ନାକୁ ନିଆଗଲା । ତାଙ୍କୁ ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା; ସେ ସାଧାରଣ ଲୋକ ପରି ଦିଶୁଥାଆନ୍ତି ଓ ସାଧାରଣଙ୍କ ପରି ଲୁଗାପଟା ପିନ୍ଧିଥାଆନ୍ତି – ଧଳା କମିଜ୍ ଓ ଧଳା ପ୍ୟାଣ୍ଟ । ସେ ଅଧା ବୟସର ଥିଲେ ଓ ତାଙ୍କର ରଙ୍ଗ ଗୋରା ଥିଲା । ତାଙ୍କର ସଯତ୍ନବର୍ଦ୍ଧିତ କଳା ଦାଢ଼ି ଓ ପତଳା ନିଶ ଥିଲା । ପଗଡ଼ି ନ ଥିଲା ବା ଟୋପି ମଧ୍ୟ ନ ଥିଲା ।

ତାଙ୍କର ଚଉକି ପଛରେ, କାନ୍ଥରେ ସାଗୁଆ ଡ୍ରେସ ପିନ୍ଧିଥିବା ଓ ଗେରୁଆ ରଙ୍ଗର ଟୋପୀ ପିନ୍ଧିଥିବା ଜଣେ ବିଶିଷ୍ଟ ବ୍ୟକ୍ତି ପରି ଦିଶୁଥିବା ଲୋକଙ୍କର ଫଟୋ ଥିଲା । ମୁଁ ଫଟୋକୁ ଚାହିଁଛି, ସେ କହିଲେ, ''ମୋର ପିତାଜୀ'' । ଆମେ ଅନୌପଚାରିକ ଭାବରେ

କେତେକ ବିଷୟରେ ଚର୍ଚ୍ଚା କଲୁ । ସେ ଭଦ୍ରତାର ସହିତ ସୂଫୀ ମତରେ ମୋତେ ଦୀକ୍ଷା ଦେବାର ଅନୁରୋଧକୁ ଅସ୍ୱୀକାର କଲେ । ସେ ଦୁଇଟି କାରଣ ଦେଲେ । ପ୍ରଥମ– ଚାଳିଶ ବର୍ଷ ହେଲା ପରେ ସାଧକକୁ ଦୀକ୍ଷା ଦିଆଯାଏ, ଦ୍ୱିତୀୟ– ଜଣେ ସୂଫୀ ଜୀବନକୁ ସମ୍ପୂର୍ଣ୍ଣ ଭାବରେ ଅତିବାହିତ କରେ, ତେଣୁ ବାହାସାହା ହେବାର ଅନୁଭବ ଆବଶ୍ୟକ । ମୋର ବାହାଘର ହୋଇ ନାହିଁ, ତେଣୁ ମୋତେ ଅପେକ୍ଷା କରିବାକୁ ପଡ଼ିବ । ଦୀକ୍ଷାକୁ ବାଦ୍‌ଦେଇ ସେ ସୂଫୀ ମତବାଦ ବିଷୟରେ ଅନ୍ୟ ସବୁକଥା ଚର୍ଚ୍ଚା କରିବାକୁ ପ୍ରସ୍ତୁତ ଥିଲେ । ସେ ଅନିଚ୍ଛା ସତ୍ତ୍ୱେ ରାଜି ହେଲେ ଯେ ମୁଁ ମସ୍‌ଜିଦ୍‌କୁ ଲାଗିଥିବା ଡର୍ମିଟାରୀରେ ରାତି ବିତାଇପାରିବି । କିନ୍ତୁ ରାତିର ଖାଇବା ତାଙ୍କ ସହିତ ଖାଇବାପାଇଁ ସେ ଆଗ୍ରହ ପ୍ରକାଶ କଲେ ।

ମୁଁ ରାତିରେ ଆରାମରେ ଶୋଇଲି । ପରଦିନ ଭୋରରୁ ନମାଜ ପାଇଁ ମୁଆଜ୍ଜିନର ଆୱାଜ ଶୁଣି ଉଠିଲି । ଯଦିଓ ଔପଚାରିକ ନମାଜରେ ମୋର ଖାସ୍ ବିଶ୍ୱାସ ନ ଥିଲା, ତେବେ ବି ଯେଉଁ ଲୋକମାନେ ସେଠାରେ ଏକାଠି ହୋଇଥିଲେ, ମୁଁ ସେମାନଙ୍କ ପଙ୍‌କ୍ତିରେ ସାମିଲ ହୋଇଗଲି । ତା'ପରେ ମୁଁ ବଜ୍ରାସନରେ ବସି ଧ୍ୟାନ କଲି । ମସ୍‌ଜିଦ୍‌ର ଛାତରେ ବସା କରିଥିବା ପାରାମାନେ କ୍ରମାଗତ ଭାବରେ ଗୁଟରଗୁଁର ସହଗାନ କରୁଥା'ନ୍ତି ।

ମୁଁ ଶେଖଙ୍କ ସହିତ ଜଳଖିଆ କଲି ଓ ତା'ପରେ କେତେଜଣ ଫକିରଙ୍କୁ ସାକ୍ଷାତ କଲି । ଶେଖ୍‌ଙ୍କଠାରୁ ଭିନ୍ନ, ସେମାନେ ଗେରୁଆ ରଙ୍ଗର ପଗଡ଼ି ଓ ପରମ୍ପରା ଅନୁଯାୟୀ ସୂଫୀ ଫକିରମାନଙ୍କ ପରି କପଡ଼ା ପିନ୍ଧିଥିଲେ ଓ ଲମ୍ବା ଦାଢ଼ି ରଖିଥିଲେ । ଶେଖ୍ ସେମାନଙ୍କ ସହିତ ମୋର ପରିଚୟ କରାଇଦେଲେ ଓ ମୋ ସହିତ ପୂର୍ବଦିନ କରିଥିବା ଆଲୋଚନା ବିଷୟରେ ଜଣାଇଲେ ।

ଖାଇବାବେଳେ ମୁଁ ପୁଣି ଶେଖ୍‌ଙ୍କୁ ଭେଟିଲି ଓ ସୂଫୀ ସିଦ୍ଧାନ୍ତ ଏବଂ ପ୍ରକ୍ରିୟାଗୁଡ଼ିକ ବିଷୟରେ ବହୁ କଥା ଜାଣିଲି । ସେ ମୋତେ ସୂଫୀ ସିଦ୍ଧାନ୍ତଗୁଡ଼ିକ ବିଷୟରେ ଅଲୀ ବିନ ଉସ୍ମାନ ଅଲ ହୁଜବିରୀଙ୍କ ଲିଖିତ ଶାସ୍ତ୍ରୀୟ ପୁସ୍ତକ କସ୍‌ଫ୍–ଅଲ୍–ମହଜୁବ୍‌ର (ଅବଗୁଣ୍ଠିତର ରହସ୍ୟୋଦ୍‌ଘାଟନ) ଇଂରେଜୀ ଅନୁବାଦ ଦେଲେ ଏବଂ ତା'ସହିତ ଦେଲେ ସରଦାର ଇକବାଲ ଅଲି ଶାହାଙ୍କର 'ଦି ସୂଫୀଜ୍' ପୁସ୍ତକ । ସେ ଜମାତର ଜଣେ ବେଶ ବରିଷ୍ଠ ସଦସ୍ୟଙ୍କ ସହିତ ମୋତେ ସୂଫୀ ସିଦ୍ଧାନ୍ତ ବିଷୟରେ ଖୋଲାଖୋଲି ଆଲୋଚନା କରିବାକୁ କହିଲେ । ଏହିପରି ସେଠାରେ ସମୟ କଟିଲା । ଦିନ–ରାତି ମୋର ଉତ୍ତମ ଆନନ୍ଦଦାୟୀ ଧ୍ୟାନରେ ଚାଲିଗଲା । ଖାଇବାପିଇବା ମଧ୍ୟ ଭାରି ଭଲ ଥିଲା ।

ସାତଦିନ ପରେ ମୁଁ ଜଙ୍ଗଲରେ ଥିବା ଗୁମ୍ଫାକୁ ଯିବା ବିଷୟରେ କଥାବାର୍ତ୍ତା କରିବା

ଆରମ୍ଭ କଲି ଓ ମାର୍ଗଦର୍ଶନ ମାଗିଲି । ମାର୍ଗଦର୍ଶନ ମିଳିଲା, କିନ୍ତୁ ଶେଖ୍ ମୋତେ ଏକା ଯିବାପାଇଁ ମନା କରିଦେଲେ । ସେ କହିଲେ, ଜଙ୍ଗଲ ଭାରି ଘଞ୍ଚ, ଚିତାବାଘ ମଧ୍ୟ ସେ ଭିତରେ ଥାଆନ୍ତି । ତା'ଛଡ଼ା ଗୁମ୍ଫାର ରାସ୍ତା ଖୋଜିବା ସହଜ ନୁହେଁ । ତେଣୁ ବନ୍ଦୋବସ୍ତ କରାଗଲା । ହଲକେ (ଜମାତ)ର ଇବ୍ରାହିମ୍ ବୋଲି ଜଣେ ହୃଷ୍ଟପୁଷ୍ଟ ସଦସ୍ୟଙ୍କୁ ମୋ ସହିତ ଯିବାକୁ କୁହାଗଲା । ଇବ୍ରାହିମଙ୍କର ପାଚିଲା ଦାଢ଼ି ଥିଲା, ଠିକ୍ ଛେଳିମାନଙ୍କ ପରି । ସେ ସେଠାକୁ କେତେଥର ଯାଇ ସାରିଥିଲେ । ତାଙ୍କ ସହିତ କଳାରଙ୍ଗର ଗେଡ଼ା ଲୋକଟିଏ ମଧ୍ୟ ଥିଲା, ସେ ଖୁବ୍ କମ୍ କଥାବାର୍ତ୍ତା କରୁଥିଲା ।

ତା'ପର ଦିନ ଦି'ପହର ପରେ ଆମେ ଗୋଟାଏ ବସ୍ ଧରିଲୁ । ବସ୍ ଆମକୁ ଘଣ୍ଟାଏ ପରେ ଗୋଟାଏ ଶୂନ୍‌ଶାନ୍ ଜାଗାରେ ଛାଡ଼ିଦେଲା । ଶେଖ ଠିକ୍ କଥା କହିଥିଲେ । ସେ ଜଙ୍ଗଲ ଭାରି ଘଞ୍ଚ ଥିଲା । ଗୋଟେ ଗୋଟେ ଜାଗାରେ ତ ଯୁବକ ସାହାଯ୍ୟକାରୀଙ୍କୁ କଣ୍ଟାବୁଦା ଇତ୍ୟାଦିକୁ କାଟି ରାସ୍ତା କରିବାକୁ ପଡୁଥିଲା । ଏଠିସେଠି ଆମେ ଭାରି ଭୟଙ୍କର ମୂର୍ତ୍ତିସବୁ ଦେଖିଲୁ । ଆଦିବାସୀମାନେ ସେଗୁଡ଼ିକୁ ପୂଜା କରୁଥିଲେ । ଆଦିବାସୀମାନେ କଳାଯାଦୁ କରିବାରେ ସିଦ୍ଧହସ୍ତ ବୋଲି କୁହାଯାଉଥିଲା । କେତେ ଜାଗାରେ ଆମେ ବନ-ଦେବତାମାନଙ୍କ ପାଖରେ ବଳି ପଡ଼ିଥିବା ଜନ୍ତୁଜାନୁଆରମାନଙ୍କର ମୁଣ୍ଡ, ଅନ୍ତବୁଜୁଳା ଇତ୍ୟାଦି ଦେଖିଲୁ । ଭାରି ଭୟାଳ ବାତାବରଣ ଥିଲା ।

ସନ୍ଧ୍ୟା ହେବାବେଳକୁ ଆମେ ପାହାଡ଼ରେ ପହଞ୍ଚିଗଲୁ । ପଥର କାଟି ଶିଡ଼ି ତିଆରି ହୋଇଥିଲା ଏବଂ ଆମେ ଦଶମିନିଟ୍‌ରେ ଗୁମ୍ଫା ପାଖରେ ପହଞ୍ଚିଗଲୁ । ଚାରିପଟେ ବଡ଼ବଡ଼ ଗଛ ଠିଆ ହୋଇଥାଆନ୍ତି, ଯେମିତି ଗୁମ୍ଫାକୁ ରକ୍ଷା କରୁଥାଆନ୍ତି । ଖୁବ୍ ଶୀଘ୍ର ଅନ୍ଧାର ମାଡ଼ି ଆସୁଥାଏ । ଯୁବକ ହସନ୍ ଜଳାଇବାପାଇଁ କାଠ ଗୋଟାଇବାରେ ଲାଗିଲା । ଏହି ଭିତରେ ମୁଁ ଗୁମ୍ଫା ଭିତର ବୁଲାବୁଲି କଲି । ବେଶି ବଡ଼ ନଥିଲା ଗୁମ୍ଫାଟି । ଖାଲି ଆଉ ସଫାସୁତୁରା ଥିଲା । ଲାଗୁଥାଏ ଯେମିତି କେହି ନିକଟରେ ଗୁମ୍ଫାକୁ ସଫା କରି ରଖିଛି ।

ଗୁମ୍ଫାର ମୁହଁରେ ଗୋଟାଏ ସମାଧି ଥିଲା । ଇବ୍ରାହିମ୍ ସାହେବ କହିଲେ ଯେ, ସମାଧିଟି ମଲଂଗବାବା ନାମକ ଜଣେ ପରିବ୍ରାଜକ ସୂଫୀ ସନ୍ଥଙ୍କର ଥିଲା । ଇବ୍ରାହିମ ସାହେବ ଅଗରବତୀ ଜଳାଇଲେ ଓ ପ୍ରାର୍ଥନା ପାଇଁ ଆଖି ବୁଜିଲେ । ଗୁମ୍ଫା ପାଖରେ ବଡ଼ ସମତଳ ପଥର ଉପରେ ସେତେବେଳକୁ ବିରାଟ ଧୂନି ଜଳାଇ ଦିଆଯାଇଥାଏ । ଗୁମ୍ଫାର ସେପଟେ ଥିବା ଝରଣାରୁ ହସନ ପିଇବା ପାଣି ଭରି ଆଣିଥାଏ । ମୋର ସଙ୍ଗୀମାନେ କନାର ଥଳିରେ କିଛି ଜିନିଷପତ୍ର ଆଣିଥିଲେ । ହସନ ନିଆଁରେ ସିଧା ରୁଟି ସେକିବା ଏବଂ

ତେନ୍ତୁଳି, ପିଆଜ, ନଡ଼ିଆ ଓ ଲୁଣକୁ ବାଟି ଚଟଣି ପ୍ରସ୍ତୁତ କରିବାରେ ବ୍ୟସ୍ତ ରହିଲା । ସେହି ଭିତରେ ମୁଁ ଓ ଇବ୍ରାହିମ୍ ସାହେବ ହାତମୁହଁ ଧୋଇ ଧ୍ୟାନରେ ବସିଗଲୁ ।

କିଛି ସମୟ ପରେ ଏକାଠି ବସି ଆମେ ପେଟଭରି ରୁଟି ଓ ଚଟଣି ଖାଇଲୁ । ଭୋକ ହେଉଥିବାରୁ ସେତକ ଭାରି ସୁଆଦିଆ ଲାଗିଲା ।

ଖାଇବା ପରେ ଇବ୍ରାହିମ୍ ସାହେବ ଓ ହସନ ନିଜର ତାମ୍ବୁରା ବାହାର କଲେ ଓ ନିଜର ପ୍ରେମର ସ୍ୱୀକାର ସହିତ ପ୍ରେମିକଙ୍କ ସହିତ ମିଳନର ଆତୁରତା ବର୍ଣ୍ଣନା କରାଯାଇଥିବା ଦୁଇଟି ସୂଫୀ ଗୀତ ଉର୍ଦ୍ଦୁରେ ଗାଇଲେ । ତା'ପରେ ଆମେ ସାଙ୍ଗରେ ଆଣିଥିବା ଚଟେଇ ଉପରେ ଗଡ଼ିପଡ଼ିଲୁ । ନିଆଁ ସେତେବେଳେ ବି ହୁତ୍‌ହୁତ୍ ହୋଇ ଜଳୁଥାଏ । ମୋତେ ନିଦ ଲାଗି ଆସୁଥାଏ, ଇବ୍ରାହିମ୍ ସାହେବ ମୋତେ ଡାକି କହିଲେ, ''ଯଦି ରାତିରେ ଆମ ଛଡ଼ା ଆଉ କେହି ତୁମକୁ ଉଠାଇବ, ତେବେ ମୋତେ ଡାକିଦେବ । ଅନ୍ଧାରରେ ଜଙ୍ଗଲ ଭିତରକୁ ଯିବାର ଭୁଲ କରିବ ନାହିଁ । ପରିସ୍ରା କରିବାକୁ ହେଲେ, ପଥର ଚଟାଣର ଧାର ପର୍ଯ୍ୟନ୍ତ ଯିବ ।''

ଏହାପରେ ଭୟ ହେତୁ ବେଶ କିଛି ସମୟ ପର୍ଯ୍ୟନ୍ତ ନିଦ ହେଲା ନାହିଁ, କିନ୍ତୁ ମୁଁ ଭାରି ଥକି ଯାଇଥିଲି ଓ ସେତେବେଳେ ଥଣ୍ଡା ପବନ ବହିବା ଆରମ୍ଭ ହୋଇଥିଲା । ତେଣୁ ମୁଁ ଗାଢ଼ ନିଦରେ ଶୋଇପଡ଼ିଲି । କହିପାରିବନି ମୁଁ କେତେ ସମୟ ଶୋଇଲି, କିନ୍ତୁ ଭୋର ହେବା ବେଳକୁ କିଏ ଜଣେ ମୋର ଡାହାଣ ବାହୁ ଟାଣିବାରୁ ଉଠିଲି । ସବା ପ୍ରଥମେ ଲାଗିଲା, ଯେମିତି କେଉଁ ଜଙ୍ଗଲି ଜନ୍ତୁଜୁନ୍ତା ମୋର ଆଙ୍ଗୁଠି ଚୋବାଇବାକୁ ଚେଷ୍ଟା କରୁଛି । କିନ୍ତୁ ଡାହାଣପଟକୁ ଚାହିଁ ମୁଁ ଯାହା ଦେଖିଲି, ତାକୁ ଦେଖି ମୁଁ ବରଫ ପାଲଟିଗଲି ଓ ମୋର ରୁମ ଟାଙ୍କୁରି ଉଠିଲା ।

ମୋ ପାଖରେ, ନିଜର କାଖରେ ଝାଡୁ ଜାକିଥିବା ଦୁଃଖୀ ଚେହେରାର, ପାକୁଆପାଟି ଗୋଟିଏ ବୁଢ଼ୀ ଆଣ୍ଠୁମାଡ଼ି ବସିଥିଲା । ନିଜର ହାଡ଼ପରି ଆଙ୍ଗୁଠିଗୁଡ଼ିକରେ ସେ ମୋର ଡାହାଣ ବାହାକୁ ଟାଣୁଥାଏ ଓ ଦୁଃଖଭରା ସ୍ୱରରେ ଫୁସ୍‌ଫୁସ୍ ହେଉଥାଏ, ''ଆ ବାପା, ମୋ' ସାଙ୍ଗରେ ଆ । ମୁଁ ଗୋଟାଏ ବେମାରିଆ ବୁଢ଼ୀ ସ୍ତ୍ରୀ ଲୋକ । ଆ, ମୋତେ ସାହାଯ୍ୟ କର,..... ଆ...... ଆ'' ।

ଇବ୍ରାହିମ୍ ସାହେବଙ୍କ ଚେତାବନୀ ମୋ ମୁଣ୍ଡରେ ଖେଳିଗଲା, କିନ୍ତୁ ମୁଁ ମୋ ପାଖରେ ଶୋଇଥିବା ଇବ୍ରାହିମ୍ ସାହେବଙ୍କୁ ଛୁଇଁ ପାରିଲି ନାହିଁ କିମ୍ବା ସାହାଯ୍ୟପାଇଁ ପାଟି କରିପାରିଲି ନାହିଁ । ଏମିତି ଲାଗିଲା, ଯେମିତି ମୋର ସାରା ଶରୀର ପକ୍ଷାଘାତଗ୍ରସ୍ତ ହୋଇଯାଇଛି

କଣ୍ଠସ୍ୱର ମଧ୍ୟ ରୁଦ୍ଧ ହୋଇଯାଇଛି । ଭାରି ଭୟଙ୍କର ଅବସ୍ଥା, ବୁଢ଼ୀ ସ୍ତ୍ରୀଲୋକ ମୋ' ପାଖକୁ ଲାଗି ଆସୁଥାଏ । ପଚା ମାଂସର ଗନ୍ଧ ମୋ ନାକରେ ବାଜିଲା । ମୁଁ ଆଖି ବନ୍ଦ କଲି ଓ ଶେଷଥରପାଇଁ କରିବି ବା ମରିବି ବୋଲି ଠିକଣା କଲି ।

ମୁଁ ମୋର ଧ୍ୟାନ ହୃଦୟକେନ୍ଦ୍ର ଉପରେ ସ୍ଥାପିତ କଲି ଓ ରୁପା ପରି ଏକ ଜ୍ୟୋତିର ଧାରାକୁ ସେଠାରୁ ଉଠାଇ ସାହାଯ୍ୟ ମାଗିବାପାଇଁ ଇବ୍ରାହିମ ସାହେବଙ୍କ ଆଡ଼କୁ ଯାଉଥିବାର କଳ୍ପନା କଲି । ଏଇଟା କାମ କଲା । ମୁଁ ମୋ ବାଁ ପଟରୁ ଗୋଟାଏ ଡାକ ଶୁଣିଲି । ଇବ୍ରାହିମ ସାହେବ ଗୋଟାଏ ଜଳନ୍ତା ନିଆଁଖୁଣ୍ଟା ଧରି ଡେଇଁପଡ଼ି ଉଠି ଠିଆହେଲେ । ଜଳନ୍ତା ଖୁଣ୍ଟାଟାକୁ ଧରି ସେ ସେହି ପ୍ରେତ ଆଡ଼କୁ କଲେ ଓ ଜୋର୍‌ରେ ତାମିଲ୍‌ରେ କିଛି ମନ୍ତ୍ର ପଢ଼ିଲେ । ଜାଣିପାରିଲି ଯେ, ସେ ମଧ୍ୟ ତାକୁ ଦେଖିପାରିଥିଲେ ।

ସେ ଅଦୃଶ୍ୟ ହୋଇଗଲା ଓ ମୁଁ ଉଠିକରି ବସିଗଲି । ଏବେ ମୁଁ ହାତଗୋଡ଼ ହଲେଇପାରିଲି । ହସନ ବି ଉଠିପଡ଼ିଲା । ସେ ଟିକିଏ ଡରିଯାଇଥାଏ । ମୁଁ ଯେତେବେଳେ ପଚାରିଲି ଯେ କ'ଣ ଘଟିଗଲା ବର୍ତ୍ତମାନ ବୋଲି, ଇବ୍ରାହିମ ସାହେବ ଖାଲି ଏତିକି କହିଲେ, ''ଜଙ୍ଗଲର କେଉଁ ଅଶରୀରୀ ଜୀବ, ଦୁଷ୍ଟ ।'' ସେ ଆଉ କିଛି କହିବାକୁ ପ୍ରସ୍ତୁତ ନ ଥିଲେ ।

ସକାଳେ ଆମେ ମୁହଁହାତ ଧୋଇଲୁ, ଧ୍ୟାନ କଲୁ ଓ ଫେରନ୍ତା ରାସ୍ତାରେ ବାହାରିପଡ଼ିଲୁ । ଏମିତିରେ ମୁଁ ଦି' ରାତି ରହିବାକୁ ଚାହୁଁଥିଲି କିନ୍ତୁ ରାତିର ଭୟଙ୍କର ଅନୁଭୂତି ପରେ ଘଟଣା ପରିଷ୍କାର ହୋଇଯାଇଥିଲା । ମୁଁ ଇବ୍ରାହିମ ସାହେବ ଓ ହସନଙ୍କ ସହିତ ଫେରିଆସିଲି ।

ଆଉ ଗୋଟାଏ ଦିନ ପୋଚ୍ଚଲପୁତ୍ତୁରରେ କଟାଇ ମୁଁ ଇନାମଦାରଙ୍କ ଠାରୁ ବିଦାୟ ନେଲି ଓ ବସ୍ ଧରି ସନ୍ଧ୍ୟା ସୁଦ୍ଧା ତ୍ରିଭେନ୍ଦ୍ରମରେ ପହଞ୍ଚିଗଲି । ମୋ ପାଖରେ ବସ୍‌ଭଡ଼ା ଦେବାପାଇଁ ପଇସା ବାକି ନ ଥିବାରୁ ମୁଁ ଚାଲିଚାଲି ଘରେ ପହଞ୍ଚିଲି । ସେଇ ଜାମାପଟା ପିନ୍ଧିଥାଏ, ଯାହା ପିନ୍ଧି ଘର ଛାଡ଼ିଥିଲି । ଲୁଗାପଟା ଭାରି ମଇଳା ହୋଇଯାଇଥିଲା ଓ ମୋର ଦାଢ଼ି ବଢ଼ିଯାଇଥିଲା । ମୁଁ ଉପରୁ ତଳ ପର୍ଯ୍ୟନ୍ତ ବାରବୁଲା ପରି ଦିଶୁଥିଲି ।

ପ୍ରଥମେ ମୋର ମା' ମୋତେ ଦେଖିଲେ । ସେ ମୋତେ ଛାତିରେ ଜାକିଧରି କାନ୍ଦିବା ଆରମ୍ଭ କଲେ । ମୋ ସାନଭଉଣୀ ଭାରି ଖୁସି ହେଲା । ଏବେ ପୁଣି ମୋ କୋଠରିକୁ ଆସି ମୋ ସହିତ ସେ ଖେଳିପାରିବ । ମୋର ଆର ଭଉଣୀ ଉପରେ କିଛି ପ୍ରତିକ୍ରିୟା ନ ଦେଖାଇଲେ ମଧ୍ୟ ମୁଁ ଜାଣିଥିଲି ସେ ଭିତରେ ଭିତରେ ଖୁସି ହେଉଥିଲା ।

ମାସେ ଯାଏଁ ମୋର ବାପା ମୋ ସହିତ କଥାବାର୍ତ୍ତା କଲେ ନାହିଁ । ତା'ପରେ ନରମ ହୋଇଗଲେ ।

ମୁଁ ଅଧିକରୁ ଅଧିକ ସମୟ ଆମର ନୂଆଘରର ଛାତରେ ଥିବା ଛୋଟ ଘରେ ଧ୍ୟାନରେ ବସି କଟାଇବାରେ ଲାଗିଲି । ଘରର ନାଁ ଥିଲା 'ଚନ୍ଦ୍ର ବିଳାସ' । ଧ୍ୟାନରେ ମୋତେ ବହୁବାର ନୂଆ ଅନୁଭବ ହେଲା ।

ଏବେ ମୁଁ ଘରଠାରୁ ଦୂରରେ ରହିବାର ସ୍ୱାଦ ପାଇଯାଇଥିଲି । ନିଜର ପରିବାର ଏବଂ ବନ୍ଧୁପରିଜନଙ୍କ ସହିତ ଆବେଗାତ୍ମକ ବନ୍ଧନରୁ ନିଜକୁ ଛିନ୍ନ କରି ଦୂରରେ ରଖିବା ପାଇଁ ମୁଁ ନିଜପାଇଁ ନିଜେ କରିଥିବା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇସାରିଥିଲି । ତେଣୁ ମୁଁ ସୁଦୂର ହିମାଳୟକୁ ଉଡ଼ିଯିବାପାଇଁ ବ୍ୟାକୁଳ ଥିଲି । ସେଠାରେ କେହି ଜଣେ ମୋର ପ୍ରତୀକ୍ଷା କରୁଥିଲେ । ତାଙ୍କର ଆହ୍ୱାନ ଦିନକୁ ଦିନ ତୀବ୍ରତର ହେଉଥିଲା । ମୁଁ ଅନୁକୂଳ ଅବସରର ସନ୍ଧାନରେ ଥିଲି ।

ଅବସର ପରୀକ୍ଷା ଫିସ୍‌ପାଇଁ ମୋତେ ଦିଆଯାଇଥିବା ପଇସା ଆକାରରେ ଆସିଲା । ମୁଁ ଠିକଣା କଲି, ଏହି ପଇସାର ଉପଯୋଗ ଅନ୍ୟ ଏକ ପରୀକ୍ଷା, ଯାହା ମୋ ପାଇଁ ଅଧିକ ମହତ୍ତ୍ୱପୂର୍ଣ୍ଣ ଥିଲା, ସେଥିପାଇଁ କରାଯିବ । କେବଳ ସାଙ୍ଗ ରଞ୍ଜିତ ଜାଣିଥିଲା ଯେ, ମୁଁ ଦୀର୍ଘଯାତ୍ରାର ଯୋଜନା ପ୍ରସ୍ତୁତ କରୁଛି । ସେ ବି କିଛି ଟଙ୍କାପଇସା ଦେଲା । ମୁଁ ପ୍ରସ୍ଥାନ କରିବାକୁ ପ୍ରସ୍ତୁତ ଥିଲି ।



# ହିମାଳୟ ଉଦ୍ଦେଶ୍ୟରେ

ଫେବୃଆରୀର ଏକ ସୁନ୍ଦର ସନ୍ଧ୍ୟାରେ ମୁଁ ଚେନ୍ନାଇ ଏକ୍ସପ୍ରେସ୍ ଧରିଲି । ହିମାଳୟ ଆଡ଼କୁ ଯାତ୍ରା ଆରମ୍ଭ ହୋଇଯାଇଥାଏ । ମୋର ବୟସ ସେତେବେଳକୁ ପ୍ରାୟ କୋଡ଼ିଏ ବର୍ଷ ।

ସେ ସମୟରେ ତ୍ରିଭେନ୍ଦ୍ରମରୁ ଚେନ୍ନାଇ ପହଞ୍ଚିବାକୁ ଚବିଶ ଘଣ୍ଟାରୁ ଅଧିକ ସମୟ ଲାଗୁଥିଲା । ଗଲାବେଳେ ମୁଁ ଯେତେଦୂର ସମ୍ଭବ ନିଜର ସହଯାତ୍ରୀମାନଙ୍କ ସହିତ କଥାବାର୍ତ୍ତା ହେବାରୁ ବିରତ ରହିଲି । ଗାଡ଼ି ପରଦିନ ସନ୍ଧ୍ୟାରେ ଏଗ୍‌ମୋର ଷ୍ଟେସନରେ ପହଞ୍ଚିଲା । ମୋର ଅଜା ଚେନ୍ନାଇରେ ରହୁଥିଲେ ଓ ଛୁଟିମାନଙ୍କରେ ମୁଁ ତିନିଥର ସେଠାକୁ ଆସିସାରିଥିଲି । ତେଣୁ ସେହି ଜାଗା ବିଷୟରେ ମୁଁ ବେଶ ଭଲଭାବରେ ଜାଣିଥିଲି । ଚେନ୍ନାଇରେ ବସ ସେବା ଭାରି ସୁବିଧାଜନକ ଥିଲା । ମୁଁ ଜାଣିଥିଲି, ଥିଓସଫିକାଲ ସୋସାଇଟି, ରାମକୃଷ୍ଣମିଶନ, ମୈଲାପୁରରେ ଥିବା କପାଲୀଶ୍ୱର ମନ୍ଦିରକୁ କେମିତି ଯାଇହେବ । କିନ୍ତୁ ତା' ପୂର୍ବରୁ ମୋତେ ହିମାଳୟ ପର୍ଯ୍ୟନ୍ତ ପହଞ୍ଚିବାପାଇଁ ଦିଲ୍ଲୀ ଯିବାର ଟିକେଟ୍ କାଟିବାର ଥିଲା ।

ଏଗମୋର ଷ୍ଟେସନରୁ ମୁଁ ଚେନ୍ନାଇ ସେଣ୍ଟ୍ରାଲ ଯିବାପାଇଁ ବସ୍ ଧରିଲି । ସେଠାରେ ବୁକିଙ୍ଗ୍ ଅଫିସ୍‌ରେ ଦିଲ୍ଲୀ ଯିବାପାଇଁ ଦି'ଦିନ ପରର ଦ୍ୱିତୀୟଶ୍ରେଣୀ ସ୍ଲିପରରେ ଟିକେଟ୍ ମିଳିଗଲା । ତା'ପରେ ମୁଁ ଗୋଟିଏ ଛୋଟ ଶସ୍ତା ହୋଟେଲରେ କମରା ନେଲି । କମରା ଭିତରକୁ ଯାଇ ମୁଁ ଗାଧୋଇଲି ଓ ପ୍ରସ୍ତୁତ ହୋଇସାରି ଗୋଟାଏ ମସାଲା ଦୋସା ଖାଇଲି । ତା'ପରେ ବିଛଣା ଉପରେ ବସି ଧ୍ୟାନ ସାଧନା କଲି । ଥକିଯାଇଥିଲି, ତେଣୁ ଶୀଘ୍ର ଶୋଇପଡ଼ିଲି । ପରଦିନ ରାମକୃଷ୍ଣମିଶନ, କପାଲୀଶ୍ୱର ମନ୍ଦିର ଓ ଥିଓସଫିକାଲ ସୋସାଇଟିକୁ ଯାଇ ବିତାଇଲି ।

ମୁଁ ଜେ. କୃଷ୍ଣମୂର୍ତ୍ତିଙ୍କର ଜୀବନ-କଥା ଏବଂ ଶିକ୍ଷା ବିଷୟରେ ପଢ଼ିଥିଲି । ସେ ସେତେବେଳେ ଥିଓସଫିକାଲ ସୋସାଇଟିରୁ ସବୁ ସମ୍ପର୍କ ତୁଟାଇଦେଇଥାଆନ୍ତି, ଗୁରୁମାନଙ୍କୁ

ଥିଓସଫିର ଅନୁଗାମୀମାନଙ୍କର କଳ୍ପନାର ଅଂଶ ବୋଲି କହି ନାକଚ କରିଦେଇଥାଆନ୍ତି । ତେବେ ବି ମୋର ଦୃଢ଼ ବିଶ୍ୱାସ ଥିଲା ଯେ, ନିଶ୍ଚିତ ଭାବରେ ସେଠାରେ ମହାନ ଆଧ୍ୟାତ୍ମିକ ଗୁରୁମାନଙ୍କର ଅସ୍ତିତ୍ୱ ଥିଲା । ପୂର୍ବରୁ ଥରେ ସମୁଦ୍ର ନିକଟରେ ଥିଓସଫିକାଲ ସୋସାଇଟିର ବିଶାଳ ପରିସର ମଧ୍ୟରେ ବୁଲୁଥିବା ସମୟରେ ମୋର ସେଠାରେ ଏକ ସୁସ୍ପଷ୍ଟ ଉପସ୍ଥିତି ଓ ମହାନ ଶାନ୍ତିର ଅନୁଭବ ହୋଇଥିଲା ।

ଏଥର ମୁଁ ଥିଓସଫିକାଲ ସୋସାଇଟିର ପରିସର ଭିତରେ ଥିବା ବିଶାଳ ବଟବୃକ୍ଷ ନିକଟରେ ବେଞ୍ଚରେ ବସିବସି ଏକ ଗଭୀର ବିଶାଳତା ଓ ଶାନ୍ତିର ଭାବରେ ଅଭିଭୂତ ହୋଇଗଲି । ଏହି ଅନୁଭୂତି ମୋତେ ଆଶ୍ୱସ୍ତ କଲା । ମୁଁ ଆରମ୍ଭ କରିସାରିଥିବା ନିଜର ସେହି ସାହସିକ ଯାତ୍ରା-ବିଷୟକ ସବୁ ଚିନ୍ତାରୁ ମୁଁ ମୁକ୍ତ ହୋଇଗଲି ।

ତା'ପରେ ମୁଁ ପ୍ରସିଦ୍ଧ ସୂଫୀ ସନ୍ଥ ମୋତିବାବାଙ୍କ କବର ଦେଖିବାକୁ ଗଲି ଓ ସନ୍ଧ୍ୟାସୁଦ୍ଧା ହୋଟେଲକୁ ଲେଉଟି ଆସିଲି । ଭାରି ଭୋକ ହେଉଥାଏ, ପେଟଭରି ଦକ୍ଷିଣ ଭାରତୀୟ ଖାଦ୍ୟ ଖାଇଲି । ତା'ପରେ ଲୁଗାପଟା ବଦଳାଇ ଧ୍ୟାନରେ ବସିବା ପୂର୍ବରୁ ସାଙ୍ଗରେ ଆଣିଥିବା ସ୍ୱାମୀ ବିବେକାନନ୍ଦଙ୍କ ସମ୍ପୂର୍ଣ୍ଣ ସାହିତ୍ୟର ଦ୍ୱିତୀୟ ଭାଗରୁ କିଛି ପଢ଼ିଲି ।

ଧ୍ୟାନ ସମୟରେ ସବୁବେଳେ ମୋର ହୃଦୟ-କେନ୍ଦ୍ରରେ ଯେଉଁ ରୁପେଲି ରଙ୍ଗର ଆଲୋକ ଦିଶୁଥିଲା, ସେଦିନ ରାତିରେ ତାହା ନାରଙ୍ଗୀ ରଙ୍ଗକୁ ବଦଳିଗଲା ଓ ତା'ପରେ ଗାଢ଼ ବାଇଗଣୀ ରଙ୍ଗର ହୋଇଗଲା । ବାଇଗଣୀ ଚକ୍ରର ବିସ୍ତାର ହେଲା ଓ ତାହା ମଧ୍ୟରେ ବିଭାଜିତ ହୋଇଯାଇ ତା' ମଧ୍ୟରେ ହିମାଳୟର ଦୃଶ୍ୟ ପ୍ରକଟ ହେଲା । ହିମାଚ୍ଛାଦିତ ଏକ ପର୍ବତ ଶିଖରର ପାଦଦେଶରେ ମୁଁ ଗୋଟିଏ ଛୋଟ ଗୁମ୍ଫା ଦେଖିଲି । ତା' ବାହାରେ କିଏ ଜଣେ ଠିଆହୋଇଥିବାର ଦେଖିଲି । ମୁଁ ତାଙ୍କର ଆକୃତି ସଠିକ୍ ଭାବରେ ଦେଖିପାରିଲି ନାହିଁ, ଜାଗାଟା ଧୂଆଁଳିଆ ଥିଲା । ମୋତେ ଲାଗିଲା ଯେମିତି ମୋତେ କିଏ ଗୋଟାଏ ଅଜବ ନାଁରେ ଡାକୁଛି, ଯାହାକୁ ମୁଁ ବୁଝିପାରୁ ନାହିଁ । ତା'ପରେ ମୁଁ ଶୋଇଗଲି ।

ପରଦିନ ସକାଳୁସକାଳୁ ମୁଁ ନୂଆଦିଲ୍ଲୀ ଯାଉଥିବା ତିନି ଟାୟାରବାଲା ସ୍ଲିପର ବଗିରେ ବସିଗଲି । ଯାତ୍ରା ସମୟରେ କିଛି ବିଶେଷ ଘଟଣା ଘଟି ନାହିଁ ଓ ଅଧିକାଂଶ ସମୟରେ ମୁଁ ନିଜ ମଧ୍ୟରେ ମଗ୍ନ ରହିଲି । ପ୍ରାୟ ଅଠଚାଳିଶ ଘଣ୍ଟା ପରେ ଭୋର ବେଳେ ରେଳଗାଡ଼ି ନୂଆ ଦିଲ୍ଲୀରେ ପହଞ୍ଚିଲା । ଦିଲ୍ଲୀକୁ ଏହା ମୋର ପ୍ରଥମ ଯାତ୍ରା ଥିଲା । ପାଣ୍ଡବଙ୍କର ପ୍ରାଚୀନ ସହର ଇନ୍ଦ୍ରପ୍ରସ୍ଥର ଏହି ଆଧୁନିକ ସଂସ୍କରଣ ଦ୍ୱାରା ମୁଁ ବିଶେଷ ପ୍ରଭାବିତ ହେଲି ନାହିଁ ।

ପଚରାଉଚୁରା କଲାପରେ ଜଣାଗଲା ଯେ ହରିଦ୍ୱାର ଯିବାପାଇଁ ଗାଡ଼ି ପୁରୁଣା

ଦିଲ୍ଲୀ ଷ୍ଟେସନରୁ ବାହାରେ । ମୁଁ ଗୋଟାଏ ସାଇକେଲ ରିକ୍ସା ନେଇ ଜଲ୍‌ଦି ପୁରୁଣା ଦିଲ୍ଲୀ ଷ୍ଟେସନରେ ପହଞ୍ଚିଗଲି । ଏହା ଦିଲ୍ଲୀର ପୁରୁଣା ଓ ଅପରିଷ୍କାର ଅଂଶ ଥିଲା । ବହୁତ ଗୁଡ଼ାଏ ଅଟ୍ଟାଳିକା, ବିଶେଷରେ ବିରାଟ ଲାଲକିଲ୍ଲା ଓ ଜାମା ମସ୍‌ଜିଦ୍ ମୋଗଲମାନଙ୍କର ଦୀର୍ଘ ଶାସନର ଅବଶେଷ ଥିଲା । ଏହି ଲାଲକିଲ୍ଲାରୁ ହିଁ ବୃଦ୍ଧ, ଦୁର୍ବଳ, ଦିଲ୍ଲୀର ତତ୍କାଳୀନ ଅନ୍ତିମ ମୋଗଲ ବାଦଶାହ ଇଂରେଜମାନଙ୍କ ବିରୁଦ୍ଧରେ ସିପାହିବିଦ୍ରୋହର ନେତୃତ୍ୱ ନେଇଥିଲେ ଓ ଶୋଚନୀୟ ଭାବରେ ପରାଜିତ ହୋଇଥିଲେ ।

ପରଦିନ ସକାଳ ଆଠଟାରେ ମୁଁ ଡେରାଡୁନ ଯାଉଥିବା ରେଳଗାଡ଼ି ଧରିଲି । ଗାଡ଼ି ହରିଦ୍ୱାରରେ ରହେ । ଆଠଘଣ୍ଟାର ଦୀର୍ଘ ଯାତ୍ରା ପରେ ମୁଁ ହରିଦ୍ୱାରରେ ପହଞ୍ଚିଲି । ଶୁଣିଲି ଯେ ଋଷିକେଶ ଯାଉଥିବା ରେଳଗାଡ଼ି ସକାଳୁ ବାହାରିବ । ତେଣୁ ଠିକଣା କଲି, ହରିଦ୍ୱାରରେ କିଛି ସମୟ ବିତାଇବି ।

ହରିଦ୍ୱାରର ନାଁ ଏହିପରି ହୋଇଛି କାରଣ ଏଇ ବାଟ ଦେଇ ହିମାଳୟର ଉପରିଭାଗରେ ଥିବା ବଦ୍ରିନାଥର ଦେବତା 'ହରି' ଆଉ କେଦାରନାଥର ଦେବତା 'ହର'ଙ୍କ ମନ୍ଦିରକୁ ଯାଇହେବ । ମୁଁ ପ୍ରଥମ ଥରପାଇଁ ହରିକି ପୌଡ଼ିରେ ସୁନ୍ଦର ଭାବରେ ବହିଯାଉଥିବା ଗଙ୍ଗାନଦୀକୁ ଦେଖିଲି । ସେ ଦୃଶ୍ୟ ଅତ୍ୟନ୍ତ ଲୋଭନୀୟ ଓ ମନୋମୁଗ୍ଧକର ଥିଲା । ଏଇଟା ସତ ଯେ, ସେଠାରେ ବହୁତ ପର୍ଯ୍ୟଟକ ଏବଂ ତୀର୍ଥଯାତ୍ରୀ ଏପଟସେପଟ ହୋଇ ଘୂରିବୁଲୁଥିଲେ; କିନ୍ତୁ ସେହିସବୁ ଘଟଣା ଶୀତଳ ଓ କ୍ରମାଗତ ବହିଚାଲିଥିବା ପାଣିକୁ ଏକ ଧ୍ୟାନରେ ଦେଖୁଥିବା ମୋର ମନକୁ ବିଚଳିତ କରିପାରିଲା ନାହିଁ ।

ତା'ପରେ ମୁଁ ହଠାତ୍ ଏମିତି ଗୋଟାଏ କାମ କରିପକାଇଲି, ଯାହା ଅଚାନକ ମୋର ମୁଣ୍ଡକୁ ଆସିଗଲା । ମୁଁ ଗୋଟାଏ ହଳଦିଆ ରଙ୍ଗର ଧୋତି, ଆଣ୍ଠୁପର୍ଯ୍ୟନ୍ତ ଲମ୍ବା ଛୋଟ ହାତଥିବା ହଳଦିଆ ରଙ୍ଗର କୁର୍ତ୍ତା ଏବଂ ହଳଦିଆ ରଙ୍ଗର ଝୁଲା ବ୍ୟାଗ ନିଜପାଇଁ କିଣିନେଲି । ତା'ପରେ ଭଣ୍ଡାରି ଦୋକାନକୁ ଯାଇ ମୁଣ୍ଡବାଳ ଓ ନିଶ କାଟି ପକାଇଲି । କେବଳ ପଛପଟେ ଗୋଟିଏ ଶିଖା (ଚୁଟି) ହେବା ପରି ବାଳ ରଖିଲି । ସେହି ଶିଖା ପିଗ୍‌ଟେଲ୍ ପରି ଥିଲା । ହିନ୍ଦୁ ପରମ୍ପରାର ନବ-ସାଧକମାନେ ଶହଶହ ବର୍ଷ ଧରି ଏହିପରି ଶିଖା ଧାରଣ କରି ଆସୁଛନ୍ତି ।

ଭଣ୍ଡାରିର ଦର୍ପଣରେ ମୁଁ ଯେତେବେଳେ ନିଜକୁ ଦେଖିଲି, ଯାହା ଦିଶିଲା, ମୋତେ ଭଲ ଲାଗିଲା; ସେଥିରେ ଥିଲା ଯୁବକ ଓ ଉଜ୍ଜ୍ୱଳ ଚେହେରାର ଏକ ବ୍ରହ୍ମଚାରୀ ଯେ ହିମାଚ୍ଛାଦିତ ପର୍ବତଶ୍ରେଣୀ ମଧ୍ୟରେ ଥିବା ଏକ ମହାନ ଗୁରୁଙ୍କର ସନ୍ଧାନରେ ଯିବାପାଇଁ ପ୍ରସ୍ତୁତ । ତା'ର ବିଶ୍ୱାସ ଥିଲା ଯେ, ସେହି ଗୁରୁ ସେଠାରେ ରହନ୍ତି ।

ହରି କି ପୌଡ଼ିରେ ମୁଁ ଗଙ୍ଗାରେ ସ୍ନାନ କଲି ଓ ହଳଦିଆ ଧୋତି ଏବଂ କୁର୍ତ୍ତା ପିନ୍ଧିନେଲି । ମୁଁ ପିନ୍ଧିଥିବା ରବର ଚପଲ ମୋତେ ଠିକ୍‌ଠାକ୍ ଲାଗିଲା କାରଣ ମୁଁ ଅନେକ ସାଧୁଙ୍କୁ ସେହିପରି ଚପଲ ପିନ୍ଧିବାର ଦେଖିଥିଲି । ନିଜର ନିକଟ ଅତୀତର ଚିହ୍ନ, ଅର୍ଥାତ୍ କମିଜ ଓ ପ୍ୟାଣ୍ଟ, ଯାହାକୁ ମୁଁ ଏପର୍ଯ୍ୟନ୍ତ ପିନ୍ଧିଥିଲି, ତାକୁ ନିଜର ଏଆରବ୍ୟାଗ୍‌ରେ ପୂରେଇ ଘାଟ ପାଖରେ ଛାଡ଼ିଦେଲି । ଭାବିଲି କୌଣସି ଅଭାବଗ୍ରସ୍ତ ଲୋକ ତାକୁ ନେଇଯିବ ।

ଏବେ ମୁଁ ଅନ୍ୟ ସାଧୁମାନଙ୍କ ପରି ହିଁ ଦିଶୁଥିଲି । ମୋର ଡାହାଣ କାନ୍ଧରେ ଝୁଲୁଥିବା କପଡ଼ାର ଝୁଲାରେ କେତେଟା ବହି, ଗୋଟାଏ ତଉଲିଆ, ଗୋଟାଏ ପେନ୍ସିଲ ଓ ଟୁଥ୍‌ବ୍ରଶ ଥିଲା । ମୋର ବାଁ କାନ୍ଧରେ ଗୋଟାଏ ଉଲ୍‌ର କମ୍ବଳ ଥିଲା, ଯାହାକୁ ମୁଁ ଶୋଇବା ପାଇଁ ବା ଧ୍ୟାନ କରିବା ପାଇଁ ବ୍ୟବହାର କରିପାରିବି । ଏବେ ମୋର ଦରକାର ଥିଲା ଗୋଟିଏ କମଣ୍ଡଳୁ । ସେଇଟି ମୁଁ ପାଖ ଦୋକାନରୁ କିଣିନେଲି, ସେଇଟି ଥିଲା ପିତଳର ଓ ଭାରି ସୁନ୍ଦର । ତା'ପରେ ମୁଁ ବଳିଥିବା ପଇସାପତ୍ର ଯାଞ୍ଚ କଲି, ବେଶ୍ ପଇସା ବଳିଥାଏ । ମୁଁ ସେସବୁ କୁର୍ତ୍ତାର କଡ଼ ପକେଟ୍‌ରେ ରଖିନେଲି ।

ପୁଣି ମୁଁ ଦେଖିଲି ମୋର ଅଜା ଦି'ବର୍ଷ ପୂର୍ବରୁ ମୋତେ ଉପହାର ଦେଇଥିବା ଏନିକାର (Enicar) ଘଣ୍ଟା ଏକ ସତ୍ୟସନ୍ଧାନୀର ସାଧାରଣ ବେଶଭୂଷା ସହିତ ଖାପ ଖାଉ ନାହିଁ । ମୁଁ ତାକୁ କାଢ଼ି ଚୁପ୍‌ଚାପ ସେଇ ସ୍ନାନଘାଟର ଶିଡ଼ିରେ ଛାଡ଼ିଦେଲି । ଏବେ ଥିଲା ହରିଦ୍ୱାର ବୁଲିବାର ସମୟ । କାଳେ ମୋର କେଉଁ ମହାନ ଯୋଗୀଙ୍କ ସହିତ ଭେଟ ହୋଇଯିବ !

ହରିକି ପୌଡ଼ିରୁ ମୁଁ ଶିବାଳିକ ପାହାଡ଼ ଶ୍ରେଣୀ ଏବଂ ଅନେକ ମନ୍ଦିର ଓ ଆଶ୍ରମର ଛାତ ଦେଖିପାରୁଥିଲି । ମୁଁ ଯେବେ ଉପରକୁ ଚଢ଼ିଲି, ସେତେବେଳେ ହନୁମାନଜୀଙ୍କର ଗୋଟିଏ ଛୋଟ ମନ୍ଦିର ଦେଖିଲି । ମନ୍ଦିରର ବୃଦ୍ଧ ବ୍ରାହ୍ମଣ ପୂଜାରୀ ମୋ କପାଳରେ ଲାଲ ତିଳକ ମାରିଲେ । ସେ ନିରାଶ ଦେଖାଗଲେ, କାରଣ ମୁଁ ତାଙ୍କୁ ପ୍ରଥାନୁଯାୟୀ ଦକ୍ଷିଣା ଦେଇ ନ ଥିଲି । ତେଣୁ ଶୀଘ୍ର ମୁଁ ତାଙ୍କୁ ଟଙ୍କାଏ ଦେଇଦେଲି, ସେ ମୋତେ ଦୀର୍ଘ ଓ ସୁଖୀ ଜୀବନର ଆଶୀର୍ବାଦ ଦେଲେ ।

ତା'ପରେ ମୁଁ ଅନେକ ମନ୍ଦିର ଓ ଆଶ୍ରମକୁ ଗଲି ଓ ସେଠାରେ ମୁଁ ବିଭିନ୍ନ ପ୍ରକାରର ସାଧୁ ଓ ସାଧକମାନଙ୍କୁ ଦେଖିଲି । ଲମ୍ବା ତିଳକ କଲି କାଟିଥିବା ବୈଷ୍ଣବ, ସମାନ୍ତରାଳ ବିଭୂତି ଧାରଣ କରିଥିବା ଶୈବ, ରକ୍ତତିଳକବାଲା ଶାକ୍ତ ଏବଂ ଅନ୍ୟ ଅନେକ ପ୍ରକାରର ଚିହ୍ନ ଧାରଣ କରିବା ସାଧୁ, ଯାହାସବୁ ମୁଁ ପୂର୍ବରୁ କେବେ ଦେଖି ନ ଥିଲି, ସେସବୁ ଦେଖିଲି । କେତେକେ ଅସାଧାରଣ ବସ୍ତ୍ରଧାରଣ କରିଥିବାବେଳେ କେତେକ ସାଧାରଣ କମଳାରଙ୍ଗର ଧୋତି ଓ ଅନ୍ୟ କେତେକ କେବଳ କୌପୀନ ପିନ୍ଧିଥିଲେ ।

ମୁଁ ସେଠାର ଜଟାଧାରୀ ନାଗା ଦିଗମ୍ବର ସାଧୁମାନଙ୍କୁ ଦେଖିଲି, ଯେଉଁମାନେ ପୂରାପୂରି ନଗ୍ନ ଥିଲେ । ସେମାନେ ବେପରୱା ଭାବରେ ତ୍ରିଶୂଳ ଧରି ଘୂରୁଥିଲେ ଓ ସେମାନଙ୍କ ପ୍ରତି ଜନତାର ଧ୍ୟାନ ତାଙ୍କୁ ଖୁସି କରୁଥିଲା ।

ନିର୍ବାଣି ପରମହଂସ ଆଖଡ଼ାର ମହାମଣ୍ଡଳେଶ୍ୱର (ପ୍ରମୁଖ ମଠାଧୀଶ)ଙ୍କର ଅଧ୍ୟକ୍ଷତାରେ ଚାଲୁଥିବା ଗୋଟାଏ ଆଶ୍ରମରେ ମୋର ସାକ୍ଷାତ ଜଣେ କେରଳୀ ଲୋକଙ୍କ ସହିତ ହେଲା । ସେ ମଠାଧୀଶଙ୍କର ନିକଟବର୍ତ୍ତୀ ଶିଷ୍ୟ ବୋଲି ଦାବି କରୁଥିଲେ । ମୋର କଥାବାର୍ତ୍ତାର ଢଙ୍ଗରୁ ସେ ଜାଣିଗଲେ ଯେ ମୁଁ କେରଳର ଥିଲି । ସେ ମୋତେ ଭୋଜନକକ୍ଷକୁ ନେଇଗଲେ । ସେ ସେଠାରେ ମୋତେ ଗୋଟାଏ ବଡ଼ ଗ୍ଲାସ୍‌ରେ ଗ୍ଲାସେ ଗରମ ଗୋଦୁଗ୍ଧ ଦେଲେ । ତା'ପରେ ଆମେ ଅନେକ ସମୟ ପର୍ଯ୍ୟନ୍ତ ଆଲୋଚନା କଲୁ । ସେ ଭାରତସରକାରଙ୍କଠାରୁ ସେବାନିବୃତ୍ତ ଥିଲେ ଓ ତା'ପରେ ଆଶ୍ରମରେ ହିଁ ନିଜର ଗୁରୁଙ୍କ ପାଖରେ ରହିଯାଇଥିଲେ । ତାଙ୍କର ସ୍ତ୍ରୀ ଚାଲିଯାଇଥିଲେ ଓ ସେ ତାଙ୍କର ସୁନ୍ଦରୀ ଝିଅଟି (ଯେ ଆଶ୍ରମର ସ୍କୁଲରେ ପଢ଼ାଉଥିଲା) ସହିତ ରହୁଥିଲେ ।

ମୁଁ ଯେତେବେଳେ ତାଙ୍କୁ ନିଜର ଅସଲ ନାଁ କହିଲି, ସେ ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ମୋ ସହିତ କିଛିସମୟ କଥାବାର୍ତ୍ତା ହେବାପରେ ସେ ମୋର ପ୍ରକୃତ ଧ୍ୟେୟ ଏବଂ ହିନ୍ଦୁ ଦର୍ଶନ ପ୍ରତି ମୋର ଗଭୀର ଆଗ୍ରହ ଦେଖି ବେଶ୍ ଖୁସି ଓ ଆଶ୍ୱସ୍ତ ହେଲେ । ''ଉଚ୍ଛନ୍ଦରର ସାଧକ ପରି ଲାଗୁଛ ।'' ସେ କହିଲେ, ''ଅନ୍ୟ ସାଧୁମାନଙ୍କୁ ତୁମର ଅସଲି ନାଁ ଜଣାପଡ଼ିଲେ ତ ତୁମେ ଶାସ୍ତ୍ରାଧ୍ୟୟନର ଆଗକୁ ଯାଇପାରିବ ନାହିଁ ଓ ଆଧ୍ୟାତ୍ମିକ ଅଭ୍ୟାସଗୁଡ଼ିକର ଦୀକ୍ଷା ନେଇପାରିବ ନାହିଁ କାରଣ ଦୁର୍ଭାଗ୍ୟବଶତଃ ସେହିସବୁ କ୍ଷେତ୍ରରେ ଆଜି ବି କିଛି ରକ୍ଷଣଶୀଳ ବ୍ୟକ୍ତି ବିଦ୍ୟମାନ । ମୋ ମତରେ ତୁମେ ଗୋଟିଏ ହିନ୍ଦୁନାମ ଧାରଣ କର । ହିନ୍ଦୁ ନବ-ଦୀକ୍ଷିତମାନେ ମଧ୍ୟ ନିଜର ନାଁ ବଦଳାନ୍ତି । କେଉଁ ହିନ୍ଦୁ ଦେବତା ତୁମକୁ ଭଲ ଲାଗନ୍ତି ?'' 'ଶିବ', ମୁଁ କହିଲି, ''ଧ୍ୟାନସ୍ଥ ଯୋଗୀ ଈଶ୍ୱର, ଯେ କୈଳାସ ପର୍ବତରେ ବିରାଜମାନ ।'' 'ଆଚ୍ଛା', ସେ କହିଲେ, ''ଶିବପ୍ରସାଦ ବଡ଼ ଉତ୍ତମ ନାମ । ଶୀଘ୍ର ଏହାକୁ ଆପଣେଇ ନିଅ ଏବଂ ଯେବେ ତୁମକୁ ସ୍ୱାମୀଜୀଙ୍କ ସହିତ ସାକ୍ଷାତ କରାଇବି ସେତେବେଳେ ଶିବପ୍ରସାଦ ବୋଲି ତୁମର ପରିଚୟ ଦେବି । ରାଜି ?''

ମୁଁ ପଚାରିଲି, ''ତୁମକୁ କ'ଣ ସତରେ ଲାଗୁଛି ଯେ, ମୋର ଆଧ୍ୟାତ୍ମିକ ସନ୍ଧାନ ପାଇଁ ଏହା ସାହାଯ୍ୟ କରିବ ?'' 'ହଁ', ସେ କହିଲେ, ଓ ନିଜର ସୁନ୍ଦରୀ ଝିଅ ଶ୍ରୀଦେବୀକୁ ଡାକି ମୋର ପରିଚୟ କରାଇ କହିଲେ ଯେ, ''ଏ ହେଉଛନ୍ତି ବ୍ରହ୍ମଚାରୀ ଶିବପ୍ରସାଦ ।'' ଏହାପରେ ମୁଁ ମୋର ଆଧ୍ୟାତ୍ମିକ ଯାତ୍ରାର ଅଧିକାଂଶ ଭାଗରେ ଏହି ନାଁର ଉପଯୋଗ କଲି

ଏବଂ ସତରେ ଶିବପ୍ରସାଦ ନାଁଟି ବହୁ ପ୍ରକାରରେ ମୋର ସହାୟତା କଲା ।

ମୁଁ ସନ୍ଧ୍ୟାରେ ମହନ୍ତଜୀ (ତାଙ୍କର ନାଁ ପ୍ରକାଶ କରିବି ନାହିଁ)ଙ୍କ ସହିତ ସାକ୍ଷାତ କଲି । ମୋର ବନ୍ଧୁ, ଶ୍ରୀ ଆୟାର ହିଁ ତାଙ୍କ ସହିତ ମୋର ପରିଚୟ କରାଇଦେବା ପରେ, ସେ ପ୍ରସ୍ତାବ ଦେଲେ ମୁଁ ଆଶ୍ରମରେ ରହିବାକୁ ହେଲେ ସ୍କୁଲରେ କିଛିକିଛି କାମ କରିବି ଓ ନିଜର ଯୋଗାଭ୍ୟାସ ମଧ୍ୟ କରିଚାଲିବି । ସେ କହିଲେ, ମୁଁ ଚାହିଁଲେ ସେ ପରଦିନ ହିଁ ମୋତେ ଦୀକ୍ଷା ଦେଇଦେବେ । ''ହରିଦ୍ୱାର ଏକ ପବିତ୍ରସ୍ଥାନ'', ସେ କହିଲେ, ତା'ପରେ କହିଲେ, ''ତୁମେ ଏଠି ଆଶ୍ରମରେ ରହି ନିଜର ଆଧ୍ୟାତ୍ମିକ ସାଧନା ଜାରି ରଖିପାରିବ । ହଁ, ଯେବେବି ବାହାରକୁ ଯିବ, ସାବଧାନ ରହିବ । ଏଇଟା କଳିଯୁଗ ଆଉ ଅଧିକାଂଶ ସାଧୁ ଓ ସନ୍ନ୍ୟାସୀ ଠକ । ସେମାନେ ତୁମକୁ ଅଳ୍ପକରେ ସତ୍ୟର ସାକ୍ଷାତ କରାଇଦେବାର ପ୍ରଲୋଭନ ଦେବେ; କିନ୍ତୁ କିଛି ହେବ ନାହିଁ ଏବଂ ଶେଷରେ ତୁମେ ନିରାଶ ହୋଇଯିବ । କିଛି ଆଧୁନିକ ସାଧୁ ଯେଉଁମାନେ ନିଜର ହେଲିକପ୍ଟର ରଖନ୍ତି ଏବଂ ନିଜର ବିଦେଶୀ ଶିଷ୍ୟମାନଙ୍କପାଇଁ ଶୀତତାପ–ନିୟନ୍ତ୍ରିତ–କୁଟୀରଗୁଡ଼ିକର ନିର୍ମାଣ କରନ୍ତି, ସେମାନେ ହେଉଛନ୍ତି ସବୁଠାରୁ ନିକୃଷ୍ଟ । ସେମାନେ ଯୁବକ, ଶିକ୍ଷିତ ଚେଲାମାନଙ୍କର ସନ୍ଧାନ କରୁଥାଆନ୍ତି ଏବଂ ତୁମେ ବୁଝିପାରିବା ପୂର୍ବରୁ, ତୁମେ ସେମାନଙ୍କର ଜାଲରେ ପଡ଼ିଯିବ । କେତେଜଣ ଗଞ୍ଜେଇଭାଙ୍ଗ ଆଦି ·ନିଶାଦ୍ରବ୍ୟରେ ଅଭ୍ୟସ୍ତ ଲୋକ ସାଧୁ ହେବାର ବାହାନା କରି ନିଜର ଖର୍ଚ୍ଚ ଚଳାନ୍ତି । ତୁମେ ତାଙ୍କଠାରୁ କ'ଣ ଶିଖିବ ? ଛାଡ଼, ତୁମେ ବର୍ତ୍ତମାନ ଯାଅ, ଶ୍ରୀ ଆୟାର ତୁମକୁ ତୁମର କୋଠରି ଦେଖାଇଦେବେ ।''

ଶ୍ରୀ ଆୟାର ମୋତେ ମୋର କୋଠରି ଦେଖାଇଲେ । ସେହି କୋଠରିର ଗୋଟାଏ ଝରକାରୁ ଗଙ୍ଗାନଦୀ ଦିଶୁଥିଲା । ମୁଁ ସେଠି କିଛିଦିନ ଖୁସିରେ ବିତାଇଲି । ଆଶ୍ରମ ବେଶ ବଡ଼ ସଂସ୍ଥା ଥିଲା । ସେଠାରେ ଷାଠିଏରୁ ଅଧିକ ଗାଈ ଥିଲେ । ଦୁଧ, ଫଳ ଏବଂ ଘିଅ ସହିତ ଭୋଜନ ଭାରି ଉତ୍ତମ ଥିଲା, ଶ୍ରୀ ଆୟାର ଓ ତାଙ୍କର ଝିଅ ଶ୍ରୀଦେବୀଙ୍କର ମୋ ପ୍ରତି ବ୍ୟବହାର ବନ୍ଧୁତାପୂର୍ଣ୍ଣ ଥିଲା । ଖୁବ୍ ଶୀଘ୍ର ଅନୁଭବ କଲି ଯେ ସୁନ୍ଦରୀ ଶ୍ରୀଦେବୀ ଓ ମୁଁ ଉଭୟ ଉଭୟଙ୍କର ନିକଟତର ହେବା ଆରମ୍ଭ କରିଛୁ ।

ସମସ୍ୟା ଅଧିକ ଜଟିଳ ହେବା ପୂର୍ବରୁ ମୁଁ ସେଠାରୁ ଚାଲିଯାଇ ହିମାଳୟର ଉପରିଭାଗକୁ ଯାତ୍ରା କରିବାର ମୂଳ ଯୋଜନାକୁ କାର୍ଯ୍ୟକାରୀ କରିବାକୁ ଠିକଣା କଲି । ମୁଁ କୌଣସିପ୍ରକାର ଭାବରେ ବିଚଳିତ ହେବାକୁ ଚାହୁଁ ନ ଥିଲି । ତେଣୁ, ଦିନେ ସକାଳୁ ନିଜର ଜିନିଷପତ୍ର ଧରି ଋଷିକେଶ ଆଡ଼କୁ ଚାଲିଲି । ରେଳଗାଡ଼ିରେ ଋଷିକେଶ ଯାତ୍ରା ଅନୁଭୂତି ଆନନ୍ଦଦାୟକ ଥିଲା ।

ଅଧିକାଂଶ ଯାତ୍ରୀ ବିଭିନ୍ନ ଧରଣର ସାଧୁ ଥିଲେ । ବୋଧହୁଏ ମୁଁ ହିଁ ଥିଲି ଏକୁଟିଆ ଯାତ୍ରୀ, ଯେ ଟିକେଟ୍ କାଟିଥିଲା । ଟିକେଟ୍ କଲେକ୍ଟର ଟ୍ରେନ୍‌ରେ ଆଗକୁ ପଛକୁ ଘୂରିବୁଲୁଥାଏ । ସମସ୍ତଙ୍କୁ ବଡ଼ ଶ୍ରଦ୍ଧାରେ ନମସ୍କାର କରୁଥାଏ । କୌଣସି ଜଣେ ସାଧୁଙ୍କଠାରୁ ମଧ୍ୟ ଟିକେଟ୍ ମାଗୁ ନ ଥାଏ । ମୁଁ ଯେତେବେଳେ ପାଖରେ ବସିଥିବା ଜଣେ ବୈରାଗୀ ସାଧୁଙ୍କୁ ପଚାରିଲି ଯେ, ଟିକେଟ୍ ପରୀକ୍ଷକ ଟିକେଟ୍ କାହିଁକି ମାଗୁ ନାହିଁ ବୋଲି, ସେ 'ହୋ' 'ହୋ' ହୋଇ ହସିଉଠିଲେ ଆଉ କହିଲେ, ''ବେଟା, ଜଣାପଡୁଛି ତୁମେ ଏଠା ପାଇଁ ନୂଆ । ଏଇଟା ହେଉଛି ଭଗବାନଙ୍କର ଟ୍ରେନ । ଏଇଟା ଆମପାଇଁ, ଟିକେଟ ଆମକୁ କିଏ ମାଗିବ ?''

ରେଳଗାଡ଼ିରୁ ଓହ୍ଲେଇ ମୁଁ ଅନ୍ୟ ସାଧୁମାନଙ୍କ ସହିତ ତାଙ୍କ ପଛେ ପଛେ ମୁନି-କି-ରେତି, ଯେଉଁଠାରେ ଗଙ୍ଗାନଦୀର ଦୁଇକୂଳରେ କେବଳ ଆଶ୍ରମଗୁଡ଼ିକ ଥିଲା, ସେଠାକୁ ଚାଲିଗଲି । ସନ୍ଧ୍ୟା ହୋଇଯାଇଥାଏ । ପ୍ରାୟ ଶହେଟା ପାହାଚ ଚଢ଼ି, ମୁଁ ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କ ଦ୍ୱାରା ସ୍ଥାପିତ ପ୍ରସିଦ୍ଧ 'ଡିଭାଇନ୍ ଲାଇଫ୍ ସୋସାଇଟି'ର ପ୍ରାଙ୍ଗଣରେ ପ୍ରବେଶ କଲି । ସ୍ୱାମୀ ଶିବାନନ୍ଦଜୀଙ୍କର ଦେହାନ୍ତ ହୋଇଯାଇଥାଏ ଏବଂ ଆଶ୍ରମକୁ ଚିଦାନନ୍ଦ ସ୍ୱାମୀ ଚଳାଉଥା'ନ୍ତି । ସେ ଥିଲେ ସ୍ୱାମୀ ଶିବାନନ୍ଦଙ୍କର ପ୍ରଧାନ ଶିଷ୍ୟମାନଙ୍କ ମଧ୍ୟରୁ ଜଣେ । ଉନ୍ମୁକ୍ତ ସଭାମଞ୍ଚରେ ଏକ ସତ୍‌ସଙ୍ଗ ଚାଲିଥାଏ ।

ସ୍ୱାମୀ ଚିଦାନନ୍ଦ ଏକ ଉଚ୍ଚାସନରେ ସୁଖାସନ ମୁଦ୍ରାରେ ବସିଥିଲେ । ସେ ଦୀର୍ଘ ଓ ଦୁର୍ବଳ ଥିଲେ ଏବଂ ପୂରା ସିଧା ଭାବରେ ବସିଥିଲେ । ସେଠାରେ ପ୍ରାୟ ପଚାଶଜଣ ବ୍ୟକ୍ତି ଉପସ୍ଥିତ ଥିଲେ । ସେମାନଙ୍କ ମଧ୍ୟରେ କିଛି ପଶ୍ଚିମ-ଦେଶୀୟ ମଧ୍ୟ ଥିଲେ । ସେ ଜଣକର ପ୍ରଶ୍ନର ଉତ୍ତର ଇଂରେଜୀରେ ଦେଉଥିଲେ । ମୁଁ ଚୁପ୍‌ଚାପ୍ ଯାଇ ଗୋଟାଏ କୋଣରେ ବସିଗଲି ।

ସ୍ୱାମୀଜୀ ନିଜର ପ୍ରଶ୍ନୋତ୍ତର ମଝିରେ ହିଁ ଥମିଯାଇ ମୋ' ଆଡ଼କୁ ଚାହିଁ ସହଜ ମୃଦୁହାସ୍ୟ ସହିତ ଜଣେ ପୁରୁଣା ବନ୍ଧୁପରି ପଚାରିଲେ, ''ତୁମେ କେବେ ଆସିଲ ?'' ତାଙ୍କର ଏହି ଅଚାନକ ପ୍ରଶ୍ନ ମୋତେ ଆଶ୍ଚର୍ଯ୍ୟ କରିଦେଲା । ମୁଁ ଖନେଇ ଖନେଇ କହିଲି, ''ଏଇ ସାଙ୍ଗେ ସାଙ୍ଗେ'' । ତା'ପରେ କହିଲେ, ''ମୋତେ ଲାଗୁଛି, ତୁମେ ସ୍ନାନ ଓ ଆରାମ କରିବା ଦରକାର, ସତ୍‌ସଙ୍ଗକୁ ତ ତୁମେ କାଲି ବି ଆସିପାରିବ ।''

ତାଙ୍କ ପାଖରେ ଜଣେ ଯୁବକ ବ୍ରହ୍ମଚାରୀ ଠିଆ ହୋଇଥିଲେ । ସେ ଫୁସ୍‌ଫୁସ୍‌କିନା ତାଙ୍କୁ କ'ଣ କହିଲେ । ସେହି ବ୍ରହ୍ମଚାରୀ ମୋ ପାଖକୁ ଆସିଲେ ଏବଂ ମୋତେ କହିଲେ, ''ଆସ'' । ମୁଁ ସ୍ୱାମୀଙ୍କୁ ନମସ୍କାର କରି ସେହି ବ୍ରହ୍ମଚାରୀଙ୍କ ସହିତ ଚାଲିଗଲି । ସ୍ୱାମୀଜୀ ଅତି ମଧୁର ସ୍ୱରରେ କହିଲେ, ''ହରି ଓମ୍'' ।

ମୋତେ ଆଉ ଟିକିଏ ଉପରକୁ ପାହାଡ଼ର ପାଦଦେଶରେ ଗୋଟିଏ କୋଠରି ଦେଖାଇ ଦିଆଗଲା । କୋଠରିଟି ଅତି ସାଧାରଣ ଥିଲା କିନ୍ତୁ ଅତି ପରିଷ୍କାର ପରିଚ୍ଛନ୍ନ ଥିଲା । ସେ ବ୍ରହ୍ମଚାରୀ ଜଣକ ତାମିଲନାଡୁର ଥିଲେ ବୋଲି ଜଣାପଡ଼ିଲା । ମୁଁ ତାମିଲ ଭାଷା ଜାଣେ ଶୁଣି ସେ ଖୁସି ହେଲେ । ସେ ମୋତେ ଦୁଇଟି କପଡ଼ାର ତଉଲିଆ ଦେଲେ ଓ ଭୋଜନକକ୍ଷ କେଉଁଠାରେ ଅଛି ବୋଲି କହିଦେଲେ । ରାତି 7.30ରେ ଖାଇବା ପିଇବା ହୁଏ । ସେ କହିଲେ ଯେ, ସେଠି ମୋର ତାଙ୍କ ସହିତ ଭେଟ ହେବ ଏବଂ ତରବର ହୋଇ ଚାଲିଗଲେ ।

ମୁଁ ଥଣ୍ଡା ପାଣିରେ ଗାଧୋଇଲି । କମ୍ପିବା ବନ୍ଦ ହେଲାପରେ ମୋର ନୂଆ ହଳଦିଆ ରଙ୍ଗର ଧୋତି ଓ ଅଧାହାତ ବାଲା କୁର୍ତ୍ତା ପିନ୍ଧି ତଳକୁ ଚାଲିଆସିଲି । ଭୋଜନକକ୍ଷ ସଡ଼କର ସେପଟେ ଥିଲା । ମୋ ପାଖରେ ଯଥେଷ୍ଟ ସମୟ ଥିବାରୁ ମୁଁ ଘାଟ ଆଡ଼କୁ ଚାଲିଗଲି ଏବଂ ଗୋଟାଏ ପାହାଚରେ ବସି ଗଙ୍ଗାର ପ୍ରବାହକୁ ଦେଖିବାରେ ଲାଗିଲି । ନଦୀରେ ଗୁଡ଼ାଏ ନାଆ ଦିନସାରା ଚାଲୁଥା'ନ୍ତି । ନଦୀ ସେପଟେ ବହୁତ ଆଶ୍ରମ ଥିଲା । ସେମାନଙ୍କ ଭିତରୁ ସବୁଠାରୁ ପୁରୁଣା ଥିଲା 'ସ୍ୱର୍ଗ ଆଶ୍ରମ' । ଏହି ଆଶ୍ରମ ଥିଲା କାଲୀ କମ୍ବଲୀୱାଲାଙ୍କର ।

ଗୋଧୂଳି ସମୟ ଥିଲା । ନଦୀର ଦି'ପଟେ ଲୋକମାନେ ଆରତି କରୁଥିଲେ, ଛୋଟ-ଛୋଟ ଦୀପ ଜଳେଇ ପାଣି ଉପରେ ଭସେଇ ଦେଇ ନଦୀ ଦେବୀଙ୍କର ପୂଜା କରୁଥିଲେ ଏବଂ ଭଜନ କରୁଥିଲେ । ସେହି ସନ୍ଧ୍ୟାଟି ଭାରି ସୁନ୍ଦର ଥିଲା । ନଦୀର ସେପଟୁ ଆଶ୍ରମମାନଙ୍କରୁ ପୁରାତନ ସଂସ୍କୃତ ଭାଷାରେ ମଧୁର ଓ ମନୋମୁଗ୍ଧକର ଧ୍ୱନିରେ ମନ୍ତ୍ର-ଉଚ୍ଚାରଣର ଶବ୍ଦ ଭାସିଆସୁଥିଲା । ତାହା ଅତ୍ୟନ୍ତ ଶ୍ରୁତିମଧୁର ଥିଲା ।

ହଠାତ୍ ଭୋଜନକକ୍ଷର ଘଣ୍ଟି ବାଜିଲା ଓ ମୁଁ ଶିଡ଼ିରୁ ଉଠି ସେଇ ଆଡ଼କୁ ଆସିଲି । ବାସ୍ତବରେ ଆତ୍ମାକୁ ଭୋଜନର ଆବଶ୍ୟକତା ନ ଥିଲା, କିନ୍ତୁ ଶରୀରକୁ କ୍ଷୁଧା ଅନୁଭବ ହେଉଥିଲା । ବେଶ ବଡ଼ ଭୋଜନକକ୍ଷରେ ସାଧୁ ଓ ଦଣ୍ଡୀ ସ୍ୱାମୀମାନେ ଗୋଟାଏ ପଟେ ଏବଂ ଅନ୍ୟମାନେ ଅନ୍ୟପଟେ ବସିଥିଲେ । ସମସ୍ତେ ଚକାପକାଇ ବସିଥିଲେ । ସମସ୍ତେ ନିଜନିଜର ଷ୍ଟିଲ ଥାଳିରେ ଖାଇଲେ । ତାମିଲନାଡୁର ବ୍ରହ୍ମଚାରୀ ଅନ୍ୟ କେତେଜଣଙ୍କ ସହିତ ପରିବେଷଣ କରୁଥିଲେ । ଖାଇବା ଦକ୍ଷିଣ ଭାରତୀୟ ପଦ୍ଧତିର ଥିଲା । ସେଥିରେ ଥିଲା ଭାତ, ତରକାରି, ସମ୍ବର ଓ ଗୋଟିଏ ଗୋଟିଏ ଲଡ଼ୁ, ମୋତେ ଭୋକ ହେଉଥିଲା, ତେଣୁ ପେଟପୂରା ଖାଇନେଲି ।

ପେଟ ପୂରିଗଲା ପରେ ମୋତେ ଭାରି ଥକା ଲାଗିଲା ଓ ନିଦ ମଧ୍ୟ ଲାଗିଲା ।

ବ୍ରହ୍ମଚାରୀଙ୍କଠାରୁ ଦିନଚର୍ଯ୍ୟା ବିଷୟରେ ପଚାରି ବୁଝିନେଲା ପରେ ମୁଁ ନିଜ କୋଠରିକୁ ଚାଲିଗଲି ଏବଂ କିଛି ସମୟ ଝରକା ଖୋଲି ଖଟ ଉପରେ ଧ୍ୟାନରେ ବସିଲି । ତା'ପରେ ବିଛଣାରେ ଗଡ଼ିପଡ଼ିଲି ଓ ସାଙ୍ଗେସାଙ୍ଗେ ଶୋଇଗଲି ।

ସେଦିନ ରାତିରେ ମୁଁ ଗୋଟିଏ ସ୍ୱପ୍ନରେ ଦେଖିଲି ଯେ, ମୁଁ ଗୋଟାଏ ଘାଟିରେ ପାଦଚଲା ରାସ୍ତାରେ ଚାଲୁଛି ଯେଉଁଠାରେ ଶୁଦ୍ଧ ଏବଂ ସ୍ଫଟିକ ପରି ସ୍ୱଚ୍ଛ ଜଳର ଧାରା ବହିଯାଉଛି । ସେଇ ଜଳର ଧାରାର କୂଳରେ ଗୋଟିଏ ନଡ଼ାଛପର ଥିବା ଛୋଟ କୁଡ଼ିଆ ରହିଛି । ମୁଁ ଯେତେବେଳେ କୁଡ଼ିଆ ପାଖରେ ପହଞ୍ଚିଲି, ସେତେବେଳେ ଜଣେ ବ୍ୟକ୍ତି ବାହାରକୁ ଆସିଲେ । ତାଙ୍କ ଚେହେରା ଗୋଟିଏ ଧଳା ପର୍ଦ୍ଦାଦ୍ୱାରା ଘୋଡ଼େଇ ହୋଇ ରହିଥିଲା । ତାଙ୍କୁ ଦେଖି ମୁଁ ଭୟଭୀତ ହେଲି ଓ ସେହିଠାରେ ଯେମିତି ବରଫ ପାଲଟିଗଲି । ସେ କହିଲେ, ''ଡର ନାହିଁ । ମୁଁ ଜଣେ ବନ୍ଧୁ ଓ ସମସ୍ତେ ମୋତେ 'ଏମ୍' ବୋଲି ଡାକନ୍ତି । ତୁମକୁ ମଧ୍ୟ ଏହି ନାମରେ ଲୋକମାନେ ଡାକିବେ, ଆତ୍ମସନ୍ତୁଷ୍ଟିରେ ବୁଡ଼ି ରୁହ ନାହିଁ ଓ ପାଦଦେଶରେ ହିଁ ପଡ଼ିରୁହ ନାହିଁ । ଆଗକୁ ଚାଲ, ପାହାଡ଼ ଉପରକୁ ଚଢ଼ି ଚାଲ । ସେ ତୁମକୁ ଅପେକ୍ଷା କରୁଛନ୍ତି ।'' ତା'ପରେ ସବୁକିଛି ଅଦୃଶ୍ୟ ହୋଇଗଲା– ଘାଟି, ଜଳଧାରା, କୁଡ଼ିଆ ଏବଂ ପର୍ଦ୍ଦାରେ ଲୁଚିଥିବା ବ୍ୟକ୍ତି । ମୁଁ ସେଠି ଏକୁଟିଆ ଥିଲି ଓ ମୋ' ଚାରିପଟେ ହିମବାହ ଥିଲା । ପାଗ ଥଣ୍ଡା ଥିଲା ଆଉ ମୁଁ କମ୍ପିବାକୁ ଲାଗିଲି । ''ହେ ପ୍ରଭୁ, ମୋତେ ସାହାଯ୍ୟ କର'', ମୁଁ ଚିତ୍କାର କଲି ଓ ଉଠିକରି ବସିଗଲି । ପ୍ରକୃତରେ ମୋତେ ଶୀତ କରୁଥିଲା, କାରଣ ମୁଁ ମୋ ନିଜକୁ ରେଜେଇରେ ଠିକ୍ ଭାବରେ ଢାଙ୍କି ନ ଥିଲି । ସୂର୍ଯ୍ୟୋଦୟ ହେବାର ସମୟ ଥିଲା, ଆଉ ସେତିକିବେଳେ ଶଙ୍ଖ ବାଜିବାର ଶବ୍ଦ ଶୁଣାଗଲା ।

ଆଶ୍ରମରେ ଦିନଚର୍ଯ୍ୟା ବେଶ୍ ଶୀଘ୍ର ଆରମ୍ଭ ହୋଇଯାଉଥିଲା । ସକାଳର ପୂଜାପରେ, ଯୋଗାସନର ଅଭ୍ୟାସ ସକାଳ 6 ଟାବେଳେ ଆରମ୍ଭ ହୋଇଯାଉଥିଲା । ଅଧଘଣ୍ଟାଏ ଧ୍ୟାନ ଓ ତା'ପରେ ସ୍ନାନ । ସକାଳ ଆଠଟାରେ ହାଲ୍କା ଜଳଖିଆ । ତା'ପରେ ପୁସ୍ତକାଳୟରେ କିମ୍ବା ନିଜ କୋଠରିରେ ହିଁ ସ୍ୱାଧ୍ୟାୟ । ପାଖାପାଖି 10.30 ପର୍ଯ୍ୟନ୍ତ । ଠିକ୍ ସାଢ଼େ ଦଶଟାରେ 'ଡିଭାଇନ୍ ଲାଇଫ୍ ସୋସାଇଟି'ର ମହାସଚିବ ସ୍ୱାମୀ କୃଷ୍ଣାନନ୍ଦଜୀ ଉପନିଷଦଗୁଡ଼ିକ ଉପରେ ପ୍ରବଚନ ଦେଉଥିଲେ । ସ୍ୱାମୀ କୃଷ୍ଣାନନ୍ଦଜୀ 'ଡିଭାଇନ୍ ଲାଇଫ୍ ସୋସାଇଟି'ର ସଂସ୍ଥାପକ ସ୍ୱାମୀ ଶିବାନନ୍ଦଙ୍କର ପ୍ରମୁଖ ଶିଷ୍ୟ ଥିଲେ । ଦ୍ୱିପ୍ରହରର ଭୋଜନ ପରେ ତିନିଟାବେଳ ପର୍ଯ୍ୟନ୍ତ ବିଶ୍ରାମ । ସନ୍ଧ୍ୟାର ସତ୍‌ସଙ୍ଗ ସନ୍ଧ୍ୟା ସାଢ଼େ ଛ'ଟାରେ ହେଉଥିଲା । ସାଢ଼େ ସାତଟାବେଳେ ରାତ୍ରିଭୋଜନ । ରାତ୍ରିଭୋଜନ ପରେ ଅନ୍ତେବାସୀମାନଙ୍କୁ ବାହାରକୁ ଯାଇ

ଉଦ୍ଦେଶ୍ୟବିହୀନ ଭାବରେ ଘୂରିବୁଲିବାକୁ ଉତ୍ସାହିତ କରାଯାଉନଥିଲା ।

ପରଦିନ ସକାଳ ସାଢ଼େ ନ'ଟାରେ ସେହି ବ୍ରହ୍ମଚାରୀ, ଯେ ଏ'ଭିତରେ ମୋର ଜଣେ ଉତ୍ତମ ବନ୍ଧୁରେ ପରିଣତ ହୋଇଯାଇଥିଲେ, କହିଲେ ଯେ, ସାଢ଼େ ଦଶଟାବେଳେ ସ୍ୱାମୀ ଚିଦାନନ୍ଦଜୀ ତାଙ୍କ ନିବାସରେ ମୋ' ସହିତ କଥାବାର୍ତ୍ତା ହେବାକୁ ଚାହାଁନ୍ତି । ମୁଁ ଉତ୍ସାହିତ ଥିଲି ଓ ବ୍ରହ୍ମଚାରୀ କେତେବେଳେ ମୋତେ ଅଧ୍ୟକ୍ଷ ମହାରାଜଙ୍କ ନିବାସକୁ ନେଇଯିବେ, ତାହାର ପ୍ରତୀକ୍ଷା କରୁଥିଲି । ମୁଁ ସ୍ୱାମୀ କୃଷ୍ଣାନନ୍ଦଜୀଙ୍କର ଉପନିଷଦ-ପ୍ରବଚନ ଶୁଣିବାରୁ ବଞ୍ଚିତ ହେବାକୁ ଯାଉଥିଲି । କିନ୍ତୁ ସ୍ୱାମୀ ଚିଦାନନ୍ଦଜୀଙ୍କ ସହିତ ସାକ୍ଷାତ ଅଧିକ ମହତ୍ତ୍ୱପୂର୍ଣ୍ଣ ଥିଲା । ତା' ମୋ ପାଇଁ ସୌଭାଗ୍ୟର ବିଷୟ ମଧ୍ୟ ଥିଲା । ଠିକ୍ ଦଶଟା ବାଜି କୋଡ଼ିଏ ମିନିଟ୍‌ବେଳେ ବ୍ରହ୍ମଚାରୀ ମୋତେ ନେଇଯିବାକୁ ଆସି ପହଞ୍ଚିଲେ । ସେ କହିଲେ, ସ୍ୱାମୀ ମହାରାଜଙ୍କୁ ସାକ୍ଷାତ କରିବାବେଳେ ତାଙ୍କୁ ଯେପରି ଦଣ୍ଡବତ ପ୍ରଣାମ ଅବଶ୍ୟ କରିବି ।

ସ୍ୱାମୀଜୀ ପ୍ରାରମ୍ଭିକ କଥାବାର୍ତ୍ତା ପରେ ପଚାରିଲେ ଯେ ମୋର ବୟସ କେତେ, ମୁଁ କେଉଁଠୁ ଆସିଛି ଓ ମୋର କେତେଜଣ ଭାଇ ଭଉଣୀ, ତା'ପରେ ପଚାରିଲେ, ମୋତେ ଯେଉଁ କୋଠରି ଦିଆଯାଇଛି, ସେଇଟି ସୁବିଧାଜନକ କି ନାହିଁ । ତା'ପରେ ହଠାତ୍ ସେ ମୋତେ ପଚାରିଲେ, ''ତୁମର ନାମ କ'ଣ ?''

''ଶିବ ପ୍ରସାଦ'', ମୁଁ ମୋର ଏହି ନୂଆ ନାମର ଉପଯୋଗ କଲି ।

''ଏହା ପୂର୍ବରୁ କେବେ ଯୋଗାଭ୍ୟାସ କରିଛ ?''

''ହଁ ମହାରାଜ, ଆଠବର୍ଷ ବୟସରୁ ।''

''ସଂସ୍କୃତ ଜାଣ ?''

''ବେଶି ନୁହେଁ, କିନ୍ତୁ ମୁଁ ଦେବନାଗରୀ ପଢ଼ିପାରେ । ହିନ୍ଦୀ ମୋର ଦ୍ୱିତୀୟ ଭାଷା ଥିଲା ।''

''ଆଚ୍ଛା, ଧ୍ୟାନ ?''

''ଗୋଟାଏ ପ୍ରକାରର ଯୋଗ ଧ୍ୟାନ ମୋତେ ସ୍ୱାଭାବିକ ଭାବରେ ଆସେ । ମୁଁ କହିବାକୁ ଚାହେଁ ମହାରାଜ ଯେ, ମୁଁ ଯେତେବେଳେ ଛୋଟପିଲା ଥିଲି, ମୋର ସାକ୍ଷାତ ଜଣେ ଯୋଗୀଙ୍କ ସହିତ ହୋଇଥିଲା । ସେ ମୋତେ ଆଶୀର୍ବାଦ କରିଥିଲେ ଆଉ......'' ମୁଁ ଆଶ୍ଚର୍ଯ୍ୟ ହେଲି ଯେ ମୁଁ ଏତେକଥା କେମିତି ସ୍ୱାମୀଜୀଙ୍କୁ କହିପାରିଲି, 'କେମିତି ମୋ ଜିଭରେ ତାଲା ପଡ଼ିଗଲାନି ଯେମିତି ଏଇ ଘଟଣା କହିବାକୁ ଗଲାବେଳେ ପୂର୍ବରୁ ସବୁବେଳେ ଘଟୁଥିଲା । କିନ୍ତୁ ଆଜି ବି ଏତିକି କହିସାରିବା ପରେ ମୋର ଜିହ୍ୱାରେ ଯେମିତି ତାଲା

ପଡ଼ିଗଲା । ମୁଁ ଅଧିକ କହିବାର ଚେଷ୍ଟାରୁ ବିରତ ରହିଲି ।

ସ୍ୱାମୀ ଚିଦାନନ୍ଦଜୀ ଗଭୀର ଧ୍ୟାନର ସହିତ ମୋର ଆଖିକୁ ଚାହିଁ ରହିଥିଲେ । ସେ ଗୋଟାଏ ଗଭୀର ନିଃଶ୍ୱାସ ନେଲେ ଏବଂ ନିଜର ଗମ୍ଭୀର ସ୍ୱରରେ 'ହରି ଓମ୍' କହିଲେ ଓ ମୋର ମୁଣ୍ଡକୁ ଥାପୁଡ଼େଇ ଦେଲେ । "ହୁଁ, ବୋଧହୁଏ ପୂର୍ବଜନ୍ମର ପ୍ରଭାବ । ଭଗବାନ ତୁମକୁ ଆଶୀର୍ବାଦ ଦିଅନ୍ତୁ ଆଉ ଜନ୍ମ ସମୟରେ ତୁମକୁ କ'ଣ ନାଁ ଦିଆଯାଇଥିଲା ?" ମୁଁ ସେଦିନର ଏହି ଦ୍ୱିତୀୟ ଧକ୍କା ସମ୍ଭାଳିବା ପୂର୍ବରୁ ସେ କହିଉଠିଲେ, "ଠିକ୍ ଅଛି । କହିବାର ଆବଶ୍ୟକତା ନାହିଁ । ଆସନ ବିଧି ଏବଂ ଆଉ କିଛି ପ୍ରାଣାୟାମ ଶିଖ ଆମର ଆସନ-ଆଚାର୍ଯ୍ୟଙ୍କଠାରୁ ଏବଂ ଯେତେଦିନ ଇଚ୍ଛା, ସେତେଦିନ ଏଠାରେ ରହ । ମୁଁ ଜାଣେ ହିମାଳୟର ଉପରିଭାଗ ତୁମକୁ ସମ୍ମୋହକ ରୂପରେ ଆକର୍ଷିତ କରୁଛି । ଯେବେ ବି ତୁମେ ଚାହିଁବ ଯାଇପାରିବ, ସେ ସ୍ୱତନ୍ତ୍ରତା ତୁମର ଅଛି । ବୋଧହୁଏ ତୁମର ଭାଗ୍ୟ ପାହାଡ଼ ସହିତ ସଂପୃକ୍ତ । ଯଦି କୌଣସି ସମସ୍ୟା ହୁଏ, ସଂକୋଚ ନ କରି ମୋତେ ଜଣେଇବ । ଭଗବାନ ତୁମକୁ ଆଶୀର୍ବାଦ କରନ୍ତୁ । 'ହରି ଓମ୍' ।"

ମୁଁ ସେହି ଆଶ୍ରମରେ ଏକ ଅଦ୍ଭୁତ ମାସ ବିତାଇଲି । ଯୋଗ ଶ୍ରେଣୀରେ ସାମିଲ ହେଲି ଓ ସ୍ୱାମୀ କୃଷ୍ଣାନନ୍ଦଜୀଙ୍କର ବିଚାରୋତ୍ତେଜକ ସତ୍ରଗୁଡ଼ିକରେ ଭାଗ ନେଲି । ତାଙ୍କର ଉତ୍ତମ ପୁସ୍ତକାଳୟର ଉପଯୋଗ କଲି ଏବଂ ସ୍ୱାମୀ ଚିଦାନନ୍ଦଜୀଙ୍କ ଅଧିକାଂଶ ସାନ୍ଧ୍ୟ ସତ୍ସଙ୍ଗଗୁଡ଼ିକରେ ଉପସ୍ଥିତ ରହିଲି । ତା'ସତ୍ତ୍ୱେ ମୋତେ ଋଷିକେଶରେ ବୁଲିବାପାଇଁ ସମୟ ମିଳୁଥିଲା । ପ୍ରାୟ ମୁଁ ନୌକାରେ ଆରପଟକୁ ଯାଇ କୂଳରେ ଥିବା ଅନେକ ଆଶ୍ରମକୁ ଯାଉଥିଲି । ସେମାନଙ୍କ ଭିତରୁ ସବୁଠୁଁ ପୁରୁଣା 'ସ୍ୱର୍ଗ ଆଶ୍ରମ'କୁ କାଲୀ କମ୍ବଲୀୱାଲା ଆରମ୍ଭ କରିଥିଲେ । ତାଙ୍କୁ ଏପରି ନାଁରେ ଡାକୁଥିଲେ କାରଣ ତାଙ୍କ ପାଖରେ କେବଳ ପଶମର ଗୋଟିଏ କଳା କମ୍ବଳ ଛଡ଼ା ଆଉ କିଛି ନ ଥିଲା । ତାଙ୍କ ଆଶ୍ରମରେ ଘୂରି ବୁଲୁଥିବା ସାଧୁମାନଙ୍କପାଇଁ ରହିବା ଓ ଖାଇବାର ଶସ୍ତା ବନ୍ଦୋବସ୍ତ ଥିଲା । ଆଶ୍ରମଗୁଡ଼ିକୁ କାଲୀ କମ୍ବଲୀୱାଲେଙ୍କ କ୍ଷେତ୍ର ବୋଲି କୁହାଯାଉଥିଲା । ହିମାଳୟର ସବୁ ତୀର୍ଥ ରାସ୍ତାରେ ଏହିଭଳି ଆଶ୍ରମ ଥିଲା । ଏହାସବୁ କାଲୀକମ୍ବଲୀୱାଲା ବାବାଙ୍କ କୃପାରୁ ସମ୍ଭବ ହୋଇପାରିଥିଲା । ଏହି ଘଟଣା ବିଂଶ ଶତାବ୍ଦୀର ପ୍ରାରମ୍ଭର କଥା । କାଲୀ କମ୍ବଲୀୱାଲେ ବାବାଙ୍କ ବିଷୟରେ ଅନେକ କାହାଣୀ ପ୍ରଚଳିତ । ସେଗୁଡ଼ିକ ମଧ୍ୟରୁ ମୁଁ କେବଳ ଗୋଟିଏ ଆପଣମାନଙ୍କୁ କହିବାକୁ ଚାହେଁ ।

ସୁଲ୍‌ତାନା ବୋଲି ଗୋଟାଏ କୁଖ୍ୟାତ ଗୁଜ୍ଜର ଡାକୁ ଏହି ଇଲାକାରେ ରହୁଥିଲା ।

ସେ ବଡ଼ଲୋକ ତୀର୍ଥଯାତ୍ରୀ ଦଳଙ୍କୁ ଓ ଧନୀ ଆଶ୍ରମଗୁଡ଼ିକୁ ଲୁଣ୍ଠନ କରୁଥିଲା । କୁହାଯାଉଥିଲା ଯେ, ଧନୀ ଲୋକ ତା' ନାଁ ଶୁଣିଲେ ଭୟରେ କମ୍ପୁଥିଲେ । ତା'ର ନୀତି ଥିଲା ଯେ, ସେ ଆଗରୁ ଡକାୟତି କରିବାର ଚେତାବନୀ ଦେଉଥିଲା ଓ ଦିନ ଆଲୁଅରେ ଲୁଣ୍ଠନ କରୁଥିଲା । ଥରେ ସେ କାଲୀକମ୍ବଲୀୱାଲେ ମହାରାଜଙ୍କୁ ଖବର ପଠାଇଲା ଯେ, ସେ ଏକ ନିର୍ଦ୍ଦିଷ୍ଟ ସମୟରେ ଆଶ୍ରମର ଭଣ୍ଡାର ଲୁଣ୍ଠନ କରିବ । ଆଶ୍ରମର କର୍ମଚାରୀ ଓ ଭକ୍ତମାନେ ଅତ୍ୟଧିକ ଭୟଭୀତ ହୋଇଗଲେ । ବାବା ନିର୍ବିକାର ରହିଲେ । ସେହି ନିର୍ଦ୍ଦିଷ୍ଟ ଦିନ ସେ ସୁଲ୍ତାନା ଡାକୁ ଓ ତା'ର ଦଳପାଇଁ ଦ୍ୱିପ୍ରହରରେ ସ୍ୱତନ୍ତ୍ର ଭୋଜନର ବନ୍ଦୋବସ୍ତ କଲେ ଏବଂ ନିଜର କୁଡ଼ିଆର ଚଉତରା ଉପରେ ବସି ତାକୁ ଅପେକ୍ଷା କଲେ । ଡାକୁ ତା' ଦଳର ଛ'ଜଣ ସଶସ୍ତ୍ର ଡକାୟତଙ୍କ ସହିତ ଠିକ୍ ସମୟରେ ଆସି ପହଞ୍ଚିଗଲା । ତାଙ୍କ ପାଖରେ ଖଣ୍ଡା ଓ ବନ୍ଧୁକ ଥିଲା ।

ଯେମିତି ଡାକୁ ଘୋଡ଼ାରୁ ଓହ୍ଲେଇଲା, ବାବାଜୀ ନିଜେ ତା' ପାଖକୁ ଗଲେ ଏବଂ ତାକୁ ସ୍ୱାଗତ କଲେ । ବାବାଜୀ ତାକୁ ଓ ତା' ସାଥୀ ଡାକୁମାନଙ୍କୁ ଚଉତରା ଉପରେ ବସିବାକୁ ଆମନ୍ତ୍ରଣ କଲେ । ପିଇବାକୁ ପାଣି ଦେଲେ ଆଉ କହିଲେ ଯେ, ଆପଣମାନେ ଟିକିଏ ବିଶ୍ରାମ ନିଅନ୍ତୁ ।  ତା'ପରେ ବାବାଜୀ ଡାକୁକୁ ଭଣ୍ଡାରର ଚାବି ଦେଇ କହିଲେ, "ତୁମର ଯାହା ଇଚ୍ଛା ନେଇନିଅ । କିନ୍ତୁ ମୁଁ ହିଂସା ଓ ରକ୍ତପାତ ଚାହେଁ ନାହିଁ । ଯଦି ତୁମେମାନେ ହିଂସା ଆଚରଣ କରିବାକୁ ଚାହୁଁଛ, ତେବେ ମୋର ଅନୁରୋଧ ଯେ ବାକି ସମସ୍ତଙ୍କୁ ବାଦ୍‌ଦେଇ କେବଳ ମୋତେ ହତ୍ୟା କର । ମୋ ପାଇଁ ଜୀବନ ଆଉ ମୃତ୍ୟୁ ଏକା ଜିନିଷ । ଏହି ସ୍ଥାନର ପ୍ରମୁଖ ପୁଲିସ ଅଧିକାରୀ ମୋର ବିଶେଷ ଭକ୍ତ ଏବଂ ଚାହିଁଥିଲେ ତାଙ୍କଠାରୁ ସହଜରେ ସାହାଯ୍ୟ ମାଗି ପାରିଥାଆନ୍ତି କିନ୍ତୁ ପୁଣି ଏଠି ହିଂସା ଓ ରକ୍ତପାତ ହୋଇଯାଇଥାଆନ୍ତା ଓ କେତେ ଲୋକଙ୍କର ଜୀବନ ଚାଲିଯାଇଥାଆନ୍ତା । ସେକଥା ମୁଁ କଦାପି ଚାହେଁ ନାହିଁ । ଭଣ୍ଡାର ଲୁଣ୍ଠନ କଲାପରେ ତୁମେମାନେ ଶୀଘ୍ର ଚାଲିଯିବ ନାହିଁ । ମୁଁ ତୁମମାନଙ୍କ ପାଇଁ ଭୋଜିର ବନ୍ଦୋବସ୍ତ କରିଛି । ତୁମେ ଓ ତୁମର ସାଥୀମାନେ ଶାନ୍ତି ଓ ଆନନ୍ଦର ସହିତ ଦ୍ୱିପ୍ରହରର ଭୋଜନ ସାରି, କିଛି ସମୟ ବିଶ୍ରାମ କରି, ତା'ପରେ ଚାଲିଯିବ । ମୋର ତୁମ ସହିତ ବା କୌଣସି ଜୀବିତ ପ୍ରାଣୀ ସହିତ କୌଣସି ଶତ୍ରୁତା ନାହିଁ । ଏବେ ତୁମେ ଯାହା ଉଚିତ ମନେକରୁଛ, କର ।"

ଡାକୁ କେବେହେଲେ ଏମିତି ଲୋକର ମୁହାଁମୁହିଁ ହୋଇ ନ ଥିଲା । ସେ ଶ୍ରଦ୍ଧାରେ ନିଜର ମସ୍ତକ ନତ କଲା । କୁହାଯାଏ ଯେ ସେ କ୍ଷମା ମାଗିଲା ଓ ଭଣ୍ଡାରକୁ ଲୁଣ୍ଠନ କରିବା

ବଦଳରେ ସୁନା ମୋହରର ଏକ କ୍ଷୁଦ୍ର ରାଶି ସେଥିରେ ଯୋଗ କଲା ଏବଂ ଦ୍ୱିପ୍ରହରର ଉତ୍ତମ ଭୋଜନ ପରେ ବାବାଙ୍କୁ ବହୁତ ବହୁତ ଧନ୍ୟବାଦ ଦେଇ ବିଦାୟ ନେଲା ।

ମୁଁ କେତେଗୁଡ଼ିଏ ଆଶ୍ରମକୁ ଗଲି । ସେମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଯୋଗ ନିକେତନ, ପରମାର୍ଥ ନିକେତନ, ଗୀତା ଭବନ ଏବଂ ବାତାନୁକୂଳିତ ଗୁମ୍ଫାଗୁଡ଼ିକ । ଏହି ଗୁମ୍ଫାଗୁଡ଼ିକର ନିର୍ମାଣ 'ଟି.ଏମ୍.' ପ୍ରସିଦ୍ଧିପ୍ରାପ୍ତ ମହେଶ ଯୋଗୀ ବାବା ନିଜର ବିଶେଷ ଶିଷ୍ୟ 'ବିଟ୍ଲସ୍'ମାନଙ୍କ ପାଇଁ କରାଇଥିଲେ । ଏହି ବାତାନୁକୂଳିତ ଗୁମ୍ଫାମାନଙ୍କର ପଛପଟ ଘନ ଜଙ୍ଗଲର ମଝିରୁ ପାହାଡ଼ର ଶୀର୍ଷସ୍ଥିତ ନୀଳକଣ୍ଠ ମହାଦେବଙ୍କ ମନ୍ଦିରକୁ ଯିବାର ରାସ୍ତା ଆରମ୍ଭ ହୁଏ ।

ଜଙ୍ଗଲ ଭିତରୁ ଗୋଟାଏ ସରୁ ରାସ୍ତା ଲଛମନ ଝୁଲା ଆଡ଼କୁ ଥିଲା । ରାସ୍ତାର ଦି'ପଟେ ଛୋଟ ଛୋଟ କୁଡ଼ିଆ ଓ ଚାଳିଆ ଥିଲା, ଯେଉଁଥିରେ ସାଧୁ, ଯୋଗୀ ଏବଂ ଭିକ୍ଷୁ ଏକାନ୍ତବାସ କରୁଥିଲେ । ସେହିଠାରେ ବଡ଼ ବଡ଼ ପଥରଖଣ୍ଡ ଘେରି ରହିଥିବା ଗୋଟିଏ ଆରାମଦାୟକ ଛୋଟ ଗୁମ୍ଫା ଥିଲା, ଯେଉଁଠାରେ ମସ୍ତରାମ ବାବା ରହୁଥିଲେ । ସେ ମୋଟାସୋଟା ଥିଲେ, ସବୁବେଳେ ପରମାନନ୍ଦଙ୍କଠାରେ ତଲ୍ଲୀନ ରହୁଥିଲେ ଏବଂ ଆନନ୍ଦର ନିଶାରେ ମଗ୍ନ ଦିଶୁଥିଲେ । ତାଙ୍କର ସବୁ ଭକ୍ତ କାଠଘେରା ଗୋଟିଏ ହତା ଭିତରେ ଏକାଠି ହୋଇ ଭଜନ ଗାଉଥିଲେ । ମସ୍ତରାମ ଖୁବ୍ କମ୍ କଥା କହୁଥିଲେ ।

ସେଠାରୁ ଅଳ୍ପ ଦୂର ଯଦି ଆପଣ ପଥର ଉପରେ ଚଢ଼ି ପାହାଡ଼ ପାରି ହୋଇଯିବେ, ତେବେ ସେଠାରୁ ଏକ ଛୋଟ ବାଲି ଭର୍ତ୍ତି ସମୁଦ୍ରକୂଳ ଦେଖାଯିବ, ତାହା ରାସ୍ତାରୁ ଦିଶେ ନାହିଁ । ଏହି ସ୍ଥାନ ମୋର ବାବାଜୀ ପସନ୍ଦ କରୁଥିବା ସ୍ଥାନ ମଧ୍ୟରୁ ଗୋଟିଏ ଥିଲା । ଯେତେବେଳେ ବି ବାବାଜୀ ଋଷିକେଶ ଆସୁଥିଲେ, ସେହି ଆକର୍ଷକ ସ୍ଥାନରେ ମୁଁ ବାବାଜୀଙ୍କ ସହିତ ବସି ବହୁତ ସନ୍ଧ୍ୟା ବିତାଉଥିଲି, ପରିଚ୍ଛନ୍ନ ଜଳର ପ୍ରବାହକୁ ଦେଖି କିମ୍ବା ଗୁରୁତର ଚର୍ଚ୍ଚାରେ ଲୀନ ହୋଇ ବା ଶାନ୍ତିପୂର୍ବକ ଧ୍ୟାନ କରି ।

ଲଛମନ ଝୁଲାର ପାଖ ଆଖରେ ମଧ୍ୟ କେତେଗୁଡ଼ିଏ ଆଶ୍ରମ ଥିଲା । ସେଗୁଡ଼ିକରେ ଭିନ୍ନଭିନ୍ନ ସାଧୁମାନେ ଭର୍ତ୍ତି ହୋଇ ରହିଥିଲେ । ଲଛମନ ଝୁଲା ନାଁଟି ରାମାୟଣର ନାୟକ ରାମଙ୍କର ସାନଭାଇ ଲକ୍ଷ୍ମଣଙ୍କ ନାଁ ଅନୁସାରେ ରଖାଯାଇଛି । ଏହି ପୋଲ ଗୋଟିଏ ଦୋଳିପରି ଓ ଏହା ଗଙ୍ଗାର ଦୁଇକୂଳକୁ ସଂଯୁକ୍ତ କରୁଛି । ପୋଲ ପାର ହେଲାପରେ ଗଙ୍ଗାର ପଶ୍ଚିମତଟରେ ସଡ଼କ ଅଛି । ଏହି ସଡ଼କ ଋଷିକେଶରୁ ହିମାଳୟର ଉପରିଭାଗରେ ଥିବା

ବଦ୍ରିନାଥ ତୀର୍ଥ ଆଡ଼କୁ ଯାଇଛି ।

ଲଛମନ ଝୁଲାର ପାଖରେ ହିଁ ଟାଟାଓ୍ୱାଲେ ବାବାଙ୍କୁ ଭେଟିଲି, ତାଙ୍କର ଲମ୍ବା ଜଟା ଥିଲା, ସେ ପ୍ରାୟ ନଗ୍ନ ହୋଇ ସେହି ଜଙ୍ଗଲ ପାଖରେ ଥିବା ଗୋଟିଏ ଗୁମ୍ଫାରେ ରହୁଥିଲେ । ତାଙ୍କର ଭକ୍ତମାନଙ୍କ ମଧ୍ୟରୁ କେତେଜଣ ଦାବି କରୁଥିଲେ ଯେ, ସେ ମୃତ୍ୟୁହୀନ ମହା ଅବତାର ବାବାଜୀ ଥିଲେ, କିନ୍ତୁ ମୁଁ ସେହି କଥାରେ ବିଶେଷ ପ୍ରଭାବିତ ହୋଇ ନ ଥିଲି । କିଛିବର୍ଷ ପରେ ଶୁଣିଲି, ସେ ଯେତେବେଳେ ନିଜର ଗୁମ୍ଫାକୁ ଯାଉଥିଲେ, ସେତେବେଳେ କିଏ ଜଣେ ତାଙ୍କୁ ଗୁଳି କରି ହତ୍ୟା କଲା । ସେ ସମୟରେ ଏହା ଏକ ଭୀଷଣ ଘଟଣା ଥିଲା ଓ ଅମୀମାଂସିତ ହତ୍ୟାକାଣ୍ଡ ହୋଇ ତାହା ରହିଗଲା । ସେ ସମୟରେ ବଡ଼ ଆକାରରେ ସେକଥା ଖବରକାଗଜଗୁଡ଼ିକରେ ଛପା ହୋଇଥିଲା ।

ସେ ସମୟରେ ଋଷିକେଶ ଆଧ୍ୟାତ୍ମିକ ସାଧକମାନଙ୍କପାଇଁ ଏକ ଉପଯୁକ୍ତ ସ୍ଥାନ ଥିଲା, କେବଳ ତୀର୍ଥଯାତ୍ରାର ସମୟକୁ ଛାଡ଼ି (ଯେତେବେଳେ ସବୁ ତୀର୍ଥକାମୀ ବହୁସଂଖ୍ୟାରେ ଚାରିଟି ପବିତ୍ର ସ୍ଥାନ– ବଦ୍ରିନାଥ, କେଦାରନାଥ, ଗଙ୍ଗୋତ୍ରୀ ଓ ଯମୁନୋତ୍ରୀକୁ ଯାଉଥିଲେ) । ସେହି ଭିଡ଼ ଦ୍ୱାରା ଏହି ସ୍ଥାନର ପବିତ୍ରତା ନଷ୍ଟ ହୋଇଯାଉଥିଲା । ଭିନ୍ନ ଭିନ୍ନ ସ୍ଥାନରୁ ଆସିଥିବା ଲୋକ କୋଳାହଳ କରି ଏହି ସ୍ଥାନର ଶାନ୍ତିଭଙ୍ଗ କରୁଥିଲେ । ସେଠାରେ ଆପଣ ଯେତେ ଇଚ୍ଛା ସେତେ ଆଶ୍ରମକୁ ଯାଇପାରିବେ, ଭିନ୍ନଭିନ୍ନ ଧରଣର ସାଧୁ ଓ ପରିବ୍ରାଜକ ସନ୍ନ୍ୟାସୀଙ୍କୁ ଭେଟିପାରିବେ ଏବଂ ହିନ୍ଦୁ ସଂସ୍କୃତିର ମନୋରମ ବିଶାଳତାରୁ ଯାହାପାରିବେ ଆତ୍ମସାତ୍ କରିପାରିବେ । ଏହିପରି ଥିଲା ସେ ସମୟର ପରିସ୍ଥିତି ।

ମୋର ପ୍ରବାସ ସମୟରେ ବି ସେହି ସ୍ଥାନ ପରିଚ୍ଛନ୍ନ ଥିଲା । କେହି ସାବୁନ ଲଗାଇ ନଦୀରେ ସ୍ନାନ କରୁନଥିଲେ । ଜଳ ସ୍ୱଚ୍ଛ ଓ ପରିଷ୍କାର ଥିଲା । ସେତେବେଳେ ଆଜିପରି ନଦୀତଟରେ 'ରିସର୍ଟସ୍' ନଥିଲା । ପରିବେଶକୁ ପ୍ରଦୂଷିତ କରୁଥିବା ପ୍ଲାଷ୍ଟିକର କପ୍ ଦେଖିବାକୁ ପାଇବା କଷ୍ଟକର ପାଠ ଥିଲା । କିନ୍ତୁ ଆଜିକାଲି ଲୋକମାନେ ନଦୀକୂଳରେ ସେଗୁଡ଼ିକୁ ଜମାକରି ଫିଙ୍ଗି ଦେଉଛନ୍ତି । ଏହା ସ୍ଥାନର ପବିତ୍ର ବାତାବରଣ ଓ ପରିବେଶ ଦୂଷିତ କରୁଛି । କିଛି ବିଦେଶୀମାନଙ୍କ ସହିତ ଦେଖା ହୋଇଯାଉଥିଲା । ସେମାନଙ୍କ ଭିତରୁ କେତେଜଣ ଗଭୀର ଆଧ୍ୟାତ୍ମିକ ଜ୍ଞାନର ସାଧକ ଥିଲେ (ସ୍ପିରିଚୁଆଲ୍ ସିକର୍ସ୍) କିମ୍ବା ଟ୍ରେକର୍ସ୍, ହିମାଳୟର ଉଚ୍ଚତାଦ୍ୱାରା ମୋହିତ ପର୍ବତାରୋହୀ । ତେବେ ବି ମୁଁ ସନ୍ତୁଷ୍ଟ

ନଥିଲି । ଯେତେ ସୁନ୍ଦର ହେଲେ ବି ଏହା ପର୍ବତର ପାଦଦେଶ ଥିଲା । ମୋର ଅନ୍ତରାତ୍ମା ବରଫାବୃତ ଶୃଙ୍ଗଗୁଡ଼ିକପାଇଁ ଲାଳାୟିତ ଥିଲା ।

ମୁଁ ବହୁତ ସାଧୁ ସନ୍ନ୍ୟାସୀଙ୍କୁ ଭେଟିଲି, କିନ୍ତୁ କିଏ ଜଣେ ହେଲେ ମୋତେ ହିମାଳୟବାସୀ ଯୋଗୀଙ୍କ ପରି ଲାଗିଲେ ନାହିଁ । ସେମାନଙ୍କ ମଧ୍ୟରୁ କେତେଜଣ ପ୍ରକୃତରେ ଭାରି ବିଦ୍ୱାନ ଥିଲେ, କିଛି ବଡ଼ ବଡ଼ ମଠର ଅଧ୍ୟକ୍ଷ ଥିଲେ ତ କିଛି ଯୋଗବିଦ୍ୟାର ବିଶେଷଜ୍ଞ ଥିଲେ । ଆଉ କିଛି ଘୂରି ବୁଲୁଥିବା ଭାଙ୍ଗୁଆ ବୈରାଗୀ ଥିଲେ, ଯାହାଙ୍କ ଭିତରୁ ଅନେକେ କେବଳ ପବିତ୍ର ଭିକ୍ଷୁକ ହିଁ ଥିଲେ । ସାଧାରଣତଃ ଏମାନେ ହିନ୍ଦୁଧର୍ମ ଏବଂ ଦର୍ଶନର ବାସ୍ତବିକ ଗଭୀରତା ବିଷୟରେ ଅଜ୍ଞ ଥିଲେ । ଏହିମାନଙ୍କୁ ଦେଖି ମୁଁ ବିରକ୍ତ ହୋଇଯାଇଥିଲି ଓ ମୋତେ ଦୁଃଖ ଲାଗିଥିଲା ।

ତା'ପରେ ମୁଁ କିଛି ସମୟ ସେଠାରେ ଧ୍ୟାନକ୍ରିୟାରେ ଏବଂ ଘଣ୍ଟା ଘଣ୍ଟା ଧରି ଗଙ୍ଗାର ପ୍ରବାହ ଦେଖିବାରେ, ଯୋଗାଭ୍ୟାସ କରିବାରେ ଓ ଅଧିକରୁ ଅଧିକ ସମୟ ପଢ଼ିବାରେ ବିତାଇଲି । କୌଣସି ଜିନିଷର ସନ୍ଧାନରେ ଲାଗିରହିଲି, ଯାହାକୁ ମୁଁ ସେତେବେଳେ ବି ଠିକ୍ ଭାବରେ ପରିଭାଷିତ କରିପାରୁ ନ ଥିଲି ।

ପୂର୍ଣ୍ଣିମାର ରାତିଗୁଡ଼ିକ ନଦୀକୂଳରେ ବିଶେଷ ଭାବରେ ମନୋମୁଗ୍ଧକର ଓ ସୁନ୍ଦର ହୁଏ । ଦିନେ ରାତିରେ ମୁଁ ପ୍ରବାହର ଧ୍ୱନିରେ ମନ୍ତ୍ରମୁଗ୍ଧବତ୍ ବସିଥିଲି । ସେତିକିବେଳେ ମୋର ପୂର୍ବରୁ ପରିଚିତ ଓ ବନ୍ଧୁଭାବାପନ୍ନ ଦକ୍ଷିଣ ଭାରତୀୟ ଜଣେ ସନ୍ନ୍ୟାସୀ ଆସି ମୋ' ପାଖରେ ବସିଗଲେ । ଦୃଶ୍ୟଟି ପ୍ରକୃତରେ ଭାରି ସୁନ୍ଦର ଥିଲା ବୋଲି ସେ ମୋ ସହିତ ସହମତ ହେଲେ । ତା'ପରେ କହିଲେ, ''ତୁମେ କ'ଣ ଜାଣିଛ କି, ମୁଁ ତୁମ ସହିତ ଦୀର୍ଘ ସମୟ ଧରି କଥାବାର୍ତ୍ତା କରିବାକୁ ଚାହୁଁଛି ? ମୁଁ କ'ଣ ଏବେ ତୁମ ସହିତ ବାର୍ତ୍ତାଳାପ କରିପାରିବି ?'' ''ହଁ'', ମୁଁ କହିଲି ଅନିଚ୍ଛା ସତ୍ତ୍ୱେ, ଦୁଃଖର କଥା ଯେ, ରାତିର କୁହୁକ ନଶ୍ୱର ଭାଷଣ ହେତୁ ନଷ୍ଟ ହୋଇଯାଉଥିଲା ।

''ଦେଖ, ମୁଁ ଏଠି ବହୁବର୍ଷ ହେଲା ଅଛି । ପ୍ରଥମେ ପ୍ରଥମେ ସତ୍‌ସଙ୍ଗ, ଭାବଭରା ଗାୟନ, ଗେରୁଆ ଲୁଗା ପିନ୍ଧା ସନ୍ନ୍ୟାସୀ, ନଦୀ, ପାହାଡ଼ ଏବଂ ଏଠାରେ ଅନ୍ୟ କେତେକ କଥା ମୋତେ ଭାରି ରୋମାଞ୍ଚିତ କରୁଥିଲା । ଗୋଟାଏ ଭଲ ଚାକିରି, ସ୍ତ୍ରୀ ଓ ପିଲାମାନଙ୍କୁ ଛାଡ଼ି ଚାଲିଆସିଥିଲି । ତ୍ୟାଗର ସୁଉଚ୍ଚ ଛବିଦ୍ୱାରା ମୋହିତ ହୋଇଯାଇଥିଲି ଯାହାର ଚିତ୍ରଣ

ମୋର ସ୍ୱାମୀଜୀ କରିଥିଲେ । ସେ ଆଉ ଏ' ଦୁନିଆରେ ନାହାନ୍ତି ।

କିନ୍ତୁ ଧୀରେ ଧୀରେ ଧୀରେ ଓ ନିଶ୍ଚିତ ରୂପରେ ମୋ ଆଖିରୁ ସେ ପର୍ଦ୍ଦା ଉଠିଗଲା । କାରଣ ମୁଁ ଆଶ୍ରମଗୁଡ଼ିକରେ ପାପିଷ୍ଠମାନଙ୍କର କ୍ଷମତାପାଇଁ କନ୍ଦଳ ଏବଂ ଆଶ୍ରମବାସୀମାନଙ୍କ ମଧ୍ୟରେ ଗୋଟାଏ ଅଜବ ଶ୍ୱାସରୋଧକାରୀ ମନୋଭାବ ଦେଖିଲି । କିନ୍ତୁ ବର୍ତ୍ତମାନ ବହୁତ ଡେରି ହେଇଗଲାଣି । ମୋର ପିଲାମାନେ ମୋତେ ଘୃଣା କରନ୍ତି ଆଉ ମୋର ସ୍ତ୍ରୀ ଆରାମରେ ଅନ୍ୟଜଣଙ୍କୁ ବିବାହ କରିସାରିଛି । ମୁଁ ଯୋଗାଭ୍ୟାସରେ କିଛି ହେଲେ ଦେଖିପାରୁ ନାହିଁ । ମୁଁ ଏବେ ବି ସେହି କାମନାଗୁଡ଼ିକଦ୍ୱାରା ପରିବୃତ ନିରାଶ ବ୍ୟକ୍ତି ହୋଇ ରହିଛି, ଯେମିତି ମୁଁ ପୂର୍ବରୁ ଥିଲି । ମୁଁ ସାମାଜିକ ଭାବରେ ଅନୁପଯୁକ୍ତ (ମିସ୍‌ଫିଟ୍) ହୋଇଯାଇଛି । ଏବେ କେବଳ ଏହି ଆଶାରେ ବଞ୍ଚିଛି ଯେ ଦିନେ ମରିଯିବି । କେବଳ ଏତିକି ଯେ, ମୋ ପାଖରେ ଅତି କମ୍‌ରେ ଭୋଜନ ଓ ଆଶ୍ରୟ ତ ଅଛି !''

ମୁଁ ପଚାରିଲି, ''ତୁମେ ମୋତେ ଏସବୁ କାହିଁକି କହୁଛ ?'' ମୁଁ ତ ଭାବିଥିଲି ସେହି ପୁରୁଣା ସନ୍ୟାସୀ କୌଣସି ଜଣେ ମହାନ ସ୍ୱାମୀଙ୍କର ବରିଷ୍ଠ ଓ ଉଚ୍ଚଦରର ଶିଷ୍ୟ ଥିଲେ । ମୁଁ ତାଙ୍କ କଥା ଶୁଣି ଅବାକ୍ ହୋଇଯାଇଥିଲି । ସେ କହିଲେ, ''ମୁଁ ଭାବିଲି, ତୁମେ ଯୁବକ, ସୁନ୍ଦର ଓ ଶିକ୍ଷିତ ଆଉ ମୋର ତୁମକୁ ଚେତାବନୀ ଦେବା ଉଚିତ, ବହୁତ ଡେରି ହୋଇଯିବା ପୂର୍ବରୁ । ତୁମକୁ ଏଠାରେ ହିମାଳୟର କିଛି ଦୁଃସାହସିକ ଯାତ୍ରା ବ୍ୟତୀତ ଆଉ କିଛି ମିଳିବ ନାହିଁ । ତେଣୁ ଏଠାରେ କିଛି ସମୟ ଆହୁରି ଭ୍ରମଣ କର ଏବଂ ତା'ପରେ ଫେରିଯାଇ ଏକ ବହି ଲେଖିପକାଅ । ଆହୁରି ଗୋଟାଏ ବିକଳ୍ପ ମଧ୍ୟ ଅଛି–

ଯଦି ତୁମେ ସାଧାରଣ ଜୀବନ ବଞ୍ଚିବାକୁ ଚାହୁଁ ନାହଁ ଏବଂ ନଅଟାରୁ ପାଞ୍ଚଟା କାମ କରିବାକୁ ଅନିଚ୍ଛୁକ, ତେବେ ତୁମେ ନିଜକୁ ଏକ ଗୁରୁ ଭାବରେ ସ୍ଥାପିତ କରିପାରିବ ଆଉ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିପାରିବ । ତୁମ ପାଖରେ ବିଦେଶୀମାନଙ୍କୁ ଆକର୍ଷଣ କରିପାରିବାଭଳି ସବୁ ଗୁଣ ରହିଛି, ବହୁତ ରୋଜଗାର ଅଛି ସେଥିରେ । ଖାଲି ତାଙ୍କୁ ଗୋଟାଏ ସାଧାରଣ ବା ସହଜ ଧ୍ୟାନର ମନ୍ତ୍ର କିମ୍ବା ସୂତ୍ର ଦେଇଦେବ, ସେମାନେ ତୁମର ଅଧୀନ ହୋଇଯିବେ । ତୁମେ ସେହି ବାତାନୁକୂଳିତ ଗୁମ୍ଫାଗୁଡ଼ିକ ଦେଖିଛ ?''

ମୁଁ କ୍ରୋଧରେ ଭରିଗଲି । ଏବେ ମୋତେ ସେହି ବୁଢ଼ା ଲୋକକୁ ଡର ଲାଗିଲା । ଏହି ବ୍ୟକ୍ତି ଶଇତାନର ଗୋଟାଏ ଅବତାର ହୋଇ ମୋତେ ଲୋଭ ଦେଖାଇବାକୁ ଚାହୁଁଛି ଓ ମୋତେ ବାଟବଣା କରିବାପାଇଁ ଆସିଛି । ମୁଁ ରାଗିଯାଇ ତାଙ୍କୁ କହିଲି, ''ଦୟାକରି

ଆପଣ ଚୁପ୍ ରହନ୍ତୁ, ମୁଁ ଆପଣଙ୍କଠାରୁ ଆଉ ଗୋଟାଏ ଶବ୍ଦ ମଧ୍ୟ ଶୁଣିବାକୁ ଚାହେଁ ନାହିଁ ।''

''ଆହା, ଯୋଗୀରାଜ, ନିଜର କ୍ରୋଧ ଉପରେ ନିୟନ୍ତ୍ରଣ କରିପାରିଲ ନାହିଁ ! ବେଶ୍ ଭଲ, ମର ଯାଇ । ମୁଁ ତ ଖାଲି ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲି ।'' ଏତିକି କହି, ସେ ସେଠାରୁ ଉଠି ଚାଲିଗଲେ ଆଉ ମୋତେ ମୋ ନିଜ ହାତରେ ଛାଡ଼ିଦେଲେ । ଏହାପରେ ମୋତେ ତାଙ୍କପାଇଁ ଆଉ ଅସୁବିଧାରେ ପଡ଼ିବାକୁ ପଡ଼ିଲା ନାହିଁ । କିନ୍ତୁ ସେ ଯାହା ବି କହିଥିଲେ, ସେଥିପାଇଁ ମୋର ବହୁତ ଅସୁବିଧା ହୋଇଥିଲା । ଏହି ଘଟଣା ପରେ ମୁଁ କୌଣସି ସାଧୁଙ୍କୁ ମଧ୍ୟ ଉପରକୁ ଦିଶୁଥିବା ମାହାତ୍ମ୍ୟ ଅନୁସାରେ ସ୍ୱୀକାର କରିପାରିଲି ନାହିଁ । ସନ୍ଦେହ ମୋର ବର୍ତ୍ତମାନ ପର୍ଯ୍ୟନ୍ତ ସରଳ ଓ କୋମଳ ଥିବା ମନକୁ ଅଧିକାର କରିବା ଆରମ୍ଭ କରିଦେଲା । କିନ୍ତୁ ମୋତେ ଲାଗିଲା, ମୋତେ ଯିବାକୁ ପଡ଼ିବ, ତୀର୍ଥ–ପଥରେ ଚାଲିବାକୁ ପଡ଼ିବ । ହୁଏତ ମୋର ଏକ ସଚ୍ଚା ଋଷିଙ୍କ ସହିତ ସାକ୍ଷାତ ହେବ, ଯେ କୌଣସି ସଂସ୍ଥା ଏବଂ ତାଙ୍କର ପଦାନୁକ୍ରମ ସହିତ ସଂପୃକ୍ତ ନ ଥିବେ ।

ମୁଁ ସ୍ୱାମୀ ଚିଦାନନ୍ଦଜୀଙ୍କ ସହିତ ଆଉ ଥରେ ସାକ୍ଷାତ କରିବାକୁ ଅନୁରୋଧ କଲି । ମୋତେ ସହଜରେ ଅନୁମତି ମିଳିଗଲା । ମୁଁ ସେହି ପ୍ରାଚୀନ ସାଧୁଙ୍କ ସହିତ କଥାବାର୍ତ୍ତାର କୌଣସି ଉଲ୍ଲେଖ କଲି ନାହିଁ କିନ୍ତୁ କହିଲି ଯେ, ମୁଁ ଅସୁଖୀ ଥିଲି ଓ ବଦ୍ରିନାଥ ତଥା ହିମାଳୟରେ ଥିବା ଅନ୍ୟସ୍ଥାନଗୁଡ଼ିକୁ ଯାତ୍ରା କରିବାକୁ ଚାହୁଁଥିଲି, ତା' ପରଦିନ ହିଁ ଯାତ୍ରାରମ୍ଭ କରିବାକୁ ଚାହୁଁଥିଲି । ମୋତେ ତାଙ୍କର ଆଶୀର୍ବାଦର ଆବଶ୍ୟକତା ଥିଲା । ଚିଦାନନ୍ଦଜୀ ମୋର ମସ୍ତକ ସ୍ପର୍ଶ କଲେ ଓ ମୋତେ ଆଶୀର୍ବାଦ କଲେ । ସେ କହିଲେ ଯେ, ତାଙ୍କୁ ପ୍ରଥମରୁ ଜଣାପଡ଼ିଥିଲା ଯେ ମୁଁ ଆଶ୍ରମ ଛାଡ଼ିଦେବି । ବୋଧହୁଏ ମହତ୍ତର ଅନୁଭବ ମୋର ପ୍ରତୀକ୍ଷା କରୁଛି । କହିଲେ, ''ଖୁବ୍ କମ୍‌ରେ ଦି'ଟା କମ୍ବଳ ନେଇଯାଅ । ଟଙ୍କା ପଇସା ଦରକାର ?'' ମୁଁ ପଇସାପତ୍ର ନେବାକୁ ମନା କଲି, କାରଣ ମୋ ପାଖରେ ସେତେବେଳେ ମଧ୍ୟ କିଛି ଟଙ୍କାପଇସା ବଳିଥାଏ । ମୁଁ ତାଙ୍କୁ ସମ୍ମାନ ଜଣାଇ ନତ ହେଲି, ସ୍ୱାଧୀନ ଓ ପ୍ରସନ୍ନଚିତ୍ତ ହୋଇ ବାହାରିଆସିଲି ।



# (16.) ବଶିଷ୍ଠ ଗୁମ୍ଫା

ପରଦିନ ସକାଳ ସାଢ଼େ ପାଞ୍ଚଟାବେଳେ ମୁଁ ବାହାରି ପଡ଼ିଲି । ପୂର୍ବଦିନ ରାତିରେ ମୁଁ ଠିକ୍ କରି ନେଇଥିଲି ଯେ, କୌଣସି ପ୍ରକାରର ଯାନବାହନର ଉପଯୋଗ କରିବି ନାହିଁ । ବଦ୍ରିନାଥ ପର୍ଯ୍ୟନ୍ତ ଚାଲି ଚାଲି ଯିବି ଯେମିତି କିଛି ପରିବ୍ରାଜକ ସାଧୁମାନେ କରନ୍ତି । ମୁଁ ସେପରି ଗୋଟିଏ ସାଧୁମାନଙ୍କ ଦଳରେ ମିଶିଯାଇଥିଲି ।

ବଦ୍ରିନାଥର ରାସ୍ତା ଦେବପ୍ରୟାଗ ପର୍ଯ୍ୟନ୍ତ ସୁନ୍ଦର ଭାବରେ ଗଙ୍ଗାନଦୀ କୂଳରେ ବୁଲି ବାଙ୍କି ଆଗକୁ ଯାଇଥାଏ । ନଦୀର ଅପର କୂଳରେ ପଥର ଭର୍ତ୍ତି ପାହାଡ଼ ଏବଂ ଜଙ୍ଗଲ ଥିଲା । ସେ ସମୟରେ ଗଛମାନଙ୍କ ମଝିରେ ମୟୂରଗୁଡ଼ିକର ନାଚୁଥିବା ଦୃଶ୍ୟ ଦେଖିବାକୁ ମିଳୁଥିଲା ଏବଂ ସେମାନଙ୍କର ଉଚ୍ଚ ଗ୍ରାମର ଡାକ ଶୁଣାଯାଉଥିଲା । ଏହା ହେଉଛି ନଦୀପଥକୁ ଭାଙ୍ଗିଚୂରି ବିଦ୍ୟୁତ୍ ଶକ୍ତିପାଇଁ ବନ୍ଧ ତିଆରିକରି ଉତ୍ତରାଖଣ୍ଡର ନାଗରିକମାନଙ୍କୁ ଉଚ୍ଚସ୍ତରକୁ ନେବାର ପୂର୍ବ ସମୟର କଥା । ମୟୂର ତ ଆଜିକାଲି ପ୍ରାୟ ଅଦୃଶ୍ୟ ହୋଇଗଲେଣି ।

ଚିନ୍ତାମୁକ୍ତ ହୋଇ ସ୍ୱାଧୀନ ଭାବରେ ଏକୁଟିଆ ଚାଲି ମୁଁ ଆନନ୍ଦିତ ଥିଲି । ମୋ ପାଖରେ କେବଳ ଗୋଟିଏ କମ୍ବଳ ଓ ଗୋଟାଏ ତଉଲିଆ ଥିଲା, ଯାହାକୁ ମୁଁ ପିଠିରେ ବାନ୍ଧି ଦେଇଥିଲି, ଆଉ ଥିଲା ଗୋଟାଏ କମଣ୍ଡଳୁ । କାନ୍ଧରେ କପଡ଼ାର ମୁଣି ଥିଲା, ଯେଉଁଥିରେ ଗୋଟାଏ ଦିଆସିଲି, ଗୋଟାଏ ଲେଖିବାପାଇଁ ଖାତା, ଗୋଟାଏ ଛୋଟ ଛୁରୀ ଆଉ ଦି'ଟା ପେନ୍‌ସିଲ୍ ଥିଲା । ମୁଁ ବ୍ରାହ୍ମଣମାନଙ୍କ ପରି କୁଞ୍ଚକରି ହଳଦିଆ ଧୋତି ପିନ୍ଧିଥିଲି । ଲଣ୍ଡିତ ଶିକ୍ଷାଯୁକ୍ତ ମସ୍ତକ ଓ ବଙ୍କୁଲିବାଡ଼ି ସହିତ ମୁଁ ସମସ୍ତଙ୍କ ଦୃଷ୍ଟିରେ ଉଚ୍ଚ ଦରର ଜିଜ୍ଞାସୁ (ସତ୍ୟ-ସନ୍ଧାନୀ) ପରି ଦିଶୁଥିଲି ।

ମୁଁ ରାତି ପୂର୍ବରୁ ବଶିଷ୍ଠ-ଗୁମ୍ଫାରେ ପହଞ୍ଚିଯିବାକୁ ଚାହୁଁଥିଲି । ବଶିଷ୍ଠ ଗୁମ୍ଫା ବାଇଶ କିଲୋମିଟର ଦୂର ଥିଲା । ମୁଁ ପ୍ରତିଦିନ ସେତିକି ବାଟ ଚାଲିବାକୁ ଚାହୁଁଥିଲି । ବଦ୍ରିନାଥ

ରଷିକେଶଠାରୁ ଦୁଇଶହ ଚାଳିଶ କିଲୋମିଟର ଦୂରରେ ଥିଲା ।

ଯେମିତି ଯେମିତି ବେଳ ଗଡ଼ି ଚାଲିଲା ଓ ଖରା ପ୍ରଖର ହେବା ଆରମ୍ଭ ହେଲା, ମୋର ଉତ୍ସାହ କମି କମି ଆସିଲା । ପ୍ରଥମେ ମୋର ପାଦରେ ସମସ୍ୟା ଦେଖାଦେଲା । ରବର ଚପଲ ପିନ୍ଧିଥିଲି । ସେଥିରୁ ପଟକର ରବର ଷ୍ଟ୍ରାପ୍ ଛିଣ୍ଡିଗଲା ଓ ମୋତେ ଚପଲ ଛାଡ଼ିବାକୁ ପଡ଼ିଲା । ଦି'ପହର ବେଳକୁ ରାସ୍ତା ତାତିବାରେ ଲାଗିଲା ଓ ମୋର ପାଦ ପୋଡ଼ିଯିବା ଆରମ୍ଭ କଲା । ମୋର ଖାଲି ପାଦରେ ଚାଲିବାର ଅଭ୍ୟାସ ହିଁ ନ ଥିଲା । ତେଣୁ ରୁକ୍ଷ, ଅସମତଳ ଭୂଇଁରେ ଚାଲିବାକୁ ମୋତେ ବେଶ୍ କଷ୍ଟ ହେଲା । ସୂର୍ଯ୍ୟ ନିର୍ଦ୍ଦୟଙ୍କ ପରି ପ୍ରଚଣ୍ଡ ତେଜ ବିକିରଣ କରୁଥାଆନ୍ତି । ମୁଁ ମୁଣ୍ଡରେ ତଉଲିଆ ଗୁଡ଼େଇ ଚାଲିଥାଏ । ମୁଁ ସେହି ସାଧୁମାନଙ୍କଠାରୁ ଦୂରରେ ରହିଲି– ଯେଉଁମାନେ ଖୁସିରେ ଖାଲି ପାଦରେ ଚାଲୁଥାଆନ୍ତି, ସେମାନେ ମଝିରେ ମଝିରେ ଗଛ ଛାଇରେ ବସିଯାଥାଆନ୍ତି ଓ ଚିଲମ ଟାଣୁଥା'ନ୍ତି । ମୋର ସନ୍ଦେହ ଯେ, ସେଗୁଡ଼ିକ ଚରସ କିମ୍ବା ଚରସ ପରି କିଛି ମାଦକ ଦ୍ରବ୍ୟ ଥିଲା, ଯାହାକୁ ସେମାନେ ଚିଲମରେ ପୂରାଇ ଟାଣୁଥିଲେ । ସେମାନେ ମୋତେ ମଧ୍ୟ ସାମିଲ ହେବାକୁ ଡାକୁଥିଲେ, କିନ୍ତୁ ମୁଁ ମନା କରିଦେଉଥିଲି । ମୁଁ ହିମାଳୟକୁ ମାଦକଦ୍ରବ୍ୟର ଶିକାର ହେବାକୁ ଆସି ନ ଥିଲି ।

ଭୋକ ମୋତେ କାବୁ କରିଦେଲା । ସେତେବେଳେ ବି ମୋ ପାଖରେ କିଛି ପଇସା ଥିଲା । ସଡ଼କ ଧାରରେ ଗୋଟାଏ ଢାବା ଦେଖି ଅବିଳମ୍ବେ ମୁଁ ଦୈହିକ ଆବଶ୍ୟକତାକୁ ତୃପ୍ତ କଲି । ଢାବାର ଗଡ଼ୱାଲୀ ମାଲିକର ସାଧୁମାନଙ୍କ ପ୍ରତି କୌଣସି ଶ୍ରଦ୍ଧା ନ ଥିଲା ଏବଂ ସେ ମୋର ଦି'ଟା ରୁଟି ଓ ତରକାରି ପାଇଁ ଅଧିକା ପଇସା ନେଲା । ସେତେବେଳେ ମୋ ପାଖରେ ତିରିଶଟଙ୍କା ବଳିଥାଏ ।

କିନ୍ତୁ ସେହି ସ୍ଥାନ ଛାୟା–ଶୀତଳ ଥିଲା । ସେଥିପାଇଁ ମୁଁ କାଠର ଖଟିଆରେ କିଛି ସମୟ ଶୋଇବାକୁ ଠିକ୍ କଲି । ସେହି ଖଟିଆଗୁଡ଼ାକ ଟ୍ରକ ଡ୍ରାଇଭର୍‌ମାନଙ୍କୁ ଘଣ୍ଟା ପ୍ରତି ପାଞ୍ଚଟଙ୍କା ହିସାବରେ ଭଡ଼ା ଦିଆଯାଉଥିଲା । ମୁଁ ଗାଢ଼ ନିଦରେ ଶୋଇଗଲି ।

ମୁଁ ଉଠିବା ବେଳକୁ ଖରା ମଉଳି ଯାଇଥିଲା ଓ ଛାଇଗୁଡ଼ାକ ଦୀର୍ଘ ହେବା ଆରମ୍ଭ କରିଥିଲା । ମୁଁ ନଳର ଥଣ୍ଡା ଓ ଶାନ୍ତି ପ୍ରଦାୟକ ପାଣିରେ ଗୋଡ଼ ଧୋଇଲି ଏବଂ ପୁଣି ଚାଲିଲି । ଯେତେବେଳେ ସୂର୍ଯ୍ୟ ଅସ୍ତଯିବାର ବନ୍ଦୋବସ୍ତ କଲେ, ମୋର ମନ ଚିନ୍ତାଗ୍ରସ୍ତ ହୋଇଗଲା । ବଶିଷ୍ଠ ଗୁମ୍ଫା କେଉଁଠି ଦିଶୁ ନ ଥାଏ ଏବଂ ପ୍ରତିଟି ପଦକ୍ଷେପ ଅଧିକରୁ

ଅଧିକ କଷ୍ଟଦାୟକ ହୋଇ ଚାଲିଥାଏ । ପାଦତଳ ଫାଟି ଯାଇଥାଏ, କଟିଯାଇଥାଏ, ମୋର ଗୋଡ଼ର ପେଣ୍ଡାରେ ଓ ଜଙ୍ଘରେ ଭୀଷଣ କଷ୍ଟ ହେଉଥାଏ ।

ମୋତେ ଯେତେବେଳେ ଲାଗିଲା ଯେ, ମୁଁ ଆଉ ଆଗକୁ ଯାଇପାରିବି ନାହିଁ ଆଉ ସାହାଯ୍ୟପାଇଁ ପ୍ରାର୍ଥନା କରିବା ଆରମ୍ଭ କଲି, ସେତିକିବେଳେ ଋଷିକେଶରୁ ଆସୁଥିବା ଗୋଟାଏ ଜିପ୍ ମୋ ପାଖରେ ଅଟକିଲା । "କେଉଁଠିକୁ ଯିବେ ମହାରାଜ ?" ଡ୍ରାଇଭର ହିନ୍ଦୀରେ ପଚାରିଲା, "ବଦ୍ରିନାରାୟଣ", ମୁଁ କହିଲି, "କିନ୍ତୁ ବର୍ତ୍ତମାନ ତ ବଶିଷ୍ଠ ଗୁମ୍ଫାରେ ପହଞ୍ଚିବାକୁ ଅଛି ।" "ଦୁଇ କିଲୋମିଟର" ସେ କହିଲା "ଚଢ଼ନ୍ତୁ, ପାଞ୍ଚମିନିଟ୍‌ରେ ମୁଁ ସେଠାରେ ପହଞ୍ଚାଇ ଦେବି, ସେଠାରେ ବିଜୁଳି ନାହିଁ ଆଉ ବର୍ତ୍ତମାନ ଅନ୍ଧାର ହୋଇ ଆସିଲାଣି । କୌଣସି ସାଇନ୍‌ବୋର୍ଡ ମଧ୍ୟ ସେଠାରେ ନାହିଁ ।"

ଗୋଟାଏ ସେକେଣ୍ଡ ପାଇଁ ମୁଁ ଭାବିଲି । ଚାଲିବା କଷ୍ଟ ହୋଇ ପଡ଼ିଥାଏ । ଏଇଟା ସତ ଯେ, ମୁଁ ପ୍ରତିଜ୍ଞା କରିଥିଲି ଯିବା ସମୟରେ କୌଣସି ଯାନବାହନ ବ୍ୟବହାର କରିବି ନାହିଁ, କିନ୍ତୁ ପରିସ୍ଥିତି ଅଲଗା ପ୍ରକାରର ହୋଇଗଲା । ରାମକୃଷ୍ଣ ପରମହଂସଙ୍କ ବାଣୀ ମୋ' ମନରେ ଖେଳିଗଲା । ଧାର୍ମିକ ହେବା ଅର୍ଥ ନିର୍ବୋଧ ହେବା ନୁହେଁ, "ଠିକ୍ ଅଛି", ମୁଁ କହିଲି ଓ ଜିପ୍‌ରେ ଚଢ଼ି ବସିଲି ।

ସେଇଟା ଗୋଟାଏ ପୁରୁଣା ୱିଲିସ୍ ଜିପ୍ ଥିଲା ଏବଂ ଖଡ଼ଖଡ଼ ହୋଇ ବେଶ ଜୋରରେ ଚାଲୁଥିଲା । ଯୁବକ ଡ୍ରାଇଭର ପାହାଡ଼ି ରାସ୍ତାରେ ଗାଡ଼ି ଚଳେଇବାରେ ଦକ୍ଷ ଜଣାପଡୁଥିଲା । ଶୀଘ୍ର ହିଁ ଜିପ୍ ସଡ଼କର ଧାରରେ ଗୋଟାଏ ଜାଗାରେ ଠିଆ ହୋଇଗଲା । "ଓହ୍ଲାନ୍ତୁ ମହାରାଜ", ଡ୍ରାଇଭର କହିଲା । "ମୁଁ ଆପଣଙ୍କୁ ଆଶ୍ରମ ପର୍ଯ୍ୟନ୍ତ ପହଞ୍ଚାଇ ଦେଉଛି । ସେଠାରେ କେରଳର ଜଣେ ଯୁବକ ବ୍ରହ୍ମଚାରୀ ମହାରାଜ ଅଛନ୍ତି । ପ୍ରଧାନ ସ୍ୱାମୀଙ୍କର କେତେ ବର୍ଷ ପୂର୍ବରୁ ଦେହାନ୍ତ ହୋଇଯାଇଛି । ଚାଲନ୍ତୁ ।"

ମୁଁ ଜିପ୍‌ରୁ ଓହ୍ଲାଇଲି ଏବଂ ଯୁବକର ନିର୍ଦ୍ଦେଶ ଅନୁସାରେ କଷ୍ଟର ସହିତ ଆଶ୍ରମକୁ ଯାଉଥିବା କଷ୍ଟକର ଉଠାଣି ରାସ୍ତାରେ ଚାଲିଲି । ସେଠାରେ ବିଜୁଳି ନଥିଲା । ଲଣ୍ଠନର ଧିମା ଆଲୁଅରେ ମୁଁ କିଛି ବି ପରିଷ୍କାର ଭାବରେ ଦେଖିପାରିଲି ନାହିଁ । ବ୍ରହ୍ମଚାରୀଙ୍କ ପରି ଶିଖା ରଖିଥିବା ଶ୍ୱେତବସ୍ତ୍ରଧାରୀ ଜଣେ ଯୁବକ କୋଠରିରୁ ବାହାରକୁ ଆସିଲେ ଏବଂ କହିଲେ, "ହରି ଓମ୍, ମୁଁ ବ୍ରହ୍ମଚାରୀ ଆତ୍ମଚୈତନ୍ୟ । ଆପଣ ?"

''ମହାରାଜ'', ମୋ ସାଥୀ (ଡ୍ରାଇଭର ରାଜେଶ) କହିଲା, ''ମୁଁ ଏହି ନବଯୁବକ ସାଧୁଙ୍କୁ ସଡ଼କ ଉପରେ ଛୋଟାଉଥିବାର ଦେଖିଲି, ସେ ବଦ୍ରିନାଥ ଯାଉଥିଲେ । ମୁଁ ତାଙ୍କୁ ଲିଫ୍ଟ ଦେଲି । ସେ କହିଲେ ଯେ, ସେ ବଶିଷ୍ଠ ଗୁମ୍ଫାରେ ପହଞ୍ଚିବାକୁ ଚାହାଁନ୍ତି ।''

''ହରି ଓମ୍ ମହାରାଜ'', ମୁଁ କହିଲି । ତାଙ୍କର ଉଚ୍ଚାରଣରୁ ବୁଝିଗଲି ଯେ ମୋର ସାଥୀ ଯେଉଁ କେରଳର ବ୍ରହ୍ମଚାରୀଙ୍କ ବିଷୟରେ କହୁଥିଲା, ୟେ ହେଉଛନ୍ତି ସେହି ବ୍ୟକ୍ତି । ମୁଁ ମାଲାୟାଲମରେ କହିଲି, ''ବଦ୍ରିନାଥ ଯାଉଛି । ବଶିଷ୍ଠ ଗୁମ୍ଫା ବିଷୟରେ ଶୁଣିଥିଲି । ଭାବିଲି ଦେଖିକରି ଯିବି, କିନ୍ତୁ ଅନ୍ଧାର ହୋଇଗଲା ଓ ମୋର ପାଦ ଯଥେଷ୍ଟ କ୍ଷତବିକ୍ଷତ ହୋଇଗଲା । ମୁଁ...... ''

ବ୍ରହ୍ମଚାରୀ ଦୟାଳୁ ଥିଲେ । ''ଠିକ୍ ଅଛି'' ସେ ମାଲୟାଲମରେ କହିଲେ, ''ବ୍ୟସ୍ତ ହେବାର କିଛି କାରଣ ନାହିଁ । ତୁମେ ରାତିରେ ଏଇଠି ରହ । ତୁମେ କେଉଁଠାର ଲୋକ ?''

''ମୋତେ ଆଜ୍ଞା ଦିଅନ୍ତୁ ମହାରାଜ'', ଯୁବକ ଗଡ଼ୱାଲୀ ଜଣକ କହିଲା । ''ମୁଁ ବ୍ୟାସୀରେ ରୁହେ, ଅଳ୍ପ ଦୂରରେ । ସେଠାରେ ମୋର ଗୋଟିଏ ଛୋଟ ଦୋକାନ ଓ ଢାବା ଅଛି । ଯେତେବେଳେ ଇଚ୍ଛା ସେଠାକୁ ଆସନ୍ତୁ'' । ତା'ପରେ ସେ ପ୍ରଥମେ ବ୍ରହ୍ମଚାରୀଙ୍କ ପାଦ ସ୍ପର୍ଶକଲା, ପରେପରେ ମୋ'ର ଏବଂ ଚାଲିଗଲା । ରାତିର ସ୍ତବ୍ଧତା ଭେଦ କରି ଆମେ ତା'ର ଜିପ୍ ଷ୍ଟାର୍ଟ୍ କରି ଯିବାର ଶବ୍ଦ ଶୁଣିପାରିଲୁ ।

''ତୁମେ ଥକିଯାଇଥିବ'', ବ୍ରହ୍ମଚାରୀ କହିଲେ । ମୁଁ ତୁମକୁ ତୁମର ଛୋଟ କୋଠରି ଦେଖାଇ ଦେଉଛି । ବାଥରୁମ୍ ବାହାରେ ଅଛି । ଗାଧୋଇ ସାରି କିଛି ସମୟ ଆରାମ କର । ଅଧଘଣ୍ଟାଏ ପରେ ସେହିଠାରେ ବାରଣ୍ଡାରେ ଖାଇବା ଦିଆଯିବ । ସକାଳେ ମୁଁ ତୁମକୁ ବଶିଷ୍ଠ ଗୁମ୍ଫା ଦେଖାଇବି । ସେ ମୋତେ ଗୋଟିଏ ଛୋଟ କୋଠରିକୁ ନେଇଗଲେ, ଯେଉଁଠାରେ ଗୋଟାଏ ଖଟ ଓ କିଛି କମ୍ବଳ ଥିଲା । ମୋ ପାଇଁ ଗୋଟାଏ ଲଣ୍ଠନ ଜଳାଇଦେଇ ଗଲାବେଳେ କହିଗଲେ, ''ଖାଇବାବେଳେ ଭେଟ ହେବ ।''

ଖାଦ୍ୟ ସାଦାସିଧା ଥିଲା– ରୁଟି, ଡାଲି, ଭାତ ଓ ଆଳୁ ତରକାରି । ଖାଇବା ପରେ ଆମେ କିଛି ସମୟ କଥାବାର୍ତ୍ତା କଲୁ । ଲାଗିଲା ଯେ, ବ୍ରହ୍ମଚାରୀଙ୍କର କୌଣସି ସନ୍ଦେହ ନ ଥିଲା ଯେ, ମୁଁ ଜଣେ ପ୍ରକୃତ ସାଧକ । ''ଏବେ ତୁମେ ଶୋଇଯାଅ,'' ସେ କହିଲେ, ''ସକାଳେ ଦେଖା ହେବ,'' ମୋତେ ଲାଗିଲା, ସେ ଜଣେ କେରଳବାସୀକୁ ଦେଖି ଖୁସି ହୋଇଛନ୍ତି ।

ସେତେବେଳକୁ ବେଶ ଥଣ୍ଡା ପଡ଼ିଯାଇଥାଏ । ମୁଁ ନିଜକୁ କମ୍ବଳରେ ଗୁଡ଼େଇ

ନେଲି । ଥକ୍କା ହୋଇଯାଇଥିବାରୁ ଖୁବ୍ ଶୀଘ୍ର ଗାଢ଼ ନିଦରେ ଶୋଇଗଲି । ଶୋଇଯିବା ପୂର୍ବରୁ ଯେଉଁ ଶେଷ ଆଓ୍ବାଜ ମୁଁ ଶୁଣିଥିଲି, ସେ ଥିଲା ଝିଙ୍କାରିମାନଙ୍କର ଝିଁ ଝିଁ ଶବ୍ଦ । ସେମାନେ ତାଙ୍କର ନିଜ ଢଙ୍ଗରେ ଗାଉଣାବାଜଣା କରୁଥାଆନ୍ତି । ମୁଁ ଗୋଟାଏ କାଠଗଡ଼ ପରି ପଡ଼ିଗଲି ।

ପରଦିନ ଉଠି ଦେଖିଲି, ବହୁପୂର୍ବରୁ ସକାଳ ହୋଇଯାଇଛି ମୁଁ ଡେଇଁପଡ଼ି ଉଠି ଠିଆହେଲି ଆଉ କଷ୍ଟରେ ଚିତ୍କାର କରି ଉଠିଲି । ଜାଣିପାରିଲି, ମୋର ପାଦତଳ ଫୋଟକାରେ ଭରିଯାଇଛି ଓ ପାଦ ଉପର ଗଣ୍ଠି ଦୁଇଟା ଫୁଲି ଉଠିଛି । କେତେଗୁଡ଼ାଏ ଫୋଟକା ଫାଟି ଯାଇଥିଲା ଓ ଭାରି କଷ୍ଟ ହେଉଥିଲା । ଦେହସାରା ଦରଜ ଥିଲା, ବିଶେଷ ଭାବରେ ପେଣ୍ଡାଗୁଡ଼ାକରେ, କିନ୍ତୁ ଉଠିକରି ଯାଇ ଏପଟସେପଟ ବୁଲି ଦେଖିବାପାଇଁ ଦୃଢ଼ପରିକର ଥିଲି ।

ଛୋଟେଇ ଛୋଟେଇ ମୁଁ ନିଜର ଛୋଟ କୋଠରିରୁ ବାହାରକୁ ଆସିଲି । ପାଖରେ ଥିବା ଗୋଟିଏ ନଳ ଓ ପାଇଖାନା (ଭୂଇଁ ଉପରେ ଗୋଟାଏ ଗାତ) ଦେଖି ମୋର ଚିନ୍ତା କମିଗଲା । ଦୈନିକ କ୍ରିୟା ସାରିବା ପରେ ମୁଁ ଧୀରେ ଧୀରେ ସେହି କୋଠରି ଆଡ଼କୁ ଚାଲିଲି, ଯେଉଁଟାକୁ ମୁଁ ବ୍ରହ୍ମଚାରୀଙ୍କର ବୋଲି ଭାବିଥିଲି । ବ୍ରହ୍ମଚାରୀ ନିଜ କୋଠରିରେ ଥିଲେ । ଚୁଡ଼ା ଓ ଗୋଦୁଗ୍ଧର ହାଲ୍‌କା ଜଳଖିଆ ପରେ କିଛି ସମୟ ପର୍ଯ୍ୟନ୍ତ ଆମେ ମାଲୟାଲମରେ କଥାବାର୍ତ୍ତା କଲୁ । ସେ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ମୁଁ ଜଣେ ପ୍ରକୃତ ଆଧ୍ୟାତ୍ମିକ ସନ୍ଧାନୀ ଥିଲି ।

ମୋର ଶାରୀରିକ ଅବସ୍ଥା ଦେଖି ସେ କହିଲେ, ମୁଁ ଭଲ ହୋଇଗଲା ପରେ ପାଦରେ ଚାଲିପାରିବା ପର୍ଯ୍ୟନ୍ତ ମୁଁ ସେଠାରେ ରହିପାରିବି । ମୁଁ ଖୁସିରେ ରାଜି ହୋଇଗଲି । ତା'ପରେ ସେ ମୋତେ ନେଇ ବଶିଷ୍ଠ ଗୁମ୍ଫାକୁ ଗଲେ । ସେ ମୋତେ ତାଙ୍କର ଗୁରୁଙ୍କର ସମାଧି, ନଦୀର ପଥୁରିଆ ତଟ, ପଥରର ଗୋଟାଏ ଛୋଟ ଗୁମ୍ଫା ଦେଖାଇଲେ । ସେହି ଛୋଟ ଗୁମ୍ଫାଟିର ନାଁ ଥିଲା ଅରୁନ୍ଧତୀ ଗୁମ୍ଫା । ସେ ସମୟରେ ମୁଁ ଭାବି ମଧ୍ୟ ନ ଥିଲି ଯେ, ବାବାଜୀଙ୍କ ସହିତ ଅରୁନ୍ଧତୀ ଗୁମ୍ଫାରେ କିଛି ସମୟ ବିତାଇବି ।

ବଶିଷ୍ଠ ଗୁମ୍ଫା ଗୋଟାଏ ବଡ଼ ପ୍ରାକୃତିକ ସୁଡ଼ଙ୍ଗ, ଗୁମ୍ଫା ଶେଷରେ ଗୋଟାଏ ବଡ଼ ଗୁମ୍ଫା ରହିଛି । ଗୁମ୍ଫାର ସୂଚୀଭେଦ୍ୟ ଅନ୍ଧକାର ହେତୁ ପ୍ରବେଶ ପଥରୁ ଆସୁଥିବା ଅଳ୍ପ ଆଲୁଅରେ ଆଖି ଅଭ୍ୟସ୍ତ ହୋଇଗଲେ ଦେଖାଯାଏ ବଡ଼ ଗୁମ୍ଫାର ଶେଷରେ ଗୋଟିଏ କ୍ଷୁଦ୍ର କଳା ରଙ୍ଗର ଲିଙ୍ଗ ସ୍ଥାପିତ କରାଯାଇଛି । କିଂବଦନ୍ତୀ ଅନୁସାରେ ଆଗରୁ ସୁଡ଼ଙ୍ଗ ଗୁମ୍ଫା ଟପି ନଈ ପାଖରେ ଯାଇ ପହଞ୍ଚୁଥିଲା । ଗୁମ୍ଫାରେ ବସିଲେ

ବାହାରର ସବୁ କାର୍ଯ୍ୟକଳାପ ସହିତ ସମ୍ପର୍କ କଟିଯାଏ, ଗଭୀର ଶାନ୍ତ ନିରବତା ବେଳେବେଳେ ଝିଙ୍କାରିମାନଙ୍କର ଶବ୍ଦରେ ଭଙ୍ଗ ହୁଏ । ଏହି ଶବ୍ଦଦ୍ୱାରା ସେମାନଙ୍କର ଉପସ୍ଥିତି ଜଣାପଡ଼େ । କେହି ସେଠାରେ ଚୁପ୍ ହୋଇ ବସିରହିଲେ ମନ ଆପେ ଆପେ ଧ୍ୟାନମଗ୍ନ ହେଇଯାଏ ।

ଏମିତିରେ ତ ଗୁମ୍ଫାଟିକୁ ଅତି ପୁରାତନ ଏବଂ ବଶିଷ୍ଠ ଏଠାରେ ତପସ୍ୟା କରୁଥିଲେ ବୋଲି କୁହାଯାଏ । କିଛିବର୍ଷ ପୂର୍ବେ ସ୍ୱାମୀ ପୁରୁଷୋତ୍ତମାନନ୍ଦ ଏହାକୁ ନିଜର ଆବାସସ୍ଥଳୀ କରିଥିଲେ । ମାଲାୟାଲୀ ବ୍ରହ୍ମଚାରୀ ବେଶ କେତେବର୍ଷ ଧରି ତାଙ୍କର ସେବା କରିଥିଲେ । ସ୍ୱାମୀ ପୁରୁଷୋତ୍ତମାନନ୍ଦ କେରଳବାସୀ ଥିଲେ ଏବଂ ସ୍ୱାମୀ ନିର୍ମଳାନନ୍ଦଙ୍କର ଶିଷ୍ୟ ଥିଲେ । ସେ ମଧ୍ୟ କେରଳବାସୀ ଥିଲେ । ରାମକୃଷ୍ଣ ସଂସ୍ଥାର ନିର୍ମଳାନନ୍ଦ ଜଣେ ବରିଷ୍ଠ ସାଧକ ଥିଲେ ଓ ରାମକୃଷ୍ଣ ପରମହଂସଙ୍କର ପ୍ରତ୍ୟକ୍ଷ ଶିଷ୍ୟ ଥିଲେ । କୁହାଯାଏ, ସେ ଅତି ଅଳ୍ପ ବୟସରେ ରାମକୃଷ୍ଣ ପରମହଂସଙ୍କ ସଂସ୍ପର୍ଶରେ ଆସିଥିଲେ । ପରବର୍ତ୍ତୀ ସମୟରେ ରାମକୃଷ୍ଣ ମିଶନର ସନ୍ନ୍ୟାସୀମାନଙ୍କ ସହିତ ତାଙ୍କର ମତଭେଦ ହୋଇଥିଲା ଓ ରାମକୃଷ୍ଣ ଆଶ୍ରମରୁ ସ୍ୱତନ୍ତ୍ର ହୋଇଯାଇ କେରଳର ଓଟ୍ଟପାଲମରେ ସେ ନିଜସ୍ୱ ସ୍ୱାଧୀନ ରାମକୃଷ୍ଣ ଆଶ୍ରମ ଖୋଲିଥିଲେ ।

ସ୍ୱାମୀ ପୁରୁଷୋତ୍ତମାନନ୍ଦଙ୍କର ଜନ୍ମ 1879 ମସିହାର ନଭେମ୍ବର ତେଇଶ ତାରିଖ ଦିନ ହୋଇଥିଲା । ସ୍ୱାମୀ ନିର୍ମଳାନନ୍ଦ 1916 ମସିହାରେ ତାଙ୍କୁ ରାମକୃଷ୍ଣ ସଂପ୍ରଦାୟର ପ୍ରଥମ ଅଧ୍ୟକ୍ଷ ସ୍ୱାମୀ ବ୍ରହ୍ମାନନ୍ଦଙ୍କଠାରୁ ଦୀକ୍ଷା ନେବାକୁ କହିଥିଲେ । ପୁଣି 1923ରେ ରାମକୃଷ୍ଣଙ୍କର ଆଉ ଜଣେ ପ୍ରତ୍ୟକ୍ଷ ଶିଷ୍ୟ ସ୍ୱାମୀ ଶିବାନନ୍ଦ ତାଙ୍କୁ ସନ୍ନ୍ୟାସ ଦେଲେ । ସ୍ୱାମୀ ଶିବାନନ୍ଦଙ୍କୁ ମହାପୁରୁଷ ମହାରାଜ ବୋଲି ମଧ୍ୟ କୁହାଯାଉଥିଲା । 1928ରେ ସ୍ୱାମୀ ପୁରୁଷୋତ୍ତମାନନ୍ଦ ବଶିଷ୍ଠ ଗୁମ୍ଫାକୁ ଆସି ବହୁ ବର୍ଷ ବିତାଇଲେ ଗୁମ୍ଫା ଭିତରେ । ତାଙ୍କର ସମାଧି ଗୁମ୍ଫା ବାହାରେ ଖୋଲା ସ୍ଥାନରେ ରହିଛି । 82 ବର୍ଷ ବୟସରେ 13 ଫେବୃଆରୀ 1961ରେ ମହାଶିବରାତ୍ରୀର ରାତି ଦଶଟା ବାଜି ପଚାଶ ମିନିଟ୍‌ରେ ତାଙ୍କର ମହାପ୍ରୟାଣ ହୋଇଥିଲା ।

ମୁଁ ଯେତେବେଳେ ଆଶ୍ରମରେ ରହୁଥିଲି, ସେତେବେଳେ ଅଳ୍ପ ସଂଖ୍ୟକ କୁଟୀର (ସାଧକମାନଙ୍କ ଉପଯୋଗ ପାଇଁ ସାଦାସିଧା କୋଠରି) ଆଉ ଏକ ଛୋଟ ରୋଷେଇଘର ଥିଲା । ବ୍ରହ୍ମଚାରୀ, ରୋଷେୟା, ତାଙ୍କର ସାହାଯ୍ୟକାରୀଙ୍କ ବ୍ୟତୀତ ଜଣେ ଦି'ଜଣ ଅତିଥି ସେଠାରେ ରହୁଥିଲେ । ସ୍ଥାନଟି ସାଧାରଣତଃ ନିର୍ଜନ ଓ ଚିନ୍ତନ-ମନନ ପାଇଁ ଉପଯୁକ୍ତ ଥିଲା । ମୁଁ ସେଠାରେ ପନ୍ଦରଦିନ ବିତାଇଲି । ଗଙ୍ଗାର ଥଣ୍ଡା ପାଣିରେ ସ୍ନାନ କରୁଥିଲି

ଯୋଗାଭ୍ୟାସ କରୁଥିଲି ଓ ଗୁମ୍ଫାରେ ବସି ଧ୍ୟାନ କରୁଥିଲି ।

ଭୋଜନ ସାଦାସିଧା କିନ୍ତୁ ଯଥେଷ୍ଟ ଥିଲା । ସବୁକିଛି ବେଶ ଭଲ ଚାଲୁଥିଲା । ବ୍ରହ୍ମଚାରୀ ବେଳେବେଳେ ମୋ' ସହିତ ମାଲାୟାଲମ୍‌ରେ କଥାବାର୍ତ୍ତା କରି ଖୁସି ଥିଲେ ଓ ନିଜର ଗୁରୁଙ୍କ ସହିତ ନିଜର ଜୀବନ ବିଷୟରେ କହୁଥିଲେ । ସେ ଅନ୍ୟ ସନ୍ନ୍ୟାସୀମାନଙ୍କ କଥା, ଯେଉଁମାନେ ସେଠାକୁ ଆସୁଥିଲେ ଓ ବେଳେବେଳେ ରହୁଥିଲେ, ସେମାନଙ୍କ ବିଷୟରେ ମଧ୍ୟ କହୁଥିଲେ ।

ପନ୍ଦର ଦିନ ପରେ ମୋର ଫୋଟକାଗୁଡ଼ା ଶୁଖିଗଲା । ମୁଁ ଦିନେ ମଧ୍ୟ ଅଧିକା ରହିବାକୁ ଚାହୁଁ ନ ଥିଲି । ଜାଗାଟା ପ୍ରକୃତରେ ଭାରି ଭଲ ଥିଲା । କିନ୍ତୁ ମୋତେ ନିଜର ରାସ୍ତା ସନ୍ଧାନ କରିବାର ଥିଲା । ବିଭିନ୍ନ ଆଶଙ୍କା ମୋତେ ବ୍ୟସ୍ତ କରୁଥିଲେ । ବୁଢ଼ା ସନ୍ନ୍ୟାସୀଙ୍କର ବ୍ୟଙ୍ଗଭରା ଶବ୍ଦ ବାରମ୍ବାର ମନରେ ଭାସି ଉଠୁଥିଲା । ମୋତେ ଜଣେ ସଚ୍ଚା ଗୁରୁଙ୍କୁ ଖୋଜି ବାହାର କରିବାକୁ ପଡ଼ିବ, ଯେ ମୋର ଶଙ୍କା ଦୂର କରିପାରିବେ ଓ ମୋର ପ୍ରଶ୍ନର ଉତ୍ତର ଦେଇପାରିବେ । ଏମିତି ଗୁରୁ କ'ଣ କେଉଁଠି ଅଛନ୍ତି ?

"ସନ୍ଧାନ ତ ବର୍ତ୍ତମାନ ହିଁ ଆରମ୍ଭ ହୋଇଛି', ମୁଁ ନିଜକୁ ନିଜେ ବୁଝାଇଲି । 'ଧୈର୍ଯ୍ୟ ଧର', ହତାଶ ହୋଇ ପଡ଼ନାହିଁ । ରାସ୍ତା ଧରି ଚାଲୁଥାଅ, ସନ୍ଧାନ ଏବେଏବେ ହିଁ ଆରମ୍ଭ ହୋଇଛି ।" ଦିନେ ଖୁବ୍ ସକାଳୁ ମୁଁ ବ୍ରହ୍ମଚାରୀଙ୍କୁ ଧନ୍ୟବାଦ ଦେଲି ଓ ବଦ୍ରିନାଥ ଆଡ଼କୁ ବାହାରିପଡ଼ିଲି ।



# ନାଗା ସାଧୁ ଏବଂ ମହାମନ୍ତ୍ର ଶିକ୍ଷା

ଋଷିକେଶରୁ ବଦ୍ରିନାଥର ରାସ୍ତା ପାଞ୍ଚଟି ପ୍ରୟାଗ ଦେଇ ଯାଏ, ଯେଉଁଠାରେ ଭାରତର ପାଞ୍ଚଟି ପବିତ୍ର ନଦୀର ସଙ୍ଗମ ଘଟିଛି । ଦେବ-ପ୍ରୟାଗରେ ଗଙ୍ଗୋତ୍ରୀରୁ ତଳକୁ ବହିଯାଉଥିବା ଭାଗିରଥୀ ବଦ୍ରିନାଥରୁ ବହି ଆସୁଥିବା ଅଳକନନ୍ଦା ସହିତ ମିଳିତ ହୁଏ । ସଙ୍ଗମ ବ୍ୟତୀତ ସେହି ଛୋଟ ବସତିରେ ଗୋଟିଏ ରାମ ମନ୍ଦିର ଅଛି । କୁହାଯାଏ ଯେ, ବୃଦ୍ଧାବସ୍ଥାରେ ରାମ ଏହିଠାରେ ତପସ୍ୟା କରିଥିଲେ । ଗର୍ଜନ କରି ବହି ଆସୁଥିବା ଏହି ଦୁଇଟି ନଦୀଙ୍କର ସଙ୍ଗମ ବଡ଼ ମନୋମୁଗ୍ଧକର ।

ଆଗକୁ ଚାଲିଲେ ରୁଦ୍ରପ୍ରୟାଗ ଅଛି, ଯେଉଁଠାରେ କେଦାରନାଥରୁ ଆସୁଥିବା ମନ୍ଦାକିନୀ ଅଳକନନ୍ଦା ସହିତ ମିଳିତ ହୁଏ । ତା'ପରେ ନନ୍ଦପ୍ରୟାଗ ଓ ବିଷ୍ଣୁ ପ୍ରୟାଗ ପଡ଼େ । ବିଷ୍ଣୁ ପ୍ରୟାଗ ପାଖରେ ପ୍ରସିଦ୍ଧ ଜ୍ୟୋତିର୍ମଠ ରହିଛି ଯାହାକୁ ସ୍ଥାନୀୟ ଲୋକେ ଜୋଶୀ ମଠ ବୋଲି କହନ୍ତି । ମହାନ ବେଦାନ୍ତୀ ଶଙ୍କରଙ୍କୁ ଜୋଶୀମଠର ସଂସ୍ଥାପକ ବୋଲି କୁହାଯାଏ । ଏହା ତାଙ୍କଦ୍ୱାରା ସ୍ଥାପିତ ଭାରତର ସବୁଠାରୁ ବେଶି ଉତ୍ତର ଦିଗକୁ ଥିବା ମଠ । ଶଙ୍କରାଚାର୍ଯ୍ୟଙ୍କଦ୍ୱାରା ସ୍ଥାପିତ ଅନ୍ୟ ମଠଗୁଡ଼ିକ ହେଲେ- ଦ୍ୱାରକା, ପୁରୀ ଏବଂ ଶୃଙ୍ଗେରୀ, ଯେଉଁଗୁଡ଼ିକ ଯଥାକ୍ରମେ ଭାରତର ପଶ୍ଚିମ, ପୂର୍ବ ଓ ଦକ୍ଷିଣ ଦିଗରେ ରହିଛି ।

ଆହୁରି ଉପରକୁ ଯିବାପରେ ପାଣ୍ଡୁକେଶ୍ୱରରୁ ଫୁଲର ଉପତ୍ୟକା ଏବଂ ହେମକୁଣ୍ଡ ସାହେବ ଯିବାପାଇଁ ପାଦଚଲା ରାସ୍ତା ଆରମ୍ଭ ହୁଏ । ହେମକୁଣ୍ଡ ସାହେବ ହେଉଛି ସମୁଦ୍ର ତଳରୁ 1500 ଫୁଟ ଉଚ୍ଚତାରେ ଥିବା ଶିଖମାନଙ୍କର ପବିତ୍ର ହ୍ରଦ । ପାଣ୍ଡୁକେଶ୍ୱରର ଅନ୍ୟ ପଟରେ ରହିଛି ବଦ୍ରିନାଥଙ୍କ ପବିତ୍ର ମନ୍ଦିର । ବଦ୍ରିନାଥର ପୂଜାରୀମାନେ ଶୀତର ଛ'ମାସ ଜୋଶୀମଠରେ ବିତାନ୍ତି ।

ବଶିଷ୍ଠ ଗୁମ୍ଫାରୁ ବଦ୍ରିନାଥ ପର୍ଯ୍ୟନ୍ତ ମୋଟ ଦୁଇଶହ କୋଡ଼ିଏ କିଲୋମିଟରର ଦୂରତ୍ୱ ମୁଁ ପଚିଶ ଦିନରେ ଅତିକ୍ରମ କଲି । ମୋତେ ଗର୍ବ ଲାଗିଲା ଯେ, ମୁଁ ପୂରା ରାସ୍ତା

ପାଦରେ ଚାଲି ଚାଲି ଗଲି, କୌଣସି ଯାନବାହନର ସାହାଯ୍ୟ ନେଲି ନାହିଁ । ମୁଁ ଅଭିଜ୍ଞ ପରିବ୍ରାଜକ ସାଧୁ ହୋଇଯାଇଥାଏ । ବେଳେବେଳେ ଖାଦ୍ୟ ମିଳିବା କଠିନ ହେଉଥିଲା, ପରିତ୍ୟକ୍ତ ଚାଳିଆରେ ଶୋଇବାକୁ ପଡୁଥିଲା ଏବଂ ଶୀତରେ କମ୍ପିବାକୁ ପଡୁଥିଲା;  ସବୁ ସତ୍ତ୍ୱେ ମୋର  ଉତ୍ସାହ ହ୍ରାସ ପାଇଲା ନାହିଁ ।

ଶାରୀରିକ କଷ୍ଟ ମୋର ସମସ୍ୟା ନ ଥିଲା । ସମସ୍ୟା ଥିଲା ମୋ ମନରେ । ଏକାକୀ ରହୁଥିବା ସମୟରେ ମୁଁ ଉଦ୍‌ବିଗ୍ନ ହୋଇ ଯାଉଥିଲି ଓ ବେଳେବେଳେ ମୋହଭଙ୍ଗର ସ୍ଥିତିରେ ପହଞ୍ଚି ଯାଉଥିଲି । ପର୍ବତସମୂହ ଓ ନଦୀମାନଙ୍କର ସୌନ୍ଦର୍ଯ୍ୟ ଏବଂ ଏହି ଆଶା ଯେ ସେଠାରେ ବରଫାବୃତ ଉଚ୍ଚତାରେ କିଏ ଜଣେ ଥିବେ ଯେ ପ୍ରଶ୍ନର ଉତ୍ତର ପାଇବାରେ ମୋର ସହାୟତା କରିବେ, ସେସବୁ ମୋତେ ଆଗକୁ ଚାଲିବାକୁ ପ୍ରେରଣା ଦେଉଥିଲେ । ନିଜର ସେହି ସମୟରେ ହୋଇଥିବା ମୋର ଦୁଇଟି ଅନୁଭୂତି ବିଷୟରେ ମୁଁ ଆପଣମାନଙ୍କୁ କହିବାକୁ ଚାହେଁ ।

ଦେବପ୍ରୟାଗରେ ଜଣେ ନିପଟ ଲଙ୍ଗଳା ସାଧୁ ମୋତେ ଭେଟିଗଲେ । ମୁଁ ଯେତେବେଳେ ଦେବପ୍ରୟାଗରେ ପହଞ୍ଚିଲି, ସେତେବେଳେ ଅନ୍ଧାର ମାଡ଼ି ଆସୁଥାଏ । ମୁଁ ଭାବୁଥିଲି ଖାଇବା ଓ ରହିବାପାଇଁ ଜାଗା କେଉଁଠି ମିଳିବ, ସେତିକିବେଳେ ଏହି ଡେଙ୍ଗା, କାଳିଆ, ଜଟାଧାରୀ ମୋ ପାଖକୁ ଆସିଲେ ଆଉ କହିଲେ, ''ଯଦି ତୁମେ ରହିବାପାଇଁ ଜାଗା ଖୋଜୁଛ, ତେବେ ମୋ ସହିତ ଆସ ।''

ନାଗାଙ୍କ ସହିତ ରହିବା ଏକ ନୂଆ ଅନୁଭବ ହେବ । ମୁଁ ରାଜି ହୋଇଗଲି ଓ ତାଙ୍କ ସହିତ ଚାଲିଗଲି । ସେ ଗୋଟିଏ ଛୋଟ କୁଡ଼ିଆରେ ନଦୀ କୂଳରେ ରାମମନ୍ଦିର ପାଖରେ ରହୁଥିଲେ । କୁଡ଼ିଆ ସାମ୍ନାରେ ଗୋଟିଏ ଧୁନି ଜୋରରେ ଜଳୁଥାଏ । ମୁଁ ନଈରେ ଗୋଡ଼ ହାତ ଧୋଇଲି । ଫେରିବା ବେଳକୁ ମୁଁ ତାଙ୍କୁ ଧୁନି ସାମ୍ନାରେ ବସିଥିବାର ଦେଖିଲି । ''ବସ'', ସେ କହିଲେ । ''ଅଗ୍ନି ଦେବତାଙ୍କୁ ପ୍ରାର୍ଥନା କର ଏବଂ ନଇଁପଡ଼ି ନମସ୍କାର କର । ଆମେ ଭୋଜନ କରିବା ତା'ପରେ ସିଦ୍ଧି ପାଇବା ।'' ''ସିଦ୍ଧି ?'' ମୁଁ ପଚାରିଲି । କାରଣ ସିଦ୍ଧି ତ ସେହି ଅଲୌକିକ ଶକ୍ତିକୁ କୁହାଯାଏ ଯାହା ଯୋଗୀମାନଙ୍କ ନିକଟରେ ଥାଏ ବୋଲି କୁହାଯାଏ । ''ହଁ, ହଁ ତୁମେ ଜାଣିପାରିବ,'' ସେ କହିଲେ ।

ଯେତେବେଳେ ଆମେ ଗରମ ରୁଟି ଆଉ ଆଳୁ ତରକାରି ଖାଉଥାଉ, ସେ ମୋ ଜୀବନ ବୃତ୍ତାନ୍ତ ପଚାରିଲେ ଆଉ ଏକଥା ମଧ୍ୟ ପଚାରିଲେ ଯେ, ମୁଁ କୁଆଡ଼େ ଯାଉଛି । ମୁଁ କହିଲି ଯେ, ମୁଁ ଜଣେ ଆଧ୍ୟାତ୍ମିକ ସନ୍ଧାନୀ ଥିଲି, ମୋ ନାଁ ଶିବ ପ୍ରସାଦ ଓ ମୁଁ ଜଣେ

ଉପଯୁକ୍ତ ଗୁରୁଙ୍କ ସନ୍ଧାନରେ ବଦ୍ରିନାଥ ଯାଉଛି । ମୋତେ ଲାଗିଲା, ସେ ମୋ ଭିତରର କଥା ଜାଣିବାର ଚେଷ୍ଟା କରୁଛନ୍ତି । ମୋର ଅନୁମାନ ଠିକ୍ ଥିଲା । ଖାଇ ସାରିବାପରେ ସେ ସାଙ୍ଗେ ସାଙ୍ଗେ ଭିତରକୁ ଚାଲିଗଲେ ଆଉ ମାଟିର ଚିଲମ ନେଇ ବାହାରକୁ ଆସିଲେ । ସେ ଗଞ୍ଜେଇ ଓ ତମାଖୁର ମିଶ୍ରଣକୁ ଚିଲମରେ ଭରିଲେ ଓ ନିଆଁରେ ତାକୁ ଧରେଇ ନେଲେ । ତା'ପରେ ଚକାସନରେ ବସି ଜୋର୍‌ରେ କହିଲେ ''ବମ୍ ଭୋଲେ, ହରହର ମହାଦେବ ଶମ୍ଭୁ'', ଏବଂ ଗହୀରିଆ ଟାଣ ଦେଲେ । ତା'ପରେ ସେ ଧୀରେ ଧୀରେ ଧୂଆଁ ବାହାର କଲେ ଏବଂ ଚିଲମ ମୋ ଆଡ଼କୁ ବଢ଼ାଇଲେ । ''ସିଦ୍ଧି'', ସେ କହିଲେ, ''ଏହାଦ୍ୱାରା ତୁମେ ଶିବଲୋକରେ ପହଞ୍ଚିଯିବ ଏବଂ ସବୁ ସିଦ୍ଧି ତୁମକୁ ପ୍ରାପ୍ତ ହେବ । ହୋଇପାରେ ମୁଁ ହିଁ ତୁମର ଗୁରୁ । ଶିବ ମହାଦେବ ମୋତେ ରୂପବାନ ଶିଷ୍ୟ ପଠାଇଛନ୍ତି, ଟାଣ, ଟାଣ, ଜାଣିଛ କେମିତି ?''

ଧୂଆଁର ବାସ୍ନାରୁ ଜାଣିଗଲି ଯେ, ସେଇଟା ଥିଲା ଗଞ୍ଜେଇ । ତ୍ରିଭେନ୍ଦ୍ରମରେ କେତେଜଣ ସାଙ୍ଗ ଗଞ୍ଜେଇ ଟାଣୁଥିଲେ ଓ ମୁଁ ଥରେ ଅଧେ ଟାଣିବାକୁ ଚେଷ୍ଟା କରିଥିଲି କିନ୍ତୁ ମୋତେ ସେଗୁଡ଼ା ଭଲ ଲାଗିଲା ନାହିଁ । ଏହା ଜଣକୁ ଧ୍ୟାନ ପରିସ୍ଥିତିରେ ପହଞ୍ଚାଇ ଦିଏ ସତ, କିନ୍ତୁ ଅଳ୍ପ ସମୟପାଇଁ ଏବଂ ଯାର ଅଭ୍ୟାସ ହୋଇଗଲେ ଭାରି ବିପଦ । ମୁଁ ମନା କରିଦେଲି । ସେ ବହୁତ ଅସନ୍ତୁଷ୍ଟ ହୋଇଗଲେ, ''ଧୁନି ସାମ୍ନାରେ ନାଗା ଦେଉଥିବା ସିଦ୍ଧିକୁ କେହି ମନାକରନ୍ତି ନାହିଁ,'' ସେ ଜୋର୍‌ରେ ଚିତ୍କାର କଲେ, ''ନିଅ'' ।

ଅନିଚ୍ଛା ସତ୍ତ୍ୱେ ମୁଁ ଚିଲମ ନେଲି ଓ କିଛି ଟାଣ ମାରିଲି । କେତେ ମିନିଟ୍ ପରେ ସେ ଅଚାନକ କହିଲେ, ''ଦକ୍ଷିଣା, ଦକ୍ଷିଣା ବାହାର କର ।'' ମୁଁ ତାଙ୍କ ସହିତ ଯୁକ୍ତି କରିବାକୁ ଚାହୁଁ ନ ଥିଲି । ଦଶଟଙ୍କା ବାହାର କରି ତାଙ୍କୁ ଦେଇଦେଲି । ''ଆଉ'', ସେ ଗର୍ଜି ଉଠିଲେ ।

ମୁଁ ତାଙ୍କୁ ଆଉ ଦଶ ଟଙ୍କା ଦେଲି ଆଉ କହିଲି ''ମୋ ପାଖରେ ଏତିକି ଅଛି ।'' ସେ ଖୁସିରେ ଦାନ୍ତ ବାହର କରି ହସିଲେ । ''ଯଥେଷ୍ଟ'' ସେ କହିଲେ, ''ଏବେ ତୁମର ମନ୍ତ୍ରସିଦ୍ଧି ହୋଇଗଲା । କିଛି ଅଧିକା ସିଦ୍ଧି ପାଅ ।'' ମୁଁ ମନା କରିଦେଲି । ''ତୁମେ ଚାହିଁଲେ ଭିତରେ ଶୋଇପାରିବ ନ ହେଲେ ବାରଣ୍ଡାରେ ଶୋଇପାରିବ,'' ସେ କହିଲେ । ମୁଁ ଥକି ଯାଇଥିଲି ଓ ଗଞ୍ଜେଇ ମୋତେ ନିଦୁଆ କରିଦେଇଥିଲା । ମୁଁ ନିଜକୁ କମ୍ବଳରେ ଗୁଡ଼େଇ ନେଲି ଓ ନିଜର ଝୁଲାକୁ ତକିଆ ପରି କରି ଶୋଇଗଲି । ମୋ ଝୁଲାରେ କିଛି ପଇସା ଥିଲା । ମୋର ଚିନ୍ତା ଥିଲା ଯେ, ନାଗା କ'ଣ ତାକୁ ଚୋରାଇବାକୁ ଚେଷ୍ଟା କରିବେ ? ସେ ରାତିରେ ଶୋଇବା ପୂର୍ବରୁ ହେଉଥିବା ମୋର ନିତ୍ୟନୈମିତ୍ତିକ ଧ୍ୟାନ ସେତେ ମଧୁର

ଓ ଉଜ୍ଜ୍ୱଳ ନ ଥିଲା । ଏମିତି ଲାଗୁଥିଲା ଯେମିତି ମୋର ଅସ୍ତିତ୍ୱ ଅନ୍ଧାରରେ ଢାଙ୍କି ହୋଇଯାଇଛି ମୋର ଆତ୍ମା ମୋଟା ଓଜନିଆ ଦଉଡ଼ିରେ ବନ୍ଧା ହୋଇଛି । ନାଗା ସେତେବେଳେ ବି ନିଜର ଚିଲମ ପିଉଥିଲେ ।

ସକାଳେ ମୁଁ ଶୀଘ୍ର ଉଠିଗଲି ଓ ଦେଖି ଆଶ୍ୱସ୍ତ ହେଲି ଯେ ନାଗା ସେତେବେଳେ ବି କୁଡ଼ିଆ ଭିତରେ ଜୋର୍‌ରେ ଘୁଙ୍ଗୁଡ଼ି ମାରୁଛନ୍ତି । କିଛି ଶବ୍ଦ ନ କରି ମୁଁ ନିଜର କମ୍ବଳ ଭାଙ୍ଗିଲି, ଝୁଲା କମଣ୍ଡଳୁ ଓ ବାଡ଼ି ଉଠେଇଲି ଏବଂ ଚୁପ୍‌ଚାପ୍ ଅର୍ଦ୍ଧାନ୍ଧକାର ଭିତରେ ଚାଲିବା ଆରମ୍ଭ କରିଦେଲି । ଖରା ହେଉହେଉ ମୁଁ ଦେବପ୍ରୟାଗ ଏବଂ ନାଗା ସିଦ୍ଧଙ୍କଠାରୁ ବେଶ ଦୂର ଚାଲିଯାଇଥିଲି ।

କିଛିଦିନ ପରେ ରୁଦ୍ରପ୍ରୟାଗ ନିକଟରେ ମୁଁ ଘନ ଜଙ୍ଗଲ ଭିତରେ ରାସ୍ତା ଭୁଲିଗଲି । ଶୀଘ୍ର ମୁଁ ବୁଝିଗଲି ଯେ, ରାସ୍ତା ଭୁଲ ହୋଇଗଲା । ଅନ୍ଧାର ହୋଇ ଆସୁଥାଏ । ମୁଁ ପୁଣି ସେଇ ଚିନ୍ତାରେ ଥିଲି ଯେ ରାତି କେଉଁଠି ବିତାଇବି,ଏହି ସମୟରେ ଜଣେ ଅଧାବୟସର ଲୋକ ମୋ ଆଡ଼କୁ ଆସୁଥିବାର ଦେଖିଲି । ସେ ପିଠିରେ କାଠର ଗୋଛା ବୋହୁଥିଲା । ''ମହାରାଜ, କୁଆଡ଼େ ଯାଉଛନ୍ତି ?'' ସେ ପଚାରିଲା । ''ବଦ୍ରିନାଥ'', ମୁଁ କହିଲି । ''କିନ୍ତୁ ମୋତେ ଲାଗୁଛି, ମୁଁ ରାସ୍ତା ଭୁଲିଯାଇଛି । ଆପଣ କ'ଣ ମୋତେ କୌଣସି ଜାଗା ବିଷୟରେ କହିପାରିବେ, ଯେଉଁଠି ଖାଇବା ମିଳିବ ଆଉ ମୁଁ ରାତିରେ ସେଠାରେ ରହିପାରିବି ?'' ''ମୋ ସହିତ ଆସନ୍ତୁ,'' ସେ କହିଲା, ''ବାବାଜୀଙ୍କ ଆଶ୍ରମ ନିକଟରେ ହିଁ ଅଛି । ସେ ମୋର ଗୁରୁ, ଆସନ୍ତୁ ।''

ମୁଁ ବାବାଜୀ ନାମଧାରୀ ଜଣେ ଚିରାୟୁ ଯୋଗୀଙ୍କ ବିଷୟରେ ଶୁଣିଥିଲି । ସେ ହିମାଳୟରେ କେଉଁଠାରେ ରହୁଥିଲେ । ତେଣୁ ମୁଁ ଭାରି ଉତ୍ତେଜିତ ହୋଇଗଲି । ''ତୁମେ କ'ଣ କହୁଛ, ମହାନ ବାବାଜୀ ତୁମର ଗୁରୁ ?'' ମୋ ମୁହଁରୁ ବାହାରିଗଲା ।

ତାକୁ ଜଣା ନ ଥିଲା, ମୁଁ କେଉଁ ବାବାଜୀଙ୍କ ବିଷୟରେ କହୁଥିଲି । ତା'ର ଗୁରୁ, ଜଣେ ବୈଷ୍ଣବ ବାବା ଥିଲେ । ବୈଷ୍ଣବ ସାଧୁମାନଙ୍କୁ ବାବାଜୀ କୁହାଯାଏ ।

ଆମେ ଗୋଟାଏ ତୀଖ ଗଡ଼ାଣିରେ ଓହ୍ଲାଇ ନଦୀକୂଳରେ ପହଞ୍ଚିଗଲୁ । ନଦୀ କୂଳରେ ଫଳଦାୟୀ ବୃକ୍ଷ ପରିବେଷ୍ଟିତ ଗ୍ରାନାଇଟ୍ ତିଆରି ଗୋଟିଏ ଛୋଟ ମନ୍ଦିର ଥିଲା । ମନ୍ଦିର ପାଖଆଖରେ କୁଡ଼ିଆଗୁଡ଼ିଏ ଥିଲା । ଗୋଟାଏ ହଲ (ଯେଉଁଟା ମୋତେ ଭୋଜନକକ୍ଷ ପରି ଲାଗିଲା) ଓ ଗୋଟାଏ ରୋଷେଇଘର ଥିଲା । ସନ୍ଧ୍ୟାକାଳୀନ ଆରତି ଚାଲିଥିଲା ।

ପୂଜାରେ ଉଭୟ ସ୍ତ୍ରୀ ଓ ପୁରୁଷ ଥିଲେ । ନିଶଦାଢ଼ି ରଖି ନ ଥିବା ଲଣ୍ଡିତ ମସ୍ତକ ଜଣେ ଡେଙ୍ଗା ହୃଷ୍ଟପୁଷ୍ଟ ବ୍ୟକ୍ତି (କେବଳ ଧୋତି ଓ ପଇତା ବ୍ୟତୀତ ନଗ୍ନ ଶରୀର, ମସ୍ତକର ପଛପଟେ ମୋଟା ଶିଖା ଜୁଡ଼ା ପରି ବନ୍ଧ) ଆରତି କରୁଥିଲେ ଓ ଗୋଟିଏ ଛୋଟ ଘଣ୍ଟି ବଜାଉଥିଲେ ତାହା ସହିତ ।

ଆରତି ପରେ ସେ ଦୀପଶିଖାକୁ ଅନ୍ୟମାନଙ୍କ ଆଡ଼କୁ ଆଳତି ପାଇବାପାଇଁ ଆଣିଲେ । ସେତେବେଳେ ମୁଁ ଦେଖିଲି ସେ ଇଂରେଜୀରେ 'ୟୁ' ଆକାରର ଚନ୍ଦନର ଚିତା ଧାରଣ କରିଥିଲେ ଓ ନିଜର ଲଲାଟ, ଗଳା ଓ ବାହୁର ଉପରିଭାଗରେ ବିସ୍ତାରିତ ଭାବରେ ଚନ୍ଦନ ଲେପନ କରିଥିଲେ । ତାଙ୍କର ଗଳାରେ ତୁଳସୀକାଠର ଗୋଟିଏ ଛୋଟ ମାଳି ଥିଲା । ଯେଉଁ ଲୋକ ମୋତେ ଆଣିଥିଲା, ସେ ତାଙ୍କର ପାଦସ୍ପର୍ଶ କଲା ଓ କିଛି କହିଲା । ବାବାଜୀ ମୃଦୁ ହସିଲେ ଓ ମୋ' ଆଡ଼କୁ ଆସିଲେ । ମୁଁ ପରମ୍ପରା ଅନୁଯାୟୀ ତାଙ୍କର ପାଦସ୍ପର୍ଶ କଲି । "ଜୟ ଶ୍ରୀକୃଷ୍ଣ, ଆଶୀର୍ବାଦ," ସେ କହିଲେ । ଏବେ ଯାଇ ଗଙ୍ଗାମାତାରେ ସ୍ନାନ କର ଓ ଫେରିଆସ । ଆମେ ପ୍ରଥମେ ପ୍ରସାଦ ପାଇବା (ଭଗବାନଙ୍କୁ ସମର୍ପିତ କରାଯାଇଥିବା ଖାଦ୍ୟ, ତେଣୁ ପବିତ୍ର) । ତା'ପରେ କଥାବାର୍ତ୍ତା କରିବା, ନମୋ ନାରାୟଣ ।"

ଭୋଜନକକ୍ଷରେ ବାବାଜୀ ଗୋଟିଏ ପଟା ଉପରେ ଚକାପକାଇ ବସିଗଲେ ଆଉ ବାକି ଆମେ ସବୁ ତଳେ ବସିଲୁ । ସମସ୍ତେ ଗୀତାର ପଞ୍ଚଦଶ ଅଧ୍ୟାୟକୁ ସମବେତ ଭାବରେ ଗାଇଲେ । ତା'ପରେ ଆମକୁ ସାଦାସିଧା ଓ ସ୍ୱାଦିଷ୍ଟ ଭୋଜନ ଦିଆଗଲା । ପୁରୁଷମାନେ ଗୋଟାଏ ପଙ୍‌କ୍ତିରେ ବସିଲେ ଏବଂ ସ୍ତ୍ରୀମାନେ ଅଲଗା ହୋଇ ବସିଲେ । ଛ'ଜଣ ଯୁବତୀ ଓ ଚାରିଜଣ ଅଧାବୟସର ପୁରୁଷ ଧଳା ଲୁଗା ପିନ୍ଧିଥିଲେ ଓ 'ୟୁ' ଆକାରର ତିଳକ ଧାରଣ କରିଥିଲେ । କେବଳ ବାବାଜୀ ଗେରୁଆ ବସ୍ତ୍ର ପିନ୍ଧିଥିଲେ ।

ଖାଇବା ପରେ ବାବାଜୀ ମୋ ସହିତ କଥାବାର୍ତ୍ତା କରିବାପାଇଁ ମୋତେ ତାଙ୍କର କୁଟୀରକୁ ଡାକିଲେ । ସେ ମୋର ବାଲ୍ୟକାଳ ଓ ଆଧ୍ୟାତ୍ମିକ ସନ୍ଧାନ ବିଷୟରେ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ । ମୁଁ ଯଥାଶକ୍ତି ଉତ୍ତର ଦେଲି । ଥରେ ବି ସେ ମୋର ଜନ୍ମଜାତ ଧର୍ମ ବିଷୟରେ ପଚାରିଲେ ନାହିଁ । ସେଥିପାଇଁ ମୋତେ କିଛିଟା ଆଶ୍ଚର୍ଯ୍ୟ ଲାଗିଲା । କାରଣ ମୋ ଜାଣିବାରେ ସେମାନେ ପୁରାତନପନ୍ଥୀ ବ୍ରାହ୍ମଣ ଥିଲେ । ପରେ ଜାଣିଲି ଯେ, ସେ କୃଷ୍ଣଭକ୍ତ ସଂପ୍ରଦାୟର ଥିଲେ ଏବଂ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଅନୁଗାମୀ ଥିଲେ ।

ତାଙ୍କର ମତ ଥିଲା ଯେ, ଭକ୍ତି ଭଗବତ୍ ସେବାର ଏକମାତ୍ର ଉପାୟ ଓ କୃଷ୍ଣ ସର୍ବଶକ୍ତିମାନ ଭଗବାନ । ସେ କୃଷ୍ଣ ଓ ରାଧାଙ୍କ ମୂର୍ତ୍ତି ସାମ୍ନାରେ ନାଚୁଥିଲେ, ଗାଉଥିଲେ ଓ ନିୟମିତ ରୂପରେ ତାଙ୍କର ସେବା କରୁଥିଲେ । ସେ ଶାକାହାରୀ ଥିଲେ । ତାଙ୍କର ମତ ଥିଲା ଯେ, କେହି ବି ତାଙ୍କର ପଥ ଅନୁସରଣ କରି ଦୀକ୍ଷିତ ହେଲେ ସେ ବ୍ରାହ୍ମଣ ହୋଇଯାଏ । ସେ ଶଙ୍କରାଚାର୍ଯ୍ୟଙ୍କ ପରମ୍ପରାର ଅଦ୍ୱୈତ ବେଦାନ୍ତୀମାନଙ୍କୁ ଅପସନ୍ଦ କରୁଥିଲେ । ସେ ତାଙ୍କୁ ମାୟାବାଦୀ କହୁଥିଲେ ଅର୍ଥାତ ସେମାନେ ଏପରି ଲୋକ ଥିଲେ, ଯେଉଁମାନେ ସଂସାରକୁ ଭ୍ରମ (ମାୟା) ବୋଲି ମନେ କରୁଥିଲେ । ବୈଷ୍ଣବମାନଙ୍କ ଅନୁଯାୟୀ ସଂସାର ଭ୍ରମ ନୁହେଁ, ଏହା ବାସ୍ତବ ଏବଂ କୃଷ୍ଣ ତାହାର ପରମ ଅଧିଷ୍ଠାତା ତଥା ନିୟନ୍ତ୍ରକ ।

ସଂସାର ତ୍ୟାଗକରି ସନ୍ନ୍ୟାସୀ ହୋଇଯିବା ବିଷୟରେ ବାବାଜୀଙ୍କ ଯୁକ୍ତି ମୋତେ ବେଶ୍ ଯୁକ୍ତିସଙ୍ଗତ ଲାଗିଲା । "ମୁଁ ଜାଣେ ।" ସେ କହିଲେ, "ତୁମେ ସଂସାର ତ୍ୟାଗ ପାଇଁ ଉତ୍ସୁକ, ଗେରୁଆ ପିନ୍ଧିବାକୁ ଚାହୁଁଛ ଓ ଶୀଘ୍ରଶୀଘ୍ର ମୁକ୍ତିର ସ୍ଥିତିରେ ପହଞ୍ଚିଯିବାକୁ ଚାହୁଁଛ । କିନ୍ତୁ ଯୁବକ, ସାବଧାନ, ଯଦି ତୁମେ ଅଳ୍ପ ଉଚ୍ଚ ସ୍ଥାନରୁ ପଡ଼ିବ ତ ଆଘାତ ବେଶି ହେବ ନାହିଁ । ତୁମେ ଉଠି ଠିଆ ହୋଇପାରିବ, ଚିକିତ୍ସା କରାଇ ପୁଣି ଚାଲିବୁଲି ପାରିବ । କିନ୍ତୁ ଯଦି ତୁମେ ସନ୍ନ୍ୟାସର ଅତ୍ୟଧିକ ଉଚ୍ଚତାରୁ ପତିତ ହେବ, ତେବେ ତୁମର ଆଘାତ ଘାତକ ହୋଇପାରେ । ହୋଇପାରେ ତୁମେ ପୁଣି ଉଠି ଠିଆ ହୋଇପାରିବ ନାହିଁ । ତେଣୁ କୌଣସି ନିର୍ଣ୍ଣୟ ନେବା ପୂର୍ବରୁ ସାବଧାନତାର ସହିତ ବିଚାର କର । ଆମମାନଙ୍କର ପ୍ରଥା କଥା ଉଠିଲେ, ଆମ ପ୍ରଥାରେ ସନ୍ନ୍ୟାସ ପୂର୍ବରୁ ଆମେ ଗୃହସ୍ଥାଶ୍ରମ ମଧ୍ୟଦେଇ ଗତି କରୁଥିବା ବୈଦିକ ସିଦ୍ଧାନ୍ତର ଅନୁସରଣ କରୁ । ଆମେ ସମସ୍ତେ ବାହାସାହା ହୋଇଛୁ । ଭଗବାନଙ୍କର କୃପା ହେଲେ ଜଣେ ଗୃହସ୍ଥ ମଧ୍ୟ ଭଗବାନଙ୍କୁ ପାଇପାରେ ଆଉ ଭଗବାନଙ୍କର କୃପା ନ ହେଲେ, ସନ୍ନ୍ୟାସୀ ମଧ୍ୟ ତାଙ୍କୁ ପାଇପାରେ ନାହିଁ । ମୋର ମଧ୍ୟ ବିବାହ ହୋଇଥିଲା । ପତ୍ନୀଙ୍କର ମୃତ୍ୟୁପରେ ସବୁ କିଛି ତ୍ୟାଗ ଦେଲି ।"

"ଆଉ ଗୋଟାଏ କଥା, ସେମାନେ ଯେତେ ବିଦ୍ୱାନ ହେଲେ ମଧ୍ୟ ଗଞ୍ଜେଇଖୋର ସାଧୁମାନଙ୍କର ସଂସର୍ଗ କରିବ ନାହିଁ । ମୁଁ ଜାଣେ ତୁମର ଆଖି ଯାଇ ହିମାଳୟର ଉପରି ଭାଗରେ । ଏପରି ଲୋକ ତୁମକୁ ସେଠାରେ ମଧ୍ୟ ମିଳିପାରନ୍ତି । ତୁମେଯଦି ଆମ ସହିତ ଭକ୍ତି-ସାଧନାରେ ଲାଗି ରହନ୍ତ, ତେବେ ମୁଁ ଭାରି ଖୁସି ହୁଅନ୍ତି କିନ୍ତୁ ମୁଁ ଜାଣେ ତୁମେ ଆଗକୁ ଯିବାକୁ ଚାହୁଁଛ । ଯେମିତି ହରିଙ୍କ ଇଚ୍ଛା ! ତୁମେ ଗୋଟିଏ ପବିତ୍ର ଆତ୍ମା ଏବଂ ତୁମେ ଚାହିଁଲେ ମୁଁ ତୁମକୁ ଆମର ମହାମନ୍ତ୍ର ଦେଇପାରିବି । ନିୟମିତ ଭାବରେ ତା'ର

ଜପ କରିବ, ଆଉ ଯେବେ ଚାହିଁବ, ମୋ ପାଖକୁ ଫେରି ଆସିପାରିବ । ଭଗବାନ ତୁମର ମଙ୍ଗଳ କରନ୍ତୁ । ଜୟ ଶ୍ରୀକୃଷ୍ଣ !''

ମୁଁ ତାଙ୍କର ଚରଣ ସ୍ପର୍ଶ କରି ତାଙ୍କୁ ଧନ୍ୟବାଦ ଦେଲି ଓ ତାଙ୍କୁ ଅନୁରୋଧ କଲି ଯେ ସେ ମୋତେ ''ଓଁ ନମୋ ଭଗବତେ ବାସୁଦେବାୟ'' ମନ୍ତ୍ରର ଦୀକ୍ଷା ଦିଅନ୍ତୁ । ତା'ପରେ ମୁଁ ନିଜର କୋଠରିକୁ ଗଲି । କିଛି ସମୟ ନୀରବରେ ମନ୍ତ୍ରପାଠ କଲି ଏବଂ ଶୋଇଗଲି । ମୁଁ ଶାନ୍ତ ଓ ଗଭୀର ନିଦ୍ରରେ ଶୋଇଗଲି ।

ସକାଳୁ ଜଲ୍‌ଦି ଉଠିଲି, ଅଳକନନ୍ଦାର ବରଫପରି ଥଣ୍ଡା ପାଣିରେ ସ୍ନାନ କଲି ଓ ବାବାଜୀଙ୍କର ଆଶୀର୍ବାଦ ପାଇଁ ଗଲି । ସେ ମୋର ମସ୍ତକରେ ହାତ ରଖି ଅତ୍ୟନ୍ତ ସ୍ନେହର ସହିତ ଆଶୀର୍ବାଦ କଲେ, ''ଶ୍ରୀକୃଷ୍ଣ ତୁମକୁ ଆଧ୍ୟାତ୍ମିକ ପୂର୍ଣ୍ଣତା ପର୍ଯ୍ୟନ୍ତ ପହଞ୍ଚାନ୍ତୁ । ଜୟ ଶ୍ରୀକୃଷ୍ଣ !'' ତା'ପରେ ମୁଁ ମୋର ବନ୍ଧୁ ଦାମୋଦର ଯେ ମୋତେ ବାବାଜୀଙ୍କ ନିକଟକୁ ଆଣିଥିଲା, ତାହାଠାରୁ ବିଦାୟ ନେଲି ଏବଂ ବଦ୍ରିନାଥ ଆଡ଼କୁ ମୁହଁକରି ଚାଲିଲି ।



# ୧୪. ସନ୍ନ୍ୟାସୀ ଓ ମୋଚି

କିଛିଦିନ ପରେ ଏକ ଶୀତ ସନ୍ଧ୍ୟାରେ ମୁଁ କର୍ଣ୍ଣ ପ୍ରୟାଗରେ ପହଞ୍ଚିଲି । ସେହି କ୍ଷୁଦ୍ର ବସ୍ତିର ବାହାରେ ମୁଁ ଗୋଟିଏ ଶିବ ମନ୍ଦିର ଦେଖିଲି । ସେଥିରୁ ଜଣେ ବ୍ରାହ୍ମଣ ପୂଜାରୀ ବାହାରକୁ ଆସିଲେ । ମୁଁ ତାଙ୍କୁ ରାତ୍ରିବାସ ପାଇଁ କୌଣସି ଉପଯୁକ୍ତ ସ୍ଥାନ ବିଷୟରେ ପଚାରିଲି । ସେ ମୋତେ ମନ୍ଦିରର ପ୍ରାଙ୍ଗଣରେ ରହିଯିବାକୁ କହିଲେ । ଯାତ୍ରୀମାନଙ୍କପାଇଁ ସେଠାରେ ଗୋଟିଏ ଉତ୍ତମ କୋଠରି ଥିଲା ଓ ସେଦିନ ସେଥିରେ କେହି ନ ଥିଲେ । ଖାଲି ଏତିକି ସମସ୍ୟା ଥିଲା ଯେ, କେବଳ ଦୁଇଟି କଦଳୀ ଓ ଗୁଡ଼ ବ୍ୟତୀତ ଭୋଜନପାଇଁ ମୋତେ ଦେବାକୁ ତାଙ୍କ ପାଖରେ ଆଉ କିଛି ନ ଥିଲା ବୋଲି ସେ କହିଲେ । ସେ ସେତେବେଳେ ଗାଆଁରେ ଥିବା ତାଙ୍କ ଘରକୁ ଯାଉଥିଲେ ଓ କହିଲେ ଯେ, ସେ ସକାଳୁ ଖାଦ୍ୟ ଆଣିବେ । ତେଣୁ ସେତିକିରେ ମୋତେ କାମ ଚଳେଇବାକୁ ପଡ଼ିବ ।

ମୁଁ ପୂର୍ବରୁ ହିଁ ଭାରି ଥକି ଯାଇଥିଲି । ରାଜି ହୋଇଗଲି । ବ୍ରାହ୍ମଣ ଚାଲିଗଲେ । ମୁଁ ଲଣ୍ଠନ ଜଳାଇ ଖଟ ଉପରେ ପଡ଼ିଥିବା ଚଟେଇ ଉପରେ ବସିଗଲି । ଯେମିତି ମୁଁ କଦଳୀ ଖାଇବା ଆରମ୍ଭ କରିଛି, ବାହାରୁ ଶବ୍ଦ ଆସିଲା, ‘‘ରାମ୍ ରାମ୍ ମହାରାଜ !’’ ଦୁଆର ବାହାରେ ଜଣେ ଗେଡ଼ା ଓ ପ୍ରାୟ କଳା ରଙ୍ଗର ଜଣେ ଲୋକ ଠିଆ ହୋଇଥିଲା । ସେ ଗୋଟାଏ ଲମ୍ବା ଧଳା କୁର୍ତ୍ତା ଓ ପାଇଜାମା ପିନ୍ଧିଥିଲା । ତା’ର ମୁଣ୍ଡରେ ଥିଲା ଗୋଟାଏ ଗାନ୍ଧୀ ଟୋପି । ସେ ନମସ୍କାରର ମୁଦ୍ରାରେ ହାତ ଯୋଡ଼ିଥିଲା ।

‘‘ମହାରାଜ’’ ସେ ଧୀର ମୁଲାୟମ ସ୍ୱରରେ କହିଲା, ‘‘ମୁଁ ହେଉଛି ରାମ ପ୍ରସାଦ, ମୋଚି କାମ କରେ ଓ ଗାଆଁରେ ରହେ । କାଲି ରାତିରେ ମୋର ସ୍ତ୍ରୀ ସ୍ୱପ୍ନ ଦେଖିଲା ଯେ, ଜଣେ କେହି ମହାତ୍ମା ଆମ ଘରକୁ ଆସି ଭୋଜନ କରିବେ । ଆପଣ ତ ଜାଣନ୍ତି ଏଇଟା ବ୍ରାହ୍ମଣମାନଙ୍କ ମନ୍ଦିର । ମୁଁ ଅସ୍ପୃଶ୍ୟ, ତେଣୁ ମୋତେ ଏଠାକୁ ଆସିବାର ଅନୁମତି ନାହିଁ । କିନ୍ତୁ ମୁଁ ଆପଣଙ୍କୁ ଏଠାକୁ ଆସିବାର ଓ ବ୍ରାହ୍ମଣଙ୍କୁ ଏଠାରୁ ଯିବାର ଦେଖିଲି । ତେଣୁ ସାହସ କରି ଚାଲିଆସିଲି । ଦୟାକରି ଅସନ୍ତୁଷ୍ଟ ହୋଇ ମୋତେ ଅଭିଶାପ ଦେବେ ନାହିଁ । ମହାରାଜ ମୁଁ କ’ଣ ଆପଣଙ୍କପାଇଁ ଭୋଜନ ନେଇ ଆସିପାରିବି ? ମୋର ସ୍ତ୍ରୀ ଲୁଚି,

ଡାଲି ଓ ହାଲୁଆ ପ୍ରସ୍ତୁତ କରି ରଖି ସ୍ୱପ୍ନରେ ଦେଖିଥିବା ମହାତ୍ମାଙ୍କୁ ଅପେକ୍ଷା କରିଛି । ଆପଣଙ୍କୁ ମୋ ଘରକୁ ନେବା ଉଚିତ ହେବ ନାହିଁ । ମୁଁ କ'ଣ ଖାଦ୍ୟ ଏଠାକୁ ନେଇଆସିବି ?''

ସେ ପ୍ରାୟ କାନ୍ଦି ପକାଇବା ପରି ଅବସ୍ଥାରେ ଥିଲା । ମୁଁ ଉଠି ଠିଆ ହେଲି ଓ କହିଲି, ''ମୁଁ ତୁମ ସହିତ ତୁମ ଘରକୁ ଯିବି, ତୁମର ପତ୍ନୀ ମୋତେ ଖାଦ୍ୟ ପରଷିବେ ।'' ତାକୁ ତା'ର କାନ ଉପରେ ବିଶ୍ୱାସ ହେଲା ନାହିଁ, ସେ ମୋତେ ଗାଆଁର ଅନ୍ୟାନ୍ୟ ଅଂଶରୁ ଅଲଗା ଭାବରେ ଥିବା ହରିଜନ ବସ୍ତିକୁ ନେଇଗଲା । ମୋତେ ସେ ତା'ର ବାରଣ୍ଡାକୁ ନିର୍ଦ୍ଦେଶ କରି କହିଲା, ''ମହାରାଜ ଦୟାକରି ଏଇଠି ରହନ୍ତୁ'', ଆଉ ତରବର ହୋଇ ଘର ଭିତରକୁ ପଶିଗଲା । ଉତ୍ସାହିତ ହୋଇ ବଡ଼ ପାଟିରେ ତା' ସ୍ତ୍ରୀକୁ କହିଲା, ''ଲୀଳାବତୀ, ମହାତ୍ମାଜୀ ଆସିଗଲେ ।''

ମୋର ବାରଣ ନ ମାନି ସେ ଦି'ଜଣ ମୋର ପାଦ ଧୋଇ ଦେଲେ ଏବଂ ସ୍ୱାଦିଷ୍ଟ ଲୁଚି, ଡାଲି ଓ ଘିଅରେ ପ୍ରସ୍ତୁତ ହୋଇଥିବା ତରକାରି ପରଷିଲେ । ମୁଁ ମହା ଆନନ୍ଦରେ ଖାଉଥାଏ ଓ ସେମାନେ ଖୁସିରେ ଲୁହ ଗଡ଼ାଇ ଠିଆ ହୋଇ ରହିଥାଆନ୍ତି । ସେ ବାରମ୍ବାର ମୁଣ୍ଡ ହଲାଇ ସ୍ତ୍ରୀକୁ କହୁଥାଏ ''ଲୀଳାବତୀ, ମୋର ବିଶ୍ୱାସ ହେଉ ନାହିଁ ଯେ, ଏହା ପ୍ରକୃତରେ ଘଟୁଛି । ତୁମର ସ୍ୱପ୍ନ ସତ ହେଲା । ଆମେ ଭାରି ଭାଗ୍ୟବାନ । ଏଥର ତୁମର ନିଶ୍ଚୟ ପିଲା ହେବ । ମହାରାଜ, ଆମକୁ ପିଲା ହେବାପାଇଁ ଆଶୀର୍ବାଦ ଦିଅନ୍ତୁ ।''

ଗରମ ଓ ମିଠା ହାଲୁଆ ଖାଇବା ପରେ ମୁଁ ମନ୍ଦିରକୁ ଫେରିଆସିଲି । ରାମପ୍ରସାଦ ଟର୍ଚ୍ଚ ଧରି ମୋ ସହିତ ଆସିଲା । କ୍ଷୁଧା ଶାନ୍ତି ପରେ ମୁଁ କିଛି ସମୟ ଧ୍ୟାନରେ ବସିଲି ଓ ତା'ପରେ ଶୋଇ ପଡ଼ିଲି ।

ସକାଳେ ବ୍ରାହ୍ମଣଙ୍କ ଚିତ୍କାର ଶୁଣି ଜଲଦି ଉଠିପଡ଼ିଲି । ସେ ରାଗରେ ଲାଲ୍ ପଡ଼ିଯାଥାଆନ୍ତି । ''ତୁମେ କେମିତି ସାଧୁ ହେ ?'' ସେ ପାଟି କରୁଥା'ନ୍ତି,''ଅସ୍ପୃଶ୍ୟର ଘରେ ଭୋଜନ କରୁଛ, ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିପାରିଲ ନାହିଁ ? କେଉଁ ପ୍ରକାରର ବ୍ରହ୍ମଚାରୀ ତୁମେ, ଗୋଟାଏ ନୀଚ ଜାତି ମୋଚିର ଘରେ ବସୁଛ, ନୀଚ ଜାତିର ଅସ୍ପୃଶ୍ୟଙ୍କ ହାତ ତିଆରି ଖାଦ୍ୟ ଗ୍ରହଣ କରୁଛ ? ତୁମେ ନିଜକୁ ତ ଦୂଷିତ କରିଛ ହିଁ, ମନ୍ଦିରକୁ ମଧ୍ୟ ପ୍ରଦୂଷିତ କରିଦେଇଛ । କାହାକୁ ଡାକି ତୁମକୁ ପିଟି ପିଟି ବାହାରକୁ ଫିଙ୍ଗିଦେବା ପୂର୍ବରୁ ଏଠୁ ବାହାରିଯାଅ । ତା'ପରେ ପବିତ୍ର ନଦୀରେ ବୁଡ଼ି ନିଜକୁ ଶୁଦ୍ଧ କର । ଏବେ ମୋତେ କୋଠରିକୁ ଗଙ୍ଗାଜଳରେ ଧୋଇବାକୁ ପଡ଼ିବ, ଚାଲ ବାହାର !''

ଗୋଟାଏ ଶବ୍ଦ ମଧ୍ୟ ନ କହି ମୁଁ ମୋର ଜିନିଷପତ୍ର ଗୋଟାଇଲି ଓ ସେ ଜାଗା ଛାଡ଼ିଦେଲି । ତାଙ୍କ ସହିତ କଥାବାର୍ତ୍ତା କରି କିଛି ଲାଭ ନ ଥିଲା । ମୋର ଅନ୍ତରକୁ ଧକ୍କା

ଲାଗିଥିଲା । ଜଣେ ମଣିଷ ଅନ୍ୟ ଜଣକୁ ଅସ୍ପୃଶ୍ୟ କେମିତି କହିପାରିବ ? ଏହା କ'ଣ ମହାନ ଯୋଗୀମାନଙ୍କର ନିବାସ ସ୍ଥଳୀ ? ମୋତେ ଗୁଡ଼ାଏ ସଂଶୟ ଆସି ଘେରିଗଲା । କିନ୍ତୁ ମୁଁ ପଥ ସମ୍ପୂର୍ଣ୍ଣ କରି ନିଜେ ଉତ୍ତର ପାଇବାକୁ ପ୍ରସ୍ତୁତ ଥିଲି । ମୋର କ'ଣ କୌଣସି ମହାନ ଯୋଗୀଙ୍କ ସହିତ ସାକ୍ଷାତ ହେବ ଯେ ମୋତେ ଅଜ୍ଞାନକୁ ଦୂର କରି ପାରୁଥିବା ଜ୍ୟୋତି ଦେଖାଇବେ ?

ବଦ୍ରିନାଥ ପୂର୍ବରୁ ଶେଷ ମହତ୍ତ୍ୱପୂର୍ଣ୍ଣ ଧର୍ମସ୍ଥଳ ଥିଲା ଜୋଶୀ ମଠ । ଦିନେ ସନ୍ଧ୍ୟା ଚାରିଟା ବେଳେ ଜୋଶୀମଠରେ ପହଞ୍ଚିଲି । ବେଶ ଥଣ୍ଡା ଥିଲା । ପାଖର ଔଲିରୁ ହିମାଳୟର ବରଫଢଙ୍କା ଶିଖର ଦିଶୁଥାଏ । ମୋତେ କୁହାଗଲା ଯେ ଶଙ୍କରଙ୍କର ମଠରେ ରହିବାର ସୁବିଧା କେବଳ ବ୍ରାହ୍ମଣ ବ୍ରହ୍ମଚାରୀ ଓ ସନ୍ନ୍ୟାସୀମାନଙ୍କୁ ଉପଲବ୍ଧ ଥିଲା । ମୁଁ ପାଖର ଧର୍ମଶାଳାରେ ଗୋଟିଏ କୋଠରି ନେଲି, ତା'ପରେ ଜୋଶୀ ମଠକୁ ଗଲି ।

ମୁଁ ଶଙ୍କରାଚାର୍ଯ୍ୟଙ୍କର ଗୁମ୍ଫା, ସ୍ଫଟିକର ବିରାଟ ଲିଙ୍ଗ ଏବଂ ତଥାକଥିତ ଇଚ୍ଛାପୂରଣକାରୀ ବୃକ୍ଷ ଦେଖିଲି । ସେଠାରେ ଅନେକ ବ୍ରହ୍ମଚାରୀ ଓ ସନ୍ନ୍ୟାସୀ ରହୁଥିଲେ, ଯେଉଁମାନେ ସଂସ୍କୃତ ଓ ବେଦାନ୍ତର ଅଧ୍ୟୟନ କରୁଥିଲେ । ସେହିମାନଙ୍କ ମଧ୍ୟରୁ କେହି ଜଣେ ବିଦ୍ୟାର୍ଥୀ ଦିନେ ଶଙ୍କରାଚାର୍ଯ୍ୟ ହେବେ । ଦଣ୍ଡୀ କୁହାଯାଉଥିବା ବ୍ରାହ୍ମଣ ସନ୍ନ୍ୟାସୀମାନେ ଦଣ୍ଡ (ବାଡ଼ି) ଧରି ଚଲାବୁଲା କରୁଥିଲେ । ଯେତେବେଳେ ମୁଁ ଜାତିପ୍ରଥାର ଜଟିଳତା ଏବଂ ମଣିଷ ମନର କୁପଥଗାମୀ ହେବାର ସୀମା ବିଷୟରେ ବିଚାର କରୁଥିଲି, ଜଣେ ଦୀର୍ଘକାୟ, ଆଡ଼ମ୍ବରହୀନ, ଲଣ୍ଡିତମସ୍ତକ ସନ୍ନ୍ୟାସୀ ମୋ ଆଡ଼କୁ ଆସିଲେ ଓ କହିଲେ, ''କେଉଁଠାକୁ ଯାଉଛ ?''

''ବଦ୍ରିନାଥ, ସାର୍ ।''

''କେଉଁଠି ରହିଛ ?''

''ଧର୍ମଶାଳାରେ ସାର୍ । ମୋତେ କୁହାଯାଇଥିଲା ଅବ୍ରାହ୍ମଣମାନେ ଏଠାରେ ରହିପାରନ୍ତି ନାହିଁ ।''

: ''ତୁମେ ଜନ୍ମରୁ ବ୍ରାହ୍ମଣ ନ ହେଲେ ମଧ୍ୟ ବିଲ୍‌କୁଲ୍ ବ୍ରାହ୍ମଣପରି ।''

: ''ନା ସାର୍, ମୁଁ ବ୍ରାହ୍ମଣ ନୁହେଁ ।''

: ''ତୁମକୁ ଏହି ସବୁ ବିଷୟରେ ବହୁତ ସନ୍ଦେହ ଥିବ । ବ୍ୟକ୍ତିଗତ ଭାବରେ ମୁଁ ଜାଣେ ଏସବୁ ବାଜେ କଥା । ମୁଁ ଏକ ଦଣ୍ଡୀ ସ୍ୱାମୀ ଥିଲି, ଜଣେ ବ୍ରାହ୍ମଣ ସନ୍ନ୍ୟାସୀ । କିନ୍ତୁ ମୁଁ ନିଜର ଦଣ୍ଡ ଗଙ୍ଗାରେ ଫିଙ୍ଗି ଦେଲି । ଏବେ ମୁଁ ସ୍ୱାଧୀନ । ମୁଁ ଯେତେବେଳେ ଆସେ,

ଏଠି ମୋତେ ରହିବାକୁ ଦିଆଯାଏ କାରଣ ମହନ୍ତଜୀ ମୋତେ ଦଣ୍ଡୀ ସ୍ୱାମୀ ଥିବା ସମୟରୁ ଜାଣନ୍ତି ।

"ଦଶନାମୀ ସଂପ୍ରଦାୟର ପ୍ରବର୍ତ୍ତକ (ଏହି ମଠ ଦଶନାମୀ ସଂପ୍ରଦାୟର)– ଥରେ ନଦୀରେ ଗାଧୋଇ ସାରି ଆସୁଥିଲେ । ଏହି ସମୟରେ ଜନଜାତିର ଗୋଟାଏ ଶିକାରୀ ତାଙ୍କର ରାସ୍ତାକୁ ଆସିଗଲା, ଯାହା ସହିତ ଗୁଡ଼ାଏ ବୁଲା କୁକୁର ଥିଲେ । ମୋ ରାସ୍ତାରୁ ଘୁଞ୍ଚିଯାଅ । ମୋ ସାମ୍ନାରେ ଠିଆ ହେବାକୁ ତୁମର ସାହସ କେମିତି ହେଲା, ଆରେ ନୀଚ ଜାତିର ଅସ୍ପୃଶ୍ୟ ! ଶଙ୍କର ଚିତ୍କାର କଲେ । କାହାଣୀଟି ହେଉଛି ଯେ, ଶିକାରୀ ଯେ ପ୍ରକୃତରେ ସ୍ୱୟଂ ମହାନ ଯୋଗୀ ଶିବ ଥିଲେ, ସହସା ନିଜ ରୂପ ଧାରଣ କଲେ ଓ ଶଙ୍କରାଚାର୍ଯ୍ୟଙ୍କୁ ଜାତିର ଆଧାରରେ ମଣିଷମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି ନ କରିବାକୁ ଚେତାବନୀ ଦେଲେ ।

ସମସ୍ତଙ୍କ ମଧ୍ୟରେ ସେହି ଆତ୍ମା, ସେହି ପରମାତ୍ମା ବାସ କରନ୍ତି, ବୃଦ୍ଧ ସନ୍ନ୍ୟାସୀ ଜଣକ କହିଲେ, ଆଉ ମୋତେ, ଏପରି ସବୁ ସ୍ଥାନରେ ଯାହା ହୁଏ, ଦେଖି ଭାରି ଦୁଃଖ ଲାଗେ । କିନ୍ତୁ ପ୍ରଥାକୁ ପରିବର୍ତ୍ତନ କରିପାରିବାର କ୍ଷମତା ମୋର ନାହିଁ ।"

ମୁଁ ବେଦାନ୍ତ ବିଷୟରେ ଚର୍ଚ୍ଚାକରି ତାଙ୍କ ସହିତ ଆଉ କିଛି ସମୟ ବିତାଇଲି ଏବଂ ତା'ପରେ ଖାଇସାରି ଶୋଇବାକୁ ନିଜ କୋଠରିକୁ ଚାଲିଗଲି । ପରଦିନ ସକାଳେ ମୁଁ ପୁଣି ରାସ୍ତାରେ । ମୋତେ ପୀପଲକୋଟୀ, ଗୋବିନ୍ଦଘାଟ ଓ ପାଣ୍ଡୁକେଶ୍ୱର ଦେଇ ବଦ୍ରିନାଥ ଯିବାକୁ ଚାରିଦିନ ଲାଗିଗଲା । ରାସ୍ତାରେ କହିବାଭଳି ଘଟଣା କିଛି ଘଟି ନାହିଁ । କିନ୍ତୁ ମୋର ମନ ବ୍ୟସ୍ତ ଓ ଅଶାନ୍ତ ଥିଲା । ଯାତ୍ରାଜନିତ କଷ୍ଟ ମଧ୍ୟ ସେତେବେଳକୁ ଦେହରେ ତା'ର ପ୍ରଭାବ ପକାଇବା ଆରମ୍ଭ କରିଥାଏ । ମୁଁ ଥକି ଯାଇଥାଏ ।



# ୧୯. ସାଧକ ବଦ୍ରିନାଥରେ

ମୁଁ ବଦ୍ରିନାଥ ପହଞ୍ଚିବା ବେଳକୁ ଦି'ପହର ହୋଇ ଯାଇଥାଏ । ନରନାରାୟଣ ପର୍ବତ, ହିମାଚ୍ଛାଦିତ ନୀଳକଣ୍ଠ ଏବଂ ବଦ୍ରିନାଥ ମନ୍ଦିର ନିକଟରୁ ବେଗରେ ବହୁଥିବା ଅଳକନନ୍ଦାର ଦୃଶ୍ୟ କିଛି ସମୟ ପାଇଁ ମୋର ମାନସିକ ଓ ଶାରୀରିକ କଷ୍ଟକୁ ଧୋଇଦେଲା । ମୁଁ ଶାନ୍ତ, ସମାହିତ ଓ ଉତ୍‌ଫୁଲ୍ଲିତ ଅନୁଭବ କଲି ।

ବଦ୍ରିନାଥରେ ବୁଲିବା ପୂର୍ବରୁ ମୁଁ ମନ୍ଦିରର ମୁଖ୍ୟ ପୂଜାରୀ ରାୱଲଜୀଙ୍କୁ ସାକ୍ଷାତ କରିବାର ଚେଷ୍ଟା କରିବି ବୋଲି ଠିକଣା କଲି । ମୋତେ କୁହାଯାଇଥିଲା ଯେ, ପ୍ରାଚୀନ କାଳରୁ ହିଁ ରାୱଲଜୀ ବରାବର କେରଳର ନମ୍ବୂଦରୀ ବ୍ରାହ୍ମଣ ହୁଅନ୍ତି । ବିଖ୍ୟାତ ଶଙ୍କରାଚାର୍ଯ୍ୟଜୀ ବଦ୍ରିନାରାୟଣଙ୍କୁ ବୌଦ୍ଧପ୍ରଭାବରୁ ସ୍ୱତନ୍ତ୍ର କରି ଏହି ନିୟମ ଚାଲୁ କରିଥିଲେ ଯେ ମୁଖ୍ୟ ପୂଜାରୀ କେରଳର ନମ୍ବୂଦରୀ ବ୍ରାହ୍ମଣ ହେବେ । ମୋତେ ମାଲୟାଲମ୍ କହିବାକୁ ଇଚ୍ଛା ହେଉଥିଲା ଓ ନିଜପରି ମଲିୟାଲୀ ରାୱଲଜୀଙ୍କ ସହ କଥାବାର୍ତ୍ତା କରିବାକୁ ଉତ୍ସୁକ ଥିଲି ।

ତେଣୁ ତପ୍ତକୁଣ୍ଡର ଗରମ ଜଳରେ ସ୍ନାନ କରିବା ପରେ ମୋର ସଫାସୁତୁରା ଲୁଗା ପିନ୍ଧିନେଲି । ଏହି ତପ୍ତକୁଣ୍ଡରେ ପ୍ରାକୃତିକ ଭାବରେ ଲଗାତାର ଗରମ ପାଣି ବହୁଥାଏ । ପ୍ରବେଶ ଦ୍ୱାରରୁ ବଦ୍ରିନାରାୟଣଙ୍କୁ ପ୍ରଣାମ କଲି ଓ ସଡ଼କ ପାରି ହୋଇ ରାୱଲଜୀଙ୍କ ପାଇଁ ଉଦ୍ଦିଷ୍ଟ ବାସସ୍ଥାନ ଆଡ଼କୁ ଚାଲିଲି । ରାୱଲଜୀଙ୍କର ସହାୟକଙ୍କ ସହିତ ମଲାୟାଲୀରେ କଥାବାର୍ତ୍ତା ହେବାପରେ ଓ କିଛି ସମୟ ବାହାରର କୋଠରିରେ ଅପେକ୍ଷା କରିବାପରେ ମୋତେ ରାୱଲଜୀଙ୍କ ପାଖକୁ ନିଆଗଲା । ମୁଁ ଖବର ଦେଇ ଜାଣିଥିଲି ଯେ, ତାଙ୍କର ନାଁ କେଶବ ନମ୍ବୂଦ୍ରୀ ଥିଲା । ରାୱଲଜୀ ଭାରି ନମ୍ର ଓ ଖୁସିବାସିଆ ଲୋକ ଥିଲେ, ଗୋରା ଓ ସୁନ୍ଦର । ତାଙ୍କ ସହିତ ଯେଉଁ କଥାବାର୍ତ୍ତା, ଯାହାର ଅଧିକାଂଶ ମାଲୟାଲମରେ ହୋଇଥିଲା ତାହା କିନ୍ତୁ ଏହି ପ୍ରକାରର ଥିଲା –

"ତୁମର ନାଁ କ'ଣ" ?

‘‘ଶିବପ୍ରସାଦ’’, ମୁଁ କହିଲି । ଡରୁଥିଲି ଯେ ମୋର ଅସଲ ନାଁ କହିଲେ ଜଣେ ରକ୍ଷଣଶୀଳ ନମ୍ବୁଦ୍ରୀ ବ୍ରାହ୍ମଣଙ୍କର କ’ଣ ପ୍ରତିକ୍ରିୟା ହେବ ବୋଲି ।

‘‘ତେବେ ତୁମେ ଏତେ କମ୍ ବୟସରେ ଏଠାକୁ କାହିଁକି ଆସିଛ ?’’

ମୁଁ ନିଜର ଆଧ୍ୟାତ୍ମିକ ପିପାସା ବିଷୟରେ ତାଙ୍କୁ କହିଲି । ଏକଥା ମଧ୍ୟ କହିଲି ଯେ, ମୁଁ କେମିତି ପିଲାଦିନୁ ସାଧୁ ଏବଂ ମହାତ୍ମାମାନଙ୍କ ସହିତ ସାକ୍ଷାତ କରିଆସିଛି । ପଣସ ଗଛତଳର ସେହି ରହସ୍ୟମୟ ଯୋଗୀଙ୍କ ସହିତ ସାକ୍ଷାତ ଘଟଣା ମୁଁ ଏହି ଭୟରେ କହିଲି ନାହିଁ କାରଣ ମୋର ସନ୍ଦେହ ଥିଲା ମୋର ସେହି ଚେଷ୍ଟା ବ୍ୟର୍ଥ ହେବ । କାରଣ ପୂର୍ବପରି ମୋର ବାକ୍‌ଯନ୍ତ୍ର ମୋର ବୋଲ ମାନିବ ନାହିଁ । ମୁଁ ତାଙ୍କୁ କହିଲି କେମିତି ପିଲାଦିନରୁ ହିଁ ମୁଁ ଅତ୍ୟନ୍ତ ସମ୍ମୋହିତ ଭାବରେ ହିମାଳୟ ପ୍ରତି ଆକର୍ଷିତ ହୋଇ ଆସିଛି ଆଉ ବର୍ତ୍ତମାନ ହିମାଳୟକୁ ଆଧ୍ୟାତ୍ମିକ ଗୁରୁଙ୍କର ସନ୍ଧାନରେ ଆସିଛି । ମୁଁ ଶୁଣିଛି ଯେ ଅନେକ ମହାନ ଯୋଗୀ ହିମାଳୟରେ ଏକାନ୍ତ ବାସ କରନ୍ତି । ସେ କ’ଣ ମୋତେ କୌଣସି ଯୋଗୀଙ୍କର ସନ୍ଧାନ ଦେଇପାରିବେ ?

ରାଓ୍ୱଲଜୀ ହୃଦୟ ଖୋଲା ହସ ହସିଲେ ‘‘ବିଚରା !’’ ସେ କହିଲେ, ‘‘ତୁମେ ଜାଣିଛ କି, ବଦ୍ରିନାରାୟଣଙ୍କ ସ୍ଥାପନା ପାଇଁ ଜଣେ ମହାନ ଯୋଗୀଙ୍କୁ ଦୂରଦୂରାନ୍ତ କେରଳରୁ ଏଠାକୁ ଆସିବାକୁ ପଡ଼ିଥିଲା ? ତୁମେ ସେହି କେରଳରୁ ସେହି ବଦ୍ରିନାଥକୁ ଗୁରୁ ସନ୍ଧାନ କରିବାକୁ ଆସିଛ ? ବାଃ !’’

‘‘ଯାହା ବି ହେଉ, ମୁଁ ଏଠାରେ ସେପରି କୌଣସି ବ୍ୟକ୍ତିଙ୍କୁ ଜାଣେ ନାହିଁ । ସେମିତି ସାଧୁ–ସନ୍ନ୍ୟାସୀ ଅଛନ୍ତି, ଯେଉଁମାନେ ପର୍ଯ୍ୟଟନ ସମୟରେ ଏଠାକୁ ଆସନ୍ତି ଓ ବେଶି ଥଣ୍ଡା ପଡ଼ିଲେ ଫେରି ଚାଲିଯାଆନ୍ତି । ମୁଁ ବି ତଳକୁ ଓହ୍ଲାଇ ଜୋଶୀମଠରେ ରହେ । ବଦ୍ରିନାଥ ସମୁଦ୍ରତଳରୁ ଏଗାରହଜାର ଫୁଟ ଉଚ୍ଚରେ ଅବସ୍ଥିତ ଓ ଶୀତ ସମୟରେ ଏଠାରେ ସବୁ ବରଫ ପାଲଟିଯାଏ ।

ମୁଁ ଶୁଣିଛି ଯେ କେତେଜଣ ରହସ୍ୟମୟ ମହାତ୍ମା ବ୍ୟାସ ଗୁମ୍ଫା ଓ ମୁଚୁକୁନ୍ଦ ଗୁମ୍ଫା ପରି ସ୍ଥାନରେ ବର୍ଷ ବର୍ଷ ଧରି ରହନ୍ତି ବୋଲି । ବ୍ୟକ୍ତିଗତ ଭାବରେ ମୁଁ ଏହାକୁ ଗୁଜବ ବୋଲି ମନେକରେ । ଏହି ଗୁଜବର ଉଦ୍ଦେଶ୍ୟ ହେଉଛି ବଦ୍ରିନାଥର ଯାଦୁକରୀ ପ୍ରଭାବର ବଢ଼େଇ କରିବା ।

ଯଦି ତୁମେ ମାର୍ଗ–ଦର୍ଶନ ଚାହୁଁଛ, ତେବେ କୌଣସି ବୈଦିକ ବିଦ୍ୱାନଙ୍କ ତତ୍ତ୍ୱାବଧାନରେ ଶଙ୍କରଙ୍କର ପୁସ୍ତକଗୁଡ଼ିକ ପଢ଼ – ଉପନିଷଦ ଉପରେ ତାଙ୍କର ବ୍ୟାଖ୍ୟା, ବିବେକ ଚୂଡ଼ାମଣି ଇତ୍ୟାଦି । ସଂସ୍କୃତ ଜାଣିଛ ?’’

''ସାମାନ୍ୟ'', ମୁଁ କହିଲି, ''କିନ୍ତୁ ଆପଣ କହୁଥିବା ପୁସ୍ତକଗୁଡ଼ିକର ଇଂରେଜୀ ଅନୁବାଦ ପଢ଼ିଛି ।''

''ନା, ତାହା ପର୍ଯ୍ୟାପ୍ତ ନୁହେଁ । ଅନୁବାଦରେ ସେପରି ଧାରଣା ହେବ ନାହିଁ । ତୁମର ରହିବା ପାଇଁ ସ୍ଥାନର ଆବଶ୍ୟକ, ନୁହେଁ ? ଏଠାରେ ଆବାସ ଭାରି ସୀମିତ; କିନ୍ତୁ ମୁଁ ତୁମକୁ ଅଳକନନ୍ଦା ସେପାରିରେ, ଏଠାରୁ ବେଶି ଦୂରରେ ନୁହେଁ, ଗୋଟିଏ ଛୋଟ କୋଠରି ଦେବାର ବନ୍ଦୋବସ୍ତ କରାଇ ପାରିବି । ଦିନରେ ଦୁଇଥର ତୁମେ ଏଠାରେ ଭୋଜନ କରିପାରିବ । ମୋର ସାହାଯ୍ୟକାରୀକୁ କହିଦେବି । ଯଦି ତୁମକୁ ଭୋକ ହେଉଥାଏ, ବାହାର କୋଠରିରେ କିଛି ଖାଇପାରିବ । ବଦ୍ରିନାରାୟଣଙ୍କର କୃପାରୁ ଏଠାରେ କେତେବେଳେ ପ୍ରସାଦର ଅଭାବ ନାହିଁ ।

ମୋର ତ ତୁମକୁ ଏହି ପରାମର୍ଶ ଯେ, ତୁମେ ଏଠାରେ କିଛିଦିନ ରହ, ବୁଲାବୁଲି କର ଓ ତା'ପରେ କେରଳ ଫେରିଯାଅ । ଅଧିକ ପଢ଼, ପାରିବ ତ ଦର୍ଶନଶାସ୍ତ୍ରରେ ପିଏଚ୍.ଡି. କର, ମାତା-ପିତାଙ୍କର ଯତ୍ନ ନିଅ ଏବଂ ସୁଖୀ ଜୀବନଯାପନ କର । ବେଳେବେଳେ ତୁମେ ଏଠାକୁ ଆସି କିଛି ସମୟ ବିତାଇ ପାରିବ । ତେଣୁ କୌଣସି ହିମାଳୟର ଗୁରୁ ସନ୍ଧାନ କରି ନିଜର ସମୟ ଓ ଶକ୍ତି ନଷ୍ଟ କର ନାହିଁ । ହୁଏତ ତୁମର ମୋହଭଙ୍ଗ ହେବ; କିନ୍ତୁ ସେତେବେଳକୁ ଫେରିଯିବାପାଇଁ ଡେରି ହୋଇଯାଇଥିବ ।

ମୁଁ ତୁମକୁ ବିଶେଷ ଭାବରେ ସତର୍କ କରିଦେଉଛି; କାରଣ ଏଠାରେ କେତେକ ଭଣ୍ଡ ସନ୍ଥ ଅଛନ୍ତି, ଯେଉଁମାନେ ଶିକ୍ଷିତ ଯୁବକ ଶିଷ୍ୟମାନଙ୍କର ସନ୍ଧାନରେ ଥାଆନ୍ତି । ସେ ତୁମକୁ ଭଲ ଶିକାର ବୋଲି ଭାବିବେ । କେତେଜଣ ଗଞ୍ଜେଇଟଣା ସାଧୁ ଅଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ମାଦକଦ୍ରବ୍ୟ ପ୍ରତି ଆସକ୍ତ । ମାଦକଦ୍ରବ୍ୟ ପ୍ରଭାବରୁ ସେ ଯେଉଁ ଦୃଶ୍ୟ (vision) ଦେଖନ୍ତି, ତାହାକୁ ଅସଲ ବୋଲି ଭାବନ୍ତି । ସେମାନଙ୍କ ପ୍ରତି ସତର୍କ ରହିବ ଓ ପ୍ଲେଗ ପରି ତାଙ୍କଠାରୁ ଦୂରତ୍ୱ ରଖିବ ।

ଏବେ ତୁମେ କିଛି ଖାଇନିଅ । ତା'ପରେ ମୋର ସହାୟକ ତୁମକୁ ତୁମର କୁଟୀର ଦେଖାଇଦେବ । ମୋତେ ବଦ୍ରିନାରାୟଣଙ୍କ ସନ୍ଧ୍ୟା ଆରତିର ଆୟୋଜନ କରିବାକୁ ହେବ । ତା'ପରେ ତୁମେ ପୁଣି ଏଠାକୁ ଆସ । ଆମେ ଆହୁରି କିଛି କଥାବାର୍ତ୍ତା କରିବା । ଠିକ୍ ଅଛି ?''

ମୋତେ କେରଳର ଉତ୍ତମ ଖାଦ୍ୟ ଦିଆଗଲା ଓ ତା'ପରେ କାଲୀକମ୍ବଲୱାଲେ କୁଟୀରକୁ ନିଆଗଲା । ସେଠାରୁ ଗର୍ଜୁଥିବା ଅଳକନନ୍ଦାକୁ ଦିନ-ରାତି ଦେଖିବା ଭାରି ଆନନ୍ଦଦାୟକ ଥିଲା । ଆରତି ସମୟରେ ମୁଁ ନିୟମିତ ଭାବରେ ମନ୍ଦିରକୁ ଯାଉଥିଲି ଓ

ରାଓ୍ୱଲଜୀଙ୍କ ଘରେ ଖାଉଥିଲି । ସେ ବହୁତ ବ୍ୟସ୍ତ ରହୁଥିଲେ, ତାଙ୍କୁ ବହୁତ ଲୋକଙ୍କ ସହିତ ସାକ୍ଷାତ କରିବାକୁ ପଡୁଥିଲା । କିନ୍ତୁ ଦି-ତିନିଦିନରେ ଥରେ ସେ ମୋତେ ସମୟ ଦେଉଥିଲେ । ତାଙ୍କଠାରୁ ମୁଁ ବଦ୍ରିନାଥ ଓ ପାଖଆଖର ସ୍ଥାନଗୁଡ଼ିକ ବିଷୟ ଅନେକ କଥା ଜାଣିଲି ।

ବଦ୍ରିନାଥ କେଦାରଖଣ୍ଡରେ ପଡ଼େ । ଏହାକୁ ସେହି ସ୍ଥାନ କୁହାଯାଏ, ଯେଉଁଠାରେ ନର ଓ ନାରାୟଣ ତପସ୍ୟା କରିଥିଲେ । ମନ୍ଦିର ସେହି ନାମ ଥିବା ଦୁଇଟି ପର୍ବତ ମଧ୍ୟସ୍ଥିତ ଅଳକନନ୍ଦା ଘାଟିରେ ଅବସ୍ଥିତ । 'ତପ୍ତକୁଣ୍ଡ'ର ଗରମପାଣିର ଝରଣାଗୁଡ଼ିକ ଏବଂ ବ୍ରହ୍ମକୁଣ୍ଡ ହେଉଛି ଦୁଇଟି ପବିତ୍ର-ସ୍ନାନର ସ୍ଥାନ । କୁହାଯାଏ ଯେ, ଆଦିଶଙ୍କରାଚାର୍ଯ୍ୟ ବୁଦ୍ଧଙ୍କର ପ୍ରତିମାକୁ ଉଠାଇ ନାରାୟଣଙ୍କର ମୂଳ ପ୍ରତିମା ସ୍ଥାପନ କରି ମନ୍ଦିରର ପୁନଃସ୍ଥାପନା କରିଥିଲେ । ମୂଳ ପ୍ରତିମାକୁ ବୌଦ୍ଧମାନେ କୂଅରେ ଫିଙ୍ଗିଦେଇଥିଲେ । ଏହାର କୌଣସି ଐତିହାସିକ ପ୍ରମାଣ ଅବଶ୍ୟ ନାହିଁ; କିନ୍ତୁ ବଦ୍ରି ଗୋଟାଏ ସମୟରେ ବୌଦ୍ଧକେନ୍ଦ୍ର ହୋଇଥିବାର ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ କାରଣ ଏହା ତିବ୍ବତ ସୀମାର ନିକଟବର୍ତ୍ତୀ ଅଞ୍ଚଳ ।

ଅଳକନନ୍ଦା ତୀର ଧରି ଚାଲିଚାଲି ଛ' ସାତ କିଲୋମିଟର ଗଲେ ମାନା ଗାଆଁରେ ପହଞ୍ଚି ହେବ । ଏହି ଗାଆଁଟି ଭାରତର ଶେଷ ଗାଆଁ । ଗାଆଁରେ ତିବ୍ବତୀ ଜନଜାତିର ଲୋକ ବସବାସ କରନ୍ତି ।

ବଦ୍ରିନାଥ ମନ୍ଦିରର ଦୁଇ କିଲୋମିଟର ଉତ୍ତରରେ ଗୋଟିଏ ଶିଳା ଅଛି, ଯାହାକୁ 'ଗୌଡ଼ପାଦ' ଶିଳା କୁହାଯାଏ । ଏହା ଅଳକନନ୍ଦା ନଦୀର ବାଁପଟ ତୀରରେ ଅବସ୍ଥିତ ଏବଂ ଶୁକଦେବଙ୍କ ଶିଷ୍ୟ ମହାନ ଋଷି ଗୌଡ଼ପାଦଙ୍କର ସ୍ଥାନ । କୁହାଯାଏ ଗୌଡ଼ପାଦ ମାଣ୍ଡୁକ୍ୟ ଉପନିଷଦର କାରିକା ଏହିଠାରେ ଲେଖିଥିଲେ । ଏମିତି ବି କୁହାଯାଏ ଯେ, ଶଙ୍କରାଚାର୍ଯ୍ୟ ଗୌଡ଼ପାଦଙ୍କୁ ଭେଟିଥିଲେ ଏବଂ ଗୌଡ଼ପାଦ ତାଙ୍କୁ ତାଙ୍କର କାରିକାର ବ୍ୟାଖ୍ୟା ଲେଖିବାର କାମ ସମର୍ପିଥିଲେ ।

ଯେଉଁଠାରେ ବ୍ୟାସ ଋଷି (ଯାହାଙ୍କୁ ବାଦରାୟଣ ମଧ୍ୟ କୁହାଯାଏ, ଯେଉଁ ବ୍ୟକ୍ତି ବଦ୍ରିବୃକ୍ଷର ବନରେ ରହେ) ବେଦର ସଂକଳନ କରିଥିଲେ ତାକୁ ବ୍ୟାସଗୁମ୍ଫା କୁହାଯାଏ । ଏହି ଗୁମ୍ଫା ମାନା ଗ୍ରାମ ପାଖରେ ରହିଛି । ଶୁଣିଲି ଯେ ବହୁ ପ୍ରତିଷ୍ଠିତ ମହାତ୍ମା ଗ୍ରୀଷ୍ମକାଳରେ ବ୍ୟାସଗୁମ୍ଫାର ଆଖପାଖରେ ଥିବା ଗୁମ୍ଫାମାନଙ୍କୁ ଯିବାଆସିବା କରନ୍ତି । ଭୂଗର୍ଭର ଗୋଟିଏ ସୁଡ଼ଙ୍ଗରୁ ନିର୍ଗତ ହୋଇଥିବା ସରସ୍ୱତୀ ସହିତ ଅଳକନନ୍ଦା କେଶବପ୍ରୟାଗଠାରେ ମିଳିତ ହୁଏ । ଏହିଠାରୁ ମାନା ଗିରିପଥ ଦେଇ ତିବ୍ବତ ଯିବାର ରାସ୍ତା ଅଛି । ସମୁଦ୍ରତଳରୁ ଅଠର ହଜାର ଫୁଟ ଉଚ୍ଚରେ ଏବଂ ତା'ଠାରୁ ଉଚ୍ଚରେ ବସୁନ୍ଧରା ଜଳପ୍ରପାତ ଓ ସ୍ୱର୍ଗାରୋହିଣୀ

ରହିଛି, ଯେଉଁଠାରୁ ମହାଭାରତ ଅନୁଯାୟୀ ମହାନ୍ ରାଜା ଯୁଧିଷ୍ଠିରଙ୍କୁ ଇନ୍ଦ୍ରଙ୍କର ରଥଦ୍ୱାରା ସ୍ୱର୍ଗକୁ ନିଆଯାଇଥିଲା ।

ବଦ୍ରିନାଥ ଭାରି ରମଣୀୟ ସ୍ଥାନ ଥିଲା । ହିମାଚ୍ଛାଦିତ ପର୍ବତଶ୍ରେଣୀ ଦ୍ୱାରା ପରିବୃତ ଓ ଅଳକନନ୍ଦାର ବେଗରେ ବହୁଥିବା ଜଳଦ୍ୱାରା ଚୁମ୍ବିତ ଏହି ସ୍ଥାନ ଏକାନ୍ତ ଓ ଚିନ୍ତନ-ମନନକାମୀ ବ୍ୟକ୍ତିମାନଙ୍କ ପାଇଁ ଆଦର୍ଶ ଥିଲା । ମୁଁ 'ଥିଲା' ବୋଲି କହୁଛି କାରଣ ଦାୟିତ୍ୱହୀନ ପର୍ଯ୍ୟଟକମାନଙ୍କର ବନ୍ୟା ବର୍ତ୍ତମାନ ସବୁକିଛିକୁ ବିଗାଡ଼ି ଦେଇଛି । ଏହି ଭିଡ଼ର ପବିତ୍ରତା ବିଷୟରେ କିଛି ଧାରଣା ନାହିଁ । ଲୋଭୀ ଦୋକାନି ଓ ଅଗଣିତ ଦୋକାନ ଚାରିଆଡ଼େ ବ୍ୟାପି ଯାଇଛନ୍ତି । ସେମାନେ ଅସାବଧାନ ଯାତ୍ରୀମାନଙ୍କୁ ଅପେକ୍ଷା କରି ରହିଥାନ୍ତି । ନିକଟରେ ମୁଁ ସେଠାକୁ ଯାଇଥିବାବେଳେ ଦେଖିଲି, ଜଣେ ଲୋକ ରାତିଏପାଇଁ ଗୋଟିଏ ସୁନ୍ଦରୀ ଗଡ଼ୱାଲୀ ଯୁବତୀକୁ ବିକିବାର ଚେଷ୍ଟା କରୁଥିଲା ।

ବଦ୍ରିନାଥର ଏକ ଅବିସ୍ମରଣୀୟ ଅନୁଭବ ହେଲା ସେହିଦିନ, ଯେଉଁଦିନ ମୋର ପ୍ରବାସ ସମୟରେ ପ୍ରଥମକରି ବରଫପାତ ହେଲା । ସେ ସମୟଟି ଥିଲା ଗୋଟିଏ ପୂର୍ଣ୍ଣିମାର ରାତ୍ରି ଓ ଚାରିଆଡ଼ ଚକ୍‌ଚକ୍ କରୁଥିଲା ଯେମିତି ସବୁକିଛି ଆଉଟା ରୁପାରେ ତିଆରି ହୋଇଛି !

କିନ୍ତୁ ସେହି ସୁନ୍ଦର ଦୃଶ୍ୟ ମୋତେ ବିଶେଷ ଆଶ୍ୱସ୍ତ କଲା ନାହିଁ । ରାଓ୍ୱଲଜୀଙ୍କ ଟିପ୍ପଣୀ ଥିଲା– ମୋ ପରି ଶିକ୍ଷିତ ଲୋକକୁ ଏଠାରେ କିଛି ମିଳିବ ନାହିଁ ଓ ମୋର କେରଳ ଫେରିଯିବା ଉଚିତ । ଏହି ଉପଦେଶ ମୋର ପୂର୍ବରୁ ଆନ୍ଦୋଳିତ ମନକୁ ଆଶଙ୍କାରେ ଭରିଦେଇ ମନକୁ ଆହୁରି ଝାଙ୍କିଦେଇଥାଏ । ଦିନେ କୁଡ଼ିଆ ସାମ୍ନାରେ ବସି ମୁଁ ଠିକଣା କଲି, ମାନା ଗାଆଁକୁ ଯାଇ ସେହି ଗୁମ୍ଫାଗୁଡ଼ିକରେ କୌଣସି ମହାନ ଗୁରୁଙ୍କୁ ଖୋଜିବି ଆଉ ଯଦି ସେଠାରେ କେହି ପ୍ରକୃତ ମହାତ୍ମା ନ ମିଳିବେ, ତେବେ ଅଳକନନ୍ଦାରେ ଡେଇଁ ଆତ୍ମହତ୍ୟା କରିଦେବି । ହୁଏତ ମୋର ପୁନର୍ଜନ୍ମ ଉନ୍ନତତର ପରିସ୍ଥିତିରେ ହେବ । ମୁଁ ସନ୍ଦେହ ଓ ବିଷାଦର ଅତ୍ୟାଚାରକୁ ଆଉ ସହିପାରୁ ନ ଥିଲି ।



# ବାବାଜୀଙ୍କ ସହିତ ଭେଟ

ପରଦିନ ସକାଳେ ମୁଁ ମାନା ଗାଆଁ ଆଡ଼କୁ ବାହାରି ପଡ଼ିଲି । ଦି'ପହର ସୁଦ୍ଧା ମୁଁ ଗାଆଁରେ ପହଞ୍ଚିଗଲି । ଏହି ଗାଆଁ ହେଉଛି ତିବ୍ବତୀ ମୂଳର ମେଷପାଳକମାନଙ୍କର ବସତି । ସେମାନେ ତନ୍ତରେ ରଙ୍ଗିନ, ଜଟିଳ ଡିଜାଇନବାଲା ଉଲ୍‌ର କମ୍ବଳ ପ୍ରସ୍ତୁତ କରନ୍ତି । ସେମାନେ ସମସ୍ତେ ବୌଦ୍ଧ । ଚାଲୁ ଚାଲୁ ମୁଁ ବ୍ୟାସଗୁହା ପାଖରେ ପହଞ୍ଚିଗଲି । ସେଇଟି ମଧ୍ୟମ ଆକାରର ଗୋଟିଏ ପ୍ରାକୃତିକ ଗୁମ୍ଫା ଥିଲା ।

ମୁଁ ଆଖପାଖ ଅଞ୍ଚଳର ଅନ୍ୟ ଗୁମ୍ଫାଗୁଡ଼ିକ ବିଷୟରେ ସନ୍ଧାନ ନେବାର ଓ ପଥର ଚଢ଼ି ଆଗକୁ ଯିବାର ନିଷ୍ପତ୍ତି କଲି । ଗୋଟାଏ ସୁଡ଼ଙ୍ଗରୁ ସରସ୍ୱତୀକୁ ପ୍ରବଳ ବେଗରେ ନିଷ୍କ୍ରାନ୍ତ ହୋଇ ଅଳକନନ୍ଦା ସହିତ ମିଳିତ ହେବାର ଦେଖିଲି । ପଥୁରିଆ ରାସ୍ତାରେ ମୁଁ ଘଣ୍ଟାଏ ଧରି ଚାଲିବା ପରେ ଶେଷରେ ବସୁନ୍ଧରା ପ୍ରପାତ ପାଖରେ ପହଞ୍ଚିଲି । ମୁଁ ଭାବିଥିଲି ଯେ, ମୁଁ ସ୍ୱର୍ଗାରୋହିଣୀ ପର୍ଯ୍ୟନ୍ତ ଯିବି । ଏହାର ଉଲ୍ଲେଖ ମହାଭାରତରେ ରହିଛି । ଏଠାରୁ ଯୁଧିଷ୍ଠିରଙ୍କୁ ସିଧା ସ୍ୱର୍ଗକୁ ନିଆଯାଇଥିଲା । ବୋଧହୁଏ ସେଠାରେ ଅସାଧାରଣ ଆତ୍ମାମାନେ ବାସ କରୁଥିବେ ।

ସେତିକିବେଳେ ମୋର ବୋଧ ହେଲା ଯେ ଏବେ ଶୀଘ୍ର ଅନ୍ଧାର ହୋଇଯିବ । ପବନ ତ ପୂର୍ବରୁ ହିଁ ବରଫ ପରି ଥଣ୍ଡା ଥିଲା । ସେଠାରେ ଆଖପାଖରେ କେହି ଦିଶୁ ନ ଥିଲେ । ମୋତେ ଭାରି ଭୋକ ହେଉଥାଏ । ମୁଁ ଅତିକମ୍‌ରେ ମାନା ଗାଆଁ ପର୍ଯ୍ୟନ୍ତ ଫେରିଆସିବାକୁ ଠିକଣା କଲି । ମୋତେ ଏମିତି ଜଣେ ଦୟାଳୁ ଲୋକଙ୍କର ସନ୍ଧାନ କରିବାକୁ ପଡ଼ିବ, ଯେ ଅନ୍ତତଃ ମୋତେ ରାତିକପାଇଁ ଶୋଇବାର ସ୍ଥାନ ଦେବେ ଓ ଯଦି ସମ୍ଭବ ହୁଏ, ତେବେ କିଛି ଖାଦ୍ୟ ଦେବେ । ମୁଁ ଅନିଶ୍ଚୟତା, ଭୟ, ଭୋକ ଏବଂ ଅସଫଳତାର ଏକ ଗଭୀର ଭାବନାରେ ବୁଡ଼ି ରହିଗଲି । ମୁଁ ଯେଉଁ ଯାତ୍ରା ଏକ ସନ୍ଧାନର ଅଭିଯାନ ଭାବରେ ଆରମ୍ଭ କରିଥିଲି, ସେଥିରେ କେବଳ ଅସଫଳତା ହିଁ ମିଳିଥିଲା । ମୋତେ ଲାଗିବାକୁ ଆରମ୍ଭ କଲା ଯେ, ମହାତ୍ମାମାନେ ଖାଲି କଥାକାରମାନଙ୍କର କଳ୍ପନା, ଯାହାକୁ ତଥ୍ୟାତ୍ମକ

ବୋଲି ଦାବି କରାଯାଏ । ଏମିତି ବଞ୍ଚିବାଠାରୁ ମରିଯିବା ଭଲ, ଏହିପରି ଚିନ୍ତାକରି ମୁଁ ସେହିଠାରେ ଅଳକନନ୍ଦା ନଦୀରେ ଡେଇଁପଡ଼ିବାର ନିଷ୍ପତ୍ତି କଲି ।

ସେତେବେଳକୁ ସେଠାରେ ପୂରା ଅନ୍ଧାର ହୋଇଯାଇଥାଏ ଓ ବରଫ ପରି ଥଣ୍ଡା ପବନ ଗର୍ଜୁଥାଏ । ଚାଲି ଚାଲି ମୁଁ ପୁଣି ବ୍ୟାସଗୁହା ପର୍ଯ୍ୟନ୍ତ ପହଞ୍ଚିଗଲି । ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ଯେତେବେଳେ ଦେଖିଲି ଯେ ଗୁମ୍ଫାର ମୁହଁରେ ଗୋଟିଏ ଧୁନି ଜଳୁଛି । ଜୋର୍‌ରେ ଜଳୁଥିବା କାଠଖଣ୍ଡଗୁଡ଼ିକରୁ ବାହାରି ଶିଖାଗୁଡ଼ିକ ଯେପରି ନୃତ୍ୟ କରୁଥାଆନ୍ତି । ସେହି ବରଫ ପରି ଥଣ୍ଡା ପରିବେଶରୁ ଧୁନିର ଉଷ୍ଣତା ମୋତେ ଯେପରି ଭିତରକୁ ଯିବାକୁ ଆମନ୍ତ୍ରଣ କରୁଥିଲା । ମୁଁ ଆଶ୍ଚର୍ଯ୍ୟ ହୋଇ କିଏ ଧୁନି ଜଳାଇଥିବ ଭାବି ଭାବି ଭିତରକୁ ପଶିଲି । ବୋଧହୁଏ ଜଣେ ମେଣ୍ଢାଜଗାଳି, ନା ମୁଁ ସତକୁସତ ଶେଷରେ ଜଣେ ଯୋଗୀଙ୍କର ସାକ୍ଷାତ ପାଇବାକୁ ଯାଉଛି ?

ଗୁମ୍ଫା ଭିତରୁ ଗୋଟିଏ ମଧୁର ସ୍ୱର ଭାସିଆସିଲା । ଏହା କ'ଣ କୌଣସି ପରିଚିତ ସ୍ୱର ଥିଲା ? ଏହି ସ୍ୱର କ'ଣ ମୋର ମନର ଗହ୍ୱରରେ ବର୍ଷ ବର୍ଷ ଧରି ସଞ୍ଚିତ ହୋଇ ରହିଥିଲା ଆଉ ଏବେ ଶୁଣାଗଲା ? କମ୍ପି କମ୍ପି ମୁଁ ଗୁମ୍ଫା ଆଡ଼କୁ ଶୀଘ୍ର ଶୀଘ୍ର ଚାଲିଲି । ଭିତରୁ ଜଣେ ଲମ୍ବା ବାଳ ରଖିଥିବା, ନିର୍ବସ୍ତ୍ର, ଡେଙ୍ଗା ବ୍ୟକ୍ତି ବାହାରିଲେ । "ଆସ ।" ସ୍ପଷ୍ଟ ହିନ୍ଦୁସ୍ତାନୀରେ ଶୁଣାଗଲା । "ମଧୁ, ତୁମେ କୁଆଡ଼େ ଇତସ୍ତତଃ ଘୂରିବୁଲୁଛ ?"

"ମଧୁ ?" ମୁଁ କ'ଣ ଏଇ ନାଁ ପୂର୍ବରୁ ବିସ୍ମୃତ କୌଣସି ସ୍ୱପ୍ନରେ ଶୁଣିଥିଲି ? ଏହି ବ୍ୟକ୍ତି କିଏ ?"

"ମୁ ମଧୁ ନୁହେଁ, ମୋର ନାଁ ମମ୍‌........"

"ହେଲା ହେଲା, ମୁଁ ଜାଣେ, ଭାଞ୍ଜୟୁରର ପଣସଗଛ ତଳୁ ସୁଦୂର ଉତ୍ତରରେ ବ୍ୟାସଗୁମ୍ଫା ପର୍ଯ୍ୟନ୍ତ । ଆସ, ଏଠାରେ ବସ, ନିଆଁ ପାଖରେ । ଆଗେ ମୁଁ ତୁମ ପାଇଁ କିଛି ଖାଦ୍ୟ ଆଣେ । ତା'ପରେ ତୁମେ ଶୋଇପାର, ଆମେ କାଲି କଥାବାର୍ତ୍ତା ହେବା ।" ନିଜର ଡାହାଣ ହାତରେ ସେ ବଡ଼ ସ୍ନେହରେ ମୋର ବାଁ କାନ୍ଧ ଥାପୁଡ଼େଇଲେ । "ଏଠି ବସ ।"

ସେହି କ୍ଷଣକ ଭିତରେ ମୁଁ ଜାଣିଗଲି ଯେ, ଏ ହେଉଛନ୍ତି ସେହି ବ୍ୟକ୍ତି, ଯାହାକୁ ମୁଁ ନଅବର୍ଷ ବୟସରେ ପଣସଗଛ ତଳେ ଭେଟିଥିଲି । ହଁ, ସେ ହିଁ । ସ୍ୱର ମଧ୍ୟ ଏକାବେଳକେ ସେହିପରି । ମୋତେ ମୋର ଗୁରୁ ମିଳିଗଲେ । ମୋର ପିତା, ମୋର ମାତା, ମୋର

ଶିକ୍ଷକ ସବୁକୁ ମିଶେଇ ଏକ । ଆଗକୁ ଏମିତି ହେଲା ଯେ, ସାଢ଼େ ତିନିବର୍ଷ ପର୍ଯ୍ୟନ୍ତ ମୁଁ ତାଙ୍କର ସଙ୍ଗ ଛାଡ଼ି ନ ଥିଲି ।

ସେ ଗୁମ୍ଫାର ଭିତରକୁ ଗଲେ ଓ ନିଜର କମଣ୍ଡଳୁ ନେଇ ବାହାରକୁ ଆସିଲେ । ସେଥିରେ ଗହମର ଦୁଇଟି ତାଜା ରୁଟି ଏବଂ ଗରମ ଆଳୁ ତରକାରି ଥିଲା । ତାକୁ ମୋ ସାମ୍ନାରେ ରଖିଦେଇ କହିଲେ, ‘‘ଖାଅ’’ । ମୁଁ ନଇଁପଡ଼ି ତାଙ୍କର ପାଦ ଛୁଇଁଲି । ‘‘ମୁଁ ଆପଣଙ୍କୁ ‘ବାବାଜୀ’ ଡାକିବି’’, ମୁଁ କହିଲି । ‘‘ମୁଁ ଆଉ କୌଣସି ବାବାଜୀଙ୍କୁ ଜାଣେ ନାହିଁ । ଆପଣ ହେଉଛନ୍ତି ମୋର ବାବା, ପିତା । ମୁଁ ସାରା ଜୀବନପାଇଁ ଆପଣଙ୍କ ନିକଟରେ ଋଣୀ । ଆପଣ ମୋତେ ଖୋଜିନେଲେ ଯେତେବେଳେ ମୁଁ ନିରାଶାର ଅନ୍ତିମ ସୋପାନରେ ଥିଲି ।’’ ଲୁହ ଭରିଯାଇ ମୋର ଦୃଷ୍ଟି ଝାପ୍‌ସା ହୋଇଗଲା ।

‘‘ସେସବୁ ଠିକ୍ ଅଛି । ତୁମେ ବର୍ତ୍ତମାନ ବସି ଖାଅ ।’’ ସେ ସ୍ନେହର ସହିତ କହିଲେ ।

ଚାରିପଟେ ହିମାଳୟ ପର୍ବତଶ୍ରେଣୀ ଘେରିରହିଥିବା ସେହି ଜାଗାରେ ନିଆଁ ସାମ୍ନାରେ ବସି ମୁଁ ବଡ଼ ତୃପ୍ତିର ସହିତ ଭୋଜନ କଲି ନିଜର ଗୁରୁଙ୍କର ପ୍ରେମପୂର୍ଣ୍ଣ ତତ୍ତ୍ୱାବଧାନରେ । ସେ ପୁଣି ଭିତରକୁ ଗଲେ ଓ ଏଥର ଗୋଟିଏ ଜଲେବି ନେଇ ଆସିଲେ । ମୁଁ ଖାଇସାରିବା ପର୍ଯ୍ୟନ୍ତ ସେ ସେଇଟିକୁ ହାତରେ ଧରିଥାଆନ୍ତି । ଖାଇସାରିବା ପରେ ମୁଁ ଗୁରୁଜୀ ଦେଇଥିବା ଅଳକନନ୍ଦାର ପରିଷ୍କାର ଓ ଶୁଦ୍ଧ ଜଳ ପାନ କଲି । ମୋତେ ସାଙ୍ଗେ ସାଙ୍ଗେ ନିଦ ମାଡ଼ିବସିଲା ପରି ଲାଗିଲା । ଲାଗୁଥାଏ ଯେମିତି ମୁଁ ଯୁଗ ଯୁଗ ଧରି ଶୋଇ ନାହିଁ !

ବାବାଜୀ ମୋତେ ଗୁମ୍ଫାର ଭିତରକୁ ନେଇଗଲେ । ନିଆଁର ଝାପ୍‌ସା ଆଲୁଅରେ ଦେଖିଲି ଶୁଖିଲା ପତ୍ର ଓ ନଡ଼ା ଉପରେ କମ୍ବଳ ବିଛେଇ ସେ ମୋ ପାଇଁ ବିଛଣା ପ୍ରସ୍ତୁତ କରିଦେଇଛନ୍ତି । ମୃଦୁ ପବନ ନିଆଁର ଉଷ୍ଣତା ଗୁମ୍ଫା ଭିତରକୁ ବହିଆଣୁଥାଏ, ଅନ୍ତତଃ ମୋତେ ସେମିତି ଲାଗୁଥାଏ । ମୁଁ କ୍ଷଣକ ଭିତରେ ଶୋଇଗଲି, ମୁଁ ଆଶ୍ୱସ୍ତ ଥିଲି ଯେ ବାବାଜୀ ମୋର ଦେଖାଶୁଣା କରିବେ । ନିଦରେ ହଜିଯିବା ପୂର୍ବର ଅନ୍ତିମ ଦୃଶ୍ୟ ଥିଲା – ଚଉଡା ହୋଇଥିବା କମ୍ବଳ ଉପରେ ନିଆଁ ଆଡ଼କୁ ମୁହଁକରି ଚକାପକାଇ ସ୍ଥିର ଏବଂ ସିଧା ହୋଇ ବସିଛନ୍ତି ବାବାଜୀ ।



# 21. ମୋର ପ୍ରଥମ ଦୀକ୍ଷା

ଏହା ମୋର ଜଣେ ସ୍ନେହମୟ ଓ ତତ୍ତ୍ୱାବଧାନକାରୀ ମାର୍ଗଦର୍ଶକଙ୍କ ସହିତ ଏକ ନୂଆ ଜୀବନ ଏବଂ ଏକ ନୂଆ ଯାତ୍ରାର ଆରମ୍ଭ ଥିଲା ।

ପରଦିନ ସକାଳେ ବାବାଜୀ ମୋତେ ଭୋର ହେବାର କେତେ ଘଣ୍ଟା ପୂର୍ବରୁ ଉଠାଇଦେଲେ । ‘‘ବ୍ରାହ୍ମ ମୁହୂର୍ତ୍ତ’’, ବାବାଜୀ କହିଲେ, ‘‘ଏଇ ସମୟରେ ବାୟୁ ଧ୍ୟାନ ପାଇଁ ସ୍ୱଚ୍ଛ ଥାଏ । ତୁମକୁ ଅଳକନନ୍ଦାର ଜମି ବରଫ ହେବାକୁ ଥିବା ପାଣିରେ ବୁଡ଼ ପକାଇବାର ମୂର୍ଖତା କରିବା ଦରକାର ନାହିଁ । ଏମିତି କଲେ ହୁଏତ ତୁମକୁ ନିମୋନିଆ ହୋଇଯିବ ଆଉ ଏଠି ପାଖଆଖରେ କୌଣସି ଭଲ ଡାକ୍ତରଖାନା ମଧ୍ୟ ନାହିଁ । ମୋର କମଣ୍ଡଳୁରୁ ପାଣି ନିଅ ଓ ନିଜର ମୁହଁ ହାତ ସଫା କରିନିଅ । ଦାନ୍ତ ଘଷିବା ବ୍ରସ୍ ଅଛି ?’’

‘‘ହଁ, ବାବାଜୀ ।’’

‘‘ତେବେ ତାକୁ ବାହାର କର ଓ ଧୁନିରୁ କିଛି ପାଉଁଶ ନେଇ ଘଷିବାପାଇଁ ବ୍ୟବହାର କର ।’’

ନିଆଁ ଏବେବି ଜୋର୍‌ରେ ଜଳୁଥାଏ । ମୁଁ ଭାବିଲି ବାବାଜୀ କ’ଣ ସାରା ରାତି ଅନିଦ୍ରା ରହି ସେଥିରେ କାଠଖଣ୍ଡ ପକାଉଥିଲେ ? ମୁଁ ପ୍ରଥମଥରପାଇଁ ଏକଥା ମଧ୍ୟ ପ୍ରତ୍ୟକ୍ଷ କଲି ଯେ, ସେ କେତେ ବାସ୍ତବବାଦୀ ଥିଲେ ଏବଂ ଯୁଗ ଯୁଗ ଧରି ଚଳିଆସୁଥିବା ପୁରୁଣା ବିଚାରଧାରା (ଯେପରିକି ଧ୍ୟାନରେ ବସିବା ପୂର୍ବରୁ ସ୍ନାନ କରିବାକୁ ହିଁ ହେବ ତା’ର ପରିଣାମ ସ୍ୱରୂପ ମୃତ୍ୟୁକୁ ଆହ୍ୱାନ କରିବା ହେଲେ ମଧ୍ୟ) ଦ୍ୱାରା ପ୍ରଭାବିତ ନ ଥିଲେ । ଜେରୁଜେଲମର ଗଳିରେ ଘୂରିବୁଲୁଥିବା ଜଣେ ମହାନ ଆଧ୍ୟାତ୍ମିକ ଗୁରୁ, ଯାହାଙ୍କ ପାଖରେ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନ ଥିଲା, ତାଙ୍କର ବାଣୀ ମୋର ମନେପଡ଼ିଗଲା– ‘‘ନିୟମ ମଣିଷ ପାଇଁ ତିଆରି ହୋଇଛି, ମଣିଷ ନିୟମପାଇଁ ନୁହେଁ ।’’

ଯେତେବେଳେ ମୁଁ ମୁହଁ ଧୋଇ ଫେରିଆସିଲି, ସେ ମୋତେ ଗୋଟିଏ ଚଉଡା ହୋଇଥିବା କମ୍ବଳ ଦେଇ କହିଲେ, ‘‘ଆଜିଠାରୁ ଏହି କମ୍ବଳ ବ୍ୟବହାର କର, ଅନ୍ୟ କେହି ଯେପରି ଏହାକୁ ବ୍ୟବହାର ନ କରେ । ଏହା କେବଳ ତୁମର ।’’

ତା'ପରେ ସେ ମୋର ଭଙ୍ଗୀକୁ ସୁଧାରି କେମିତି ଠିକ୍ ଭାବରେ ପଦ୍ମାସନରେ ବସନ୍ତି ସେକଥା ଶିଖାଇଲେ ଏବଂ କ୍ରିୟା-ଯୋଗର ରହସ୍ୟର ଦୀକ୍ଷା ଦେଲେ । ଏହି କ୍ରିୟା-ଯୋଗର କୌଶଳ ତାଙ୍କୁ ତାଙ୍କର ଗୁରୁ ମହାବତାର ବାବାଜୀ ଶିଖାଇଥିଲେ ବୋଲି ଶୁଣି ମୁଁ ରୋମାଞ୍ଚିତ ହୋଇଉଠିଲି । ମୁଁ ଯେତେବେଳେ ଧ୍ୟାନ କରିବା ଆରମ୍ଭ କଲି, ସେ ହାଲ୍କା ଭାବରେ ମୋର ହୃଦୟ ସ୍ପର୍ଶ କଲେ ଓ ତା'ପରେ ମୋର ମସ୍ତକ । ମୁଁ ଗଭୀର ଓ ଆନନ୍ଦଦାୟୀ ଧ୍ୟାନରେ ବୁଡ଼ିଗଲି । ମୋର ମସ୍ତିଷ୍କ ସେହିସବୁ ପରିସରକୁ ଯାତ୍ରା କଲା ଯାହା ବିଷୟରେ ମୁଁ ପୂର୍ବରୁ କଳ୍ପନା ମଧ୍ୟ କରି ନ ଥିଲି ଏବଂ ମୋର ଚେତନାର ଅମାପ ବିସ୍ତାର ହେଲା । ମୁଁ ବାବାଜୀଙ୍କର ଏହି କଥା ଶୁଣି ଜାଗିଉଠିଲି– ''ଫେରିଆସ, ଫେରିଆସ, ଥରକରେ ହିଁ ସବୁ ନୁହେଁ, ବାପା !''

ସୂର୍ଯ୍ୟ ସାଙ୍ଗେ ସାଙ୍ଗେ ଉଇଁଥାଏ । ମୁଁ ଦେଖିଲି ମୋ ସାମ୍ନାର ଦୃଶ୍ୟ ଅବିଶ୍ୱସନୀୟ ଭାବରେ ସୁନ୍ଦର ଥିଲା – ଦୂରରେ ଥିବା ବରଫଢଙ୍କା ପର୍ବତଶିଖର, ନଦୀର ଅନବରତ ସଙ୍ଗୀତ ଏବଂ ନରମ ଅନୁଜ୍ଜ୍ୱଳ କିରଣ । ବାବାଜୀ ସ୍ନେହରେ ମୃଦୁହାସ୍ୟ କରୁଥାଆନ୍ତି । ମୁଁ ପ୍ରଥମକରି ସ୍ପଷ୍ଟଭାବରେ ତାଙ୍କର ଆକୃତି ଦେଖିଲି । ସେ ଖୁବ୍ ଗୋରା ଥିଲେ । ପ୍ରାୟ ୟୁରୋପୀୟମାନଙ୍କ ପରି, ଡେଙ୍ଗା, ହାଲ୍କା ବାଦାମୀ ରଙ୍ଗର ଆଖି ଏବଂ ଗାଢ଼ ବାଦାମୀ ରଙ୍ଗର ଗହଳା ଲମ୍ବା ବାଳ, ଯାହାକୁ ସେ ଖୋଷା ପରି ମୁଣ୍ଡ ଉପରେ ଗୁଡ଼ାଇ ରଖିଥିଲେ । ତାଙ୍କର ଚେହେରା ଅନେକଟା ନେପାଳୀମାନଙ୍କ ପରି ଥିଲା ଏବଂ ନିଶଦାଢ଼ି ବହୁତ କମ୍ ଥିଲା – ଅତି ହାଲ୍କା ଦାଢ଼ି ଓ ନିଶ । ତାଙ୍କର କାନର ଛିଦ୍ରରେ ସେ ବଡ଼ ବଡ଼ ତମ୍ବାର ବଳା ପିନ୍ଧିଥିଲେ । ତାଙ୍କର ଗଳାରେ ବଡ଼ ବଡ଼ ରୁଦ୍ରାକ୍ଷର ମାଳ ଥିଲା ।

ସେହି କମ୍ପ ସୃଷ୍ଟିକାରୀ ଥଣ୍ଡାରେ ମଧ୍ୟ ତାଙ୍କର ହୃଷ୍ଟପୁଷ୍ଟ ଶରୀର ନଗ୍ନ ଥିଲା । ଖାଲି ଅଣ୍ଟାରେ ଗୋଟାଏ ମୋଟା ସୂତା ତିଆରି କପଡ଼ା ଗୁଡ଼ା ହୋଇଥିଲା, ଯାହା ଆଣ୍ଠୁ ଉପରକୁ ଥିଲା । ସେ ନଗ୍ନପାଦ ଥିଲେ ଓ ତାଙ୍କର ପୁଞ୍ଜି ଥିଲା ଗୋଟିଏ କାଷ୍ଠନିର୍ମିତ କଳା କମଣ୍ଡଳୁ, ଧ୍ୟାନରେ ବସିବାପାଇଁ କମ୍ବଳ ଓ ଗୋଟିଏ କୁରାଢ଼ି ଯାହାକୁ ସେ ପିଠିରେ ବାନ୍ଧି ଚାଲୁଥିଲେ ।

''ଏହି ଜାଗା ଜଣାଶୁଣା ପରି ଲାଗୁଛି'', ମୁଁ କହିଲି, ''ଯେମିତି ମୁଁ ଆଗରୁ ଏଠାକୁ ଆସିଛି । ଆପଣ କ'ଣ ସେତେବେଳେ ମୋ ସହିତ ଥିଲେ ?'' ''ମୁଁ ନୁହେଁ କିନ୍ତୁ ମୋର ମହାନ ଗୁରୁ ଥିଲେ । ତାଙ୍କ ବିଷୟରେ ଅନେକ କଥା ପ୍ରଚଳିତ ଅଛି । ସେ ହେଉଛନ୍ତି ଶ୍ରୀଗୁରୁ ବାବାଜୀ, ଯେ ସେତେବେଳେ ତୁମର ଗୁରୁ ଥିଲେ । ମୁଁ ତାଙ୍କର ଶିଷ୍ୟମାନଙ୍କ ମଧ୍ୟରୁ ଜଣେ ଏବଂ ମୋର ନାଁ ମହେଶ୍ୱର ନାଥ । ଆସନ୍ତା ସମୟରେ

ଲୋକମାନେ ତୁମକୁ 'ଏମ୍' ନାମରେ ଡାକିବେ ଯାହା ତୁମକୁ ବରାବର ମୋ କଥା ମନେପକାଇଦେବ । ଯେତେବେଳ ପର୍ଯ୍ୟନ୍ତ ତୁମେ ପ୍ରସ୍ତୁତ ହୋଇ ନାହଁ, ସେତେବେଳ ପର୍ଯ୍ୟନ୍ତ ଶ୍ରୀଗୁରୁ ମୋତେ ତୁମର ଦାୟିତ୍ୱ ଦେଇଛନ୍ତି ।''

''ମୁଁ କ'ଣ ମହାନ ଶ୍ରୀଗୁରୁ ବାବାଜୀଙ୍କୁ ଦେଖିପାରିବି ?'' ମୁଁ ଉତ୍ସୁକତାର ସହିତ ପ୍ରଶ୍ନ କଲି । ମୁଁ ମୋର ଉତ୍ତେଜନାକୁ ଲୁଚାଇପାରୁ ନ ଥିଲି । ''ଦରକାର ପଡ଼ିଲେ'', ବାବାଜୀ କହିଲେ । ''କିନ୍ତୁ ମନେରଖ, ଧ୍ୟାନ ଓ କ୍ରିୟାର ଅଭ୍ୟାସ ଶ୍ରୀଗୁରୁ ବାବାଜୀଙ୍କ ସହିତ ସାକ୍ଷାତପାଇଁ କରାଯାଏ ନାହିଁ । ବରଂ ଚେତନାର ଉଚ୍ଚତର ସ୍ଥିତି ପାଇବାପାଇଁ କରାଯାଏ । ତାହାଦ୍ୱାରା ଜଣାଯାଏ ଏବଂ ଅନୁଭବ କରାଯାଏ ଯେ ବାବାଜୀଙ୍କର ଶିକ୍ଷାର ଉଦ୍ଦେଶ୍ୟ କ'ଣ । ଆମକୁ ପରେ ସେକଥା ଜଣାପଡ଼ିବ ।

ଏହି ଭିତରେ କାମ ଆରମ୍ଭ କରାଯାଉ । ମୁଁ ଏହି ବ୍ୟାସଗୁହାକୁ ବେଶି ଆସେ ନାହିଁ । କାଲି ମୁଁ ଖାଲି ତୁମକୁ ନେବାକୁ ଏଠାକୁ ଆସିଥିଲି । ବଦ୍ରିରେ, ସାଧାରଣତଃ ମୁଁ ମନ୍ଦିର ସେପଟେ ନାରାୟଣ ପର୍ବତ ପଛରେ ଚରଣପାଦୁକା ନିକଟରେ ଥିବା ଏକ ଗୁମ୍ଫାରେ ରହେ । ସେଠାରେ ପହଞ୍ଚିବା ପରେ ତୁମର ପାଠ ଆରମ୍ଭ ହେବ, ଚାଲ ।''

ଆମେ ବାହାରିପଡ଼ିଲୁ – ଯୁବକ ଶିଷ୍ୟ ଆଉ ଗୁରୁ, ଯେ ସ୍ୱୟଂ ପୌରାଣିକ ଦକ୍ଷିଣାମୂର୍ତ୍ତି ପରି ଦିଶୁଥା'ନ୍ତି ଓ ନିଜେ ଜଣେ ଯୁବକ ପରି ଦିଶୁଥା'ନ୍ତି । ମୁଁ ଦେଖିଲି, ବାବାଜୀ କେତେ ଜୋର୍‌ରେ ଚାଲୁଛନ୍ତି । ତାଙ୍କ ସହିତ ଚାଲିବାପାଇଁ ମୋତେ ବହୁତ ଚେଷ୍ଟା କରିବାକୁ ପଡୁଥାଏ । ସେ ମଝିରେ ମଝିରେ ରହିଯାଇ ମୋତେ ବିଶ୍ରାମ କରିବାକୁ ଦେଉଥିଲେ ଏବଂ ଉତ୍ସାହିତ କରୁଥିଲେ । ''ନବଯୁବକ'' ସେ କହୁଥିଲେ ''ଟିକିଏ ଆହୁରି ଜଲ୍‌ଦି ଚାଲ । ତୁମ ଭିତରେ ତ ଶକ୍ତି ରହିଛି । ଠିକ୍ ଅଛି ?''

ଆମେ ବଦ୍ରିନାଥରେ ପହଞ୍ଚିଲୁ । ମନ୍ଦିରର ପଛପଟର ରାସ୍ତା ଧରିଲୁ ଏବଂ ଉପରକୁ ଚଢ଼ିଚାଲିଲୁ, ଯେପର୍ଯ୍ୟନ୍ତ ଚରଣପାଦୁକାରେ ନ ପହଞ୍ଚିଲୁ । ଜୈନମାନେ ଏହାକୁ ଏକ ପବିତ୍ର ସ୍ଥାନ ବୋଲି ଭାବନ୍ତି । ଏଠାକୁ ସେମାନଙ୍କର ଜଣେ ତୀର୍ଥଙ୍କର ଆସିଥିଲେ । ଏହି ସ୍ଥାନ ପରେ ଏକ ଘାସପଡ଼ିଆ ଥିଲା ଏବଂ ଦି'ପଟେ ଗୁମ୍ଫା ଥିବା ଏକ ସରୁ ଘାଟି । କେତେଜଣ ଯୋଗୀ କେତେଟା ଗୁମ୍ଫାରେ ରହୁଥିଲେ । ସେମାନେ ବାବାଜୀଙ୍କୁ ପ୍ରଣାମ କଲେ ଓ ଆମେ ଆହୁରି ଉପରକୁ ଯାଇ ଗୋଟାଏ ବଡ଼ ଗୁମ୍ଫା ସାମ୍ନାରେ ଅଟକିଲୁ । ଗୁମ୍ଫା ମୁହଁରେ ଆବଡ଼ାଖାବଡ଼ା ପଥର ତିଆରି ଗୋଟିଏ ଅଗ୍ନିକୁଣ୍ଡ ସେତେବେଳେ ବି ଧୂମାୟିତ ଥିଲା ।

‘‘କିଛି ସମୟ ପାଇଁ ଏହା ଆମର ବାସସ୍ଥାନ ହେବ’’, ବାବାଜୀ କହିଲେ, ‘‘ଭିତରକୁ ଯାଇ ନିଜର କମ୍ବଳ ଓ ଝୁଲି ରଖିଦିଅ । ଭିତରେ ଗୋଟାଏ ମୋଟା ଉଲ୍‌ର ପୋଷାକ ଥିବ । ସେଇଟାକୁ ପିନ୍ଧିନେବ । ମୁଁ ତୁମକୁ ବେମାର ଦେଖିବାକୁ ଚାହେଁ ନାହିଁ । ନିଜର ମଥାକୁ ମଧ୍ୟ ଠିକ୍‌ଭାବରେ ଢାଙ୍କିନେବ । ବେତର ଝୁଡ଼ିରେ ନୀଳ ରଙ୍ଗର ପଗଡ଼ି ଥିବ, ସେଥିରେ ନିଜର କାନ ଗୁଡ଼େଇଦେବ । ତା’ପରେ ବିଶ୍ରାମ କର । ଆମର ପ୍ରଥମ ପାଠ ସନ୍ଧ୍ୟାରୁ ଆରମ୍ଭ ହେବ ।’’

ଯଦିଓ ଔପଚାରିକ ପାଠ ଏବଂ ଚର୍ଚ୍ଚା ପାଇଁ ସମୟ ନିୟମିତ ଥିଲା, ବାବାଜୀଙ୍କ ସହିତ ରହିବାଟା ହିଁ ଶିଖିବାର ଏକ ସ୍ୱତନ୍ତ୍ର ପ୍ରକ୍ରିୟା ଥିଲା । ମୁଁ ଗୁମ୍ଫାକୁ ଝଡ଼ାପୋଛା କରିବା ଶିଖିଲି, ପାଖ ଝରଣାରୁ ପାଣି ଭରି ଆଣିବା ଶିଖିଲି (ଏହି ପାଣି ବେଳେବେଳେ ବରଫର ଖଣ୍ଡରେ ଭରିହୋଇ ରହିଥାଏ), କାଠ ଗୋଟାଇବା ଶିଖିଲି (ଏଥିପାଇଁ କୁରାଢ଼ି ଚଲେଇବା ଶିଖିବାକୁ ପଡ଼ିଲା), ମନ୍ଦିର ପାଖରେ ଥିବା ବଜାରର ଦୋକାନୀମାନଙ୍କଠାରୁ ବା ଅନ୍ୟ ସ୍ଥାନରୁ ପରିବାପତ୍ର, ଗହମ ଏବଂ ଅନ୍ୟ ଜିନିଷ ମାଗିନେବା ଶିଖିଲି ଏବଂ ଗୁଜ୍ଜରମାନଙ୍କଠାରୁ ମଇଁଷି କ୍ଷୀର ମାଗିନେବା ଶିଖିଲି ।

ଭିକ ମାଗିବା ମୋର ଅହଂକାରକୁ ଆହତ କରୁଥିଲା ଯଦିଓ ବାବାଜୀଙ୍କର ଚେଲା ବୋଲି ଜାଣି ଦୋକାନୀମାନେ ସବୁ ଖୁସିରେ ଦେଉଥିଲେ । ଦେଖିଲି, ଲୋକମାନେ ବାବାଜୀଙ୍କୁ କେତେ ଆଦର କରୁଥିଲେ । ଯେତେବେଳେ ସେ ବଜାର ଦେଇ ଯାଉଥିଲେ, ଦୋକାନୀମାନେ ଠିଆହୋଇପଡ଼ି ହାତଯୋଡ଼ି ‘‘ରାମ ରାମ, ମହାରାଜ’’, କହି ତାଙ୍କୁ ଅଭିବାଦନ କରୁଥିଲେ । ବାବାଜୀ ସବୁବେଳେ ନଇଁପଡ଼ି ନିଜର ଡାହାଣହାତ ଛାତି ଉପରେ ରଖି ଅଭିବାଦନର ଉତ୍ତର ଦେଉଥିଲେ ।

ମୁଁ ଠିକ୍‌ଭାବରେ ଖାଦ୍ୟର ମହତ୍ତ୍ୱ ବୁଝିଲି ଓ ପ୍ରଥମକରି ମୋତେ ଖାଦ୍ୟ ତିଆରି କରିବାର ଶିକ୍ଷା ଦିଆଗଲା । ଭୋଜନ ବିଲ୍‌କୁଲ୍ ସାଦାସିଧା ହେଲେ ମଧ୍ୟ ଠିକଣା ହେବା ଦରକାର । ପରିବା କାଟିବାଠାରୁ ଆରମ୍ଭ କରି ଠିକ୍ ସମୟ ଅନୁସାରେ ସିଝାଇବା ପର୍ଯ୍ୟନ୍ତ କେଉଁଠି ବି ଏପଟସେପଟ ହେବାର ପ୍ରଶ୍ନ ନାହିଁ । ‘‘ଯଦି ତୁମେ ଠିକ୍‌ଭାବରେ ପରିବା କାଟିପାରିବ ନାହିଁ କି ନିଜର ଭାତ ଠିକ୍‌ଭାବରେ ରାନ୍ଧିପାରିବ ନାହିଁ, ତେବେ ତୁମେ ଅନ୍ତିମ ପରିପୂର୍ଣ୍ଣତାକୁ କିପରି ପ୍ରାପ୍ତ କରିପାରିବ’’, ଥରେ ବାବାଜୀ ମୋତେ କହିଲେ, ‘‘ଏହା ତ ଏମିତି ଗୋଟାଏ ଘଟଣା ହେବ ଯେମିତି କେହିଜଣେ ଦିନରାତି ମିଛ କହିବ ଓ କହିବ ଯେ ସେ ଅନ୍ତିମ ସତ୍ୟର ସନ୍ଧାନ କରୁଛି । ରାଜନୀତିଜ୍ଞମାନେ କ’ଣ ସତ୍ୟର ପ୍ରତିଜ୍ଞା କରନ୍ତି

ନାହିଁ ? ସତ୍ୟମେବ ଜୟତେ ! ନିଜର ଦୈନନ୍ଦିନ ଜୀବନ ପରିଶୁଦ୍ଧ କରିବାରୁ ଆରମ୍ଭ କର । ଏହା ହିଁ ହେଉଛି ପରିପୂର୍ଣ୍ଣତାର ମାର୍ଗ ।''

ଧ୍ୟାନ, ଯୋଗାସନ ଏବଂ କ୍ଷୀର ଓ ଫଳ – ଅଧିକାଂଶ ସମୟରେ ପିଚୁଳି ଓ ଲିଚୁର ହାଲ୍କା ଜଳଖିଆ ପରେ ସକାଳର ପାଠ ଆରମ୍ଭ ହେଉଥିଲା ଏବଂ ପ୍ରାୟ ଘଣ୍ଟାଏ ଧରି ଚାଲୁଥିଲା । ବାବାଜୀ କହିଲେ, ''ବର୍ତ୍ତମାନ ତୁମର ଏକାଗ୍ରତାର ସୀମା କେବଳ ଘଣ୍ଟାଏ, ତା'ପରେ ନିଜର ନବଅର୍ଜିତ ଜ୍ଞାନକୁ ଭଲଭାବରେ ହଜମ କରିବା ଉଚିତ ।'' ପଢ଼ାପଢ଼ି ପରେ ମୁଁ ଧୁନି ପାଇଁ କାଠ ସଂଗ୍ରହ କରେ କିମ୍ବା ରୋଷେଇ କରେ । ପ୍ରଥମ କିଛିଦିନର ପାଠ ପରେ, ବାବାଜୀ ପାହାଡ଼ ଆଡ଼କୁ ବୁଲିବାକୁ ଚାଲିଯାଆନ୍ତି ଏବଂ ଖାଦ୍ୟ ପ୍ରସ୍ତୁତ ହେବା ସମୟର ପାଖାପାଖି ଫେରିଆସନ୍ତି । ସେ ଖୁବ୍ କମ୍ ଖାଉଥିଲେ ।

ଖାଇବା ପରେ ଆମେ କିଛିସମୟ ବିଶ୍ରାମ କରୁଥିଲୁ । ତା'ପରେ ମୁଁ ଏକୁଟିଆ ଏଣେତେଣେ ବୁଲିବାପାଇଁ ସ୍ୱାଧୀନ ଥିଲି, ବେଳେବେଳେ ବାବାଜୀଙ୍କ ସହିତ ମଧ୍ୟ ବୁଲୁଥିଲି । ସୂର୍ଯ୍ୟାସ୍ତ ସମୟ ଥିଲା ଧ୍ୟାନର ସମୟ, ଆଉ ଆମେ ଯେଉଁଠାରେ ଥିଲେ ମଧ୍ୟ ଧ୍ୟାନରେ ବସିଯାଉଥିଲୁ । ଏହାପରେ ଘଣ୍ଟାଏ ପଢ଼ାପଢ଼ି, ତା'ରେ ସରଳ ଖାଦ୍ୟ । ତା'ପରେଆମେ ଧୁନି ପାଖରେ ବସି ଅନୌପଚାରିକ କଥାବାର୍ତ୍ତା କରୁ, ନେପଥ୍ୟରେ ଧୁନିର ଶିଖା ନିଜର ଖିଆଲରେ ନାଚୁଥାଆନ୍ତି ଓ କାଠଗୁଡ଼ିକ ଫୁଟୁଥାଆନ୍ତି । ମୋତେ ଯେତେବେଳେ ନିଦ ଲାଗେ ମୁଁ ଗୁମ୍ଫାରେ ଗଡ଼ିପଡ଼େ ଓ ଶୋଇଯାଏ । ବାବାଜୀ ଧୁନି ପାଖରେ ବସି ରହୁଥିଲେ ଏବଂ ବେଳେବେଳେ ଆଖି ବନ୍ଦକରି ଗଡ଼ିପଡୁଥିଲେ । ମୋର ସନ୍ଦେହ, ସେ ପ୍ରକୃତରେ ଶୋଉ ନ ଥିଲେ ।

ଆମେ ଚର୍ଚ୍ଚା କରୁଥିବା ବୈଠକଗୁଡ଼ିକ ବେଶ୍ ବିସ୍ତୃତ ଥିଲା, ସେଗୁଡ଼ିକ ଆପଣମାନଙ୍କୁ ବିରକ୍ତିକର ଲାଗିପାରେ । ତେଣୁ ମୁଁ କେବଳ କେତେଗୁଡ଼ିଏ ଚର୍ଚ୍ଚା ବିଷୟରେ କହିବି, ଯାହାକୁ ମୁଁ ପ୍ରମୁଖ ବୋଲି ଭାବେ । କିନ୍ତୁ ଏକଥା କହିବି ଯେ, ଯାହା ବି ଜ୍ଞାନ ମୋ ପାଖରେ ଅଛି, ସେସବୁ ମୁଁ ବାବାଜୀଙ୍କ ସହିତ ବିତାଇଥିବା ସେହି ସାଢ଼େ ତିନିବର୍ଷ ମଧ୍ୟରେ ଅର୍ଜନ କରିଛି ।





# କୁଣ୍ଡଳିନୀ-ସ୍ଫୁରଣ

ବାବାଜୀଙ୍କ ସହିତ ଶିକ୍ଷାର ପ୍ରଥମ ପାଠ ସନ୍ଧ୍ୟାବେଳେ ଆରମ୍ଭ ହେଲା, ଯେତେବେଳେ ଅନ୍ଧାର ହୋଇଆସୁଥିଲା । ଆମେ ଧୁନି ଆଡ଼କୁ ମୁହଁକରି ବସିଥାଉ । ଆମ ସାମ୍ନାରେ ଶିଖାଗୁଡ଼ିକ ନୃତ୍ୟ କରୁଥା'ନ୍ତି ।

''ଅଗ୍ନି'', ବାବାଜୀ କହିଲେ, ''ପ୍ରତିଟି ପ୍ରାଚୀନ ସଭ୍ୟତାରେ ପବିତ୍ର ବୋଲି ମାନ୍ୟତା ପାଇଛି । ବୈଦିକ କାଳରେ ନିଆଁର ଦେବତା ଅଗ୍ନିକୁ ପ୍ରତିଦିନ ଆହ୍ୱାନ କରାଯାଉଥିଲା । ତୁମେ କେବେ ଭାବିଛ କି ଅଗ୍ନିକୁ ଏତେ ମହତ୍ତ୍ୱ କାହିଁକି ଦିଆଯାଏ ?''

''ରୋଷେଇ କରିବାକୁ ନିଆଁର ଆବଶ୍ୟକତା ହୁଏ'', ମୁଁ କହିଲି, ''ଆଉ ଶୀତଦିନେ ନିଆଁ ଗରମ ରଖେ ଓ ଜଙ୍ଗଲୀ ଜନ୍ତୁମାନଙ୍କୁ ଦୂରରେ ରଖେ । ବୋଧହୁଏ ସେଥିପାଇଁ ପୁରୁଣା ସମୟର ଲୋକମାନେ ଅଗ୍ନିକୁ ଏତେ ଆଦର କରୁଥିଲେ ।''

ବାବାଜୀ ହସିଉଠିଲେ, ''ହଁ, ହଁ କିନ୍ତୁ କେବଳ ସେତିକି ନୁହେଁ । ପ୍ରାଚୀନ କାଳରେ ଦିଆଶିଲି ନ ଥିଲା । ନିଆଁ ଲଗାଇବାକୁ ଅଗ୍ନିଦେବଙ୍କୁ ଆରାଧନା କରି ଶୁଖିଲା କାଠକୁ ବହୁତ ସମୟ ପର୍ଯ୍ୟନ୍ତ ଘଷିବାକୁ ପଡୁଥିଲା । ଯେତେବେଳେ ସ୍ଫୁଲିଙ୍ଗ ଉତ୍ପନ୍ନ ହେଉଥିଲା, ବାସ୍ତବରେ ଏହା ଏକ ଚମତ୍କାର ଥିଲା । ଏହି ନିଆଁ ସ୍ଫୁଲିଙ୍ଗ ରୂପରେ ପ୍ରକଟ ହେବା ପୂର୍ବରୁ କେଉଁଠି ଥିଲା, ପ୍ରାଚୀନକାଳରେ ଚିନ୍ତାବିତ୍‌ମାନେ ଭାବିଥିଲେ, ଅବଶ୍ୟ ଏହା କାଠରେ ବିଦ୍ୟମାନ ଥିଲା, ପରନ୍ତୁ ଏହାର ପ୍ରକଟ ହେବାପାଇଁ ଅନୁକୂଳ ପରିସ୍ଥିତିର ଆବଶ୍ୟକ ଥିଲା । ଏହିଭଳି ଅଗ୍ନି ଆତ୍ମାର ପ୍ରତୀକ ହୋଇଗଲା । ସର୍ବତ୍ର ବିଦ୍ୟମାନ କିନ୍ତୁ ବିଶେଷ ପରିସ୍ଥିତିରେ ହିଁ ରୂପ ଧାରଣ କରେ ।

''ଅଗ୍ନିକୁ କାହିଁକି ଆତ୍ମାର ପ୍ରତୀକ ମାନନ୍ତି, ଏହାର ଏକ ଅନ୍ୟ କାରଣ ହେଉଛି ଯେ, ଅଗ୍ନି ସର୍ବଦା ଊର୍ଦ୍ଧ୍ୱମୁଖୀ । ଜଳୁଥିବା କାଠକୁ ଅଧୋମୁଖୀ କଲେ ମଧ୍ୟ ଶିଖା ସଦାବେଳେ ଉପରଆଡ଼କୁ ଉଠିଥାଏ । ତାହା ସହିତ ଗୋଟିଏ ସ୍ଫୁଲିଙ୍ଗ ବିଶାଳ ଜଙ୍ଗଲକୁ ପୋଡ଼ି ପାଉଁଶ

କରିଦେବାପାଇଁ ଯଥେଷ୍ଟ । ତୁମେ ଗୋଟିଏ ମହମବତିରୁ ହଜାରେ ମହମବତି ଜଳାଇ ପାରିବ କିନ୍ତୁ ମୂଳ ମହମବତିର ଶିଖାରେ କୌଣସି ଆଞ୍ଚ ଆସିବ ନାହିଁ ବା ତାହା କମିଯିବ ନାହିଁ । ଆତ୍ମାର ଏହାଠାରୁ ଅଧିକ ସଠିକ ପ୍ରତୀକ ଆଉ କ'ଣ ହୋଇପାରେ ?

ଯେତେବେଳେ ଏହା ଧ୍ୱଂସକ ହୋଇଯାଏ, ସେତେବେଳେ ସବୁକୁ ଜାଳି ପାଉଁଶ କରିଦିଏ, ମାଟିରେ ମିଶେଇଦିଏ । ପ୍ରେମ ଓ କରୁଣାର ପବିତ୍ର ଅଗ୍ନି ସବୁ ସ୍ୱାର୍ଥକୁ ଜଳେଇ ଭସ୍ମୀଭୂତ କରିଦିଏ । ସନ୍ନ୍ୟାସୀ ନିଜ ଦେହରେ ବିଭୂତି ଲେପନ କରନ୍ତି, ଏକଥା ଜଣାଇବାକୁ ଯେ ସେ କିପରି ସୀମାବଦ୍ଧତାରୁ ମୁକ୍ତ ।

ଏହା କେବଳ ଦେଖାଯାଉଥିବା ନିଆଁ ନୁହେଁ, ଯାହାକୁ ଅଗ୍ନି କହନ୍ତି । ସବୁପ୍ରକାରର ଜ୍ୱଳନ ହେଉଛି ଅଗ୍ନି । ଅପଚୟ ଓ ଉପଚୟର ପ୍ରକ୍ରିୟାଗୁଡ଼ିକ ଯାହା ଆମର ଶରୀରକୁ ଠିକ୍‌ଠାକ୍ ରଖନ୍ତି, ସେମାନଙ୍କୁ ମଧ୍ୟ ପାଚନ ଅଗ୍ନି କହନ୍ତି । ସେହିପରି ଇଚ୍ଛା – ଆକାଂକ୍ଷାଗୁଡ଼ିକର ଅଗ୍ନି, ସେ ଅଧୋମୁଖୀ ହେଉ ବା ଊର୍ଦ୍ଧ୍ୱମୁଖୀ ହେଉ ।

ଯଦି ପୂର୍ବରୁ ତୁମର କେହି ପ୍ରେମିକା ଥାଏ, ତେବେ ତୁମେ ତାକୁ ତୁମର ହୃଦୟର ପୁରୁଣା ଶିଖା (old flame) କୁହ ନାହିଁ ? 'ପୁରୁଣା ଜଳ' ବା 'ପୁରୁଣା ବାୟୁ' କେହି କହନ୍ତି ନାହିଁ । କାରଣ ପ୍ରେମ, ଇଚ୍ଛା, ପ୍ରେରଣା ଏସବୁ ଗୋଟାଏ ଗୋଟାଏ ପ୍ରକାରର ନିଆଁ, କଳ୍ପନା ମଧ୍ୟ । ଏଥିପାଇଁ ଯୁଗ ଯୁଗ ଧରି ଅଗ୍ନିଙ୍କର ପୂଜା ହୋଇଆସୁଛି । ଆମ ନାଥ–ପନ୍ଥୀମାନଙ୍କପାଇଁ ତ ଅଗ୍ନି ହେଉଛି ଆମର ସତ୍ତାର ଅଂଶ । ଆମେ ଧୁନି ଜଳାଉ ଓ ଘଣ୍ଟା ଘଣ୍ଟା ଧରି ତା'ର ଶିଖାକୁ ଚାହିଁ ବସିରହୁ । ଦେଖୁ ଦେଖୁ ଅଗ୍ନି ଆମର ମିତ୍ର ଓ ରକ୍ଷକ ହୋଇଯାଏ । ଆମର ମନ ଅଗ୍ନିରେ ବିଲୀନ ହୋଇଯାଏ ଏବଂ ଆମେ ଏକ ହୋଇଯାଉ । ବିଶ୍ୱାସ କର, ସାରା ପ୍ରକୃତି ପରି ଅଗ୍ନିର ନିଜର ମାନସ ରହିଛି । ଆମର ମାନସ ଅଗ୍ନି, ଅଗ୍ନି ଦେବତାଙ୍କର ମାନସ ସହିତ ଘନିଷ୍ଠ ଭାବରେ ଜଡ଼ିତ । ଏପରିକି ତା'ର ଶିଖାଗୁଡ଼ିକ ଆମର ଯେକୌଣସି ଇଚ୍ଛାକୁ ପୂର୍ଣ୍ଣ କରିପାରିବ ।

ଏହିପରି ଅନ୍ତରାଗ୍ନି, କୁଣ୍ଡଳିନୀ ଯେ ବାସ୍ତବରେ ବ୍ରହ୍ମାଣ୍ଡୀୟ ଜ୍ୱଳନଶୀଳତାର ଅଙ୍ଗ, ବହିରାଗ୍ନି ସହିତ ତାଦାତ୍ମ୍ୟ ସ୍ଥାପିତ କରି ଧୁନିର ରୂପ ଧାରଣ କରିନିଏ । ସେଥିରୁ ଶିଖା ବାହାରେ ଓ ସହସ୍ରଦଳ କମଳ ପର୍ଯ୍ୟନ୍ତ ପହଞ୍ଚେ ଏବଂ ମଣିଷ ଭଗବାନ ହୋଇଯାଏ । ସେତେବେଳେ ସେ ଚେତନାର ବିସ୍ତୃତ ପରିସର ସହିତ ସଂଲଗ୍ନ ହୋଇଯାଇପାରେ । ସେସବୁର ଉପଯୋଗ କରିପାରିଲେ, ଦୁଃଖ ଲୁପ୍ତ ହୋଇଯାଏ । ଧ୍ୟାନଦେଇ ଦେଖ ।"

ବାବାଜୀ ପୁଣି ତୀବ୍ର ଧ୍ୟାନଦେଇ ଶିଖାଗୁଡ଼ିକୁ ଚାହିଁଲେ ଓ କହିଲେ, "ହେ ଧୁନିରେ ନୃତ୍ୟରତ ମୋର ହୃଦୟର ଅଗ୍ନି ! ଉଚ୍ଚକୁ, ଆହୁରି ଉଚ୍ଚକୁ ଉଠ ଏବଂ ନିଜର ବୈଭବ ଦେଖାଅ ।" ନିଆଁର ଏକ ଶିଖା ଉପରକୁ ଉଠିବାକୁ ଆରମ୍ଭ କଲା । ମୋର ଶଙ୍କାଗ୍ରସ୍ତ ମନ ସେତେବେଳେ ବହୁଥିବା ଥଣ୍ଡା ପବନ ଏହାର କାରଣ ବୋଲି ଭାବିବାକୁ ଚାହୁଁଥିଲାବେଳେ ମୁଁ ଦେଖିଲି, କେବଳ ଗୋଟିଏ ଶିଖା ଉପରକୁ ଉଠୁଥିଲା । ଗୋଟିଏ ହିଲ୍ଲୋଳିତ ଅଗ୍ନିର ସ୍ତମ୍ଭ ପରି ଶିଖା ଉପରକୁ ଉଠି ଉଠି ଏହା ଅଳ୍ପ ଦୂରରେ ଥିବା ଦେବଦାରୁ ଗଛପରି ଉଚ୍ଚା ହୋଇଗଲା ।

"ହେ ଅଗ୍ନି, ଏବେ ଏହି ବାଳକର ନାଭିକୁ ସ୍ପର୍ଶ କର । ମଧୁର ଅନ୍ତରାଗ୍ନି ତୁମର କୃପାରୁ ଜାଗି ଉଠୁ ।" ମୁଁ ଆଶ୍ଚର୍ଯ୍ୟ ହୋଇ କମ୍ପିବାକୁ ଲାଗିଲି ଯେତେବେଳେ ସେ ଲମ୍ବା ଅଗ୍ନିଶିଖା ମୋ ଆଡ଼କୁ ମୁହାଁଇଲା ଓ ଆଖି ପିଛୁଳାକେ ତା'ର ଜିହ୍ୱା ଦ୍ୱାରା ମୋର ନାଭିକୁ ସ୍ପର୍ଶ କରିଗଲା । ମୋର ସାରା ଦେହ ଜଳିବାକୁ ଲାଗିଲା । ସବୁ ବ୍ୟବଧାନକୁ ଜାଳି ପାଉଁଶ କରି କରି ଅଗ୍ନି ଉପରକୁ ଉଠିବାକୁ ଲାଗିଲା ଯେତେବେଳ ପର୍ଯ୍ୟନ୍ତ ତାହା ମୋର ମସ୍ତିଷ୍କ ପର୍ଯ୍ୟନ୍ତ ନ ପହଞ୍ଚିଗଲା । ସେଠାରେ ତାହା ବହୁ ଦୀପ୍ତିଯୁକ୍ତ ରଙ୍ଗବେରଙ୍ଗୀ ଆଲୋକର ବିଚ୍ଛୁରଣ କରି ବିସ୍ତାରିତ ହେଲା, ତା'ପରେ ଆଶ୍ଚର୍ଯ୍ୟଜନକ ଭାବରେ ଏକ ଶୀତଳ ଓ ସୁଖଦ ଭାବ ଉତ୍ପନ୍ନ ହେଲା । ଯାହା ମୋର ମେରୁଦଣ୍ଡ ଭିତର ଦେଇ ଅବତରଣ କରିବା ଆରମ୍ଭ କଲା । ଊର୍ଦ୍ଧ୍ୱ ଏବଂ ଅଧଃ ମଧ୍ୟରେ ସମ୍ବନ୍ଧ ସ୍ଥାପିତ ହୋଇସାରିଥିଲା । ରାସ୍ତା ଏବେ ପରିଷ୍କାର ଥିଲା ଏବଂ ମୋତେ ବାବାଜୀଙ୍କର କୃପାଯୁକ୍ତ ପ୍ରୋତ୍ସାହନ ସହିତ ଧୈର୍ଯ୍ୟ ଧରି ତାହା ଉପର ଦେଇ ଆଗେଇ ଯିବାର ଥିଲା ।

ମୁଁ ଯେତେବେଳେ ଆଖି ଖୋଲିଲି, ସେତେବେଳକୁ ଶିଖାଗୁଡ଼ିକ ସାଧାରଣ ଭାବରେ ଜଳୁଥିଲେ ଏବଂ ପ୍ରସନ୍ନଚିତ୍ତ ବାବାଜୀ ମୃଦୁ ହସୁଥିଲେ ଯେପରି କୌଣସି ମା' ନିଜର ପିଲାର ପ୍ରଥମ ପଦକ୍ଷେପରେ ଆହ୍ଲାଦିତ ହୁଏ ସେହିପରି । "ଠିକ୍ ଅଛି, ଆଜିପାଇଁ ଏତିକି ଯଥେଷ୍ଟ" ସେ କହିଲେ । "ଏବେ କିଛି ସମୟ ଚୁପ୍‌ଚାପ୍ ଧ୍ୟାନରେ ବସ ତା'ପରେ ଶୋଇଯିବା ।"

"ବାବାଜୀ", ମୁଁ କହିଲି, "ମୁଁ କାଲିହିଁ ଆପଣଙ୍କୁ ପଚାରିବାକୁ ଚାହୁଁଥିଲି ଯେ କ'ଣ ଆପଣ କେବେ ଶୁଅନ୍ତି ? ମୋତେ ଲାଗୁଛି ଆପଣ ରାତିସାରା ଉଜାଗର ରହନ୍ତି, ନୁହେଁ ?"

"ବତ୍ସ, ମୋତେ ନିଦର ଆବଶ୍ୟକତା ନାହିଁ । ତୁମକୁ ଅଛି, କାରଣ ତୁମର ମନ ଓ ଶରୀର ଥକିଯାଆନ୍ତି ଓ ସେମାନଙ୍କର ନବୀନୀକରଣର ଆବଶ୍ୟକତା ହୁଏ । ମୋତେ

ଥକା ଲାଗେ ନାହିଁ । ଆଗକୁ ଯାଇ ତୁମେ ଏହା ବୁଝିପାରିବ, ଅତି କମ୍‌ରେ କିଛି ଅଂଶରେ ବୁଝିପାରିବ । ବହୁ ବର୍ଷ ପରେ ଯେବେ ତୁମେ ବହୁତ କାମ କରିବ, ସେତେବେଳେ ତୁମେ ଏହାର ରହସ୍ୟ ବୁଝିପାରିବ ।''

ସେଦିନ ରାତିରେ ମୋର ଧ୍ୟାନ ଗଭୀର ଥିଲା । ମୋର ମନ ପୂର୍ବରୁ ଅନୁପଲବ୍ଧ ପରିସର ପର୍ଯ୍ୟନ୍ତ ଉଠିଗଲା ଏବଂ ମୋର ବହୁ ପ୍ରଶ୍ନର ଉତ୍ତର ଧରି ଫେରିଲା ଯାହାସବୁ ମୋତେ ଏପର୍ଯ୍ୟନ୍ତ ବ୍ୟସ୍ତ କରୁଥିଲେ । ତା'ପରେ ମୁଁ ବାବାଜୀଙ୍କୁ ପ୍ରଣାମ କଲି ଏବଂ ଗୁମ୍ଫାକୁ ଯାଇ ଶୋଇଗଲି । ବାବାଜୀ ପଦ୍ମାସନରେ ପ୍ରସ୍ତର ପରି ସ୍ଥିର ହୋଇ ବସିଥିଲେ, ତାଙ୍କ ଆଖି ଧୁନି ଉପରେ ନିବଦ୍ଧ ଥିଲା ।



#  ବୃଦ୍ଧ ତିବ୍ବତୀ ଲାମା

ଦିନେ ଧ୍ୟାନ ଓ ଜଳଖିଆ ପରେ ବାବାଜୀ ଗୋଟିଏ ଅପ୍ରତ୍ୟାଶିତ କଥା କହିଲେ । "ଆଜି ତୁମର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନାହିଁ । ତୁମେ ଇଚ୍ଛା ଅନୁଯାୟୀ ବୁଲାବୁଲି କରିପାର । ବୋଧହୁଏ ତୁମେ ସେହି ପାହାଡ଼ ପର୍ଯ୍ୟନ୍ତ ଯାଇ ଗୁମ୍ଫାଗୁଡ଼ିକୁ ଦେଖିବାକୁ ଚାହୁଁଛ । କିନ୍ତୁ ମନେରଖିବ ଯେ ଅନ୍ଧାର ହେବା ପୂର୍ବରୁ ଫେରିଆସିବ । ଠିକ୍ ଅଛି ?"

ଅଜଣା ଜାଗାମାନଙ୍କରେ ବୁଲିବା ଓ ପାହାଡ଼ରେ ଚଢ଼ିବା ପରି ମୋତେ ଅନ୍ୟ କିଛି ଅଧିକ ପସନ୍ଦ ନ ଥିଲା । ମୁଁ କେବଳ ମୋର କମଣ୍ଡଳରୁ ଓ ଲାଠି ଧରି ବାହାରିପଡ଼ିଲି । ମୁଁ ସେହି ତୀଖ ପାହାଡ଼ର ଅଣଓସାର ରାସ୍ତା ଧରିଲି ଯେଉଁ ବାଟଦେଇ ମୁଁ ଥରେ ଦି'ଥର ବାବାଜୀଙ୍କୁ ଯିବାର ଦେଖିଥିଲି । କିଛି ସମୟ ପରେ ଚଢ଼ିବା ଭାରି କଷ୍ଟକର ହୋଇଉଠିଲା । ଥଣ୍ଡା ବି ବହୁତ ବଢ଼ିଗଲା । ତା'ସହିତ ବର୍ଷା ଆରମ୍ଭ ହୋଇଗଲା ଏବଂ କିଛି ସମୟ ପରେ ହାଲ୍କା ବରଫ ପଡ଼ିବା ଆରମ୍ଭ ହୋଇଗଲା ।

ରାସ୍ତାର ଦି'ପଟେ କିଛି ପ୍ରାକୃତିକ ଗୁମ୍ଫା ଥିଲା । ବାବାଜୀ ମୋତେ ସାବଧାନ କରି ଦେଇଥିଲେ ଯେ, ବେଳେବେଳେ ହିମାଳୟର ଭାଲୁ ସେହି ଗୁମ୍ଫାଗୁଡ଼ିକରେ ରହିବାର ଦେଖାଯାଆନ୍ତି । ତେଣୁ ଯେତେବେଳେ ମୁଁ ଗୋଟିଏ ଗୁମ୍ଫାରୁ ଗୁଣୁଗୁଣୁ ଓ ଖସଖସ ଶବ୍ଦ ବାହାରୁଥିବା ଶୁଣିଲି, ଡରରେ ଯେମିତି ପଥର ପାଲଟିଗଲି । ସେତିକିବେଳେ ମୁଁ ଗୁମ୍ଫାରୁ ବାହାରୁଥିବା ଧୂପର ବାସ୍ନା ଅନୁଭବ କଲି ।

ସାବଧାନତାର ସହିତ, ଉତ୍ତେଜନାରେ କମ୍ପି କମ୍ପି ମୁଁ ଗୁମ୍ଫାର ମୁହଁ ଆଡ଼କୁ ଆଗେଇଲି ଓ ଭିତରେ ପଶିଲି । କିଛି ସମୟ ପରେ ମୋର ଦୃଷ୍ଟି ସେହି ଝାପ୍‌ସା ଆଲୁଅରେ ଅଭ୍ୟସ୍ତ ହୋଇଗଲା । ଏହି ଆଲୁଅ ଗୁମ୍ଫାର ଦୂର ପ୍ରାନ୍ତରେ ଥିବା ଏକ ଗଭୀର ଗାତରେ ଜଳୁଥିବା ନିଆଁରୁ ଆସୁଥିଲା । ନିଆଁ ଆଡ଼କୁ ମୁହଁକରି ଜଣେ ନଗ୍ନଶରୀର ବ୍ୟକ୍ତି ବସିଥିଲେ ଯେ ସେଥିରେ ଝୁଣା ଫିଙ୍ଗୁଥିଲେ ଏବଂ ଗୁଣୁଗୁଣୁ ସ୍ୱରରେ କିଛି ଜପ କରୁଥିଲେ ଯାହାର ଅର୍ଥ ମୁଁ ବୁଝିପାରିଲି ନାହିଁ । ମୁଁ ଚୁପ୍‌ଚାପ ଟିକିଏ ଦୂରରେ ବସିଗଲି । ଅପେକ୍ଷା କଲି,

କେତେବେଳେ ସେ ମୋର ଉପସ୍ଥିତିକୁ ସ୍ୱୀକୃତି ଦେବେ କାରଣ ମୋର ବିଶ୍ୱାସ ଥିଲା ଯେ ମୋର ପ୍ରବେଶ ବିଷୟରେ ସେ ଜାଣିଥିଲେ ।

କିଛି ସମୟ ପରେ ସେ ମୋ ଆଡ଼କୁ ବାଙ୍କିଲେ ଏବଂ ପାଖକୁ ଆସିବାର ଇଙ୍ଗିତ କଲେ । ମୁଁ ନିଆଁ ଆଡ଼କୁ ଆଗେଇଲି । ଏବେ ମୁଁ ତାଙ୍କର ଚେହେରା ଦେଖି ପାରୁଥିଲି । ସେ ଜଣେ ଲୋଳିତ ଚର୍ମ, ରୁକ୍ଷ ମଙ୍ଗୋଲୀୟ ଚେହେରାର ଲୋକ ପରି ଦିଶୁଥିଲେ । ନାମକୁ ମାତ୍ର କିଛି ଧଳା ବାଳ ଥିଲା ଦାଢ଼ି ଓ ନିଶ ସ୍ଥାନରେ ଏବଂ ସେ ବିଲ୍‌କୁଲ୍ ଚନ୍ଦା ଥିଲେ । ମୁଁ ଅନୁମାନ କଲି ଯେ ସେ ଗୋଟାଏ ପ୍ରକାରର ବୌଦ୍ଧ ଭିକ୍ଷୁ ଥିଲେ । ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେତେବେଳେ ସେ ଖଣ୍ଡି-ଖଣ୍ଡି ଇଂରେଜୀରେ କହିବାକୁ ଲାଗିଲେ । ତାଙ୍କର ସ୍ୱର ରୁକ୍ଷ ଥିଲା ଓ ବେଙ୍ଗ ବୋବାଇଲା ପରି ଶୁଭୁଥିଲା । ''ନମସ୍ତେ'', ସେ ହାତଯୋଡ଼ି କହିଲେ, ''ଅବଲୋକିତେଶ୍ୱର ବୁଦ୍ଧ ତୁମକୁ ଆଶୀର୍ବାଦ ଦିଅନ୍ତୁ ।'' ମୁଁ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲି ଓ ମୋର ପରିଚୟ ଦେଇ ସେଠାକୁ ଆସିବାର ଉଦ୍ଦେଶ୍ୟ ଜଣାଇଲି ।

''ଜାଣେ, ଜାଣେ,'' ସେ କହିଲେ, ''ମୁଁ ତୁମର ବାବାଜୀଙ୍କୁ ଚିହ୍ନେ । ଆମେ ପ୍ରାୟ ପରସ୍ପରକୁ ଭେଟୁ । ମୁଁ ହେଉଛି ମହାନ ଯୋଗୀ ମିଲରେପଙ୍କର କର୍ଗ୍ୟୁପା ସଂପ୍ରଦାୟର ପରିବ୍ରାଜକ ତିବ୍ବତୀ ଯୋଗୀ । ମିଲରେପର ଅର୍ଥ ହେଉଛି ସୂତାର ପଟି । ଆମେ ଯେତେ ପ୍ରଚଣ୍ଡ ଶୀତ ହେଲେ ମଧ୍ୟ କେବଳ ଗୋଟିଏ ଛୋଟ କୌପୀନ ପିନ୍ଧୁ ।''

''ଆପଣ କ'ଣ ମନ୍ତ୍ରୋଚ୍ଚାରଣ କରୁଥିଲେ ଓ ଆପଣ ଇଂରେଜୀ କେମିତି ଜାଣିଲେ ?''

ମୁଁ ତୁମର ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେବି ନାହିଁ । ସମୟ ଆସିଲେ ତୁମେ ବଳେ ଜାଣିଯିବ । ତୁମ ପ୍ରଥମ ପ୍ରଶ୍ନର ଉତ୍ତର ହେଲା, ମୁଁ ବୌଦ୍ଧ ମନ୍ତ୍ର 'ଓମ୍ ମଣି ପଦ୍ମେ ହୁମ୍'ର ଉଚ୍ଚାରଣ କରୁଥିଲି ।

''ମୁଁ କ'ଣ ଆପଣଙ୍କୁ ପଚାରିପାରେ କି ସାର୍ ଯେ ଆପଣ ପ୍ରଚଣ୍ଡ ଶୀତରେ ମଧ୍ୟ ନଗ୍ନ ଶରୀରରେ କିପରି ରହନ୍ତି ? ବାବାଜୀ ମଧ୍ୟ ଆପଣଙ୍କ ପରି ।''

''ବତ୍ସ, ମୁଁ ବୁଝାଇ ଦେଉଛି । ମିଲରେପ ଅନୁଯାୟୀ ଆମେମାନେ, ମାନସଦର୍ଶନ (ଭିଜୁଆଲାଇଜେଶନ୍) ସହିତ ନିଃଶ୍ୱାସ ନେବାର 'ଥୁମ୍ମୋ' ନାମକ ଏକ ବିଶେଷ ପ୍ରଣାଳୀ (ଟେକ୍‌ନିକ୍)ର ଉପଯୋଗ କରିଥାଉ । ସେଥିରେ ନାଭି ଅର୍ଥାତ୍ ମଣିପୁର ଚକ୍ରରେ ଅନ୍ତରାଗ୍ନିର ଉତ୍ତାପ ଉତ୍ପନ୍ନ ହୁଏ ଏବଂ ସାରା ଶରୀରରେ ବ୍ୟାପିଯାଏ । ଯଦି ତୁମେ ମନ ଦେଇ ଦେଖିବ, ତେବେ ଜାଣିବ ଯେ ମୋ ଦେହରୁ ଝାଳ ବହୁଛି । ଏହାର କାରଣ ଅନ୍ତରର

ଉତ୍ତାପ । ଆମର କେତେଜଣ ଯୋଗୀ ଶୀତରେ ମଧ୍ୟ ଓଦା ଚାଦର ନିଜର ପିଠିରେ ଗୁଡ଼େଇ କିଛି ମିନିଟ୍ ମଧ୍ୟରେ ଶୁଖାଇ ଦେଇ ପାରନ୍ତି ।

"ମଣିପୁର ହେଉଛି ସେହି ଚକ୍ର, ଯେଉଁଠାରେ କାଲି ଅଗ୍ନି ତୁମକୁ ସ୍ପର୍ଶ କରିଥିଲେ । ଦରକାର ପଡ଼ିଲେ ତୁମର ବାବାଜୀ ତୁମକୁ 'ଥୁମ୍ମୋ' ପରି ପ୍ରଣାଳୀ ଶିଖାଇବେ, ଯାହାର ଉପଯୋଗ ସେ ନିଜେ କରନ୍ତି ।"

"ଗୋଟାଏ ମିନିଟ୍", ମୁଁ କହିଲି । "ଆପଣ ଅଗ୍ନିଦ୍ୱାରା ମୋର ନାଭି ସ୍ପୃଷ୍ଟ ହେବା ଘଟଣା କିପରି ଜାଣିଲେ ? କାଲିର ସେ ଘଟଣାପରେ ବାବାଜୀ ମୋ ପାଖରୁ ଉଠି ନାହାନ୍ତି, କେବଳ ଏତିକି ହୋଇପାରେ ଯେ ସେ ରାତିରେ ଆପଣଙ୍କ ନିକଟକୁ ଆସି ଆପଣଙ୍କ ସହିତ ଏ' ବିଷୟରେ ଚର୍ଚ୍ଚା କରିଥାଇପାରନ୍ତି । କିନ୍ତୁ ମୋତେ ସେମିତି ଲାଗୁ ନାହିଁ..."

"ବସ୍, ଆମ ପାଖରେ ସଂପ୍ରେଷଣର ଏପରି ଉପାୟ ଅଛି, ଯାହା ବିଷୟରେ ଅଧିକାଂଶ ମଣିଷ ଜାଣନ୍ତି ନାହିଁ । କିନ୍ତୁ ସେଥିରେ କିଛି ରହସ୍ୟ ନାହିଁ । ଯେତେବେଳେ ମନ ଶାନ୍ତ ହୋଇଯାଏ ଓ ଏକାଗ୍ରଚିତ୍ତ ଧ୍ୟାନର ଶକ୍ତି ଲାଭ କରେ, ସେତେବେଳେ ବିଚାରର ବିନିମୟ ସମ୍ଭବ ହୁଏ । ତୁମକୁ ମୁଁ ଏହିସବୁ କଥା କହୁଛି ବୋଲି ତୁମେ ଖବରକାଗଜରେ ଓ ପତ୍ରିକାଗୁଡ଼ିକରେ ଛପା ହେଉଥିବା ବିଜ୍ଞାପନଗୁଡ଼ିକରେ ନିର୍ଦ୍ଦିଷ୍ଟ ଟଙ୍କା ବିନିମୟରେ ଟେଲିପ୍ୟାଥି ଶିଖାଇଦେବାର ଯେଉଁ ଦାବି କରାଯାଇଥାଏ, ସେଗୁଡ଼ା ସବୁ ବିଶ୍ୱାସ କରିବ ନାହିଁ । ଅସଲ ଜିନିଷ ଏତେ ସହଜ ନୁହେଁ ।"

"ଆଜ୍ଞା ଦେଲେ କ'ଣ ମୁଁ ଆହୁରି ଦୁଇଟି ପ୍ରଶ୍ନ ପଚାରି ପାରିବି କି," ମୁଁ କହିଲି ।

"ପଚାର ।"

: "କେତେଗୁଡ଼ିଏ ବହିରେ ଅଛି ଯେ ତିବ୍ବତର କିଛି ଅଂଶରେ ପ୍ରାଚୀନ ଭୌମେତର ସଭ୍ୟତାଗୁଡ଼ିକର ଅବଶେଷ ଲୁଚିରହିଛି, ଏହା କ'ଣ ସତ୍ୟ ? ଦ୍ୱିତୀୟ, କ'ଣ ତୁଷାର ମାନବ ୟେତି ବାସ୍ତବରେ ଅଛନ୍ତି ? ଆପଣ ଦେଖିଛନ୍ତି ?"

"ତୁମର ପ୍ରଥମ ପ୍ରଶ୍ନର ଉତ୍ତର ହେଲା," ତିବ୍ବତୀୟ ଯୋଗୀ କହିଲେ – "ହଁ, ତିବ୍ବତରେ ଏହିପରି କିଛି ସ୍ଥାନ ରହିଛି । ମୁଁ ନିଜେ ତିବ୍ବତର ଗୋଟାଏ ପ୍ରାୟ ଅଗମ୍ୟ ସ୍ଥାନରେ ସେପରି ଗୋଟିଏ ଗୁମ୍ଫା ଦେଖିଛି । ସେଠାରେ ମୁଁ କ୍ଷୁଦ୍ର ଶରୀର ବିଶିଷ୍ଟ ହ୍ୟୁମାନଏଡ଼ସ୍‌ଙ୍କର ଭଲ ଭାବରେ ସଂରକ୍ଷିତ ଥିବା ଶରୀର ଦେଖିଛି । ସେମାନଙ୍କର ମୁଣ୍ଡ ଆମର ମୁଣ୍ଡଠାରୁ ବଡ଼ ଏବଂ ସେମାନଙ୍କର ରଙ୍ଗ ଗାଢ଼, ପ୍ରାୟ ଧୂସର କହିଲେ ଚଳେ । କିନ୍ତୁ ମୋର ବିଶ୍ୱାସ ଯେ ସେମାନେ ପୃଥିବୀର ହିଁ କୌଣସି ପ୍ରାଚୀନ ପ୍ରଜାତିର ଅଂଶ ।

ସେମାନେ ଅନ୍ୟ ଗ୍ରହ ବା ଆକାଶଗଙ୍ଗାରୁ ଆସି ନାହାନ୍ତି । ଆମର ଗୁରୁମାନେ କହନ୍ତି ଯେ ଏହି ଜାତି କୌଣସି ଦୁଇଟି ବିରୋଧୀ ସଭ୍ୟତାର ଯୁଦ୍ଧ ହେତୁ ନଷ୍ଟ ହୋଇଗଲା । ଉଭୟ ସଭ୍ୟତା ମାନସିକ ରୂପରେ ଅତ୍ୟନ୍ତ ବିକଶିତ ଥିଲେ କିନ୍ତୁ ସେହି ସଭ୍ୟତାଗୁଡ଼ିକରେ ପ୍ରେମ ଓ କରୁଣାର ଭାବନାଗୁଡ଼ିକୁ ପୂରାପୂରି ଭାବରେ ଉପେକ୍ଷା କରାଯାଇଥିଲା । ଯେମିତି ଆମଦ୍ୱାରା ପ୍ରସ୍ତୁତ ସଭ୍ୟତା ଆଗଉଛି, ଚିନ୍ତା ହୁଏ ଯେ ଆମର ଭବିଷ୍ୟତ କ'ଣ ହେବ ।

ଏହାପରେ ୟେତି ବିଷୟରେ– ହଁ ୟେତି ଅଛନ୍ତି, ଯଦିଓ ୟେତି ଦେଖାଯିବାର ବହୁତ ଖବର ମିଥ୍ୟା ହୋଇପାରେ । ବଦ୍ରିନାଥରୁ କୈଳାସକୁ ଯାଉଥିବା ପୁରୁଣା ରାସ୍ତାରେ ମାନା ଗିରିସଂକଟ ପରେ, ଯାହାର ଏବେ ବ୍ୟବହାର ହେଉ ନାହିଁ, ତିବ୍ବତ ପଟକୁ ପୁରାତନ ତୋଲିଙ୍ଗ ମଠ ନାମକ ଏକ ପୁରାତନ ବୌଦ୍ଧ ବିହାର ଅଛି । ତୋଲିଙ୍ଗ ମଠ ପାଖରେ କେତେଜଣ ଲାମା ଏବେ କିଛିଦିନ ତଳେ ହିଁ ତ ୟେତିକୁ ଦେଖିଛନ୍ତି । ମୁଁ ମଧ୍ୟ ଗୋଟାଏ ୟେତିକୁ ଦେଖିଛି । ବାବାଜୀଙ୍କୁ କହ ଯଦି ସେ ତୁମକୁ ତୋଲିଙ୍ଗମଠ ବା କୈଳାସକୁ ନେଇଯିବେ (ସେ ରାସ୍ତା ଭଲଭାବରେ ଜାଣନ୍ତି ଓ ସେଠାକୁ ବହୁବାର ଯାଇଛନ୍ତି) ତେବେ ହୋଇପାରେ ତୁମେ ମଧ୍ୟ ୟେତି ଦେଖିପାର ।''

''ଚେଷ୍ଟା କରିବି,'' ମୁଁ କହିଲି । ''ଗୋଟାଏ ଶେଷ ପ୍ରଶ୍ନ, ଆପଣ କ'ଣ ଲାମା ?''

''ନା, ଯେପରି ତୁମେ ଭାବୁଛ, ସେପରି ନୁହେଁ । ଲାମା ସାଧୁ–ମହାତ୍ମାମାନଙ୍କ ପାଇଁ ବ୍ୟବହାର କରାଯାଉଥିବା ଏକ ସାମାନ୍ୟ ଶବ୍ଦ । ସେ ଔପଚାରିକ ଭାବରେ ଦୀକ୍ଷିତ ଲାମା ହୋଇପାରେ, ବିବାହିତ କିମ୍ବା ଅବିବାହିତ, କିମ୍ବା ସେ ଶାମନଙ୍କ ପରି ତିବ୍ବତର ବୌଦ୍ଧ ପୂର୍ବ ବୋନ–ପା ନାମକ ସଂପ୍ରଦାୟର ହୋଇପାରେ । ଆମପରି ଲୋକ ଯେ କୌଣସି ସଂପ୍ରଦାୟ ସହିତ ସଂପୃକ୍ତ ହେବାର କିଛି ପ୍ରତୀକ ଧାରଣ କରନ୍ତି ନାହିଁ, ତାଙ୍କୁ ଯୋଗୀ କୁହାଯାଏ । ମିଲରେପ ସେହିପରି ଜଣେ ଯୋଗୀ ଥିଲେ । ତାଙ୍କର ସିଦ୍ଧାନ୍ତକୁ ମାନୁଥିବା କର୍ମ୍ୟୁ–ପା ଲୋକମାନଙ୍କର ମୁଖିଆ ଏବେ ଔପଚାରିକ ଭାବରେ ଦୀକ୍ଷିତ ଭିକ୍ଷୁଙ୍କୁ କର୍ମପା କୁହାଯାଏ ଏବଂ ସେ ଔପଚାରିକ ପୋଷାକ ପିନ୍ଧନ୍ତି । ଏଇଟା ଜରୁରୀ ନୁହେଁ ଯେ ଲୌକିକ ବା ଧାର୍ମିକ ଅଧିକାରଗୁଡ଼ିକର ନିର୍ଣ୍ଣୟ କରୁଥିବା ଏକ ଉଚ୍ଚସ୍ତରୀୟ ଲାମା, ଅଧ୍ୟାତ୍ମିକ ରୂପରେ ମଧ୍ୟ ଉନ୍ନତ ହେବ ।

''ଦଲାଇଲାମାଙ୍କୁ ଆପଣ କେଉଁ ଶ୍ରେଣୀରେ ରଖିବେ ସାର୍'' ? ମୁଁ ପଚାରିଲି । ବୃଦ୍ଧ କିଛି ସମୟ ପାଇଁ ଇତସ୍ତତଃ ହେଲେ । ତା'ପରେ ଆଖିରେ ଦୂରକୁ ଦେଖୁଥିବା ପରି ଦୃଷ୍ଟିନେଇ କହିଲେ, ''ସ୍ୱର୍ଗୀୟ ମହାନ ତ୍ରୟୋଦଶ ଦଲାଇଲାମାଙ୍କୁ ଆଧ୍ୟାତ୍ମିକ ରୂପରେ ଅତ୍ୟନ୍ତ ଉନ୍ନତ ବ୍ୟକ୍ତି ଭାବରେ ସ୍ୱୀକାର କରାଯାଏ । ପ୍ରଥମ ଦଲାଇଲାମା ଏକ ରାଜନୈତିକ

ନିଯୁକ୍ତି ଥିଲା, ମଙ୍ଗୋଲ ବିଜେତା ଚେଙ୍ଗିଜ୍ ଖାଁଙ୍କର ପ୍ରପୌତ୍ର କୁବଲାଇ ଖାଁ ଦ୍ୱାରା ନିଯୁକ୍ତ ଦଲାଇର ଅର୍ଥ ହେଉଛି ମହାସାଗର । ଦଲାଇଲାମାଙ୍କ ପଦ ସୃଷ୍ଟ କରାଗଲା କାରଣ କୁବାଲାଇ ଖାଁ, ଯେ ଚୀନର ସମ୍ରାଟ ଥିଲା, ସେ ତିବ୍ବତର ରାଜନୀତିରେ ଅଧିକ ହସ୍ତକ୍ଷେପ କରିବାକୁ ଚାହୁଁଥିଲା । ପ୍ରଥମ ପରେ ଦ୍ୱିତୀୟ ଦଲାଇଲାମା ତାଙ୍କର ବନ୍ଧୁବାନ୍ଧବ ଥିଲେ । ରାଜନୀତି ସର୍ବଦା ଧର୍ମ ସହିତ ମିଳିମିଶି ରହୁଥିଲା । ମୁଁ ଏହାଠାରୁ ଅଧିକ କିଛି କହିବାକୁ ଚାହେଁ ନାହିଁ ।''

''ଏବେ ତୁମକୁ ଭୋକ ହେଉଥିବ'', ସେ ସଂପା ବୋଲି ଭାରି ଅଜବ ସ୍ୱାଦଯୁକ୍ତ ଅଠାଳିଆ ବସ୍ତୁ ଖାଇବାକୁ ଦେଲେ, ଯାହା ଭଜା ହୋଇଥିବା ଯଅର ଅଟା ଓ ୟାକର ଚର୍ବିକୁ ମିଶାଇ ତିଆରି କରାଯାଏ । ଯେତେ ଜଲ୍ଦି ସମ୍ଭବ ମୁଁ ତାକୁ ଗିଳି ପକାଇଲି । ସେ ଦେଇଥିବା କଳା ଚା ପିଇଲି । ତା'ପରେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ବାହାରି ଆସିଲି ।

ଯେତେବେଳେ ମୁଁ ଫେରିଲି, ବାବାଜୀ ବାହାରେ ବସି କିଛି ପୁରୁଣା ତାଳ-ପତ୍ରର ପାଣ୍ଡୁଲିପିକୁ ଧ୍ୟାନର ସହିତ ଦେଖୁଥିଲେ । ''ଆଜି ତେବେ ଯୁବକ ସନ୍ଧାନୀ କ'ଣ କଲା ?'' ସେ ମୃଦୁ ହସି କହିଲେ । ''ବୃଦ୍ଧ ତିବ୍ବତୀ ଯୋଗୀଙ୍କ ସହିତ ଭେଟ କେମିତି ଲାଗିଲା ? ତୁମେ ତାଙ୍କୁ ବହୁତ ଗୁଡ଼ାଏ ପ୍ରଶ୍ନ ପଚାରିଲ'' ? ''ହଁ, ବାବାଜୀ,'', ମୁଁ କହିଲି । ମୁଁ ଯାହା କରୁଛି ସେ ସବୁ ଠିକ୍ ଠିକ୍ ଜାଣିପାରୁଛନ୍ତି ବୋଲି ମୋତେ ଆଉ ଆଶ୍ଚର୍ଯ୍ୟ ଲାଗିଲା ନାହିଁ, ''ମୋର ଆପଣଙ୍କୁ ପଚାରିବାର ଅଛି......''

''ପରେ,'' ବାବାଜୀ କହିଲେ । ''ଏବେ ତୁମେ ଗୋଟାଏ ଭଲ ନିଦ ଶୋଇଯାଅ । ସନ୍ଧ୍ୟାରେ ଆମର ଏକ ମହତ୍ତ୍ୱପୂର୍ଣ୍ଣ ବୈଠକ ଅଛି ।'' ମୁଁ ଗୁମ୍ଫା ଭିତରେ ଗଡ଼ି ପଡ଼ିଲି ଓ ସାଙ୍ଗେ ସାଙ୍ଗେ ଗାଢ଼ ନିଦରେ ଶୋଇଗଲି ।



# 24. ଯୋଗ, ବେଦାନ୍ତ ଓ ନାଥପନ୍ଥ

ସେଇଟା ଗୋଟାଏ ଅତି ଥଣ୍ଡା ସକାଳ ଥିଲା । ପାଖ ଆଖର ଅନେକ ଶିଖର ବରଫର ଟୋପି ପିନ୍ଧିଥାଆନ୍ତି । ରାତିସାରା ହାଲ୍କା ବରଫପାତ ହେଉଥିଲା ଏବଂ ଧୁନିକୁ ଜ୍ୱଳନ୍ତ ରଖାଯାଇଥିଲା ।

‘‘ଆଜି ଆମେ ଉପନିଷଦ ଆରମ୍ଭ କରିବା’’, ବାବାଜୀ କହିଲେ ।

‘‘କିନ୍ତୁ ବାବାଜୀ ଉପନିଷଦ କ’ଣ ବହୁତ କଠିନ ନୁହେଁ ? ତାହା କ’ଣ କେବଳ ସନ୍ନ୍ୟାସୀ ଏବଂ ପ୍ରକାଣ୍ଡ ପଣ୍ଡିତମାନଙ୍କ ପାଇଁ ନୁହେଁ ?’’

‘‘ଏହିପରି ଧାରଣା ପୁରୋହିତ ଓ ପୂଜାରୀମାନଙ୍କଦ୍ୱାରା ଜନତାଙ୍କ ମନରେ ସୃଷ୍ଟି କରାଯାଇଛି । ସେମାନେ ଭୟ କରନ୍ତି ଯେ, ଉପନିଷଦଗୁଡ଼ିକର ସିଧାସିଧା ଲୋକମାନଙ୍କୁ ତର୍କସଂଗତ ଭାବରେ ଚିନ୍ତା କରିବାକୁ ପ୍ରେରଣା ଦେବ ଏବଂ ସେମାନଙ୍କ ଦ୍ୱାରା ପ୍ରଚାର କରାଯାଇଥିବା ଅବାସ୍ତବ ଓ ଅନ୍ଧବିଶ୍ୱାସଯୁକ୍ତ ତଥ୍ୟଗୁଡ଼ିକରୁ ସେମାନଙ୍କୁ ଦୂରେଇ ଦେବ । ସେମାନେ ଡରୁଥିଲେ ଯେ, ଯଦି ଲୋକମାନେ ନିଜେନିଜେ ଚିନ୍ତାକରିବା ଆରମ୍ଭ କରିବେ, ତେବେ ସେମାନେ ସେମାନଙ୍କର (ପୁରୋହିତ) କବ୍‌ଜାରୁ ବାହାରିଯିବେ । ତେଣୁ ଚତୁର ପୂଜାରୀମାନେ, ଯେଉଁମାନଙ୍କର ଉଭୟ ରାଜା ଓ ପ୍ରଜାଙ୍କ ଉପରେ ଅଧିକାର ଥିଲା କାରଣ ସେମାନେ ଜନତା ଓ ଭଗବାନଙ୍କ ମଧ୍ୟରେ ନିଜର ମଧ୍ୟସ୍ଥତା ସ୍ଥାପିତ କରୁଥିଲେ, ସେମାନେ ସାଧାରଣ ଲୋକଙ୍କଦ୍ୱାରା ଉପନିଷଦ ପାଠକୁ ନିରୁତ୍ସାହିତ କରୁଥିଲେ । ଏହି ମହାନ୍ ସଭ୍ୟତାର ଅବନତିର ଏକ କାରଣ ହେଉଛି ଶୁଦ୍ଧ ଜ୍ଞାନର ଏହିପ୍ରକାରର ଉପେକ୍ଷା ।

ଉପନିଷଦ ଯେ କେବଳ ସନ୍ନ୍ୟାସୀମାନଙ୍କପାଇଁ, ଏହି କଳ୍ପିତ ମିଥ୍ୟା ମଧ୍ୟ ପୂଜାରୀମାନଙ୍କର ନିଜର ଆବିଷ୍କାର ଥିଲା । ଉପନିଷଦ ଉପରେ ଥରେ ଆଖି ବୁଲେଇଲେ ତୁମେ ଜାଣିଯିବ ଯେ ପ୍ରାୟ ପ୍ରତି ଉପନିଷଦ ଏପରି ମହାନ ଋଷିମାନଙ୍କଦ୍ୱାରା ଶିକ୍ଷା ଦିଆଯାଉଥିଲା, ଯେଉଁମାନେ ଗୃହସ୍ଥ ଥିଲେ ଓ ଯେଉଁମାନଙ୍କର ପିଲାପିଲି ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଯେପରି, ଜନକ ରାଜା ଥିଲେ ଏବଂ ମହାନ ଋଷି ବିଶ୍ୱାମିତ୍ର, ଯେ ଆମକୁ ଗାୟତ୍ରୀ ମନ୍ତ୍ର ଦେଇଛନ୍ତି, ଋଷି ହେବା ପୂର୍ବରୁ କ୍ଷତ୍ରିୟ ଥିଲେ ।

ଆମର ଭୁଲିବା ଉଚିତ ନୁହେଁ ଯେ, ପ୍ରଖ୍ୟାତ ଋଷି ବ୍ୟାସ, ଯେ ବେଦଗୁଡ଼ିକର ସଞ୍ଚୟନ କରିଥିଲେ ଏବଂ ବ୍ରହ୍ମସୂତ୍ରର ରଚନା କରିଥିଲେ, ଜଣେ କେଉଟୁଣୀର ପୁଅ ଥିଲେ । ଯୋଗ୍ୟତା ବେଶି ମହତ୍ତ୍ୱପୂର୍ଣ୍ଣ ନା କୌଣସି ଜାତିଗୋତ୍ରରେ ଜନ୍ମନେବାଟା ବେଶି ? ଯଦି ତୁମେ ଭାବୁଛ ଯେ, ତୁମର ଗୋଟିଏ ଆତ୍ମା ଅଛି, ଯାହା ଅଶରୀରୀ, ତାହାହେଲେ କ'ଣ ତା'ର ମା-ବାପା ଅଛନ୍ତି ? ମହାନ ଋଷିମାନେ ସେ ସମୟରେ ନିଜର ସନ୍ତାନମାନଙ୍କୁ ଅନ୍ୟ ଋଷିମାନଙ୍କ ନିକଟକୁ ଉପନିଷଦର ଅଧ୍ୟୟନ କରିବାକୁ ପଠାଉଥିଲେ । ତାହା ଥିଲା ପ୍ରବୁଦ୍ଧ ଯୁଗ- ଉପନିଷଦ କାଳ- ସବୁ ପ୍ରକୃତ ସାଧକଙ୍କପାଇଁ ଅଧ୍ୟୟନର ସମାନ ସୁବିଧାଯୁକ୍ତ, ସେ ଯେଉଁ ଜାତି ବା ସଂପ୍ରଦାୟର ହେଉ ।

ବେଦାନ୍ତୀ ନମ୍ବୁଦ୍ରୀ ବ୍ରାହ୍ମଣ ଶଙ୍କରାଚାର୍ଯ୍ୟ ଯେତେବେଳେ କହିଲେ ଆମକୁ ଉପନିଷଦ ଆଡ଼କୁ ଯିବା ଉଚିତ ଏବଂ ପରମବ୍ରହ୍ମ, ସତ୍ୟ କୌଣସି ମାଧ୍ୟମ ଦ୍ୱାରା ନୁହେଁ, କେବଳ ବିବେକ ଦ୍ୱାରା ଲାଭ କରାଯାଇପାରେ, ପୂଜାରୀମାନେ ତାଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ ବୋଲି ଘୋଷଣା କରିଦେଲେ । ଶଙ୍କରଙ୍କର ଶିକ୍ଷା କର୍ମକାଣ୍ଡୀ ଧର୍ମକୁ ପ୍ରଚଣ୍ଡ ଧକ୍କା ଦେଲା ଏବଂ ପୂଜାରୀମାନଙ୍କୁ ଲାଗିଲା ଯେ, ଲୋକମାନଙ୍କ ଭିତରେ ସେମାନଙ୍କର ପ୍ରାଧାନ୍ୟ କମିଯିବ । ସେମାନେ କେତେ ଚାଲାକ ଥିଲେ, ଏଥିରୁ ଜଣାଯାଏ- ଶେଷରେ ସେମାନେ ଶଙ୍କରାଚାର୍ଯ୍ୟଙ୍କ ସ୍ଥାପିତ ମଠଗୁଡ଼ିକରେ ହିଁ ନିଜର ଏତେ ପ୍ରଭାବ ଜମାଇନେଲେ ଯେ ଆଜିକାଲି ଅଧିକାଂଶ ମଠଗୁଡ଼ିକ କର୍ମକାଣ୍ଡୀ ସଂସ୍ଥାନ ହୋଇ ରହିଯାଇଛି ।

ମୁଁ ମାନୁଛି ଯେ ଉପନିଷଦର ବିଦ୍ୟାର୍ଥୀ ହେବାପାଇଁ କିଛି ବିଶେଷତ୍ୱର ଆବଶ୍ୟକତା ରହିଛି- ତୀକ୍ଷ୍ଣ, ଅପ୍ରଭାବିତ ବୁଦ୍ଧି, ପର୍ଯ୍ୟାପ୍ତ ବୌଦ୍ଧିକ ଶକ୍ତି ଏବଂ ସୁସ୍ଥ ଶରୀର । ଜଣେ ଅସୁସ୍ଥ ବ୍ୟକ୍ତି ପାଖରେ ଏହି ଗଭୀର ଆତ୍ମ-ଅଧ୍ୟୟନର ପ୍ରକ୍ରିୟାପାଇଁ ଆବଶ୍ୟକ ଶକ୍ତି ମିଳିବ ନାହିଁ । ରୁଗ୍ଣ ଶରୀରରେ ଧୈର୍ଯ୍ୟର ଅଭାବ ଥାଏ । ଏହି ସନ୍ଧାନପାଇଁ ଧୈର୍ଯ୍ୟର ବହୁତ ଅଧିକ ଆବଶ୍ୟକତା ହୋଇଥାଏ । ତେଣୁ ଯୋଗାସନର ଅଭ୍ୟାସ ଏବଂ ସଠିକ ପୋଷାକ, ଖାଦ୍ୟ ଆଉ ଏକପ୍ରକାରର ଶାନ୍ତଚିତ୍ତତା ମଧ୍ୟ ଆବଶ୍ୟକ ।''

''କିନ୍ତୁ ବାବାଜୀ, ଉପଯୁକ୍ତ ଗୁରୁଙ୍କର ମଧ୍ୟ ଆବଶ୍ୟକତା ଅଛି'', ମୁଁ କହିଲି ।

''ମାନୁଛି, କିନ୍ତୁ ଭୁଲ କଥା କହୁଥିବା ଗୁରୁଙ୍କଠାରୁ ଗୁରୁ ନ ଥିବା ଭଲ । ଗୁରୁର କାମ ହେଲା ଶିଷ୍ୟକୁ ମାର୍ଗଦର୍ଶନ ଦେବା ନା ତାକୁ ସବୁବେଳେ ନିଜ ଉପରେ ନିର୍ଭରଶୀଳ କରି ରଖିବା ? ଜଣେ ଆଧ୍ୟାତ୍ମିକ ଗୁରୁ ବିଦ୍ୟାର୍ଥୀକୁ ମାର୍ଗଦର୍ଶନ କରାଇ ତାକୁ ସେହି ପର୍ଯ୍ୟନ୍ତ ପହଞ୍ଚାଇଦେବା ଦରକାର ଯେଉଁଠାରେ ସେ ନିଜେ ନିଜର ଗୋଡ଼ରେ ଠିଆ ହୋଇପାରିବ । ସ୍ୱାତନ୍ତ୍ର୍ୟ ହେଉଛି ବେଦାନ୍ତୀ ଶିକ୍ଷାର ଆତ୍ମା ।

''ତେବେ ବର୍ତ୍ତମାନ, ଯେତେବେଳେ ମୁଁ କହୁଛି 'ଉପନିଷଦ', ସେତେବେଳେ ତା'ର ଅର୍ଥ ହେଉଛି ସବୁଠାରୁ ପୁରାତନ ଏଗାରଟି ଉପନିଷଦ– ଈଶାବାସ୍ୟ, କେନ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ମୁଣ୍ଡକ, ମାଣ୍ଡୁକ୍ୟ, କଠ, ପ୍ରଶ୍ନ, ଶ୍ୱେତାଶ୍ୱେତର, ଐତରେୟ ଏବଂ ତୈତ୍ତିରୀୟ । ପରର ଅନେକ ଉପନିଷଦ ମୂଳ ରୂପରେ ମିଳେ ନାହିଁ ଏବଂ କିଛି ଉପନିଷଦ ତ କୌଣସି ସଂପ୍ରଦାୟ ବିଶେଷଙ୍କର ବିଚାରକୁ ସାହାଯ୍ୟ କରିବାପାଇଁ ପ୍ରସ୍ତୁତ କରାଯାଇଛି । ଆମେ ସେସବୁକୁ ଛାଡ଼ିଦେବା ।

'ଉପନିଷଦ' ଶବ୍ଦର ମୂଳ ହେଉଛି ଉପ ଯାହାର ଅର୍ଥ ହେଲା ନିକଟ, ପାଖ । ଏହାର ଅର୍ଥ ହେଲା, ଉପନିଷଦ ସେହି ଲୋକମାନଙ୍କର ବୋଧଗମ୍ୟ ହେବ ଯେଉଁମାନେ ଗୁରୁଙ୍କ ନିକଟରେ ବସନ୍ତି କିମ୍ବା ଯେଉଁମାନେ ଘନିଷ୍ଠ ଭାବରେ ଗୁରୁଙ୍କ ସହିତ ସଂଶ୍ଳିଷ୍ଟ ହୁଅନ୍ତି ଏହି ବହୁ-ମାର୍ଗୀୟ ସତ୍ୟକୁ ବୁଝିବାପାଇଁ । ଏହି ବୁଝିବା ଏପରି ଏକ ଅନୁଭବ, ଯାହାକୁ ଶବ୍ଦରେ ବ୍ୟକ୍ତ କରିହେବ ନାହିଁ । ଏହାର ବର୍ଣ୍ଣନା ମସ୍ତିଷ୍କର ବୋଧଗମ୍ୟ ହେବାପରି କରିହେବ ନାହିଁ କାରଣ ମସ୍ତିଷ୍କ ତ ସୀମିତ ପରିସରରେ କାର୍ଯ୍ୟ କରିଥାଏ ।

ସାଧାରଣତଃ ଚଞ୍ଚଳ ମନ ଶଦ ଅର୍ଥାତ୍ ଶାନ୍ତ ହୋଇ ବସିବାକୁ ଶିଖିବା ଉଚିତ ଏହା ହେଉଛି ଉପ-ନି-ଶଦ୍‌ର ଶେଷ ଅଂଶ, ଏହାର ଅର୍ଥ ହେଲା, ଅଯଥା ଚିନ୍ତାର ଗତିବିଧି ବନ୍ଦ ହେବା ପରେ, ସଦା ଚଞ୍ଚଳ ମନର ସେହି ଶାନ୍ତ ପରିସ୍ଥିତିରେ, ଯାହା ବିଚାରର ପରିସୀମାର ବାହାରେ, ତାହା ପ୍ରକଟ ହୁଏ ।

''ସାମବେଦ ସହିତ ସମ୍ବନ୍ଧ ଥିବା କେନୋପନିଷଦ ଅନୁଯାୟୀ, ଯାହାକୁ ମନ କଳ୍ପନା କରିପାରେ ନାହିଁ; କିନ୍ତୁ ଯାହା ହେଉଛି ମନର ଅସ୍ତିତ୍ୱର କାରଣ, ହେ ଶିଷ୍ୟ, ଜାଣିରଖ, କେବଳ ତାହା ହିଁ ବ୍ରହ୍ମ, ସତ୍ୟ; ଯାହାର ତୁମେ ଏଠାରେ ପୂଜା କରୁଛ, ତାହା ବ୍ରହ୍ମ ବା ସତ୍ୟ ନୁହେଁ ।

ତୁମକୁ ସଂସ୍କୃତ ଶିଖିବାକୁ ପଡ଼ିବ, ଯାହାଦ୍ୱାରା ତୁମେ ମୂଳକଥା ବୁଝିପାରିବ । ସଂସ୍କୃତର ଉପେକ୍ଷା ଏହି ଦେଶର ଜ୍ଞାନର ଅଜ୍ଞତାର ସବୁଠାରୁ ବଡ଼ କାରଣ । ମୂଳ ନ ଜାଣିଥିବାରୁ ଲୋକମାନେ ଅନୈତିକ ଅନୁବାଦକ ଏବଂ ବ୍ୟାଖ୍ୟାକାରମାନଙ୍କଦ୍ୱାରା ପ୍ରଭାବିତ ହୁଅନ୍ତି, ଯେଉଁମାନେ ପ୍ରାୟ ଶାସ୍ତ୍ରଗୁଡ଼ିକୁ ମୋଡ଼ିମାଡ଼ି ନିଜର ମତାନ୍ଧ ବିଚାରର ଅନୁକୂଳ କରି ପ୍ରସ୍ତୁତ କରନ୍ତି । ଆମେ କେନ, ଈଶାବାସ୍ୟ ଏବଂ ମାଣ୍ଡୁକ୍ୟ ଉପନିଷଦ ଗୋଟାଏ ପରେ ଗୋଟାଏ ଅଧ୍ୟୟନ କରିବା ।[୧]

---

୧. ଏହି ଉପନିଷଦଗୁଡ଼ିକର ପୂରା ଚର୍ଚ୍ଚାପାଇଁ ଶ୍ରୀ ଏମ୍‌ଙ୍କ ଦ୍ୱାରା ଲିଖିତ, "Wisdom of the Rishies" ପଢ଼ନ୍ତୁ ।

"ବାବାଜୀ କ'ଣ ବୁଦ୍ଧଙ୍କର ଉପଦେଶ ଉପନିଷଦଗୁଡ଼ିକ ପରି ଥିଲା ?"

"ରୂଢ଼ିବାଦୀ ପୂଜାରୀମାନେ ଶଙ୍କରଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ ବୋଲି କହୁଥିଲେ, ଏହା ଉପନିଷଦଗୁଡ଼ିକର ଓ ବୌଦ୍ଧ ସିଦ୍ଧାନ୍ତଗୁଡ଼ିକ ସମାନତାର ଦ୍ୟୋତକ । ଶଙ୍କରଙ୍କର ଗୁରୁ ଗୌଡ଼ପାଦାଚାର୍ଯ୍ୟ, ଯେ ମାଣ୍ଡୁକ୍ୟ ଉପନିଷଦ ଉପରେ ପ୍ରସିଦ୍ଧ କାରିକା ଲେଖିଥିଲେ, ତାଙ୍କୁ ମଧ୍ୟ କେତେକ ଲୋକ ବୌଦ୍ଧ ବୋଲି କହୁଥିଲେ । କାରଣ ନିଜର ଅଜାତବାଦ ସିଦ୍ଧାନ୍ତଗୁଡ଼ିକରେ ସେ ପ୍ରତିପାଦିତ କରିଥିଲେ ଯେ ସଂସାର ହେଉଛି ମାୟା ବା ଭ୍ରମ ଏବଂ ବ୍ରହ୍ମ ହେଉଛି ଏକମାତ୍ର ସତ୍ୟ ଅନ୍ୟସବୁ କିଛି ନୁହେଁ । ଏଠାରେ ଯଦି 'ବ୍ରହ୍ମ' ଶବ୍ଦକୁ 'ଶୂନ୍ୟ' ଶବ୍ଦରେ ବଦଳାଇ ଦିଆଯିବ, ତେବେ ଏହି ଉକ୍ତି ମହାନ ବୌଦ୍ଧ ବିଚାରକ ନାଗାର୍ଜୁନଙ୍କର ପ୍ରଜ୍ଞାପାରମିତା ସିଦ୍ଧାନ୍ତର କେନ୍ଦ୍ର ବିଷୟ ହୋଇଯିବ ।"

"ବାବାଜୀ, ଦେଖନ୍ତୁ ଏଇସବୁ ବିଷୟ ବହୁତ ଦାର୍ଶନିକ ହୋଇଯାଉଛି, ମୋତେ ଯୋଗ ଆଉ ଯୋଗାଭ୍ୟାସ ବିଷୟରେ କିଛି କୁହନ୍ତୁ ।"

"ଠିକ୍ ଅଛି", ବାବାଜୀ ମୃଦୁ ହସି କହିଲେ, "ମନଦେଇ ଶୁଣ, ମଧୁ । ଯୋଗ ଏକ ପ୍ରାଚୀନ ବିଜ୍ଞାନ, ଯାହାକୁ ପରବର୍ତ୍ତୀ ସମୟରେ ପତଞ୍ଜଳି ସଂହିତାବଦ୍ଧ କଲେ । ପତଞ୍ଜଳିଙ୍କର ଅଷ୍ଟାଙ୍ଗ ଯୋଗସୂତ୍ର ହେଉଛି ଅମୂଲ୍ୟ ମଣିମାଣିକ୍ୟ । ଅଷ୍ଟାଙ୍ଗ ଯୋଗର ଉଦ୍ଦେଶ୍ୟ ହେଉଛି ଚିତ୍ତ-ବୃତ୍ତି-ନିରୋଧ ଅର୍ଥାତ୍ ମନର ଅଶାନ୍ତିକୁ ଦୂର କରିବା । ଯେତେବେଳେ ମନନଶୀଳ ଯୋଗୀପାଇଁ ନିର୍ଦ୍ଧାରିତ ନିୟମର ପାଳନ ତଥା ଆସନ, ପ୍ରାଣାୟାମ, ବନ୍ଧ, ମୁଦ୍ରା ଏବଂ କ୍ରିୟାର ଅଭ୍ୟାସଦ୍ୱାରା ତା'ର ଚିତ୍ତ ସ୍ଥିର ହୋଇଯାଏ, ସେତେବେଳେ ସେ ସମାଧିର ସ୍ଥିତିରେ ପହଞ୍ଚିଯାଏ ।

ସମାଧି ଅନେକ ପ୍ରକାରର ହୋଇଥାଏ ଏବଂ ଯୋଗୀମାନଙ୍କପାଇଁ ସମାଧି ହେଉଛି ଆଧାରଭୂତ ଆବଶ୍ୟକତା । ସମାଧିର ସ୍ଥିତି ପରେ ଚିତ୍ତ, ଯେ ଏତେବେଳକୁ ଔପନିଷଦିକ ସିଦ୍ଧାନ୍ତଗୁଡ଼ିକୁ ବୁଝିଯାଇଥାଏ, ଚେତନାର ମହତ୍ତର ସ୍ତରକୁ ପହଞ୍ଚିଯାଏ ଏବଂ ସମାଜ-ସଂସାର ପାଇଁ ଉଦ୍ଦିଷ୍ଟ ବିଚାରଗୁଡ଼ିକରୁ, ମନୋଭାବଗୁଡ଼ିକରୁ ପୂର୍ଣ୍ଣତଃ ମୁକ୍ତ ହୋଇଯାଏ । ଏହା ହେଉଛି ସ୍ୱତନ୍ତ୍ରତାର ସ୍ଥିତି ବା କୈବଲ୍ୟ, ଯାହା ହେଉଛି ଯୋଗର ଅନ୍ତିମ ଉଦ୍ଦେଶ୍ୟ ।"

"କିନ୍ତୁ ବାବାଜୀ", ମୁଁ କହିଲି, "ଯୌଗିକ ଶକ୍ତି, ସିଦ୍ଧି-ସର୍ବବ୍ୟାପିତା, ସର୍ବଶକ୍ତିମତ୍ତା ଏବଂ ସର୍ବଜ୍ଞତା ଆଦି ଅଲୌକିକ ଶକ୍ତିଗୁଡ଼ିକ ବିଷୟରେ ଆପଣଙ୍କର ମତ କ'ଣ ?"

ବାବାଜୀ ଜୋର୍‌ରେ ହସିଉଠିଲେ ଓ କହିଲେ, "ସମସ୍ତଙ୍କର ଯୌଗିକ ଶକ୍ତିଗୁଡ଼ିକରେ ଆଗ୍ରହ – ଯୌଗିକ ଶକ୍ତିର ବିକାଶ କିପରି ହେବ ପରି ବହିଗୁଡ଼ିକ ଗରମ ଇଡ୍‌ଲି ପରି ବିକ୍ରି ହେବ; କିନ୍ତୁ ଅସଲ ଘଟଣା ହେଲା, ଯୌଗିକ ଶକ୍ତି ଅଛି; କିନ୍ତୁ ତାହା ଅତି ବିରଳ ।

ତଥାକଥିତ ଚମତ୍କାରଗୁଡ଼ିକ ହେଉଛି ଚତୁରତାର ସହିତ କୌଶଳର ପ୍ରଦର୍ଶନ ।[୧] ଏହା ସତ୍ୟ ଯେ ଯୌଗିକ ଅଭ୍ୟାସର ପ୍ରକ୍ରିୟାରେ ଚିତ୍ତ ଏତେ ଏକାଗ୍ର ହୋଇଯାଏ ଯେ ଯେଉଁ କାମ ଜଣେ ସାଧାରଣ ମନୁଷ୍ୟ ବର୍ଷକରେ କରିବ, ଯୋଗୀ ଚାହିଁଲେ ତାହାକୁ କିଛି ସମୟ ମଧ୍ୟରେ କରିଦେବ ।

ଚିତ୍ତ ଶାନ୍ତ ଓ ସ୍ଥିର ହୋଇଯିବା କାରଣରୁ ଏବଂ ଅନେକାଂଶରେ ସ୍ୱାର୍ଥପର ପ୍ରବୃତ୍ତିରୁ ମୁକ୍ତ ହୋଇଯିବା ହେତୁ, ଯୋଗୀର ଚିତ୍ତର ଅନ୍ୟମାନଙ୍କର ଚିତ୍ତ ସହିତ ସମ୍ବନ୍ଧ ସ୍ଥାପିତ ହୋଇଯାଏ । ତେଣୁ ଅନ୍ୟ ଜଣକ ମନରେ କ'ଣ ଘଟୁଛି, ତାହା ଜଣେ ନୂଆ ନୂଆ ଶିକ୍ଷା ନେଉଥିବା ଯୋପୀ ମଧ୍ୟ ଜାଣିପାରେ । ବାସ୍ତବରେ କେବଳ ଗୋଟିଏ ଚିତ୍ତ ରହିଛି, ଯେତେବେଳେ ଏହାର ଜ୍ଞାନ ଭଲଭାବରେ ହୋଇଯାଏ, କେବଳ ସୈଦ୍ଧାନ୍ତିକ ବୈଚାରିକ ସ୍ତରରେ ନୁହେଁ, ବାସ୍ତବରେ ବ୍ୟାବହାରିକ ରୂପରେ, ସେତେବେଳେ ଯୋଗୀର ବିଚାର ଓ କ୍ରିୟାଗୁଡ଼ିକ ବିଚଳିତ ଓ ବିକ୍ଷିପ୍ତ ଚିତ୍ତଯୁକ୍ତ ଲୋକମାନଙ୍କୁ ଅସାଧାରଣ ଏପରିକି ଚମତ୍କାରୀ ବୋଲି ଜଣାପଡ଼େ ।

କିନ୍ତୁ ମୋ କଥା ଗଣ୍ଠି ପକେଇ ମନେରଖ, ସ୍ତ୍ରୀ-ପୁରୁଷଙ୍କର ମିଳନରୁ ଜନ୍ମ କୌଣସି ପୁରୁଷ ବା ସ୍ତ୍ରୀ ସର୍ବଜ୍ଞ, ସର୍ବବ୍ୟାପୀ ଏବଂ ସର୍ବଶକ୍ତିମାନ ହୋଇପାରିବ ନାହିଁ; ସେ ଯେତେ ଉଚ୍ଚସ୍ତରରେ ପହଞ୍ଚି ଥିବା ବ୍ୟକ୍ତି ହେଲେ ମଧ୍ୟ । ଶରୀର, ଯାହା ଜନ୍ମ ନେଇଛି, ନିଶ୍ଚିତ ହିଁ ମରିବ, ପୌଷ୍ଟିକ ଆହାର ଏବଂ ଯୌଗିକ କାୟାକଳ୍ପ ବଳରୁ ସେ ଯେତେ ଦୀର୍ଘ ସମୟ ବଞ୍ଚିରହିଲେ ମଧ୍ୟ । ମୋର ଗୁରୁ ଶ୍ରୀଗୁରୁ ବାବାଜୀ, ଯେ କେତେ ଶହ ବର୍ଷ ଧରି ବଞ୍ଚିରହିଛନ୍ତି, ସେ ମଧ୍ୟ ମରିଯିବେ । ମୁଁ ବି ଦିନେ ମରିଯିବି ।

ସାଧାରଣ ମଣିଷ ଯାହାକୁ ଚମତ୍କାର କହନ୍ତି, ତାହା ବାସ୍ତବରେ ପ୍ରକୃତିର ନିୟମ ଅନୁସାରେ ହିଁ ଘଟିଥାଏ । ସେହି ସବୁ ନିୟମକୁ, ଯାହାକୁ ସେମାନେ ଆଜି ପର୍ଯ୍ୟନ୍ତ ବୁଝିପାରି ନାହାନ୍ତି, ଯୋଗୀ ସେସବୁ ନିୟମକୁ ଜାଣେ, ଏକଥା ମଧ୍ୟ ଜାଣେ ଯେ ଏହିଗୁଡ଼ିକୁ କିପରି କାମରେ ଲଗାଇ ହେବ ।''

ତା'ପରେ ମୁଁ ତାଙ୍କୁ ନାଥମାନଙ୍କ ବିଷୟରେ ପଚାରିଲି, ''ଆପଣ ଥରେ ମୋତେ କହିଥିଲେ ଯେ, ଆପଣ ନାଥପନ୍ଥୀ । ଏହି ପନ୍ଥ ବିଷୟରେ ମୋତେ କିଛି କହନ୍ତୁ ।''

''ଠିକ୍ ଅଛି'', ବାବାଜୀ କହିଲେ, ''କିଛି ମୁଁ କହିବି ବର୍ତ୍ତମାନ । ଧୀରେ ଧୀରେ ତୁମେ ଅଧିକ ଜାଣିବ । ନାଥ ହେଉଛି ଏକ ପ୍ରାଚୀନ ସମ୍ପ୍ରଦାୟ, ଯାହାର ସଂସ୍ଥାପକ

---

୧. ଦେଖନ୍ତୁ, "How to Levitate and other Great Secrets of Magic" by James Talbot.

ହେଉଛନ୍ତି ଶିବ ମହାଦେବ, ଯାହାଙ୍କୁ ଆଦିନାଥ ବୋଲି କୁହାଯାଏ । ନାଥମାନଙ୍କର ପରବର୍ତ୍ତୀ ଗୁରୁ ହେଲେ ମତ୍ସ୍ୟେନ୍ଦ୍ରନାଥ, ସେ ପ୍ରସିଦ୍ଧ ଗୋରଖନାଥଙ୍କର ଗୁରୁ ଥିଲେ । ନାଥପନ୍ଥରେ ଯେଉଁ ଯୋଗୀଙ୍କୁ ବାଳକନାଥ କୁହାଯାଏ, (କାରଣ ସେ ସବୁବେଳେ କିଶୋରଟିଏ ପରି ଦିଶନ୍ତି) ସେ ଆଉ କେହି ନୁହନ୍ତି, ମୋର ଗୁରୁ ଶ୍ରୀ ଗୁରୁ ବାବାଜୀ । ସେ ଅତୀତରେ ତୁମର ମଧ୍ୟ ଗୁରୁ ଥିଲେ ।

ନାଥମାନେ ଅତି ଉତ୍ତମ ଯୋଗୀ ଥିଲେ । ଯୋଗଶାସ୍ତ୍ର ଉପରେ ଲେଖାଯାଇଥିବା ପ୍ରାୟ ସବୁ ମହତ୍ତ୍ୱପୂର୍ଣ୍ଣ ପୁସ୍ତକ, ଯେପରି – ଗୋରକ୍ଷଶତକ, ଘେରଣ୍ଡସଂହିତା, ହଠଯୋଗ ପ୍ରଦୀପିକା ଇତ୍ୟାଦି ନାଥ ଯୋଗୀମାନଙ୍କଦ୍ୱାରା ଲିଖିତ । ଆସନ, ପ୍ରାଣାୟମ, କ୍ରିୟାଯୋଗ, ବନ୍ଧ ଏବଂ ମୁଦ୍ରାଗୁଡ଼ିକର ସେମାନେ ଅଭ୍ୟାସ କରିଥିଲେ ଓ ସେଗୁଡ଼ିକୁ ପୂର୍ଣ୍ଣତା ଦେଇଥିଲେ । ସାଧାରଣତଃ ସେମାନେ ପରିବ୍ରାଜକ ବା ଘୂରିବୁଲୁଥିବା ଯୋଗୀ ହୁଅନ୍ତି ଯାହାଙ୍କୁ ପ୍ରାୟ କାନଫୋଡ଼ା ବାବା ବୋଲି କୁହାଯାଏ, କାରଣ ସେମାନେ ନିଜ କାନର ଉପର ଅଂଶ ଫୋଡ଼ାଉ ଥିଲେ ଏବଂ ସେଥିରେ ବଡ଼ବଡ଼ ବଳା ପିନ୍ଧୁଥିଲେ ।''

ବାବାଜୀ ମୋତେ ନିଜର କାନର ବଳା ଦେଖାଇଲେ । ''ମୋର କାନ କେବେ ଫୋଡ଼ା ହେବ ?'' ମୁଁ ପଚାରିଲି ।

''ତୁମର କାନ ଫୋଡ଼ାଇବାର ଆବଶ୍ୟକତା ନାହିଁ'', ବାବାଜୀ କହିଲେ, କାରଣ ତୁମକୁ ସଂସାରକୁ ଫେରିଯାଇ ସାଧାରଣ ମଣିଷ ପରି ରହିବାକୁ ହେବ; କିନ୍ତୁ ତୁମ କାନର ତଳ ଅଂଶକୁ ମୁଁ ଫୋଡ଼ିଦେବି ଯେମିତି ତୁମେ ମୋ ସହିତ ଥିବା ପର୍ଯ୍ୟନ୍ତ ତମ୍ବାର ବଳା ପିନ୍ଧିପାରିବ, ତା'ପରେ ସମତଳ ଭୂମିକୁ ଯିବା ପୂର୍ବରୁ ତୁମେ ବଳା ବାହାର କରିଦେଇ ପାରିବ । କିଛି ସମୟ ପରେ କାନର କଣା ବନ୍ଦ ହୋଇଯିବ ।

ନାଥମାନେ ଯେଉଁଠି ରହନ୍ତି, ଧୁନି, ଜଳାନ୍ତି, ସାଇଁନାଥ ଶିରିଡ଼ିରେ ସବୁବେଳେ ନିଜର ଧୁନି ଜଳେଇ ରଖୁଥିଲେ ଏବଂ ତାହା ଆଜି ବି ଜଳୁଛି । ତୁମକୁ ବିଶେଷ ଆଜ୍ଞା ଦିଆଯାଇଛି । ତୁମର ସବୁବେଳେ ଧୁନି ଜଳେଇରଖିବା ଦରକାର ନାହିଁ କାରଣ ତୁମର କାମ ହେଉଛି ଭିନ୍ନ ପ୍ରକାରର । ତୁମେ ଚାହିଁଲେ ବିଶେଷ ସମୟରେ ଧୁନି ଜଳାଇ ପାରିବ ।''

''ବାବାଜୀ ! ଆପଣ ମୋତେ କ୍ରିୟା ପ୍ରାଣାୟାମ ଶିଖାଇଛନ୍ତି – ଗରମ–ଥଣ୍ଡାବାଲା, ଦୟାକରି କ୍ରିୟା ଯୋଗ ବିଷୟରେ ଆଉ କିଛି କହନ୍ତୁ ।''

‘‘ସେସବୁ ବିଷୟରେ’’, ବାବାଜି କହିଲେ, ‘‘ମୁଁ ତୁମକୁ ପରେ କହିବି, ଯେତେବେଳେ ଆମେ ଆମର ପ୍ରଥମ ପଦଯାତ୍ରା କରିବା ତିବ୍ବତସ୍ଥିତ ତୋଲିଙ୍ଗ ମଠକୁ, ଯେଉଁଠାରୁ ଆମେ କୈଳାସକୁ ଯିବା । ସେଠାରେ ମୁଁ ତୁମର କାନକୁ ଫୋଡ଼ି ତୁମକୁ ତମ୍ବାର ବଳା ଦେବି । ତୁମେ କ’ଣ ତିବ୍ବତ ଯିବାକୁ, ତୋଲିଙ୍ଗ ଯିବାକୁ ଉତ୍ସୁକ ନୁହେଁ ?’’

ମୁଁ ତାଙ୍କର ମୋର ମନକଥା ଜାଣିନେବାର କ୍ଷମତା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲି । ଯେଉଁଦିନ ବୃଦ୍ଧ ତିବ୍ବତୀ ଯୋଗୀ ତୋଲିଙ୍ଗ ମଠ ବିଷୟରେ କହିଥିଲେ, ସେହି ଦିନ ହିଁ ମୁଁ ବାବାଜୀଙ୍କୁ ପଚାରିବାକୁ ଚାହୁଁଥିଲି ଯେ, ଆମେ କ’ଣ ଏକାଠି ସେଠାକୁ ଯାଇ ପାରିବା କି ନାହିଁ ବୋଲି । କିଛି ନା କିଛି କାରଣ ହେତୁ ପଚାରିବା ସ୍ଥଗିତ ରଖିଥିଲି । ‘‘ତେବେ ତ ଭାରି ଭଲ ହେବ’’, ମୁଁ ଖୁସିରେ ଚିତ୍କାର କଲି, ‘‘କୈଳାସ, ମହାଯୋଗୀ ଶିବଙ୍କର ସ୍ଥାନ !’’

‘‘ତୋଲିଙ୍ଗ ମଠ ତ ନିଶ୍ଚିତ ଦେଖିବା; କିନ୍ତୁ କୈଳାସ ? ଦେଖାଯାଉ କ’ଣ ହେଉଛି । ଏବେ ଦି’ପହର ପାଇଁ ଖାଇବା ତିଆରି କରିବାର ସମୟ ହୋଇଗଲାଣି ଆଉ ଧୁନି ପାଇଁ ମଧ୍ୟ କିଛି କାଠ ନେଇଆସ । ଥରକରେ ବହୁତ ବେଶି ଖାଇପକାଇବା ଯାହା, ଥରକରେ ବେଶି ଶିଖିପକାଇବା ମଧ୍ୟ ତାହା । ତାହା ଠିକ୍‌ରେ ହଜମ ହୁଏ ନାହିଁ । ଓଁ ଶାନ୍ତି, ଶାନ୍ତି ।’’ ଏବଂ ଏହା ସହିତ ଏହି ବୈଠକ ସମାପ୍ତ ହେଲା ।



# ତୋଲିଙ୍ଗ ମଠ ଓ ହିମମାନବ

ମୁଁ ଭାରି ଖୁସି ହୋଇଗଲି ଯେତେବେଳେ ଦିନେ ସନ୍ଧ୍ୟାରେ ବାବାଜୀ ଘୋଷଣା କଲେ – "ପହରିଦିନ ଆମେ ପଶ୍ଚିମ ତିବ୍ବତରେ ଥିବା ତୋଲିଙ୍ଗ ମଠ ଉଦ୍ଦେଶ୍ୟରେ ବାହାରି ପଡ଼ିବା ।" ବାବାଜୀଙ୍କ ସହିତ ଏହା ମୋର ପ୍ରଥମ ଯାତ୍ରା ହେବାକୁ ଯାଉଥିଲା ।

ପରଦିନ ସକାଳେ ଆମର ରାଓ୍ୱଲଜୀଙ୍କ ସହିତ ସାକ୍ଷାତ କରିବା କଥା । ମୁଁ ଭାବୁଥିଲି – ରାଓ୍ୱଲଜୀଙ୍କର କ'ଣ ପ୍ରତିକ୍ରିୟା ହେବ, ଯେତେବେଳେ ସେ ମୋତେ ବାବାଜୀଙ୍କ ସହିତ ଦେଖିବେ । କିନ୍ତୁ ମୋତେ ଏହାଠାରୁ ମଧ୍ୟ ଅଧିକ ଆଶ୍ଚର୍ଯ୍ୟ ହେବାର ଥିଲା । ରାଓ୍ୱଲଜୀ ଯେମିତି ବାବାଜୀଙ୍କୁ ଦେଖିଲେ, ସେ ଠିଆ ହୋଇଗଲେ ଏବଂ ହାତଯୋଡ଼ି ମାଲୟାଲମରେ କହିଲେ, ଦୟାକରି ଆସନ୍ତୁ, ସ୍ୱାମୀଜୀ ! ଏହାପରେ ଦି'ଜଣଙ୍କ ଭିତରେ ଶୁଦ୍ଧ, ଉତ୍ତର–ତ୍ରାଭାଙ୍କୋରୀ ମାଲୟାଲମରେ କଥାବାର୍ତ୍ତା ହେଲା । ମୁଁ ନିଜର କାନକୁ ବିଶ୍ୱାସ କରିପାରିଲି ନାହିଁ । ବାବାଜୀ ମାଲୟାଲୀଠାରୁ ବେଶି କାଶ୍ମୀରୀ ଲୋକ ପରି ଲାଗୁଥିଲେ ଏବଂ ସେ କେବେହେଲେ ମୋ ସହିତ ମାଲୟାଲୀରେ କଥାବାର୍ତ୍ତା କରି ନ ଥିଲେ । ପୁଣି ମୁଁ ଭାବିଲି, ସେ ମାଲୟାଲୀ ଥିଲେ । ଏମିତିରେ ତାଙ୍କୁ ମୁଁ ପ୍ରଥମ ଥର ତ୍ରିଭେନ୍ଦ୍ରମରେ ହିଁ ଭେଟିଥିଲି ।

"ମୁଁ ଏହି ଯୁବକକୁ ତୀର୍ଥସ୍ଥାନମାନଙ୍କରେ ବହୁ ସଂଖ୍ୟାରେ ଥିବା ନକଲି ଗୁରୁମାନଙ୍କ ବିଷୟରେ ସାବଧାନ କରି ଦେଇଥିଲି", ରାଓ୍ୱଲଜୀ କହିଲେ, "ଆଉ ଫେରିଯାଇ କିଛି ଉପଯୋଗୀ କାମ କରିବାର ପରାମର୍ଶ ଦେଇଥିଲି । ଭଗବାନ୍‌ଙ୍କ ଦୟାରୁ ଯେ ଆପଣଙ୍କୁ ପାଇଗଲା, ନା ଆପଣ ଏହାକୁ ପାଇଲେ ସ୍ୱାମୀଜୀ ?"

"ଆମର ପୁରୁଣା ସମ୍ପର୍କ ଅଛି", ବାବାଜୀ କହିଲେ, "ଆପଣଙ୍କର ଏହା ସହିତ ଏପରି କଥାବାର୍ତ୍ତା ହେବାଟା ଭଲ ହୋଇଛି । କାଲି ଆମେ ତୋଲିଙ୍ଗ ମଠ ଉଦ୍ଦେଶ୍ୟରେ ବାହାରୁଛୁ ଏବଂ ମୋର ଆପଣଙ୍କଠାରୁ କିଛି ସାହାଯ୍ୟ ଆବଶ୍ୟକ ।"

"ଆପଣଙ୍କ ସେବାରେ", ରାଓ୍ୱଲଜୀ କହିଲେ ।

ଆମେ ବ୍ୟାସ ଗୁମ୍ଫାରେ ରାତି ବିତାଇଲୁ । ପରଦିନ ଆମେ ମାନା ଗିରିପଥ ଆଡ଼କୁ ବାହାରି ପଡ଼ିଲୁ । ଆମ ସହିତ ବୟସରେ ମୋଠାରୁ କିଛି ବଡ଼, ମଜବୁତ ଯୁବକ ନେପାଳୀ ଫତେହ୍ ବାହାଦୁର ଥିଲା, ଯେ ଆମର କୁଲି ଥିଲା ଏବଂ ରୋଷେୟା ମଧ୍ୟ । ମାନା ଗାଆଁର ତିବ୍ବତୀ ମୁଖିଆ ଆମକୁ ଗୋଟିଏ ଖଚ୍ଚର ମଧ୍ୟ ଦେଇଥିଲେ । ଖଚ୍ଚର ପିଠିରେ ଆମେ ତିନିଜଣ ଶୋଇପାରିବା ପରି ଗୋଟିଏ ବଢ଼ିଆ ତମ୍ବୁ ଏବଂ ଗୁଡ଼ିଏ ଥଳିରେ ଗରମ ଲୁଗା, ଖାଇବା–ପିଇବା ଜିନିଷ, ଗୋଟାଏ ଗ୍ୟାସ୍ ଷ୍ଟୋଭ୍ କିଛି ବାସନ, ଏବଂ ଯାତ୍ରା ପାଇଁ ଆବଶ୍ୟକ ଅନ୍ୟାନ୍ୟ ଜିନିଷପତ୍ର ଥିଲା । ରାଓ୍ଵଲଜୀ ଦେଇଥିବା କିଛି ପଇସା ମଧ୍ୟ ମୋ ପାଖରେ ଥିଲା । ମୁଁ ମୋଟା ଉଲ୍‌ର କାଶ୍ମୀରୀ ଚୋଗା, ମେଣ୍ଢା ଚମଡ଼ାର ଟୋପି, ମୋଜା ଆଉ ଜୋତା ପିନ୍ଧିଥିଲି । ବାବାଜୀ ସବୁବେଳ ପରି ଗୋଟାଏ ଚାଦର ଘୋଡ଼ାଇ ହୋଇଥିଲେ ଓ ପାଦରେ ମାଟିଆ ରଙ୍ଗର କ୍ୟାନ୍‌ଭାସ ଜୋତା ପିନ୍ଧିଥିଲେ । ଫତେହ୍ ବାହାଦୁର ମୋଟା ରୁମବାଲା କୋଟ ପିନ୍ଧିଥିଲା ଆଉ ତା' ପାଦରେ ଥିଲା ମୋଟା ଚମଡ଼ାର ବୁଟ୍‌ଜୋତା, ସେ କହିଲା ଯେ ସେ ଭାରତୀୟ ଓ ତିବ୍ବତୀ ବେପାରିମାନଙ୍କ ସହିତ ଏହି ରାସ୍ତା ଦେଇ ଯାଇସାରିଛି ଓ ସେ ରାସ୍ତା ଚିହ୍ନେ । ''କିଛି ଚିନ୍ତା କରିବାର ନାହିଁ'', ବାବାଜୀ କହିଲେ, ମୁଁ ନିଜେ ବି ଏଇ ରାସ୍ତାରେ କେତେଥର ଯାଇସାରିଛି ।

ବାହାରିବା ପରେ ମୁଁ ବାବାଜୀଙ୍କୁ ପଚାରିଲି – ''ଆମକୁ କୈଳାସରେ ପହଞ୍ଚିବାକୁ କେତେଦିନ ଲାଗିବ'' ? ସେ କହିଲେ ଯେ, ''ଏହା କୈଳାସକୁ ଯିବାର ପ୍ରାଚୀନ ରାସ୍ତା, ଯେଉଁ ବାଟ ଦେଇ ରାମ, ପାଣ୍ଡବମାନେ ଏବଂ ଶୁକଦେବଙ୍କ ସହିତ ମହାନ ଋଷିମାନେ ଯାଇଥିଲେ । ଆମେ ପ୍ରଥମେ ତୋଲିଙ୍ଗମଠରେ ପହଞ୍ଚିବା, ତା'ପରେ କୈଳାସ ବିଷୟରେ ଠିକଣା କରିବା ।'' ଏହା ଏକପ୍ରକାରର ଅନିଷ୍ଟ ସୂଚନା ପ୍ରମାଣିତ ହେଲା । ଆମକୁ ତୋଲିଙ୍ଗମଠରୁ ଫେରିବାକୁ ପଡ଼ିଲା କାରଣ ମୁଁ ଭୀଷଣ ଭାବରେ ବେମାର ପଡ଼ିଗଲି । କୈଳାସ ଯିବାର ମୋର ମନସ୍କାମନା ପୂରଣ କରିବାକୁ ମୋତେ ଚାଳିଶ ବର୍ଷ ଲାଗିଗଲା । ଷାଠିଏ ପାର୍ ହେଲା ପରେ, ଅନ୍ତତଃ ସତାବନ ଜଣ ସାଥୀଙ୍କ ସହିତ ମୁଁ କୈଳାସକୁ ଗଲି । ରାସ୍ତା ଅଲଗା ଥିଲା – ଆମେମାନେ କାଠମାଣ୍ଡୁ ପଟୁ ଗଲୁ ।

କେଶବ ପ୍ରୟାଗରେ ସରସ୍ଵତୀ ଓ ଅଳକନନ୍ଦା ମିଳିତ ହୁଅନ୍ତି । ଆମେ ସରସ୍ଵତୀର କୂଳେ କୂଳେ ଉତ୍ତର ଦିଗକୁ ଚାଲିଲୁ । ରାସ୍ତା କଠିନ ଥିଲା ଓ ଶୀତ ଭୀଷଣ ହେଉଥିଲା । ଆମେ ଦିନକରେ ଦଶ କିଲୋମିଟରରୁ ଅଧିକ ଚାଲିପାରିଲୁ ନାହିଁ । ଖାଇବାର କୌଣସି ଅସୁବିଧା ନ ଥିଲା । ଫତେହ୍ ବାହାଦୁର ନିଜର କିରୋସିନି ଷ୍ଟୋଭରେ ଚପାଟି ଓ ଆଳୁ ତରକାରି ତିଆରି କରିନେଉଥିଲା । ମୁଠାଏ ଲେଖାଏଁ ବତୁରା ଚଣା ଓ ଗୁଡ଼ ଆମକୁ ଯଥେଷ୍ଟ

ଶକ୍ତି ଯୋଗାଉଥାଏ । ଯେମିତି ଆମେ ଉପରକୁ ଉପରକୁ ଚଢ଼ିଲୁ, ବାବାଜୀଙ୍କର ବିଶେଷ ପ୍ରାଣାୟାମ କରିବାଦ୍ୱାରା ମୁଁ ଅମ୍ଳଜାନର ଅଭାବ ଅନୁଭବ କଲି ନାହିଁ । ରାତିରେ ଆମେ ତିନିଜଣ ସେହି ବଡ଼ ତମ୍ବୁରେ ଶୋଉଥିଲୁ ।

କିନ୍ତୁ ଚାଲିବା ଭାରି କଷ୍ଟକର ଥିଲା । ବ୍ୟାସ ଗୁମ୍ଫା ପରେ ରାସ୍ତା ନ ଥିଲା କହିଲେ ଚଳେ । ଆମକୁ ବରଫ ଓ ପଥରର ଟିଲା ମଝିରେ ଚାଲିବାକୁ ପଡୁଥିଲା । ଆମେ ସରସ୍ୱତୀ ସହିତ ଚାଲୁଥାଉ । ସବୁଆଡୁ ଆମ ଆଡ଼କୁ ଚାହିଁରହିଥିବା ବରଫଢଙ୍କା ପାହାଡ଼ସବୁ ଠିଆ ହୋଇ ରହିଥାଆନ୍ତି । ସରସ୍ୱତୀର ଅନେକ ଉପନଦୀ, ଯେଉଁଗୁଡ଼ିକୁ ଆମକୁ ପାରି ହେବାକୁ ପଡ଼ିଲା, ବରଫ ପରି ଥଣ୍ଡା ଥିଲେ ଏବଂ ଆମେ ଭାରି କଷ୍ଟରେ ସେଗୁଡ଼ିକ ପାରିହେଲୁ । ବଦ୍ରିନାଥରୁ ପ୍ରାୟ ପଚାଶ କିଲୋମିଟର ପରେ ପାରିପାର୍ଶ୍ୱିକ ଆହୁରି ଭୀଷଣ ରୂପ ଧାରଣ କଲା । ରାସ୍ତା ବରଫରେ ଢାଙ୍କି ହୋଇଥାଏ ଏବଂ ଅତି ଖସଡ଼ା ଥାଏ । କେତେକ ଜାଗାରେ ଫତେହ୍ ବାହାଦୁରକୁ ଖଣତି ଦ୍ୱାରା ବଡ଼ ବଡ଼ ବରଫରେ ଖଣ୍ଡ ଘୁଞ୍ଚାଇବାକୁ ପଡୁଥିଲା ।

ଆମେ ମାନା ଗିରିପଥଆଡ଼କୁ ଯାଉଥିଲୁ, ଯାହା ସମୁଦ୍ରତଳରୁ ଅଠର ହଜାର ଫୁଟ ଉଚ୍ଚରେ ଅବସ୍ଥିତ । ପୋଖତ ପର୍ବତାରୋହୀମାନେ ହିଁ ସେଠାକୁ ଯିବାକୁ ପ୍ରୟାସ କରନ୍ତି । ପ୍ରାଚୀନ କାଳରୁ ପ୍ରସିଦ୍ଧ ଏହି ଗିରିପଥ ଦୃଷ୍ଟିଗୋଚର ହେଲା – ଶୁଦ୍ଧ ପାଲିସ୍ ରୁପା ପରି ରୁପେଲି । ଶୀଘ୍ର ଗୋଟିଏ ନୀଳ ପର୍ବତ ଦେଖାଗଲା । 'ନୀଳ ପର୍ବତ', ବାବାଜୀ କହିଲେ, "ଯେଉଁଠାରେ ଗୋଟାଏ ସମୟରେ କାକଭୁଶଣ୍ଡିଜୀ ରହୁଥିଲେ ।"

ଏଗାର ଦିନ ଆମେ ମାନା ଗିରିପଥରୁ ପ୍ରାୟ ବାର କିଲୋମିଟର ତଳେ ତମ୍ବୁ ପକାଇଲୁ । ଫତେହ୍ ବାହାଦୁର କୌଣସି ପ୍ରକାରେ ତମ୍ବୁର ଦ୍ୱାର ସାମ୍ନାରେ ଧୁନି ଜଳେଇବାର କାମଟା କରିନେଲା । ମୁଁ ମଧ୍ୟ ଯଥାଶକ୍ତି ସାହାଯ୍ୟ କଲି । ବାବାଜୀ ତାହା ଚାରିପଟେ ଏକ ସୁରକ୍ଷା ଚକ୍ର ଆଙ୍କିଦେଲେ । ଧୁନି ବାହାରେ ବେଶ୍ କେତେ ଘଣ୍ଟା ଧରି ଜଳିଲା, ଯଦିଓ ବାହାରେ ଥଣ୍ଡା ପବନ ବହୁଥାଏ । ଅତିରିକ୍ତ କ୍ଳାନ୍ତିରେ ନିଦ ଆସିବା ପୂର୍ବରୁ ସେଦିନ ରାତିରେ ମୁଁ ବାବାଜୀଙ୍କୁ ପଚାରିଲି ଯେ ସେ କ'ଣ କେରଳରୁ ଆସିଥିଲେ ?

"ନା", ସେ କହିଲେ, "କିନ୍ତୁ ମୁଁ କେରଳରେ ବହୁତ ବୁଲିଛି । ଯେତେବେଳେ ତ୍ରିଭେନ୍ଦ୍ରମରେ ତୁମ ସହିତ ସମ୍ବନ୍ଧ ପୁନଃସ୍ଥାପିତ କରିବାକୁ ଆସିଥିଲି, ସେତେବେଳେ ମୁଁ କୋଭଲମ୍ ସାଗରତଟ ନିକଟରେ ଥିବା ଅଗସ୍ତ୍ୟକୂଟରୁ ଫେରୁଥିଲି । ମୁଁ ଗୁରୁବାୟୁର, ଶବରୀ ମଳୟ ମଧ୍ୟ ଯାଇଛି..."

''ଏହା ତ ମୋର ପ୍ରଶ୍ନର ଉତ୍ତର ହେଲା ନାହିଁ ବାବାଜୀ'', ମୁଁ କହିଲି, ''ଆପଣ ରାଓ୍ୱଲଜୀଙ୍କ ସହିତ ଦେଶଜ ମାଲୟାଲୀରେ କଥାବାର୍ତ୍ତା କଲେ ଅଥଚ ଆପଣ ଆଜି ପର୍ଯ୍ୟନ୍ତ ମୋତେ ମାଲୟାଲମ୍‌ର ଗୋଟାଏ ଶବ୍ଦ ମଧ୍ୟ କହି ନାହାନ୍ତି ।''

''ମୁଁ ଜାଣେ ତୁମେ କ'ଣ ଭାବୁଛ'', ବାବାଜୀ ମୁରୁକି ହସି କହିଲେ, ''ବାବାଜୀ ସର୍ବଜ୍ଞ । ସେ ସବୁକିଛି ଜାଣନ୍ତି; କିନ୍ତୁ ସତ୍ୟ ହେଉଛି ଏହିପରି – ଭୌତିକ ମସ୍ତିଷ୍କଧାରୀ କେହିହେଲେ ମଣିଷ ସର୍ବଜ୍ଞ ହୋଇପାରିବ ନାହିଁ । ହଁ କୌଣସି ଅନ୍ୟଜଣଙ୍କର ମସ୍ତିଷ୍କ ସହିତ ସମ୍ପର୍କ ସ୍ଥାପିତ କରିବାର ସାମର୍ଥ୍ୟ ଅର୍ଜନ କରାଯାଇପାରେ, କୌଣସି କାର୍ଯ୍ୟ-ବିଶେଷ ପାଇଁ ସେହି ଜ୍ଞାନର ଉପଯୋଗ କରାଯାଇପାରେ । ମୋର ମାଲୟାଲମରେ କଥାବାର୍ତ୍ତା ସେହି ସାମର୍ଥ୍ୟର ପ୍ରଦର୍ଶନ ଥିଲା ।

ଏବେ ତୁମେ ଶୋଇଯାଅ । କାଲି ଆମକୁ ଆହୁରି କଷ୍ଟକର ଯାତ୍ରା କରିବାକୁ ପଡ଼ିବ । ବୀଜାକ୍ଷର, 'ରଙ୍ଗ୍' ଏବଂ ବିଶେଷ ଥୁମ୍ମୋ ପ୍ରାଣାୟାମଦ୍ୱାରା ନିଜର ମଣିପୁର ଚକ୍ରକୁ ଅଗ୍ନିର ଆହ୍ୱାନ କର । ପ୍ରବଳ ନାଭି-କ୍ରିୟା କର । ଯଥେଷ୍ଟ ଗରମ ଲାଗିବ ।'' ମୁଁ ଶୋଇଗଲି, ବାବାଜୀ ମୋ ପାଖରେ ବସିରହିଲେ ।

ପରଦିନ ଆମେ ଗିରିପଥର ଶିଖରକୁ ଚଢ଼ିବା ଆରମ୍ଭ କଲୁ । ଚାରିପଟେ ହିମବାହ ଓ ବରଫଢଙ୍କା ପଥର ଥାଏ । ମୋର ଜୋର୍‌ରେ ମୁଣ୍ଡ ବିନ୍ଧିଲା ଓ ବାନ୍ତି ମାଡ଼ିଲା । ବାବାଜୀ ମୋତେ ବୁଝାଇଲେ ଯେ, ଅମ୍ଳଜାନର ଅଭାବ ହେତୁ ସେପରି ହେଲା । ଅନୁଭବୀ କୁଲି ଫତେହ ବାହାଦୁର ବି ମୁଣ୍ଡ ବିନ୍ଧୁଛି ବୋଲି ଆପତ୍ତି କଲା । ବାବାଜୀ ଆମକୁ କୁକୁର ପରି ନିଃଶ୍ୱାସ ନେବାପରି ପ୍ରାଣାୟାମ କରିବାର ଉପଦେଶ ନେଲେ । କୁକୁର ପରି ଜିଭ ବାହାର କରି ଜୋର୍‌ରେ ପାଟିବାଟେ ନିଃଶ୍ୱାସ ନେବା । ଶୀଘ୍ର ହିଁ ଆମେ ସୁନ୍ଦର ନୀଳ ପର୍ବତ ପାରି ହୋଇଗଲୁ ଓ କିଛି ସମୟ ପରେ ମାନା ଗିରିପଥ ଶିଖର ଉପରେ ପହଞ୍ଚିଗଲୁ । ଆମ ନିକଟରେ ଥିଲା ବରଫ ପାଲଟି ଯାଇଥିବା 'ଦେବସାରସ' ନାମକ ହ୍ରଦ । ବାବାଜୀ ଆମକୁ କିଛି ମିନିଟ୍ ଧ୍ୟାନରେ ବସିବାକୁ କହିଲେ ।

ମୋତେ ସବୁ ଦୃଶ୍ୟ ସ୍ୱର୍ଗୀୟ ଲାଗୁଥାଏ । ହିମାଚଳ (ହିମର ଅଚଳ ପର୍ବତ)ର ହିମାଚ୍ଛାଦିତ ଭବ୍ୟ ଶିଖରଗୁଡ଼ିକଦ୍ୱାରା ପରିବେଷ୍ଟିତ ଏହି ସ୍ଥାନରେ, ଖୋଲା ଦେହରେ ପଦ୍ମାସନରେ ସ୍ଥିର ଏବଂ ସିଧା ହୋଇ ବସିଥାଆନ୍ତି ଯୋଗର ତେଜସ୍ୱୀ ଗୁରୁ । ମୁଁ ଆଖି ବନ୍ଦ କରିଦେଲି ଏବଂ ମୋର ସାମ୍ନାରେ ବସିଥିବା ଈଶ୍ୱର ସଦୃଶ ବ୍ୟକ୍ତିଙ୍କ ଉପରେ ଧ୍ୟାନ ଲଗାଇଲି । ମୋର ଭୌତିକ ଚକ୍ଷୁରେ ମୁଁ ଆଉ କେଉଁ ଭଗବାନ୍‌ଙ୍କୁ ଦେଖିଥିଲି ?

ଗୋଟାଏ ଆଶ୍ଚର୍ଯ୍ୟ ଘଟଣା ହେଲା । ମୋର ମୁଣ୍ଡବିନ୍ଧା ଚାଲିଗଲା । ଏକ ଶାନ୍ତିର ଅନୁଭବ ମୋର ଆତ୍ମାରେ ପ୍ରବେଶ କରିଗଲା । କମ୍ପ ହେଉଥିବା ଶୀତ ସ୍ଥାନରେ ଆରାମଦାୟକ ଉଷ୍ଣତାର ଅନୁଭବ ହେଲା । ଆଉ କିଛିକ୍ଷଣପାଇଁ ଏପରି ଲାଗିଲା, ଯେମିତି ବାବାଜୀ ଆଉ ମୁଁ, ଦୁଇଜଣ ନୁହେଁ ବରଂ ଜଣେ ହିଁ ଥିଲୁ । ମୋତେ ଏମିତି ଲାଗିଲା ଯେମିତି ମୁଁ ଭାସୁଛି । ମୁଁ ବାସ୍ତବରେ ଉପରେ ଭାସୁଛି କି ନାହିଁ ଦେଖିବାକୁ ଆଖି ଖୋଲିଲି ଏବଂ ଦେଖିଲି, ଭାସୁ ନାହିଁ; କିନ୍ତୁ ସେହି ଗଭୀର ଧ୍ୟାନର ଭାବ ଉଭାନ୍ ହୋଇଗଲା । ବାବାଜୀ ମୃଦୁ ହସି କହିଲେ, ''ବର୍ତ୍ତମାନ ପାଇଁ ଏତିକି ଯଥେଷ୍ଟ । ତରବର ହୁଅ ନାହିଁ ବତ୍ସ ।'' ଫତେହ୍ ବାହାଦୁର କହିଲା, ''ଛୁଆ ଯୋଗୀ'', ଆଉ ହସି ପକାଇଲା ।

ଆମେ ଅନ୍ୟ ପଟକୁ ଓହ୍ଲାଇବା ଆରମ୍ଭ କଲୁ, ଯେଉଁଠି ଭାରତର ସୀମା ଶେଷ ହୁଏ ଓ ତିବ୍ବତର ସୀମା ଆରମ୍ଭ ହୁଏ । ଥଣ୍ଡା ବଢ଼ି ଚାଲିଥାଏ । ଚାରିପଟେ ଖାଲି ବରଫ ଆଉ ବରଫ । ସନ୍ଧ୍ୟା ସୁଦ୍ଧା ଆମେ ତିନିଜଣ ଓ ଖଚ୍ଚର ତିବ୍ବତର ସମତଳ ଭୂମିରେ ପହଞ୍ଚିଗଲୁ । ଭୂଇଁ ଥିଲା ପ୍ରାୟ ଲାଲ ରଙ୍ଗର ଏବଂ ଆମକୁ ବରଫ ଉପରେ ଚାଲିବାକୁ ପଡୁ ନ ଥିଲା । ସେଦିନ ରାତିରେ ଆମେ ଆମ ତମ୍ବୁ ଗୋଟିଏ ଛୋଟ ପଡ଼ିଆରେ ପକାଇଲୁ । ଅଜଣା ଲୋକମାନଙ୍କୁ ଭୟ ନ କରି ଜଙ୍ଗଲୀ ଘୋଡ଼ାମାନେ ପାଖରେ ଚରୁଥାଆନ୍ତି ।

କେତେଦିନ ପରେ ଧୁନି ଜଳାଗଲା । ପ୍ରାୟ ଘଣ୍ଟାଏ ଧ୍ୟାନ କଲାପରେ ଆମେ ଫତେହ୍ ବାହାଦୁର ତିଆରି କରିଥିବା ଚପାଟି ଓ ସ୍ୱାଦିଷ୍ଟ ଆଳୁ ତରକାରି ଭୋଜନ କଲୁ । ସେ ପାଖରେ ହିଁ ଗୋଟିଏ ଝରଣା ଖୋଜି ନେଇଥିଲା ଓ ଖୁବ୍ ଶୀଘ୍ର ଆମେ କଳା ଚା' ପିଉ ପିଉ ଖୁସିରେ ଗପସପ କରୁଥିଲୁ । ସେଇଟି ଗୋଟିଏ ତାରାଲୋକିତ ରାତ୍ରି ଥିଲା । ହଠାତ୍ ପାଖରେ ଗୋଟାଏ ଭୟଙ୍କର ଗର୍ଜନ ଶୁଣି ମୁଁ ଚମକି ଉଠିପଡ଼ିଲି । ''ଶୋଇ ପଡ଼'', ବାବାଜୀ କହିଲେ, ''ବରଫ-ଚିତା ଜଙ୍ଗଲୀ ଘୋଡ଼ା ଶିକାର କରୁଛି । ଡରିବାର କିଛି କାରଣ ନାହିଁ ।'' ଘୋଡ଼ା ବଡ଼ ଦୟନୀୟ ଭାବରେ ଚିତ୍କାର କଲା ଓ ପୁଣି ଚୁପ୍ ହୋଇଗଲା । ଶିକାରକୁ ଖାଉଥିବା ବରଫ ଚିତା ସନ୍ତୁଷ୍ଟ ହୋଇ ଗର୍‌ର୍-ଗର୍‌ର୍ ହେଉଥିବାର ମୁଁ ଶୁଣିଲି । ମୁଁ ପୁଣି ଶୋଇ ପଡ଼ିଲି ।

ପରଦିନ ସକାଳେ ଆମେ ତୋଲିଙ୍ଗ ଆଡ଼କୁ ଚାଲିଲୁ । ଛ' ଦିନର ଆନନ୍ଦପୂର୍ଣ୍ଣ ଯାତ୍ରା ପରେ ଆମେ ସେଠାରେ ପହଞ୍ଚିଲୁ । ଆମକୁ ବଦ୍ରିନାଥରୁ ସେଠାକୁ ପହଞ୍ଚିବାପାଇଁ ଏକୋଇଶଦିନ ଲାଗିଗଲା । ସବୁଠାରୁ ପ୍ରଥମେ ଯାହା ନଜରରେ ପଡ଼ିଲା, ତାହା ଥିଲା

ବୁଦ୍ଧଙ୍କର ଏକ ବିଶାଳକାୟ ପ୍ରତିମା, ଯାହାର ଉଚ୍ଚତା ବୌଦ୍ଧ ବିହାରର ଉଚ୍ଚତା ସହିତ ସମାନ ଥିଲା । ଆମକୁ ପାଖରେ ହିଁ ତମ୍ବୁ ପକାଇବାର ଅନୁମତି ମିଳିଗଲା ।

ବାବାଜୀ ଆମକୁ ବିହାର ଦେଖାଇଲେ । ସେଠାରେ କେତେଗୁଡ଼ିଏ ହିନ୍ଦୁ ଦେବତାମାନଙ୍କର ପ୍ରତିମା ଥିଲା, ଭଦ୍ରକାଳୀଙ୍କର ମଧ୍ୟ, ଯେ ହେଉଛନ୍ତି ସ୍ତ୍ରୀ-ରୂପିଣୀ ଦେବୀ-ଶକ୍ତିର ଭୟଙ୍କର ରୂପ, ବିହାରର ଦେଖାଶୁଣା କରୁଥିବା ଲାମା ଆମକୁ କହିଲେ ଯେ, ତାଙ୍କ ମତରେ ଲୋଲିଙ୍ଗ ମଠ ମୂଳ ବଦ୍ରିନାଥ ଥିଲା ଏବଂ ଏବେ ଥିବା ବଦ୍ରିନାଥର ମନ୍ଦିର ତିଆରି ହେବାର କାରଣ ହେଉଛି, ଅଧିକାଂଶ ଲୋକଙ୍କପାଇଁ ବଦ୍ରିନାଥ ଅଗମ୍ୟ ଥିଲା ।

ଆମକୁ ବିହାରାଧ୍ୟକ୍ଷ, ବଡ଼ ଲାମାଙ୍କ ସହିତ ସାକ୍ଷାତ କରିବାକୁ ଦିଆଗଲା । ତାଙ୍କୁ ରିମ୍ପୋଚ କୁହାଯାଏ । ରିମ୍ପୋଚ ବାବାଜିଙ୍କୁ ବହୁତ ଆଦର ପ୍ରଦର୍ଶନ କଲେ, ବାବାଜୀ ମଧ୍ୟ ତାଙ୍କୁ ଅନୁରୂପ ସମ୍ମାନ ଦେଖାଇଲେ । ସେମାନେ ତିବ୍ବତୀ ଭାଷାରେ କଥାବାର୍ତ୍ତା ହେଲେ । ଏଥର ମୁଁ ଏତେ ଆଶ୍ଚର୍ଯ୍ୟ ହେଲି ନାହିଁ, ଆଲୋଚନା ପରେ ରିମ୍ପୋଚ ମୋତେ ଆଶୀର୍ବାଦ କଲେ, ମୁଁ ମଧ୍ୟ ଆଣ୍ଠୁମାଡ଼ି ବସି ନିଜର ଜିଭ ବାହାର କରି କୃତଜ୍ଞତା ପ୍ରକାଶ କଲି ।

ବିହାରରେ ଦଶଜଣରୁ ଅଧିକ ଭିକ୍ଷୁ ରହୁଥିଲେ । ସେମାନଙ୍କର ରୋଷେଇଘର ବଡ଼ ଥିଲା; କିନ୍ତୁ ବାବାଜୀ ତମ୍ବୁରେ ରହିବାକୁ ପସନ୍ଦ କଲେ ଏବଂ ଫତେହ୍ ବାହାଦୁର ଆମ ପାଇଁ ରାନ୍ଧିଲା । ଖାଇବା ପରେ ବାବାଜୀ କହିଲେ, ସେହିଦିନ ରାତିରେ ସେ ଔପଚାରିକ ଭାବରେ ମୋତେ ନାଥ ପନ୍ଥର ଦୀକ୍ଷା ଦେବେ ।

ରାତିରେ ଧୁନି ସମ୍ମୁଖରେ ମୋତେ ନାଥ ସମ୍ପ୍ରଦାୟର ଗୁପ୍ତ ମନ୍ତ୍ର ଦୀକ୍ଷା ଦିଆଗଲା । ବାବାଜୀ ଜଣେ ବିଶେଷଜ୍ଞଙ୍କ ପରି ମୋର କାନର ନିମ୍ନାଂଶକୁ ଫୋଡ଼ିଦେଲେ ଓ ମୁଁ ତମ୍ବାର ବଳା ପିନ୍ଧିନେଲି । ମୋର ଯୋଗୀ ପରି ଦିଶିବାର ଆକାଙ୍କ୍ଷା ପୂରା ହୋଇଗଲା । ବାବାଜୀ କହିଲେ, ‘‘ଆମେ ସବୁ ନାଥପନ୍ଥୀ ଯେଉଁଠାକୁ ବି ଯାଉ, ଧୁନି ଜଳାଉ; କିନ୍ତୁ ତୁମପାଇଁ ସେପରି ସର୍ତ୍ତ ନାହିଁ । ମୋର ଗୁରୁଙ୍କର ଆଜ୍ଞା ଅନୁସାରେ ଶିବରାତ୍ରି, ଗୁରୁପୂର୍ଣ୍ଣିମା ପରି ବିଶେଷ ଦିନଗୁଡ଼ିକୁ ଛାଡ଼ି ତୁମର ଧୁନି ଜଳାଇବାର ଆବଶ୍ୟକତା ନାହିଁ – ତୁମେ ସମତଳ ଭୂମିକୁ ଯିବା ପୂର୍ବରୁ ବଳା ବାହାର କରି ସାଧାରଣ ବସ୍ତ୍ର ପିନ୍ଧିପାରିବ, କାରଣ ତୁମର ଜୀବନର ଲକ୍ଷ୍ୟ ଅନ୍ୟପ୍ରକାର । ସଂସାରରେ ସାଧାରଣ ଲୋକଙ୍କ ପରି ରହ ଏବଂ ତେବେ ମଧ୍ୟ ନିଜର ମନକୁ ଚେତନାର ସର୍ବାଧିକ ସ୍ତରରେ ରଖ । ଏବେଠାରୁ ତୁମେ ଜଣେ ନାଥ ଏବଂ ଆମର ପରମ୍ପରାରେ ତୁମେ ମଧୁକର ନାଥ ନାମରେ ପରିଚିତ ହେବ – ଏମ୍ ।’’

ମୁଁ ବାବାଜୀଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣାମ କଲି । ଦୀର୍ଘ ଯାତ୍ରା ହେତୁ କ୍ଲାନ୍ତ ଫତେହ୍ ବାହାଦୁର ଶୋଇ ପଡ଼ିଥାଏ । ଆମେ ଧୁନି ସାମ୍ନାରେ ବସି କଥାବାର୍ତ୍ତା ହେଉଥାଉ । ମୁଁ ବାବାଜୀଙ୍କୁ ପଚାରିଲି ଯେ, ଲାମା ଯେପରି କହୁଥିଲେ ଯେ ତୋଲିଙ୍ଗମଠର ବୁଦ୍ଧ ହେଉଛନ୍ତି ଅସଲ ବଦ୍ରିନାଥ ବୋଲି, ସେ ବିଷୟରେ ତାଙ୍କର ମତ କ'ଣ ? ''ତଥ୍ୟ ହେଉଛି ଯେ'', ବାବାଜୀ କହିଲେ, ''ପ୍ରାଚୀନ କାଳରେ ବୌଦ୍ଧଭିକ୍ଷୁ ଓ ବୌଦ୍ଧ ମନ୍ଦିର ଭାରତର ଚାରିଆଡ଼େ ଥିଲା । ବଦ୍ରିନାଥର ଦେବପ୍ରତିମା ପୂର୍ବରୁ ପଦ୍ମାସନରେ ବସିଥିବା ବୁଦ୍ଧଙ୍କର ପ୍ରତିମା ଥିଲା, ଯାହାକୁ ଶଙ୍କରାଚାର୍ଯ୍ୟ ପଦ୍ମାସନରେ ବସିଥିବା ନାରାୟଣଙ୍କର ପ୍ରତିମାକୁ ବଦଳାଇ ଦେଇଥିଲେ । ଅନ୍ୟ କେଉଁଠାରେ ନାରାୟଣଙ୍କୁ ପଦ୍ମାସନରେ ବସିଥିବାର ଦେଖିବାକୁ ମିଳେ ନାହିଁ; କିନ୍ତୁ ବାସ୍ତବରେ କ'ଣ ଏହାର କିଛି ମହତ୍ତ୍ୱ ଅଛି ? ଜୀବନର ସ୍ୱଚ୍ଛତା ହିନ୍ଦୁ ବା ବୌଦ୍ଧ ହେବାଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ । ତୁମେ ଦେଖିଲ, ରିମ୍ପୋଚ କେତେ ଉନ୍ନତ ଆତ୍ମାର ବ୍ୟକ୍ତି ? ତେଣୁ ଆମକୁ ଏହି ବିବାଦରେ ପଶିବାର ଆବଶ୍ୟକତା ନାହିଁ ।''

ପରଦିନ ସକାଳେ ମୁଁ ଖାମ ଜିଲ୍ଲାର ବହୁତ ଡେଙ୍ଗା ତିବ୍ବତୀୟମାନଙ୍କୁ ଦେଖିଲି, ଯେଉଁମାନେ ପାହାଡ଼ରେ ଥିବା ଛୋଟ ଛୋଟ କୁଡ଼ିଆରେ ରହୁଥିଲେ । ସେମାନେ ବୃତ୍ତିରେ ସମ୍ବାଦ ସରବରାହକାରୀ ଥିଲେ । ସେମାନେ ଏମିତି ଗୋଟାଏ ପ୍ରକାରର କଳାର ଅଭ୍ୟାସ କରୁଥିଲେ, ଯାହାଦ୍ୱାରା ଜଣା ପଡୁଥିଲା ଯେପରି ସେମାନେ ଉପରକୁ ଉଠିଯାଉଛନ୍ତି ! ଉପରକୁ ଉଠିବାର ପ୍ରୟାସର ଯେତେ ପ୍ରଦର୍ଶନୀ ମୁଁ ଦେଖିଥିଲି, ଏହି ପ୍ରୟାସ ଥିଲା ସବୁଠାରୁ ଉତ୍ତମ । ସେମାନଙ୍କ ପାଖରେ ପୋଲ୍‌ଭଲ୍ଟ (Pole Vault)ରେ ଉପଯୋଗ ହେଉଥିବା ପରି ଲମ୍ବାଲମ୍ବା ଲାଠି ଥିଲା, ଯେଉଁଗୁଡ଼ିକୁ ସେମାନେ ଲମ୍ବା ରାସ୍ତା ପାର କରିବାପାଇଁ ବ୍ୟବହାର କରୁଥିଲେ, ଯେମିତି ପବନରେ ଉଡ଼ିଯାଉଥିଲେ ! ସେ ଲାଠିର ଗୋଟାଏ ପଟ ଭୂଇଁରେ ରଖି ଏକ ବିଶେଷ ପ୍ରକ୍ରିୟାରେ ଶ୍ୱାସ ନେଇ, ଅନ୍ୟ ପଟକୁ ଧରି ବେଶ ଦୂର ପର୍ଯ୍ୟନ୍ତ ଉଡ଼ିଗଲା ପରି ଚାଲିଯାଉଥିଲେ ।

ତିନିଦିନର ବିଶ୍ରାମ ପରେ ଆମେ କୈଳାସ ଉଦ୍ଦେଶ୍ୟରେ ପୂର୍ବ ପଟକୁ ବାହାରି ପଡ଼ିଲୁ । ତିନିଦିନରେ ଦାପା ଗାଆଁରେ ପହଞ୍ଚିଗଲୁ । ସେଠାରେ ଗୋଟିଏ ବୌଦ୍ଧ ବିହାର ଥିଲା ଓ ଗୋଟିଏ ବଡ଼ ଲାମା ବିହାର ମଧ୍ୟ ଥିଲା । ବହୁ ସଂଖ୍ୟକ ଭିକ୍ଷୁ ସେଠାରେ ରହୁଥିଲେ, ପାଖରେ ଗୋଟିଏ ବଜାର ଥିଲା, ଯେଉଁଠାରେ ଭାରତର ବ୍ୟବସାୟୀମାନେ ତିବ୍ବତୀୟମାନଙ୍କ

ସହିତ ବ୍ୟବସାୟ କରୁଥିଲେ । ଆମେ ଦାପାରୁ ଆଗକୁ ଯାଇପାରିଲୁ ନାହିଁ, କାରଣ କିଛି ଅପ୍ରତ୍ୟାଶିତ ଓ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣା ଘଟିଗଲା । ମୁଁ ବେମାର ପଡ଼ିଗଲି, ବହୁତ ବେଶି ଜର ହୋଇଗଲା । କମ୍ବଳଗୁଡ଼ିକ ଘୋଡ଼େଇ ହେବା ସତ୍ତ୍ୱେ ଏବଂ ନିଆଁ ପାଖରେ ଥାଇ ମଧ୍ୟ ମୋତେ ମଝିରେ ମଝିରେ କମ୍ପ ହେଲା । ମୁଣ୍ଡ ମଧ୍ୟ ଖୁବ୍ ବିନ୍ଧୁଥାଏ । ଲାଗୁଥାଏ ଯେମିତି କିଏ ମୋର ମୁଣ୍ଡକୁ ହାତୁଡ଼ିରେ ପିଟୁଛି !

ଲାମା-ବିହାରର ଡାକ୍ତର ମୋତେ ଚେରମୂଳରୁ ପ୍ରସ୍ତୁତ ପିତା ଔଷଧରୁ କେତେ ପାନ ଦେଲେ; କିନ୍ତୁ ମୋର ଜର କମିଲା ନାହିଁ । ଦିନେ ମୋତେ ବହୁତ ଜର ଥାଏ ଓ ମୁଁ ତମ୍ବୁରେ ଏକୁଟିଆ ପଡ଼ିଥାଏ, ପ୍ରାୟ ଅର୍ଦ୍ଧଚେତନ ଅବସ୍ଥାରେ ଥାଏ । ଏଇ ସମୟରେ ମୁଁ ଗୋଟାଏ ହାଲ୍କା ଯନ୍ତ୍ରଣାର ଶବ୍ଦ ଶୁଣି ପାରିଲି, ଯେମିତି ଗୋଟାଏ କୁକୁର କଷ୍ଟରେ ବିଳାପ କରୁଛି ! ମୁଁ ତମ୍ବୁର ଦ୍ୱାର ଆଡ଼କୁ ଚାହିଁଲି । ମୁଁ ସେଠାରେ ଗରିଲା ପରି କୌଣସି ବଡ଼ ଜନ୍ତୁ ଆକୃତିର ଦେଖିଲି । ମୁଁ ଭାବିଲି, ମୋର ବୋଧହୁଏ ଦୃଷ୍ଟିଭ୍ରମ ହେଉଛି । ମୁଁ ଚିତ୍କାର କରିବାକୁ ଚେଷ୍ଟା କଲି, ମୋ ମୁହଁରୁ ଶବ୍ଦ ବାହାରିଲା ନାହିଁ । ମୁଁ ଭୟରେ ଥରୁଥାଏ ।

ଯେତେବେଳେ ସେ ମୋ ଆଡ଼କୁ ଆସିଲା, ମୁଁ ଫତେହ୍ ବାହାଦୁର ଜଳାଇ ମୋ ପାଖରେ ରଖିଦେଇଥିବା ଲଣ୍ଠନର ଆଲୁଅରେ ଦେଖିଲି, ତା'ର ଲହୁଣୀ ରଙ୍ଗର ରୁମ ଥିଲା । ସେମିତି ବିଳାପ କରୁଥିବା ପରି ଶବ୍ଦ କରି ସେ ମୋ ପାଖକୁ ଆସିଲା ଓ ହଠାତ୍ ମୋ ପାଟିରେ କିଛି ପୂରେଇ ଦେଲା । ଜର ସତ୍ତ୍ୱେ ସେହି ଚଟଚଟିଆ ଜିନିଷର ମଧୁରତା ମୁଁ ଅନୁଭବ କରିପାରିଲି । ପୁଣି ସେ ଜୋର୍‌ରେ ବୁଲିପଡ଼ିଲା ଓ ତମ୍ବୁ ବାହାରକୁ ପଳାଇଗଲା । ମୁଁ ବାହାରୁ ଆସୁଥିବା ଗୋଟାଏ ଚିତ୍କାର ଶୁଣିଲି ଓ ଫତେହ୍ ବାହାଦୁର ଦୌଡ଼ି ଦୌଡ଼ି ଆସି ତମ୍ବୁରେ ପଶିଲା । "ପାର୍ବତ୍ୟ ମାନବ !" ସେ ଧଇଁସଇଁ ହୋଇ କହିଲା, "ତୁମେ ଠିକ୍ ଅଛ ତ ?" "ହଁ", ମୁଁ ଗଭୀର ନିଦରେ ଶୋଇଯିବା ପୂର୍ବରୁ କହିପାରିଲି । ପରଦିନ ସକାଳ ସୁଦ୍ଧା ମୁଁ ଏତେ ସୁସ୍ଥ ହୋଇଗଲି ଯେ, ଯାତ୍ରାକ୍ଷମ ହୋଇଗଲି । "ଏଥର କୈଳାସ ନୁହେଁ", ବାବାଜୀ ଘୋଷଣା କଲେ, "ତୁମେ ବହୁ ବର୍ଷ ପରେ ଗୋଟାଏ ବଡ଼ ଦଳ ସହିତ ରାସ୍ତାରେ ଗୁରୁପୂର୍ଣ୍ଣିମା ଉତ୍ସବ ପାଳନ କରିବ ଓ ସେଠାରେ ଯାଇ ପହଞ୍ଚିବ । ଏବେ ଆମେ ବଦ୍ରିନାଥ ଫେରିଯିବା ।" ମୋର ସମ୍ମତ ହେବା ଛଡ଼ା ଆଉ କିଛି ଉପାୟ ନ ଥିଲା । ଆମେ ଫେରି ଚାଲିଲୁ । ମୁଁ ବେଶିଭାଗ ରାସ୍ତା ବିଚରା ଖଚ୍ଚର ଉପରେ ବସିଥାଏ । ରାସ୍ତାରେ ମୁଁ ବାବାଜୀଙ୍କୁ ପଚାରିଲି, "ମୁଁ

ଗତ ରାତିରେ ଯାହାକୁ ଦେଖିଲି, ସେ କ'ଣ ୟେତି ?''

ବାବାଜୀ କହିଲେ, ''ଆମର ଅନୁମାନ କରିବା ଦରକାର ନାହିଁ । ଯାହା ବି ହେଉ, ଏହି କଥାକୁ ନିଜ ଭିତରେ ରଖ । ଅଧିକାଂଶ ଲୋକ ୟେତିରେ ବିଶ୍ୱାସ କରନ୍ତି ନାହିଁ ଏବଂ ତୁମର ଏହି କଥା ସେମାନେ ଜ୍ୱରତପ୍ତ ମସ୍ତିଷ୍କର ବିକାର ଭାବି ହସରେ ଉଡ଼େଇ ଦେବେ ।''

ଆମେ କେବଳ ଷୋହଳ ଦିନରେ ବଦ୍ରିନାଥ ପହଞ୍ଚିଗଲୁ । ରାସ୍ତାରେ ମୁଁ ଅଧିକାଂଶ ସମୟ ଖଚ୍ଚର ଉପରେ ବସି ସ୍ୱର୍ଗୀୟ ପ୍ରାକୃତିକ ଦୃଶ୍ୟର ଆନନ୍ଦ ଉପଭୋଗ କଲି । ହିମାଚ୍ଛାଦିତ ପର୍ବତ ଶିଖର, ସୁନ୍ଦର ଝରଣା, ବରଫ ପାଲଟିଯାଇଥିବା ହ୍ରଦ ଏବଂ ହିମଶିଖରଗୁଡ଼ିକରେ ଉଦିତ ହେଉଥିବା ସୂର୍ଯ୍ୟଙ୍କର ପ୍ରତିବିମ୍ବିତ କିରଣଦ୍ୱାରା ସୃଷ୍ଟି ହେଉଥିବା ଯାଦୁକରୀ ମୁହୂର୍ତ୍ତ, ସବୁ ଥିଲା ଅପୂର୍ବ । ବଦ୍ରିନାଥ ପହଞ୍ଚି ଆମେ ଖଚ୍ଚର ଓ ତମ୍ବୁ ଫେରାଇଦେଲୁ ଏବଂ ଫତେହ୍ ବାହାଦୁରଠାରୁ ବିଦାୟ ନେଲୁ ।

ଚରଣାପାଦୁକା ଗୁମ୍ଫାରେ ପହଞ୍ଚି ବାବାଜୀ ମୋର ଯତ୍ନ ନେଇ ମୋତେ ପୂରା ସୁସ୍ଥ କରିଦେଲେ । ବେଳେ ବେଳେ ସେ ମୋ ପାଇଁ ବିଶେଷ ଧରଣର ଖାଦ୍ୟ ଆଣୁଥିଲେ । ପ୍ରାୟ ଦୁଇ ସପ୍ତାହ ମଧ୍ୟରେ ମୁଁ ପୂର୍ବପରି ଅବସ୍ଥାକୁ ଆସିଗଲି । ''ଏବେ'', ବାବାଜୀ କହିଲେ, ''ଫୁଲର ଉପତ୍ୟକା, ହେମକୁଣ୍ଡ ସାହେବ ଏବଂ ପଞ୍ଚକେଦାର ଯାତ୍ରା ପାଇଁ ପ୍ରସ୍ତୁତ ହୋଇଯାଅ ।''



# ୨୬. ଫୁଲର ଉପତ୍ୟକା ଓ ହେମକୁଣ୍ଡ

ଗୋଟାଏ ଶୀତ ସକାଳେ, ବାବାଜୀ ଓ ମୁଁ ପଣ୍ଡୁକେଶ୍ୱର ନିକଟସ୍ଥ ଗୋବିନ୍ଦଘାଟ ଉଦ୍ଦେଶ୍ୟରେ ବାହାରିଲୁ । ଏଥର ମୁଁ ନିଜକୁ ବେଶ ସମର୍ଥ ବୋଲି ଅନୁଭବ କଲି ଓ ତରତର ହୋଇ ଚାଲୁଥିବା ବାବାଜୀଙ୍କୁ ଅନୁସରଣ କରିବାରେ କିଛି ଅସୁବିଧା ଅନୁଭବ କଲି ନାହିଁ । ମୋର ଜୋତାର ଆଉ ଆବଶ୍ୟକତା ପଡ଼ିଲା ନାହିଁ ଓ ଉଭୟ ଗୁରୁଶିଷ୍ୟ ଆମେ ଖାଲି ପାଦରେ ଚାଲିଲୁ । ମାନା ଗିରିପଥର କଷ୍ଟକର ଆରୋହଣ ପାଖରେ ଏହା ଯେପରି ପିଲାଖେଳ ଥିଲା । ମୁଁ ମଧ୍ୟ ଯେତେବେଳେ ଯେଉଁ ଖାଦ୍ୟ ମିଳିବ ତାହାକୁ ଖାଇବାକୁ ଏବଂ ଆବଶ୍ୟକ ହେଲେ ଖାଦ୍ୟ ନ ମିଳିଲେ ଦୀର୍ଘ ସମୟ ଧରି ଉପବାସରେ ରହିବାକୁ ଶିଖିଗଲି ।

ରାସ୍ତାରେ ଥିବା ମନ୍ଦିରଗୁଡ଼ିକରେ ଓ ଧର୍ମଶାଳାରେ ରହିରହି ଆମେ ଗୋବିନ୍ଦଘାଟରେ ତିନିଦିନରେ ପହଞ୍ଚିଲୁ । ରାତିରେ ଆମେ ଗୋବିନ୍ଦଘାଟରେ ଥିବା ଗୁରୁଦ୍ୱାରରେ ରହିଲୁ । ଶିଖମାନଙ୍କର ଗୁରୁଦ୍ୱାରମାନଙ୍କରେ ସବୁଠାରୁ ଉତ୍ତମ କଥା ହେଲା, ଯେକୌଣସି ପରିବ୍ରାଜକକୁ ସେଠାରେ ତିନିରାତି ରହିବାକୁ ଦିଆଯାଏ ଏବଂ ଆବଶ୍ୟକ ପଡ଼ିଲେ ମାଗଣା ଖାଦ୍ୟ ଓ କମ୍ବଳ ଯୋଗାଇ ଦିଆଯାଏ ।

ପରଦିନ ସକାଳେ ଆମେ ଚଉଦ କିଲୋମିଟର ଦୂରରେ ଥିବା ଘାଙ୍ଗରିଆ ଉଦ୍ଦେଶ୍ୟରେ ଚଢ଼ିବା ଆରମ୍ଭ କଲୁ । ଉଠାଣି ରାସ୍ତା ତୀଖ ଓ ପାହାଡ଼ିଆ ଥିଲା ଏବଂ ରାସ୍ତା ଲଛମନ୍ ଗଙ୍ଗାର କୂଳେ କୂଳେ ଥିଲା । ରାସ୍ତାରେ ଛୋଟ ଗାଆଁ ଭିଆନ୍ଦର ପଡ଼ିଲା । ଏହି ଗାଆଁ ପରେ ଓହ୍ଲାଇବା ଆରମ୍ଭ ହେଲା ଏବଂ ନଈର ଧାରେ ଧାରେ ଚାଲି ପାରିବା ପରି ରାସ୍ତା ଥିଲା । ବାବାଜୀ ନିରବରେ ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥାଆନ୍ତି । ବହୁ ସମୟ ଧରି ଆମ ଭିତରେ ବାର୍ତ୍ତାଳାପ ନ ଥାଏ । କଥାର ଆବଶ୍ୟକତା କିଛି ନ ଥିଲା । ଏହା ଥିଲା ଏକ ଆନନ୍ଦମୟ ନିରବତା ।

ବିରଳ ବିଦେଶୀ ଫୁଲଗୁଡ଼ିକ ଦେଖାଯିବା ଆରମ୍ଭ ହୋଇଯାଇଥାଏ । ବାବାଜୀ ନିରବତା ଭଙ୍ଗକଲେ । ଜଣେ ଉଦ୍ଭିଦବିଶେଷଜ୍ଞଙ୍କ ପରି ସେ ବିଭିନ୍ନ ଫୁଲ ଆଡ଼କୁ ନିର୍ଦ୍ଦେଶ

କରି କହୁଥାଆନ୍ତି, "ସେଇଟା କୋବ୍ରା ଲିଲି, ଆଉ ସେ ସୂର୍ଯ୍ୟମୁଖୀ ପରି ଫୁଲଟା ହେଉଛି ଇମେଲା ।" ଶେଷରେ ଯେଉଁ ତୀଖ ଚଢ଼ାଣି ଥିଲା, ତାକୁ ଅତିକ୍ରମ କରି ଆମେ ଘାଙ୍ଗରିଆରେ ପହଞ୍ଚିଲୁ । ଆମେ ଲଛମନ ଗଙ୍ଗା ଉପରେ ଥିବା ଛୋଟ ପୋଲକୁ ପାରିହେଲୁ । ଲଛମନ ଗଙ୍ଗା ହେମକୁଣ୍ଡ ହ୍ରଦରୁ ନିର୍ଗତ ହୋଇଛି । ସେଠାରୁ ଡାହାଣକୁ ଥିବା ରାସ୍ତା ହେମକୁଣ୍ଡ ସାହେବକୁ ଯାଇଛି । ଏହା ସମୁଦ୍ରତଳରୁ 15,000 ଫୁଟ ଉପରେ ଅବସ୍ଥିତ । ବାଁପଟକୁ ଯାଇଥିବା ରାସ୍ତା ଫୁଲ ଉପତ୍ୟକାକୁ ଯାଇଛି । ଆହୁରି ଉପରେ ପୁଷ୍ପାବତୀ ନଦୀ ଉପରେ ଗୋଟିଏ ଛୋଟ ଲୁହାର ପୋଲ ଅଛି । ଏହି ନଦୀ ଲମ୍ଫ ପ୍ରଦାନ କରି ଲଛମନ ଗଙ୍ଗା ସହିତ ମିଳିତ ହୋଇଛି । ସେଠାରେ ବାବାଜୀ ଦେଖାଇଦେଲେ, 'ବ୍ଲୁ ପପି' ଫୁଲସବୁ ଦିଶିଲେଣି ।

ଆମେ ପୋଲ ପାର ହୋଇ ସଂକୀର୍ଣ୍ଣ ଗିରିପଥ ଚଢ଼ିଲୁ, ଯେପର୍ଯ୍ୟନ୍ତ ଆମେ ଏକ ହିମବାହର ଅବଶିଷ୍ଟାଂଶ ପାଖରେ ଆସି ପହଞ୍ଚିଲୁ । ଆମେ ହିମବାହ ପାର କରି ପ୍ରାୟ ତିନିକିଲୋମିଟର ଉପରକୁ ଚଢ଼ିଲୁ ଏବଂ ଗୋଟିଏ ଛୋଟ କାଠର ପୋଲ ଟପି ଉପତ୍ୟକାରେ ଯାଇ ପହଞ୍ଚିଲୁ । ସେହି ସ୍ଥାନର ସୌନ୍ଦର୍ଯ୍ୟ ମୋତେ ମନ୍ତ୍ରମୁଗ୍ଧ କରିଦେଲା । ଏତେ ଚମତ୍କାର ଦୃଶ୍ୟ ମୁଁ ଆଶା କରି ନ ଥିଲି । ଯୁଆଡ଼େ ଦୃଷ୍ଟି ଯିବ, ଦେଖାଯିବ ବିଭିନ୍ନ ପ୍ରକାରର ଫୁଲଭର୍ତ୍ତି ବିସ୍ତୀର୍ଣ୍ଣ ପଡ଼ିଆ । ଜଣାଯିବ ଯେମିତି କେଉଁ ସ୍ୱର୍ଗୀୟ ସତ୍ତା ସେଗୁଡ଼ିକ ପଟୁ ହସ୍ତରେ ଚୟନ କରି ଚିତ୍ରପଟ ରଚନା କରିଦେଇଛନ୍ତି !

ବାବାଜୀ ପୁଣି ତାଙ୍କର ଫୁଲ ବିଷୟରେ ଓ ସେହି ଉପତ୍ୟକା ବିଷୟରେ ଜ୍ଞାନର ପ୍ରଦର୍ଶନ କରି ମୋତେ ଅବାକ୍ କରିଦେଲେ । "ଏହା ହେଉଛି ହିମାଳୟଜାତ ବାଲ୍‌ସାମ୍ (Balsam), କହିଲେ ବାବାଜୀ, "ଆଉ ସେ ଧଳାଫୁଲ ହେଉଛି ହିମାଳୟ ଜାତ Hogwead । ସେହି ଭଉଁରି ପରି ଧଳାଫୁଲ ହେଉଛି ବିଖ୍ୟାତ Edelweiss, ଆଲ୍ପ୍‌ସ୍ ପର୍ବତର ପ୍ରତୀକ । ଦେଖ ସେପଟେ ରହିଛି ସୁନ୍ଦର ନୀଳ Forget-me-not ଫୁଲଗୁଡ଼ିକ, ନୀଳ ପପି, ନୀଳ ଜର୍ମାନିୟମ, ଆଷ୍ଟର... ଓଃ, କେତେ ରକମର !"

"ଏହି ଲୁକ୍କାୟିତ ସ୍ୱର୍ଗକୁ ଜନତା କିପରି ଆବିଷ୍କାର କଲେ ବାବାଜୀ ?"

"ସ୍ଥାନୀୟ ଲୋକଙ୍କୁ ଓ ଯୋଗୀମାନଙ୍କୁ ଏହା ବିଷୟରେ ବହୁ ପୂର୍ବରୁ ଜଣାଥିଲା", ବାବାଜୀ କହିଲେ, "ସ୍ଥାନୀୟ ଲୋକେ ବିଶ୍ୱାସ କରୁଥିଲେ ଯେ ଏହି ସ୍ଥାନ ସ୍ୱର୍ଗର ପରୀମାନଙ୍କ ପରି ପ୍ରାଣୀ, ଅପ୍‌ସରା ଓ ଗନ୍ଧର୍ବମାନଙ୍କଦ୍ୱାରା ଅଧ୍ୟୁଷିତ ଥିଲା । ମୋର ଗୁରୁ, ଶ୍ରୀ ଗୁରୁବାବାଜୀ ମୋତେ ଏଠାକୁ ଧରି ଆସିବାକୁ ଭଲପାଉଥିଲେ । ଉପରେ ଗୋଟିଏ ଛୋଟ

ଗୁମ୍ଫା ଅଛି, ଯେଉଁଠାକୁ ସେ ପ୍ରାୟ ଆସୁଥିଲେ । ଚାଲ ଯିବା ଏବଂ ଆଖି ଖୋଲା ରଖି ଧ୍ୟାନ କରିବା । ପ୍ରକୃତିର ଏପରି ଚମତ୍କାର ସୌନ୍ଦର୍ଯ୍ୟ ବାସ୍ତବିକ ସ୍ୱର୍ଗୀୟ । ଯେଉଁ ସ୍ୱର୍ଗର ତୁମେ ସନ୍ଧାନ କରୁଛ, ତାହା ଏଠାରେ ଠିକ୍ ତୁମ ଆଖି ସାମ୍ନାରେ ରହିଛି । ନିଜକୁ ଶିଥିଳ କରିଦିଅ, ଚାହଁ ଏବଂ ସୁଗନ୍ଧିତ ପବନର ଘ୍ରାଣ ନିଅ ।

ତୁମେ ପଚାରୁଥିଲ ଯେ, ପୃଥିବୀବାସୀ ଏହି ସ୍ଥାନର ଅସ୍ତିତ୍ୱ ବିଷୟରେ କିପରି ଜାଣିଲେ – ଫ୍ରାଙ୍କ୍ ସ୍ମିଥ୍ ନାମକ ଜଣେ ପର୍ବତାରୋହଣକାରୀ ଓ ଉଦ୍ଭିଦବିଜ୍ଞାନୀ 1931 ମସିହାରେ ଏଠାରେ ପହଞ୍ଚି ଯାଇଥିଲେ । ସେ ସ୍ତବ୍ଧ ହୋଇଯାଇଥିଲେ ଏବଂ ସେ ହିଁ ଏହି ସ୍ଥାନର ନାମ ଫୁଲର ଉପତ୍ୟକା (Valley of Flowers) ଦେଇଥିଲେ । ଆସ, ଗୁମ୍ଫାକୁ ଯିବା ।''

ଗୋଟିଏ ସଂକୀର୍ଣ୍ଣ ଉପତ୍ୟକା ମଧ୍ୟ ଦେଇ ଚାଲିଚାଲି ଆମେ ଏକ ଛୋଟ ଗୁମ୍ଫାରେ ପହଞ୍ଚିଲୁ । ରାସ୍ତାର ଦୁଇପଟେ ପ୍ରଚୁର ଧଳା ଫୁଲ ଭର୍ତ୍ତି ହୋଇଥାଏ । ଛୋଟ ଗୁମ୍ଫାଟି ଗୋଟିଏ ପାହାଡ଼ିଆ ଉଦ୍‌ଗତ ସ୍ଥାନ ତଳେ ଲୁକ୍କାୟିତ ହୋଇ ରହିଥାଏ । ''ମୁଁ ଓ ମୋର ଗୁରୁ ଏଠାରେ ଧ୍ୟାନରେ ବସିଥିଲୁ'', କହିଲେ ବାବାଜୀ, ''ଏବେ ତୁମେ ଓ ମୁଁ ବସିବା ।'' ସେହି ସୁନ୍ଦର ସ୍ଥାନରେ ବିଭିନ୍ନ ରଙ୍ଗର ଅଗଣିତ ବିଦେଶୀ ଫୁଲର ନିଶାଗ୍ରସ୍ତ କରିଦେବାପରି ମୃଦୁ ସୁବାସଦ୍ୱାରା ଅଭିଭୂତ ହୋଇ ଆମେ ସେଠାରେ ବହୁ ସମୟ ଧରି ବସିରହିଲୁ । ବାବାଜୀ ନିରବ ଥିଲେ ।

କିଛି ସମୟ ପରେ ମୁଁ ମୃଦୁ ସ୍ୱରରେ ନିରବତା ଭଙ୍ଗ କଲି । ''ମୁଁ ବର୍ତ୍ତମାନ ଈଶାବାସ୍ୟ ଉପନିଷଦର ବାଣୀକୁ ବୁଝିପାରୁଛି, 'ଈଶ ଭାଷ୍ୟମ୍ ଇଦମ୍ ସର୍ବମ୍' ।'' ମୁଁ କହିଲି । ଦୀର୍ଘ ସମୟ ଧରି ମୁଁ ଭାବୁଥିଲି ଯେ ତା'ର ମାନେ ଥିଲା – ଈଶା, ପରମ ସତ୍ତା, ସବୁ ମଧ୍ୟରେ ଲୁକ୍କାୟିତ ହୋଇ ରହିଛି; କିନ୍ତୁ ବର୍ତ୍ତମାନ ମୁଁ ଜାଣିଲି ସେ ସବୁ କ'ଣ ? ଆମେ ଯାହା ଦେଖୁଛୁ, ଆଘ୍ରାଣ କରୁଛୁ, ସ୍ପର୍ଶ କରୁଛୁ, ଆସ୍ୱାଦନ କରୁଛୁ କିଛି ଈଶାରୁ ପୃଥକ ନୁହେଁ । ଚାରିଆଡ଼େ ତାହାକୁ ଖୋଜିବାର ଆବଶ୍ୟକତା ନାହିଁ ।''

''ଆଃ'', କହିଲେ ବାବାଜୀ, ''ଧୀରେ, ସୁପ୍ତେ, ତରବର ହୁଅ ନାହିଁ । ତୁମର ମସ୍ତିଷ୍କ ପରିଷ୍କାର ହେବା ଆରମ୍ଭ ହୋଇଛି । ଚାଲ ମାର୍ଗାରେଟ ଲେଗି (Margaret Legge) ସ୍ମୃତିସୌଧ ପାଖକୁ ଯିବା, ସେଠାରୁ ଆମେ ଘାଙ୍ଗରିଆକୁ ଫେରିଯିବା ।'' ଆମେ ଉଠିପଡ଼ିଲୁ, ଅଳ୍ପ ରାସ୍ତା ଚାଲିଚାଲି ଗଲୁ । ବାବାଜୀ କହିଲେ ଯେ ମାର୍ଗାରେଟ ଲେଗି ଏଡିନ୍‌ବର୍ଗର ବଟାନିକାଲ୍ ଗାର୍ଡେନ୍‌ର ଜଣେ ଉଦ୍ଭିଦ ବିଜ୍ଞାନୀ ଥିଲେ । ସେ 1939 ମସିହାରେ ଭ୍ୟାଲି

ଅଫ୍ ଫ୍ଲାୱାରରେ ଘୂରିବୁଲୁଥିବା ସମୟରେ ଖସି ପଡ଼ିଥିଲେ ଓ ସେହି ପତନ ମାରକ ପ୍ରମାଣିତ ହୋଇଥିଲା । ସ୍ଥାନୀୟ ଲୋକେ ତାଙ୍କୁ କବର ଦେଇଥିଲେ ଏବଂ ପରେ ତାଙ୍କର ଭଉଣୀ ଆସି ଗୋଟିଏ ସ୍ମୃତି-ସୌଧ ନିର୍ମାଣ କରିଥିଲେ । ପଥରର ସମାଧିଲିପିରେ ଲେଖାଥିଲା – 'I will lift my eyes unto the hills from whence cometh my help.'

ଆମେ ଯେତେ ଜଲଦି ସମ୍ଭବ ଚାଲିଲୁ ଏବଂ ଘାଙ୍ଗରିଆରେ ରାତି ହେବାର ଠିକ୍ ପୂର୍ବରୁ ଯାଇ ପହଞ୍ଚିଗଲୁ । ପବନ ଅତି ଶୀତଳ ଓ ତୀକ୍ଷ୍ଣ ଥିଲା । ସେଦିନ ରାତିରେ ରାଜସ୍ଥାନର ବାବାଜୀ ନାମକ ଜଣେ ସାଧୁଙ୍କର ପଥରର କୁଡ଼ିଆରେ ଆମେ ରହିଲୁ । ସେ ବାବାଜୀଙ୍କୁ ସମ୍ଭ୍ରମଯୁକ୍ତ ଶ୍ରଦ୍ଧା କରୁଥିବା ପରି ଜଣାପଡ଼ିଲା । ସେ ଆମର ବହୁତ ଯତ୍ନ ନେଲେ ।

ପରଦିନ ସକାଳୁ ଆମେ ଚାଲିଚାଲି ହେମକୁଣ୍ଡ ସାହେବକୁ ଚାଲିଲୁ । ହେମକୁଣ୍ଡ ସାହେବକୁ ଚଢ଼ାଣି ଭାରୀ ତୀଖ ଥିଲା । ସେଠାରେ ଉକ୍ତ ଶିଖମାନଙ୍କର ବହୁତ ଭିଡ଼ ଥିଲା । ସେମାନେ ଜୋରରେ ଚିତ୍କାର କରୁଥିଲେ 'ୱାହେ ଗୁରୁ' ଏବଂ ବିଶ୍ୱାସର ଶକ୍ତିରେ ବଳୀୟାନ ହୋଇ ବୁଲିବୁଲି ଯାଉଥିବା ରାସ୍ତା ଧରି ଚାଲିଥିଲେ । ରାସ୍ତାର ମଝିରେ ଗୋଟାଏ ଜାଗାରେ ଅଧିକାଂଶ ଯାତ୍ରୀ ବିଶ୍ରାମ ନେବାକୁ ରହିଯାଉଥିଲେ ଓ ଅବଶିଷ୍ଟ ରାସ୍ତା ପରଦିନ ସମ୍ପୂର୍ଣ୍ଣ କରୁଥିଲେ; କିନ୍ତୁ ଆମେ ସାମାନ୍ୟ ବିଶ୍ରାମ କରିବା ପରେ କପେ ଚା' ପିଇଦେଇ ଚାଲିବାକୁ ପସନ୍ଦ କଲୁ । ସନ୍ଧ୍ୟା ଗଡ଼ିଗଲା ପରେ ଆମେ ହେମକୁଣ୍ଡ ସାହେବରେ ପହଞ୍ଚିଗଲୁ । ଏହା ସମୁଦ୍ରତଳରୁ 15,000 ଫୁଟ ଉଚ୍ଚରେ ଥିଲା ଓ ଯେପରି ଆଶା କରୁଥିଲୁ, ସେପରି ସେହି ଜାଗା ଅତିରିକ୍ତ ଥଣ୍ଡା ଥିଲା ।

ଶିଖମାନେ ବିଶ୍ୱାସ କରନ୍ତି ଯେ, ସେମାନଙ୍କର ଶେଷ ଗୁରୁ ଗୁରୁ ଗୋବିନ୍ଦ ସିଂ ତାଙ୍କର କୌଣସି ପୂର୍ବଜନ୍ମରେ ଏହି ହେମକୁଣ୍ଡ ହ୍ରଦ ପାଖରେ ବହୁଦିନ ଧରି ତପସ୍ୟା ଓ ଧ୍ୟାନ କରି ବିତାଇଥିଲେ । ଏଠାର ବାୟୁରେ ଅମ୍ଳଜାନ କମ୍ ଥିଲା । ବାବାଜୀ ମୋତେ ନିଃଶ୍ୱାସର ଛନ୍ଦ ବଦଳାଇବାପାଇଁ ଉପଦେଶ ଦେଲେ । ଶୀଘ୍ର ହିଁ ମୋର ଯେଉଁ ମୃଦୁ ମୁଣ୍ଡବିନ୍ଧା ହେଉଥିଲା, ତାହା ଚାଲିଗଲା ।

ହେମକୁଣ୍ଡ, ଯାହାର ଅର୍ଥ ହେଲା – 'ବରଫର ହ୍ରଦ', ଅତ୍ୟନ୍ତ ସୌନ୍ଦର୍ଯ୍ୟମଣ୍ଡିତ ଥିଲା । ତା'ର ଜଳ ଥିଲା ସ୍ଫଟିକ ପରି ପରିଷ୍କାର ଏବଂ ତାହାର ଉପରିସ୍ଥ କେତେକ ଅଂଶ ବରଫ ପାଲଟି ଯାଇଥିଲା । ଘେରି ରହିଥିବା ସବୁ ପର୍ବତ ଶିଖରଗୁଡ଼ିକ ହିମାଚ୍ଛାଦିତ ଥିଲା

ଏବଂ ସମୁଦାୟ ଦୃଶ୍ୟ ମାୟାମୟ ଥିଲା । କେତେଜଣ ନିମୋନିଆରେ ପଡ଼ିବାର ବିପଦକୁ ତୁଚ୍ଛ କରି ତରବର ହୋଇ ହ୍ରଦରେ ବୁଡ଼ ପକାଉଥିଲେ ।

ଆମେ ଗୁରୁଦ୍ୱାରକୁ ଗଲୁ । ସେଠାରେ ଆମକୁ ଖେଚେଡ଼ି, ଚପାଟି ଓ ଖାଡ଼ା ପ୍ରସାଦ ନାମକ ମିଠା ଖିରି ପରଷାଗଲା । ଯଥେଷ୍ଟ କମ୍ବଳ ଦିଆଗଲା ଏବଂ ମୁଁ ଶୀଘ୍ର ଶୋଇଗଲି । ଭାରି କ୍ଲାନ୍ତ ହୋଇଯାଇଥିଲି ।

ପରଦିନ ସକାଳେ ଆମେ ପୁରାତନ ଲଚ୍ଛମନ୍ ମନ୍ଦିର ଆଡ଼କୁ ଚାଲିଲୁ । ଏଥର ଆମେ ଏକା ଥିଲୁ । ବହୁତ କମ୍ ପର୍ଯ୍ୟଟକ ଏହି ମନ୍ଦିରର ଅସ୍ତିତ୍ୱ ବିଷୟରେ ଜାଣୁଥିଲେ । ବହୁ କଷ୍ଟକର ରାସ୍ତାରେ ଚାଲିଚାଲି ଆମେ ଲଚ୍ଛମନ୍ ମନ୍ଦିରରେ ପହଞ୍ଚିଲୁ । ଭୟଙ୍କର ହାଡ଼କମ୍ପା ଶୀତ ହେଉଥାଏ । ମନ୍ଦିରଟି ପ୍ରସ୍ତର ନିର୍ମିତ ଏକ ପରିତ୍ୟକ୍ତ ସ୍ଥାନ ଥିଲା । ଜନତାଙ୍କଠାରୁ ପଇସା ଆଦାୟ କରିବାପାଇଁ କୌଣସି ପୂଜକ ସେଠାରେ ନ ଥିଲେ । କିଏ ଗୋଟିଏ କ୍ଷୁଦ୍ର ମାନବାକୃତି ମୂର୍ତ୍ତି ସେଠାରେ ସ୍ଥାପନ କରିଦେଇଥିଲେ । ସେହି ମୂର୍ତ୍ତିକୁ ଲକ୍ଷ୍ମଣଙ୍କର (ଯେ ମହାନ୍‌ଗ୍ରନ୍ଥ ରାମାୟଣର ନାୟକ ରାମଙ୍କର ସାନଭାଇ ଥିଲେ) ବୋଲି କୁହାଯାଏ । ସେହି ମୂର୍ତ୍ତି ପରିଷ୍କାର ନ ଥିଲା ଧୂଆ ହୋଇ ନ ଥିଲା ଏବଂ ଗର୍ଭ ଗୃହରେ ଗୋଟିଏ କାନ୍ଥକୁ ଆଉଜାଇ ରଖା ହୋଇଥିଲା ।

‘‘ମୋର ଗୁରୁ ଓ ମୁଁ ମଧ୍ୟ ଏଠାରେ ପୂରା ଗୋଟାଏ ରାତି ବସି ରହିଥିଲୁ ।’’ କହିଲେ ବାବାଜୀ । ‘‘ତୁମେ ପର୍ବତଗୁଡ଼ିକରୁ ଅପୂର୍ବ ଜ୍ୟୋତି ବାହାରି ହ୍ରଦ ଆଡ଼କୁ ଓହ୍ଲାଉଥିବାର ଦେଖିପାରିବ; କିନ୍ତୁ ଆମେ ଏଥର ଏଠାରେ ରାତି କଟାଇ ପାରିବା ନାହିଁ । ଏହି ଜାଗା ବରଫ ପରି ଥଣ୍ଡା ହୋଇଯାଏ ଏବଂ ତୁମେ ନିକଟରେ ବହୁତ ଜର ଭୋଗି ଉଠିଛ ।’’ ସ୍ୱର୍ଗୀୟ ଦୃଶ୍ୟକୁ ଉପଭୋଗ କରି ଆମେ ସେଠାରେ ଘଣ୍ଟାଏ ଖଣ୍ଡେ ବସିରହିଲୁ । ଏହି ସ୍ଥାନରେ ଓ ପାଖଆଖରେ ‘ବ୍ରହ୍ମ କମଳ’ (ଗୋଟାଏ ବିରଳ ପ୍ରଜାତିର ପଦ୍ମ) ପ୍ରସ୍ଫୁଟିତ ହୁଏ । ବାବାଜୀଙ୍କର ମନୋଭାବ ଆଧ୍ୟାତ୍ମିକ ଭାବରେ ଉନ୍ନତ ଅବସ୍ଥାରେ ଥାଏ । ଗୋଟାଏ ଶକ୍ତିଶାଳୀ ଜ୍ୟୋତିରେ ଯେମିତି ତାଙ୍କର ମୁଖମଣ୍ଡଳ ଆଲୋକିତ ହୋଇ ରହିଥାଏ । ନିରୁପଦ୍ରବ ଶାନ୍ତି ବିରାଜୁଥାଏ । ହଠାତ୍ ବାବାଜୀ କହିଲେ, ‘‘ଏଥର ଚାଲ ଯିବା ।’’

ଆମେ ଗୁରୁଦ୍ୱାରକୁ ଫେରିଆସିଲୁ ଏବଂ ଠିକ୍ ସମୟରେ ଗରମ ଚପାଟି ଓ ଡାଲି ଭୋଜନ କରିବାପାଇଁ ପହଞ୍ଚିଗଲୁ, ତା’ ପରେପରେ ଆମେ ଘାଙ୍ଗରିଆ ଆଡ଼କୁ ଅବତରଣ ଆରମ୍ଭ କଲୁ । ସନ୍ଧ୍ୟା ପୂର୍ବରୁ ଆମେ ଘାଙ୍ଗରିଆରେ ପହଞ୍ଚିଗଲୁ ଓ ପୂର୍ବୋକ୍ତ ରାଜସ୍ଥାନୀ ସାଧୁଙ୍କ ସହିତ ରହିଲୁ । ସେହି ସାଧୁ ‘ଜନ ଆଖଡ଼ା’ର ଥିଲେ ।

ବାବାଜୀ ରାତିରେ ଚାଲବୁଲ କରିବାକୁ ବାହାରିଗଲେ ଏବଂ ମୁଁ ସାଧୁଙ୍କ ସହିତ ଏକଲା ରହିଗଲି । ସାଧୁ ଧୁନି ସାମ୍ନାରେ ବସିଲେ ଓ ସେ ତାଙ୍କର ମାଟିର ଚିଲମରେ ଗଞ୍ଜେଇ ଓ ତମାଖୁ ଭରି ଲଗାଇଲେ । ''ତୁମେ କ'ଣ ଗୋଟାଏ ଟାଣ ମାରି ଏହି ପବିତ୍ର ଧୂମପାନ କରିବ କି ?'' ସେ ମୋତେ ପଚାରିଲେ । ମୁଁ ମନା କଲି, ''ତୁମର ବାବାଜୀ ମଧ୍ୟ ଧୂମପାନ କରନ୍ତି ନାହିଁ'', ସେ କହିଲେ । ତୁମେମାନେ ହେଉଛ ରାଜଯୋଗୀମାନଙ୍କ ଦଳର  ଅନ୍ତର୍ଭୁକ୍ତ । ଉଚ୍ଚତର ଅନ୍ତର୍ନିହିତ ସତ୍ୟ ଉପରେ ନିଜ ଧ୍ୟାନ ସ୍ଥିର ରଖିବାପାଇଁ ବୋଧହୁଏ ତୁମମାନଙ୍କୁ ଏହାର ଆବଶ୍ୟକତା ପଡ଼େ ନାହିଁ । ତୁମେ ଜାଣ, ତୁମର ଭାଗ୍ୟ ଭଲ । ତୁମେ ହେଉଛ ପ୍ରକୃତରେ ଭାଗ୍ୟବାନ । ଏହି ବାବାଜୀ ହେଉଛନ୍ତି ଜଣେ ଅତି ଉଚ୍ଚସ୍ତରରେ ପହଞ୍ଚିଥିବା ଯୋଗୀ । ସେ ସହଜରେ ଶିଷ୍ୟ ଗ୍ରହଣ କରନ୍ତି ନାହିଁ । ମୁଁ ଯେଉଁମାନଙ୍କୁ ପ୍ରକୃତ ଅର୍ଥରେ ଅନିସନ୍ଧିତ୍ସୁ ବୋଲି ଭାବେ, ସେମାନଙ୍କୁ ମଧ୍ୟ ସେ ଗ୍ରହଣ କରି ନାହାନ୍ତି । ବୋଧହୁଏ ତୁମ ଦୁହିଁଙ୍କ ମଧ୍ୟରେ କିଛି ପୂର୍ବ ଜନ୍ମର ସମ୍ପର୍କ ରହିଛି । ମୁଁ ସେଦିନ ତାଙ୍କୁ ତୁମ ଆଡ଼କୁ ଭାରି ସ୍ନେହପୂର୍ଣ୍ଣ ଭାବରେ ଚାହିଁବାର ଦେଖିଛି, ଯେମିତି ତୁମେ ତାଙ୍କ ନିଜର ସନ୍ତାନ ! ମୁଁ ପ୍ରକୃତରେ ଆଶ୍ଚର୍ଯ୍ୟ ହେଉଛି ।''

ତମାଖୁର ଧୂଆଁଠାରୁ ସାମାନ୍ୟ ଦୂରରେ ବସି ମୁଁ ବହୁ ସମୟ ଧରି ଧ୍ୟାନ କଲି । ଏହା ଏକ ଉତ୍ତମ ଓ ଗଭୀର ଧ୍ୟାନ ଥିଲା । ଯେଉଁସବୁ ସନ୍ଦେହ ଥିଲା ହଠାତ୍ ସେସବୁ ବୁଝିହୋଇଗଲା । ଶେଷରେ ଯୋଗୀ ଦେଇଥିବା କମ୍ବଳ ଗୁଡ଼େଇ ମୁଁ ଶୋଇବାକୁ ପ୍ରସ୍ତୁତ ହେବା ପର୍ଯ୍ୟନ୍ତ ମଧ୍ୟ ବାବାଜୀ ଫେରି ନ ଥା'ନ୍ତି । ମୋତେ ନିଜକୁ ଗୋଟିଏ ଛୋଟ ପିଲା, ଯେ ମା'କୁ ଅପେକ୍ଷା କରି ବସିଛି, ସେହିପରି ବୋଧ ହେଉଥାଏ । ନିଦ୍ରାର ଆରାମଦାୟକ କୋଳ ମୋତେ ଅକ୍ତିଆର କରିନେଲା ଓ ମୁଁ ଶୋଇପଡ଼ିଲି ।



# 27. ସିଦ୍ଧରଙ୍କ ସହିତ ଭେଟ

ପରଦିନ ଖୁବ୍ ସକାଳୁ ଆମେ କଳ୍ପେଶ୍ୱର ଉଦ୍ଦେଶ୍ୟରେ ବାହାରିଲୁ ।

ପଞ୍ଚକେଦାରମାନଙ୍କ ମଧ୍ୟରୁ କେଦାରନାଥ ହେଉଛି ସୁପ୍ରସିଦ୍ଧ ଓ ଚିତ୍ତାକର୍ଷକ । କେଦାର ପର୍ବତମାଳାରେ ଥିବା କେଦାରନାଥ ସମୁଦ୍ରତଳରୁ 13,500 ଫୁଟ ଉଚ୍ଚରେ ଅବସ୍ଥିତ । ସବୁ ବର୍ଷ ହଜାର ହଜାର ତୀର୍ଥଯାତ୍ରୀ ଭୟଙ୍କର ଥଣ୍ଡାକୁ ଖାତିର ନ କରି କଷ୍ଟଦାୟକ ଓ ତୀଖ ଚଉଦମାଇଲ ଦୀର୍ଘ ପାହାଡ଼ିଆ ରାସ୍ତା ଆରୋହଣ କରି ସେଠାକୁ ଯାଆନ୍ତି । ବାକି ଚାରୋଟି ବିଷୟରେ ସ୍ଥାନୀୟ ଅଧିବାସୀ ଓ ଘୂରିବୁଲୁଥିବା ସାଧୁମାନଙ୍କ ବ୍ୟତୀତ ପ୍ରାୟ ଆଉ କେହି ଜାଣନ୍ତି ନାହିଁ । ଜଣାଶୁଣା ତୀର୍ଥସ୍ଥାନଗୁଡ଼ିକର ଯାତ୍ରୀମାନଙ୍କ ଭିଡ଼ଠାରୁ ଦୂରରେ ଥିବା ଓ ପ୍ରଦୂଷଣମୁକ୍ତ ହୋଇ ରହିଥିବା ଏହି ସ୍ଥାନଗୁଡ଼ିକ ଚମତ୍କାର ନିର୍ଜନତା ଓ ପ୍ରାକୃତିକ ସୁନ୍ଦରତା ମଧ୍ୟରେ ଦଣ୍ଡାୟମାନ । ବାବାଜୀ ମୋତେ ସେହି କେଦାରମାନଙ୍କ ମଧ୍ୟରୁ ପ୍ରଥମଟିକୁ ନେଇ ଯାଉଥିଲେ – କପିଳେଶ୍ୱର, ଯାହା ବଦ୍ରିଠାରୁ ଯାତ୍ରା ଆରମ୍ଭ କଲେ ପଡ଼େ ।

ଗୋବିନ୍ଦଘାଟରୁ ଆମେ ଯୋଶୀ ମଠକୁ ଯାଉଥିବା ରାସ୍ତା ଧରିଲୁ । ଦି'ପହର ସୁଦ୍ଧା ଆମେ ପ୍ରଧାନ ରାସ୍ତା ଛାଡ଼ି ମାଟି ରାସ୍ତା ଧରିଲୁ । ଏହି ପାଦଚଲା ରାସ୍ତା ଡାହାଣକୁ ଯାଇଥିଲା । ଆମ ବାଁ ପଟେ ବହୁଥିଲା ବିଷ୍ଣୁ ଗଙ୍ଗା । ଅଳ୍ପ କିଛି ସମୟ ପରେ ସେହି ମାଟି ରାସ୍ତା ଶେଷ ହୋଇଗଲା; କିନ୍ତୁ ବାବାଜୀ ରାସ୍ତା ଜାଣିଥିବା ପରି ଜଣାଗଲା । ଜଙ୍ଗଲ ଭିତରଦେଇ, ବେଳେବେଳେ ପଥର ଉପର ଦେଇ ଏବଂ ବେଳେବେଳେ ଜଙ୍ଗଲ ଓ ପଥର ମଝିଦେଇ ଚାଲିଚାଲି ଆମେ ଅଳ୍ପ ସମୟ ପରେ ଚାଇମ ଖାଲ ନାମକ ଏକ ଛୋଟ ବସ୍ତିରେ ଆସି ପହଞ୍ଚିଲୁ ।

ସେଠାରେ ଘରୱାଲୀମାନଙ୍କର ଏକ କ୍ଷୁଦ୍ର ସମ୍ପ୍ରଦାୟ ଆମକୁ ସ୍ୱାଗତ କରିବାକୁ ବାହାରି ଆସିଲା, କାରଣ ସେମାନେ ବାବାଜୀଙ୍କୁ ଚିହ୍ନି ପାରିଥିଲେ । ଗାଆଁର ବୁଢ଼ା ଓ ଲୋଳିତ ଚର୍ମ ମୁଖିଆ, ଯେ ବହୁ ସ୍ଥାନରେ ତାଳି ପଡ଼ିଥିବା ଗୋଟାଏ କୋଟ୍ ପିନ୍ଧିଥିଲେ, ବାବାଜୀଙ୍କର ଚରଣ ସ୍ପର୍ଶ କରିବାକୁ ନଇଁପଡ଼ିଲ । "ପ୍ରଣାମ ବାବାଜୀ, ତେବେ ଆପଣଙ୍କୁ

ଜଣେ ଶିଷ୍ୟ ଜୁଟିଗଲେ ?'' ବାବାଜୀ ଖାଲି ମୃଦୁ ହସି ତାଙ୍କୁ ଆଶୀର୍ବାଦ କଲେ । ଆମେ ରାମଦାନାରେ ପ୍ରସ୍ତୁତ ହୋଇଥିବା ଉପାଦେୟ ରୁଟି ସହିତ ଗରମ କଖାରୁ ତରକାରି ଉପାଦେୟ ଭୋଜନ କଲୁ । ଗୋଟିଏ ମିଠେଇ ଓ କପେ ଗରମ କଳା ଚା'ରେ ଭୋଜନ ସମାପ୍ତ ହେଲା । ସାରା ଗାଆଁ ଆମକୁ ଚାହିଁ ଠିଆହୋଇ ରହିଥାଆନ୍ତି । କେତେଜଣ ମହିଳା ସେମାନଙ୍କ ପିଲାମାନଙ୍କୁ ବାବାଜୀଙ୍କ ଆଶୀର୍ବାଦ ପାଇବାପାଇଁ ନେଇ ଆସିଲେ । ସେମାନେ ବାବାଜୀଙ୍କୁ ରହିବାପାଇଁ ଅନୁରୋଧ କଲେ କିନ୍ତୁ ବାବାଜୀ ଯିବାପାଇଁ ଦୃଢ଼ପ୍ରତିଜ୍ଞ ଥିଲେ ।

ମଧ୍ୟାହ୍ନ ଭୋଜନର ଅଳ୍ପ ସମୟ ପରେ ଆମେ ଚାଇମ ଖାଲରୁ ବାହାରିପଡ଼ିଲୁ । ତା'ପରେ ପାହାଡ଼ ଚଢ଼ିବା ଆରମ୍ଭ ହେଲା, ଯେତିକି ଯେତିକି ଯାଉଥାଉ, ଚଢ଼ାଣି ସେତିକି ତୀଖ ହୋଇ ଚାଲିଥାଏ । ଆମେ ବାର୍‌କି ଉଦ୍ଦେଶ୍ୟରେ ଚାଲିଲୁ, ଯେଉଁଠାରୁ କଳ୍ପେଶ୍ୱର ବେଶ ନିକଟରେ ଥିଲା । କିଛି ଘଣ୍ଟା ପରେ ଆମେ ବାର୍‌କିରେ ପହଞ୍ଚିଲୁ, ସେଠାରେ ଗୋଟିଏ ଛୋଟ ଶିବମନ୍ଦିର ଥିଲା, ଯେଉଁଟି ବାବାଜୀ କହିବା ଅନୁସାରେ ବାର୍ଷିକ ପୂଜା ସମୟରେ ପାହାଡ଼ି ଲୋକମାନଙ୍କର ଯତ୍ନ ପାଉଥିଲା ।

ଦି'ଘଣ୍ଟା ପରେ, ଗୋଟିଏ ଗେଣ୍ଡୁ ଫୁଲର ସୁନ୍ଦର ଜଙ୍ଗଲ ଅତିକ୍ରମ କରି ଆମେ ଚମତ୍କାର ଉପତ୍ୟକା ଉର୍‌ଗୁମ୍‌ରେ ପ୍ରବେଶ କଲୁ । ସୂର୍ଯ୍ୟ ଅସ୍ତ ଯିବାକୁ ଆରମ୍ଭ କରୁଥାଆନ୍ତି ଏବଂ ଦୃଶ୍ୟ ଥିଲା ଯାହାକୁ କହନ୍ତି ଚିତ୍ରକରର ସ୍ୱର୍ଗ । ଦୂରରେ ବରଫାବୃତ ଶିଖରଗୁଡ଼ିକ ଦ୍ୱାରା ଅସ୍ତଗାମୀ ସୂର୍ଯ୍ୟର ସୁନେଲି କିରଣ ପ୍ରତିଫଳିତ ହେଉଥିଲା । ଚାରିଆଡ଼ଯାକ ପ୍ରଚୁର ପରିମାଣରେ ଗେଣ୍ଡୁଫୁଲ ଗଛ ଥିଲା । ଗୋଟାଏ ପଟେ ଝରଣା ବହିଯାଉଥିଲା । ତା'ର ପାଣି ଥିଲା ପରିଷ୍କାର ଓ ସ୍ଫଟିକ ସ୍ୱଚ୍ଛ । ନିକଟରେ ଥିବା ଜଳପ୍ରପାତର ଶୁଭ୍ର ଜଳ କୃଷ୍ଣାଭ ଘନ ନୀଳ ପର୍ବତ ଉପରେ ନେଇ ପ୍ରବାହିତ ହେଉଥିଲା, ଯେଉଁଠାରୁ ବାବାଜୀ କହିବା ଅନୁଯାୟୀ ଏକ ପ୍ରକାରର ଝୁଣା ଜାତୀୟ ପଦାର୍ଥ (ଯାହାକୁ ଆୟୁର୍ବେଦରେ ଶିଳାଜିତ କୁହାଯାଏ) ଝରୁଥାଏ ।

ପ୍ରକୃତିର ନଷ୍ଟ ହୋଇ ନ ଥିବା ପରିପ୍ରକାଶ ମଧ୍ୟରେ ଏବଂ ଏକ ପ୍ରାକୃତିକ ଗୁମ୍ଫା ମଝିରେ ଲୁକ୍କାୟିତ ହୋଇ ରହିଛନ୍ତି ପ୍ରସ୍ତରର ଲିଙ୍ଗ ରୂପରେ କଳ୍ପେଶ୍ୱର ଶିବ । ଗୋଟିଏ କଂସାର ଘଣ୍ଟି ଝୁଲୁଥିବା ଛୋଟ ଖୋଲାଣ ବାଟ ଦେଇ ଭିତରକୁ ଯିବାକୁ ପଡ଼େ । ବାବାଜୀ ଓ ମୁଁ ସେହି ଘଣ୍ଟା ବଜାଇ ଆମର ପହଞ୍ଚିବା ଜଣାଇ ଦେଲୁ ଏବଂ ସେହି ଗୁହାମନ୍ଦିରକୁ ପଶିଲୁ । ନିକଟରେ ଥିବା ଉର୍‌ଗୁମ୍ ଉପତ୍ୟକାସ୍ଥିତ ଦେବଗ୍ରାମ ଗାଆଁର ପୂଜକ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଯୋଡ଼ ହସ୍ତରେ ନଇଁପଡ଼ି ତାଙ୍କର ପାଦ ସ୍ପର୍ଶ କରି ବାବାଜୀଙ୍କୁ ସମ୍ମାନ

ପୂର୍ବକ ସମ୍ଭାଷଣ କଲେ ।

ଅନ୍ଧାର ହୋଇ ଆସୁଥାଏ ଏବଂ ବେଶ ବଡ଼ ତେଲର ଦୀପରେ ସନ୍ଧ୍ୟାଆରତି କରିବା ପାଇଁ ସେ ଅନୁମତି ମାଗିଲେ । ପୂଜକ ଆରତି କଲେ ଓ ବାବା 'ଓଁ ନମଃ ଶିବାୟ' ମନ୍ତ୍ର ଉଚ୍ଚାରଣ କଲେ । ମୁଁ ଗୋଟିଏ ଛୋଟ ରୁପାର ଘଣ୍ଟି ବଜାଉଥାଏ । ପୂଜକ ବୁଲିପଡ଼ିଲା ପରେ ଦୀପର ଆଲୁଅରେ ଦେଖିଲି ଗର୍ଭଗୃହରେ ଇତସ୍ତତଃ ହୋଇ ରହିଥିବା ଅନେକ ଲିଙ୍ଗ ମଧ୍ୟରୁ ଏହି ଲିଙ୍ଗଟି ଗୋଟିଏ । ପୂଜା ପରେ ଆମେ ନିରବରେ ବସିଲୁ । ସେହି ନିରବତା ଥିଲା ପ୍ରେମ ଓ ଶାନ୍ତିର ଏବଂ ସର୍ବବ୍ୟାପୀ ।

ତା'ପରେ ପୂଜକ ଆମକୁ କିଛି ପବିତ୍ର ମହୁ ଦେଲେ । ତାହା ଭାରି ମିଠା ଓ ତା'ର ମୃଦୁ ସୌରଭ ଅନେକଟା ଗେଣ୍ଡୁ ଫୁଲର ବାସ୍ନା ପରି ଥିଲା । ସେ ଆମକୁ ତାଙ୍କ ସହିତ ଦେବଗ୍ରାମ ଯିବାପାଇଁ ବାଧ୍ୟ କରୁଥିଲେ; କିନ୍ତୁ ବାବାଜୀ ପର୍ଯ୍ୟଟକମାନଙ୍କପାଇଁ ଉଦ୍ଦିଷ୍ଟ ଗୋଟିକିଆ କମରାରେ ରହିବାକୁ ଇଚ୍ଛାକଲେ । ଏହାର ଗୋଟାଏ ଖୋଲା ଦ୍ୱାର ଥିଲା । ଘରକୁ ଥିବା ପାହାଚ ସାମ୍ନାରେ ଗୋଟିଏ ଅଗ୍ନିକୁଣ୍ଡ ଥିଲା । ପୂଜକ କହିଲେ ସେ ଜାଳେଣି କାଠ ଓ ଖାଦ୍ୟ ଧରି ଫେରିଆସିବେ ଓ ବାବାଜୀଙ୍କର ଆଗମନ ବିଷୟ ଗାଆଁର ମୁଖିଆଙ୍କୁ ଜଣାଇଦେବେ । କିଛି ସମୟ ପରେ ଆମ ଛଡ଼ା ଆଉ କେହି ରହିଲେ ନାହିଁ । ଚନ୍ଦ୍ର ବାଦଲ ଉହାଡ଼ରୁ ବାହାରି ଆସିଲେ ଏବଂ ଆକାଶ ତାରକାଖଚିତ ଥିଲା । ଆମେ କମରାର ବାହାରେ ବସିଲୁ ଓ ବାବାଜୀ ମୋତେ କମ୍ବଳ ଘୋଡ଼େଇ ହେବା ଓ ବେକରେ ମଫଲର ଗୁଡ଼ାଇବା କଥା ମନେପକାଇ ଦେଲେ ।

''ବହୁ ବର୍ଷ ଧରି'', ବାବାଜୀ କହିଲେ, ''ମୋର ଗୁରୁଙ୍କର ସର୍ବ ପୁରାତନ ଶିଷ୍ୟମାନଙ୍କ ମଧ୍ୟରୁ ଜଣେ, କଳ୍ପେଶ୍ୱରରେ ରହୁଥିଲେ । ବର୍ତ୍ତମାନ ସେ ରୁଦ୍ରନାଥକୁ ଉଠିଯାଇଛନ୍ତି । ଆଶା କରୁଛି ସେଠାରେ ତାଙ୍କ ସହିତ ଭେଟ ହେବ ।''

''ବାବାଜୀ'', ମୁଁ କହିଲି, ''ମୁଁ ଆପଣଙ୍କୁ କିଛି ପଚାରିପାରେ କି ?''

''ପଚାର ।''

''ଆପଣ କେଉଁଠି ଜନ୍ମ ଗ୍ରହଣ କରିଥିଲେ ଓ ଆପଣଙ୍କର ବୟସ କେତେ ?''

ବାବାଜୀ ହସିଲେ, ''ତା'ର କିଛି ଗୁରୁତ୍ୱ ନାହିଁ; କିନ୍ତୁ ଯଦି ନିହାତି ତୁମେ ଜାଣିବାକୁ ଚାହଁ, ତେବେ ଶୁଣ – ମୁଁ କାଶ୍ମୀରୀ ବାପା ମା'ଙ୍କ କୋଳରେ ଜନ୍ମ ନେଇଥିଲି । ମୋ ବୟସ ବିଷୟରେ ଏତିକି କହିବି ଯେ, ମୁଁ ଯେତିକି ଦିଶେ, ତା'ଠାରୁ ଯଥେଷ୍ଟ ଅଧିକ ବୟସ୍କ । ଯେତେବେଳେ ମହାନ ଯୋଗୀ ଶ୍ୟାମା ଚରଣ ଲାହିଡ଼ି ପ୍ରଥମେ ମୋର ଗୁରୁଙ୍କୁ ଭେଟିଥିଲେ,

ସେତେବେଳେ ମୁଁ ହିଁ ତାଙ୍କୁ ଗୁମ୍ଫା ଭିତର ଦେଇ ବାବାଜୀଙ୍କ ଆସ୍ଥାନ ପାଖକୁ ବାଟ କଢ଼ାଇ ନେଇଯାଇଥିଲି ।''

''କିନ୍ତୁ ତାହା ତ ଶହେ ବର୍ଷରୁ ଅଧିକ ତଳର ଘଟଣା !'' ମୁଁ ବିସ୍ମୟର ସହିତ କହିଉଠିଲି । ''କିନ୍ତୁ ଆପଣ ତ ଅତି ବେଶିରେ ତିରିଶବର୍ଷ ବୟସ୍କ ପରି ଦିଶୁଛନ୍ତି !''

''ସନ୍ତୁଳିତ ଖାଦ୍ୟ ଖାଇଲେ ଏବଂ 'କାୟାକଳ୍ପ'ର ଅଭ୍ୟାସ କଲେ ଜଣେ ନିଜର ଯୌବନକୁ ଧରି ରଖିପାରେ ଓ ଦୀର୍ଘ ଜୀବନ ଲାଭ କରେ'', କହିଲେ ବାବାଜୀ, ''ତୁମେ ମଧ୍ୟ ମଝିରେ ମଝିରେ 'କାୟାକଳ୍ପ' ଅଭ୍ୟାସ କରିବା ଉଚିତ । ତାହାହେଲେ ତୁମେ ପରବର୍ତ୍ତୀ ସମୟରେ ସମାଜର ଚାପ ସହିତ ତାଳ ଦେଇ ଚାଲିପାରିବ ।''

''କ'ଣ ସବୁ ଚାପ ବାବାଜୀ'', ମୁଁ ପଚାରିଲି, ''ଏଠି ଏତେ ଚମତ୍କାର ଲାଗୁଛି । କୌଣସି ଚାପ ନାହିଁ । ମୁଁ ଏଇଠି ସବୁଦିନ ରହି ଆପଣଙ୍କ ସହିତ ହିମାଳୟରେ ଘୂରିବୁଲିବି । ମୁଁ ସମତଳ ଭୂମିକୁ ଅବତରଣ କରିବାକୁ ଚାହେଁ ନାହିଁ ।''

ବାବାଜୀ ମୋତେ ସ୍ନେହରେ ଚାହିଁଲେ । ''ତୁମେ ନ ଚାହିଁଲେ ମଧ୍ୟ ତୁମକୁ ତାହା କରିବାକୁ ପଡ଼ିବ, ତୁମକୁ କାମ କରିବାର ଅଛି, ମୋର ଗୁରୁଙ୍କର କାମ, ସାଙ୍ଗେ ସାଙ୍ଗେ ନୁହେଁ, ତେଣୁ ବ୍ୟସ୍ତ ହୁଅ ନାହିଁ । ଏହି ସୁନ୍ଦର ଅଞ୍ଚଳଗୁଡ଼ିକର ଆମେ କିଛିଦିନ ଘୂରିବୁଲିବା ।''

''ମୋର କିଛି ଆପତ୍ତି ନାହିଁ'', ମୁଁ କହିଲି, ''ଯେତେପର୍ଯ୍ୟନ୍ତ ଆପଣ ପାଖରେ ଅଛନ୍ତି ଓ ମୁଁ ଆପଣଙ୍କୁ ଦେଖିପାରୁଛି । ମୁଁ ନିଶ୍ଚିତ ଯେ ଆପଣ ଆପଣଙ୍କ ଗୁରୁଙ୍କ ପରି ନିଜର ଯୌବନ ଓ ଦେହକୁ ଅତୁଟ ଭାବରେ ଧରି ରଖି ସର୍ବଦା ମୋତେ ମାର୍ଗ ଦର୍ଶନ ଦେବେ ।''

''ନା'', କହିଲେ ବାବାଜୀ, ''କେବଳ ସେହି ମହାନ୍ ଆତ୍ମା, ଯାହାଙ୍କୁ ଆମେ ଶ୍ରୀଗୁରୁ ବାବାଜୀ କହୁ, ତାହା କରିପାରିବେ, କାରଣ ସେ ଏଠାରେ ଏକ ବିଶେଷ ଉଦ୍ଦେଶ୍ୟପାଇଁ ଉପସ୍ଥିତ ଅଛନ୍ତି । ମୋ କଥା କହିବାକୁ ଗଲେ, ମୋତେ କୌଣସି ଏକ ସମୟରେ ଯିବାକୁ ପଡ଼ିବ । ଅବଶ୍ୟ ସେ ପର୍ଯ୍ୟନ୍ତ ମୁଁ ମୋର ଦେହକୁ ଉତ୍ତମ ଭାବରେ ସଂରକ୍ଷିତ ଓ ଅତୁଟ ରଖିବାପାଇଁ ସକ୍ଷମ ।''

ମୁଁ ଧକ୍କା ଖାଇଲି । ଭାବବିହ୍ୱଳ ହୋଇ ଥରିଥରି କହିଲି, ''ବାବାଜୀ ଦୟାକରି କେବେହେଲେ ଚାଲିଯିବେ ନାହିଁ ।''

''ବୋକା ବାଳକ ।'' କହିଲେ ବାବାଜୀ, ''ପଥପ୍ରଦର୍ଶନ କେବଳ ପାର୍ଥିବ ଦେହ ଉପରେ ନିର୍ଭର କରେ ନାହିଁ । ଆଉ ଏହି ଦେହ ପ୍ରତି ଏତେ ଆସକ୍ତି ରଖ ନାହିଁ । ଆମର

ସବୁ ଶିକ୍ଷାର ଉଦ୍ଦେଶ୍ୟ ହେଉଛି ତୁମକୁ ସ୍ୱାଧୀନ କରିବା । ତୁମେ ନିଜ ଗୋଡ଼ରେ ଠିଆ ହେବା ଉଚିତ । ଏପରିକି ଗୁରୁଙ୍କ ଉପରେ ନିର୍ଭର କରିବା ହେଉଛି ଗୋଟାଏ ବାଧା । ମୁକ୍ତ ହୁଅ ।''

ଗାଆଁର ମୁଖିଆଙ୍କ ସହିତ ପୂଜକ ପହଞ୍ଚିଲେ । ସେମାନେ ଖାଦ୍ୟ ଓ ଜାଳେଣି କାଠ ଧରି ଆସିଥାଆନ୍ତି । ବାବାଜୀ ତଳକୁ ଓହ୍ଲାଇଯାଇ ଗାଆଁରେ ବିଶ୍ରାମ ନେଉ ନ ଥିବାରୁ ଦୁଃଖିତ ଥିଲେ ।

''ତୁମର ସ୍ୱାସ୍ଥ୍ୟ କେମିତି ଅଛି ?'' ବାବାଜୀ ପଚାରିଲେ ।

''ଆପଣଙ୍କ ଦୟାରୁ ଭଲ ଅଛି'', ମୁଖିଆ ଉତ୍ତର ଦେଲେ, ''ତାହାହେଲେ ଆପଣଙ୍କ ସହିତ ଜଣେ ଯୁବକ ଯୋଗୀ ଅଛନ୍ତି ବାବା ? ଖୁବ୍ ଭଲ । ଭାରି ବୁଦ୍ଧିଆ ଦିଶୁଛନ୍ତି ।'' ସେ ମୋ ଆଡ଼କୁ ବୁଲିପଡ଼ି କହିଲେ, ''ତୁମେ ଭାଗ୍ୟବାନ । ତୁମେ ବାବାଙ୍କ ପରି ଗୁରୁ ପାଇଛ ।''

ସେମାନେ ଧୁନି ଲଗାଇଦେଲେ, ଖାଦ୍ୟ ଭିତରେ ରଖିଦେଲେ ଏବଂ ଚାଲିଗଲେ । ନିଆଁର ଶିଖାଗୁଡ଼ିକ ଆନନ୍ଦରେ ନାଚି ଉଠି ଆମର ଦେହକୁ ଉଷ୍ଣତା ଓ ମନରେ ଶାନ୍ତି ଭରିଦେଲେ । ଆମେମାନେ ତା'ପରେ ଆମର ପରିଚିତ ରାମଦାନା ରୁଟି ଓ ଆଳୁ ତରକାରି ଖାଇଲୁ । ଏଥର କିନ୍ତୁ ରୁଟି ବୁଡ଼ାଇବାକୁ ଆମ ପାଖରେ ପ୍ରଚୁର ଜଙ୍ଗଲି ମହୁ ଥିଲା । ପରଦିନ ଆମକୁ ଲମ୍ବା ରାସ୍ତା ଯିବାର ଥିଲା, ତେଣୁ ବାବାଜୀ ମୋତେ ଶୋଇଯିବାକୁ କହିଲେ ।

ଭୋର୍‌ଟା ଅତି ଚମତ୍କାର ଥିଲା; ନଦୀ, ପର୍ବତଗୁଡ଼ିକ, ପ୍ରଚୁର ଗେଣ୍ଡୁଫୁଲ, ସବୁ ଥିଲା ଅପୂର୍ବ । ନଦୀରେ ଗୋଟାଏ ବୁଡ଼ ପକାଇ ପୋଛାପୋଛି ହୋଇସାରିବା ପରେ ଆମେ ସମ୍ଭବତଃ ଗଡ଼ୱାଲ ଜିଲ୍ଲାର ସବୁଠାରୁ ଆକର୍ଷଣୀୟ ଉପତ୍ୟକା ଉଦ୍ଦେଶ୍ୟରେ ବାହାରିଲୁ । ଶୀଘ୍ର ଆମେ ଛୋଟ ବସ୍ତି ଦେବଗ୍ରାମରେ ପହଞ୍ଚିଲୁ । ମୁଖିଆଙ୍କର ନେତୃତ୍ୱରେ ସାରା ଗାଆଁ ଆମକୁ ସ୍ୱାଗତ କରିବାକୁ ଆସିଥାଆନ୍ତି । ଆମେ ମୁଖିଆଙ୍କର ଛୋଟ ବାସସ୍ଥାନକୁ ଗଲୁ । ପ୍ରଥମେ ସ୍ତ୍ରୀଲୋକମାନେ ଆମର ପାଦ ଧୋଇଦେଲେ ଓ ଆମକୁ ଆସନରେ ବସାଇ ପେଟପୂରା ଖାଦ୍ୟ ଖୁଆଇଲେ । ଉତ୍ସୁକ ପିଲାଏ ଆମ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶକରି ହସାହସି ହେଉଥାଆନ୍ତି ।

ବାବାଜୀ କେତେଜଣ ଗାଆଁବାଲାଙ୍କ ସହିତ କଥାବାର୍ତ୍ତା ହେଲେ । ସେମାନଙ୍କ ସହିତ ତାଙ୍କର ପରିଚୟ ଥିବା ପରି ମନେହେଲା । ''ପ୍ରାୟ ଘୂରିବୁଲୁଥିବା ଲୋକ'', ମୁଁ

ମନେମନେ ଭାବିଲି । ଘଣ୍ଟାଏ ଖଣ୍ଡେ ପରେ ଆମକୁ ଅନିଚ୍ଛା ସତ୍ତ୍ୱେ ବିଦାୟ ଦିଆଗଲା । ତା' ପୂର୍ବରୁ ରାସ୍ତାରେ ଖାଇବାପାଇଁ ଦୁଇ ବସ୍ତା ଖାଦ୍ୟ ଓ ମହୁ ଦିଆଯାଇଥିଲା ।

ଆମେ ଯାଉ ଯାଉ ମୁଖିଆ କହିଲେ, ''ଆପଣମାନେ ରୁଦ୍ରନାଥରେ ଯୋଗୀ ମହାରାଜାଙ୍କୁ ଭେଟିଲେ, ତାଙ୍କୁ ମୋର ପ୍ରଣାମ ଜଣାଇଦେବେ ।''

ଆମେ ଉର୍‌ଗୁମ୍‌ର ସବୁଜ ଉପତ୍ୟକା ମଧ୍ୟ ଦେଇ ଯାଉଥାଉ । ଗୋଟାଏ ହାଲ୍‌କା ଝିପିଝିପି ବର୍ଷା ଲାଗି ରହିଥାଏ ଏବଂ ଏକ ସମ୍ପୂର୍ଣ୍ଣ ଇନ୍ଦ୍ରଧନୁ ଆମକୁ ସ୍ୱାଗତ କରୁଥାଏ । ଆମେ ପ୍ରାୟ କିଛି କଥାବାର୍ତ୍ତା ନ କରି ଦି'ଘଣ୍ଟା କାଳ ଚାଲିଲୁ । ସ୍ୱାଭାବିକ ଭାବରେ ଗୁରୁ ସାମ୍ନାରେ, ପାହାଡ଼ର ଛେଳି ପରି ତ୍ୱରିତ ଗତିରେ ଏବଂ ଶିଷ୍ୟ ପଛରୁ ଅନୁସରଣରତ, ଗୁରୁଙ୍କର ଗତିକୁ ଅନୁକରଣ କରିବାର କଷ୍ଟସାଧ୍ୟ ଚେଷ୍ଟା କରୁକରୁ ।

ହଠାତ୍ ଲୋକମାନଙ୍କର କଣ୍ଠସ୍ୱରଦ୍ୱାରା ନିରବତା ଭଙ୍ଗ ହେଲା । ଆମେ ପାଇନଗଛର ଧାଡ଼ିରେ ଘେରା ହୋଇଥିବା ଉପତ୍ୟକାରୁ ଓହ୍ଲାଇ ଛୋଟ ଗାଆଁ ଦୁମଖରେ ପ୍ରବେଶ କଲୁ । ପିଲାମାନେ ହସାହସି ହୋଇ ଚିତ୍କାର କରି ଦୌଡ଼ି ଆସିଲେ । ମୁଖିଆଙ୍କର ବଡ଼ପୁଅ ବାବାଜୀଙ୍କୁ ସ୍ୱାଗତ କଲେ ଏବଂ ବାବାଜୀଙ୍କର ଗତଥରର ଆଗମନ ପରେ ପରେ ତାଙ୍କର ବାପାଙ୍କର ଦେହାବସାନର ଦୁଃଖଦ ସମ୍ବାଦ ଦେଲେ । ବାବାଜୀ ଓ ମୁଁ ମୁଖିଆଙ୍କ ଘରକୁ ଗଲୁ । ସେଠାରେ ଆମକୁ ରୁଟି, ଡାଲି ଏବଂ ଆଳୁ ଖାଇବାକୁ ଦିଆଗଲା ।

ଛୋଟ ଗାଆଁ ଦୁମଖ ଗୋଟିଏ ସ୍ୱର୍ଗୀୟ ସ୍ଥାନ । ପାଖରେ ଥିଲା ଗୋଟିଏ ନୀଳ ହ୍ରଦ, ତିନି ଚାରୋଟି ଝରଣା ଗଡ଼ାଣିଆ ଉପତ୍ୟକାକୁ କୁଳୁକୁଳୁ ଧ୍ୱନି କରି ଝରି ଆସୁଥାଆନ୍ତି । ମୁଁ ସେହି ତାଜା, ସ୍ୱଚ୍ଛ ଜଳପାନ କଲି, ଯାହା ଔଷଧୀୟ ଗୁଣଯୁକ୍ତ ବୋଲି ସ୍ଥାନୀୟ ଲୋକମାନଙ୍କର ମତ ଥିଲା । ବିରାଟ ବିରାଟ ପାଇନଗଛ ଗାଆଁର ଚାରିଆଡ଼େ ଠିଆ ହୋଇ ରହିଥାଆନ୍ତି । ବାବାଜୀ ମୋତେ ମୁଣ୍ଡିଆଗୁଡ଼ିକର ଟିକିଏ ଉଚ୍ଚା ସ୍ଥାନକୁ ନେଇଯାଇ ଦୂର ଦିଗ୍‌ବଳୟରେ ଥିବା ଦ୍ରୋଣଗିରି ପର୍ବତମାଳା ଦେଖାଇଲେ । ଆମେ ଗାଆଁବାଲାଙ୍କଠାରୁ ବିଦାୟ ନେଇ ଯାତ୍ରା ଆରମ୍ଭ କଲୁ ।

ସଞ୍ଜ ଗଡ଼ିବା ପୂର୍ବରୁ ଗୋଟାଏ ଦୀର୍ଘ କଷ୍ଟଦାୟକ ଉଠାଣି ଚଢ଼ିବା ପରେ ଆମେ ପାନାରରେ ପହଞ୍ଚିଲୁ । ''କାକଭୁଶୁଣ୍ଡି ହ୍ରଦ ଏଠାରୁ ଦୂର ନୁହେଁ ।'' କହିଲେ ବାବାଜୀ, ''କିନ୍ତୁ ବର୍ତ୍ତମାନ ଆମେ ସେଠାକୁ ଯାଇପାରିବା ନାହିଁ । ସକାଳେ ଯଦି ଆକାଶ ପରିଷ୍କାର ଥିବ, ତେବେ ଆମେ ନନ୍ଦାଦେବୀ ଦେଖିପାରିବା । ଆମକୁ ନିକଟରେ ଥିବା ଗୋଟିଏ ଛୋଟ ପ୍ରାକୃତିକ ଗୁମ୍ଫାରେ ରାତ୍ରିଯାପନ କରିବାକୁ ପଡ଼ିବ । ମୁଁ ଏଠାରେ ଥରେ ଅଟକିଥିଲି

ଗୁରୁଙ୍କ ସହିତ । ଏହିସବୁ ସ୍ଥାନ ସେହି ମହାନ ଆତ୍ମାଙ୍କର ଅତ୍ୟନ୍ତ ପ୍ରିୟ ।''

ମୋର ହୃଦୟ ଆଶାରେ ଉଦ୍‌ବେଳିତ ହୋଇଉଠିଲା – ସେ କ'ଣ ଆସି ଆମକୁ ଆଶୀର୍ବାଦ କରିବେ, ସେହି ମହାନ୍ ଶ୍ରୀଗୁରୁ ବାବାଜୀ ? ଗୋଟାଏ ସଂକୀର୍ଣ୍ଣ ଉପତ୍ୟକା ମଧ୍ୟ ଦେଇ ଯାଇଥିବା ରାସ୍ତାରେ ଯାଇ ଆମେ ଖୁବ୍ ଶୀଘ୍ର ଗୋଟାଏ ବଡ଼ ଗୁମ୍ଫାର ଦ୍ୱାରଦେଶରେ ପହଞ୍ଚିଲୁ । ସେତେବେଳକୁ ପ୍ରାୟ ପୂରା ଅନ୍ଧାର ହୋଇଯାଇଥାଏ । ମୁଁ ଗୁମ୍ଫା ଭିତରୁ ଆସୁଥିବା ଆଲୁଅ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ଉତ୍ତେଜନାରେ ଥରିଲି । ମୋର ପ୍ରାର୍ଥନା କ'ଣ ପୂରଣ ହେବାକୁ ଯାଉଛି ? ମହାନ ଗୁରୁ କ'ଣ... ''ଶୀଘ୍ର ଆସ'', କହିଲେ ବାବାଜୀ, ''ଗୋଟାଏ ଝଡ଼ ଆସୁଛି, ଖୁବ୍ ଶୀଘ୍ର ହିମପାତ ହେବ ।''

ସାଧାରଣତଃ ଅବିଚଳିତ ହୋଇ ରହୁଥିବା ବାବାଜୀ ମଧ୍ୟ ଆମେ ଗୁମ୍ଫାରେ ପଶିବା ପରେ ଆଶ୍ଚର୍ଯ୍ୟ ହୋଇଗଲେ । ''ଓଃ !'' ସେ ଚିତ୍କାର କଲେ । ବେଶ ପ୍ରଶସ୍ତ ଗୁମ୍ଫା ମଝିରେ ଗୋଟିଏ ଉଷ୍ମ ଧୁନି ଜଳୁଥିଲା ଏବଂ ଆମ ଆଡ଼କୁ ମୁହଁ କରି ବସିଥିଲେ ଜଣେ କୃଷ୍ଣକାୟ, ଗେଡ଼ା ଏବଂ ମୋଟାସୋଟା ମଣିଷ । ତାଙ୍କର ଦୀର୍ଘ କୃଷ୍ଣକେଶ କାନ୍ଧ ଯାଏଁ ଲମ୍ବିଥିଲା ଓ ଲମ୍ବା ଘନ ଦାଢ଼ି ଥିଲା । ସେ ମଧ୍ୟ ଖଣ୍ଡିଏ ଧଳା କୌପୀନ ପିନ୍ଧିଥିଲେ ବାବାଜୀଙ୍କ ପରି ।

''ଆଃ'', ସେ ପାଟିକରି ଉଠିଲେ ଏବଂ ଆମକୁ ଦେଖିବାମାତ୍ରେ ଡେଇଁପଡ଼ିଲେ, ''ଆଆହା ! ମୁଁ ମହାନ୍ ମହେଶ୍ୱରନାଥଙ୍କୁ ତାଙ୍କ ଅଜାଣତରେ ଧରିପକାଇଛି । ତୁମେ ଭାବିଥିଲ ମୁଁ ରୁଦ୍ରନାଥରେ ଥିବି, ଦେଖ ମୁଁ ଏବେ ଅଛି ପାନାରରେ ।'' ବାବାଜୀ ତାଙ୍କର ପାଦସ୍ପର୍ଶ କରିବାକୁ ଚେଷ୍ଟା କଲେ; କିନ୍ତୁ ସେ ତାଙ୍କୁ ସେପରି କରିବାକୁ ଦେଲେ ନାହିଁ । ''ମହେଶ, ତୁମର ସେପରି କରିବାର ଆବଶ୍ୟକତା ନାହିଁ ।'' ତା'ପରେ ସେ ତାଙ୍କର ହାତ ମୋ କାନ୍ଧରେ ରଖିଲେ ଓ ମୋର ଆଖିକୁ ଚାହିଁଲେ, ''ଆଚ୍ଛା, ଗୁରୁମହାରାଜଙ୍କର ଏହି ଯୁବକପାଇଁ ପରିକଳ୍ପନା ଅଛି ! ସେହି ମହାତ୍ମା ମୋତେ ତୁମ ବିଷୟରେ କହିଛନ୍ତି, ମଧୁ । ଗୋଟିଏ କଷ୍ଟଦାୟକ ଜୀବନପାଇଁ ପ୍ରସ୍ତୁତ ରୁହ ବସ । ମୁଁ ନିଶ୍ଚିତ ଯେ ମହେଶ ହେଉଛନ୍ତି ଶ୍ରେଷ୍ଠ ପଥପଦର୍ଶକ ।''

ଏ ହେଉଛନ୍ତି ମୋର ବଡ଼ ଗୁରୁଭାଇ, ତେନକାଶି ସିଦ୍ଧର, କହିଲେ ବାବାଜୀ । ସେ ବହୁଦିନ ଧରି ତେନକାଶି ଜଳପ୍ରପାତ ନିକଟରେ ରହୁଥିଲେ ଏବଂ ଗୁରୁବାବାଜୀ ତାଙ୍କୁ ହିମାଳୟକୁ ଚାଲିଆସିବାକୁ ନିର୍ଦ୍ଦେଶ ଦେଲେ । ସେ ତାମିଲ ଓ ମାଲୟାଲମ କହିପାରନ୍ତି ।''

ସିଦ୍ଧର ମୋ ଆଡ଼କୁ ବୁଲିପଡ଼ି ତାମିଲରେ କହିଲେ, ''ତୁମେ ଅବଶ୍ୟ ତାମିଲ ଜାଣିଥିବ । ତ୍ରିଭେନ୍ଦ୍ରମ ହେଉଛି ସୀମାନ୍ତ ଇଲାକା । ବହୁଲୋକ ସେଠାରେ ତାମିଲ ଜାଣନ୍ତି,

ନୁହେଁ ?''

''ହଁ ସିଦ୍ଧରେ'', ମୁଁ ତାମିଲରେ ଉତ୍ତର ଦେଲି, ''ମୁଁ ଭଲ ତାମିଲ କହିପାରେ, ମୋର ଅନେକ ତାମିଲଭାଷୀ ବନ୍ଧୁ ଥିଲେ ।''

''ଖୁବ୍ ଭଲ କଥା'', କହିଲେ ସିଦ୍ଧର ''ତୁମକୁ ଭାତ ଖାଇବାକୁ ଭାରି ଇଚ୍ଛା ହେଉଥିବ, ନୁହେଁ ? ଦେଖ ମୁଁ ତୁମପାଇଁ ଗରମ ଗରମ ଭାତ ସହିତ ଗରମ ସମ୍ବର ପ୍ରସ୍ତୁତ ରଖିଛି, ତା' ସହିତ ଅଛି କିଛି ସୁସ୍ୱାଦୁ ପାୟସମ୍'', ସେ ଧୁନି ନିକଟରେ ରଖା ହୋଇଥିବା କେତେଗୁଡ଼ିଏ ମାଟିର ପାତ୍ର ଆଡ଼କୁ ନିର୍ଦ୍ଦେଶ କରି କହିଲେ, ''ମନ ଖୁସିରେ ଖାଇବ ଆସ ।''

'ଓଁ' ଉଚ୍ଚାରଣ କରିବା ପରେ ଆମେ ରାତ୍ରିଭୋଜନର ଆନନ୍ଦ ଉପଭୋଗ କଲୁ, ଅନ୍ତତଃ ମୁଁ ଭାରି ତୃପ୍ତିରେ ଖାଇଲି । ରାତ୍ରିଭୋଜନ ପରେ ସିଦ୍ଧରଙ୍କର ମୋ ସହିତ ଦୀର୍ଘ ବାର୍ତ୍ତାଳାପ ହେଲା । ବାବାଜୀ ଶୁଣିବାକୁ ପସନ୍ଦ କଲେ । ସେ କହିଲେ ଯେ, ମୋ ସହିତ ପୁନଃ ସମ୍ପର୍କ ସ୍ଥାପନପାଇଁ ଯେତେବେଳେ ବାବାଜୀ ତ୍ରିଭେନ୍ଦ୍ରମ ଯାଇଥିଲେ, ସେତେବେଳେ ସେ ମୋର ଗୁରୁଙ୍କ ସହିତ ଦକ୍ଷିଣ ଭାରତକୁ ଯାଇଥିଲେ । ସେ କୋଭାଲମ ସମୁଦ୍ରତଟ ନିକଟରେ ଥିବା ଅଗସ୍ତ୍ୟକୂଟକୁ ଧ୍ୟାନ କରିବାକୁ ଯାଇଥିବା ବେଳେ ବାବାଜୀ ମୋତେ ଖୋଜିବାରେ ବ୍ୟସ୍ତ ଥିଲେ ।

ସେ ମୋତେ ତାମିଲ ସିଦ୍ଧ ଧାରାର ଶିକ୍ଷାଦାନ ବିଷୟରେ ସଂକ୍ଷେପରେ କହିଲେ ଏବଂ ସାଧୁ ଥିରୁମୁଲ୍ଲାର, ଯେ ଅଗସ୍ତ୍ୟଙ୍କର ଶିଷ୍ୟ ଥିଲେ, ତାଙ୍କର କୃତି ମହାନ 'ଥିରୁ ମନ୍ତିରମ' ପଢ଼ିବାର ପ୍ରସ୍ତାବ ଦେଲେ । ତାମିଲ ସିଦ୍ଧମାନେ, ନାଥ ପନ୍ଥ, କାଶ୍ମୀରୀ ଶୈବପନ୍ଥୀ ଏବଂ ଶ୍ରୀଗୁରୁ ବାବାଜୀ କିପରି ପରସ୍ପର ସହିତ ସଂଯୁକ୍ତ, ସେ ବିଷୟରେ ମୋତେ ବୁଝାଇ ଦିଆଗଲା । ଯେତେବେଳେ ମୁଁ ପଚାରିଲି ଯେ, କାହିଁକି କେତେକେ ଶ୍ରୀଗୁରୁଙ୍କୁ ମହାବତାର ବାବାଜୀ ବୋଲି କହନ୍ତି, ସେ କହିଲେ ଯେ ଜଣେ ଉତ୍ସାହୀ ଲେଖକ, ଯେ ତାଙ୍କର ପ୍ରତ୍ୟକ୍ଷ ଶିଷ୍ୟ ନ ଥିଲେ, ସେ ହିଁ 'ମହାବତାର' ଶବ୍ଦଟିର ଅବତାରଣା କରିଥିଲେ । ''ଆମ ସମସ୍ତଙ୍କ ପାଇଁ'' ସେ କହିଲେ, ''ସେ ହେଉଛନ୍ତି ଶ୍ରୀଗୁରୁ ଏବଂ ତାଙ୍କୁ ଆହ୍ୱାନ କରିବା ପାଇଁ, ଆମେ ଯେଉଁ ମନ୍ତ୍ର ବ୍ୟବହାର କରୁ, ତାହା ହେଉଛି, 'ଶ୍ରୀ ଗୁରୁଭ୍ୟୋ ନମଃ' । ନମ୍ରତା ଓ ଧ୍ୟାନର ସହିତ ଯେ ସେହି ମନ୍ତ୍ର ଉଚ୍ଚାରଣ କରିବ, ସେ ସାଙ୍ଗେ ସାଙ୍ଗେ ଗୁରୁ ବାବାଜୀଙ୍କର ଆଶୀର୍ବାଦ ଲାଭ କରିବ ।''

''ବର୍ତ୍ତମାନ ତୁମେ ଶୋଇବାକୁ ଯାଅ । କାଲି, ତୁମକୁ ରୁଦ୍ରନାଥ ଯିବା ପାଇଁ ଦୀର୍ଘ

ପଥ ଆରୋହଣ କରିବାକୁ ପଡ଼ିବ । ମୁଁ ଏଠାରେ କିଛି ସମୟ ରହିବି । ମୁଁ ଜଣଙ୍କ ପାଇଁ ଅପେକ୍ଷା କରିଛି ।''

ମୁଁ ନିଆଁର ସବୁଠାରୁ ନିକଟରେ ଥିବା ଗୋଟିଏ କୋଣକୁ ବାଛିନେଇ ନିଜକୁ ମୋର କମ୍ବଳରେ ଗୁଡ଼େଇନେଲି । ବାବାଜୀ ଓ ସିଦ୍ଧରଙ୍କ ମଧ୍ୟରେ କିଛି ବିଷୟରେ ଆଲୋଚନା ଚାଲିଥାଏ । ମୁଁ 'ଶ୍ରୀ ଗୁରୁଭ୍ୟୋ ନମଃ' ଉଚ୍ଚାରଣ କରି ଶୋଇଗଲି ଓ ସ୍ୱପ୍ନରେ ଦେଖିଲି ଯେ ଶ୍ରୀଗୁରୁ ବାବାଜୀ ମୋତେ ତାଙ୍କର ବାହୁ ଦୁଇଟିରେ ତୋଳି ଧରିଛନ୍ତି ।

ସକାଳେ ଆମେ ମହାନ୍ ସିଦ୍ଧରଙ୍କଠାରୁ ବିଦାୟ ନେଇ ରୁଦ୍ରନାଥ ଉଦ୍ଦେଶ୍ୟରେ ବାହାରିଲୁ । ଚାରିପଟେ ପର୍ବତଗୁଡ଼ିକ ବରଫାବୃତ ହୋଇ ରହିଥାଆନ୍ତି । ଶୀତଳ ପବନ ବହୁଥାଏ ଓ ଆକାଶ ପରିଷ୍କାର ଥାଏ । ରାତିର ବରଫପାତ ହେତୁ ପର୍ବତଗୁଡ଼ିକ ହିମାବୃତ ହୋଇଯାଇଥାଆନ୍ତି । ଦୂର ଶିଖରଗୁଡ଼ିକ ଉହାଡ଼ରୁ ସୂର୍ଯ୍ୟ ଉଦିତ ହେବାରୁ ଶିଖରଗୁଡ଼ିକର ମସ୍ତକର ଶୁଭ୍ରତା ଉଜ୍ଜ୍ୱଳ ସୁନେଲି ଆଭାରେ ପରିଣତ ହେଲା ।

ଏକ କଷ୍ଟସାଧ୍ୟ ପଦଯାତ୍ରା ପରେ ଆମେ ସନ୍ଧ୍ୟାରେ ରୁଦ୍ରନାଥରେ ପହଞ୍ଚିଲୁ । ମଧ୍ୟାହ୍ନରେ କେବଳ କେତେ ମିନିଟ୍‌ପାଇଁ ବିଶ୍ରାମ ନେଇଥିଲୁ କିଛି ଚଣା ଖାଇବାକୁ ଓ ନିକଟସ୍ଥ ଝରଣାରୁ ଜଳପାନ କରିବାକୁ । ଆମେ ଯେଉଁଠାରେ ଠିଆ ହୋଇଥିଲୁ, ସେଠାରୁ ସମ୍ପୂର୍ଣ୍ଣ ଭାବରେ ବରଫାବୃତ ନନ୍ଦାଦେବୀ ପର୍ବତମାଳା ପରିଷ୍କାର ଭାବରେ ଦିଶୁଥିଲା । ସାମାନ୍ୟ ଡାହାଣକୁ ଥିଲା ଦ୍ରୋଣଗିରିର ପର୍ବତଗୁଡ଼ିକ ।

କଲ୍ପେଶ୍ୱର ପରି ରୁଦ୍ରନାଥରେ କିଛି ମନ୍ଦିର ନ ଥିଲା; ସେଠାରେ ଗୋଟିଏ କ୍ଷୁଦ୍ର ଇଟାର ପବିତ୍ର ସ୍ଥଳ ଥିଲା, ଯାହା ଦେବତାଙ୍କର ମୂର୍ତ୍ତିକୁ ଘେରି ରହିଥିଲା । ଏହା ଏକ ପର୍ବତର ଢାଲୁ ଅଂଶରେ ଅବସ୍ଥିତ ଥିଲା, ଯାହାର ଉଚ୍ଚତା ସମୁଦ୍ରତଳରୁ 8,200 ଫୁଟ । ଏହାର ସାମ୍ନାରେ ଥିଲା ବରଫାବୃତ ନନ୍ଦାଦେବୀ ପର୍ବତମାଳା । ଆମେ ମନ୍ଦିରକୁ ଲାଗିଥିବା ଏକ କ୍ଷୁଦ୍ର ସ୍ଥାନରେ ରାତ୍ରିଯାପନ କଲୁ । ସେହି ସ୍ଥାନଟି ପୂଜକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା; କିନ୍ତୁ ଭାଗ୍ୟବଶତଃ ସେମାନେ ଗୋପେଶ୍ୱର ଚାଲିଯାଇଥିଲେ । ପୂଜାରୀଙ୍କର ସାହାଯ୍ୟକାରୀ କହିଲା ଯେ, ସେମାନେ ପରଦିନ ଫେରିବେ । ଆମେ ପରଦିନ ତୁଙ୍ଗନାଥ ଉଦ୍ଦେଶ୍ୟରେ ଯାତ୍ରା କରିବୁ ବୋଲି ଠିକଣା କଲୁ ।





*My maternal grandmother*



*My father and mother*



*House in Vanchiyoor where I lived till the age of 14*



*Padmanabha Swamy temple and the sacred pond*



*My school – Government Model High School, Thycaud*



*Tomb of Peer Mohammed Sahib, Tuckaley*



*Sunanda and I just before marriage*



*With family at Tunganath (l-r) Roshan, M, Sunanda, Aisha*


*Kedarnath Temple*


*Sri Gopala Saami*



*Sai Baba of Shirdi*



*Sri Chattambi Swami*


*Nityananda Avadhoota of Ganespuri at a young age*


*Mai Ma, saint of Kanyakumari*



*Sri Ramkrishna Paramahansa*



*Swami Vivekananda as on itinerant monk*



*Sri Shyama Charan Lahiri, the great yogi, disciple of Sri Guru Babaji*



*Swami Tapasyananda, senior monk of the Ramakrishna order*



*Neem Karoli Baba of Kainchi, Almora*



*Snow clad Kedar range*



*Arundhati cave near Vasishta Guha*



*Cave at Maruthuvamalai, near Kanyakumari*



*River Ganga near Chirbasa*



*At Charan Paduka behind Badrinath temple*



*Gomukh, birthplace of the river Ganga*



*Seashore at Kanyakumari where Mai Ma lived*



*Sri Maheshwarnath's Guru, Sri Guru Babaji*



*My Guru, Sri Maheshwarnath Babaji*



*In Ardhamatsyendrasana at Rishikesh*



*River Ganga in Rishikesh*



*At the Grand Canyon: first visit to the USA*



*Painting for a friend in Germany*



*At a café near Frieburg Cathedral, Germany*



*Bhagirathi peaks*



*River Ganga descends at Suryakund, Gangotri*



*Satsang at Vyasa Guha, Mana beyond Badrinath (far left, Pradeep, towards right, Viraj and Balaji)*



*Neel Bagh School, Rayalpad*



*With my dear classmates in Trivandrum (l-r, Ranjit Sadasivan, Dr. Narayana  Prasad)*



*Vivek Mahendru from Delhi, an early acquaintance*



*With my dear friends Sri Ramaswamy Pillai and neurologist Dr. Marthanda Pillai*



*With Hans Kelichhaus in Achen, Germany*



*With friend Jerry Jones in Portland, USA*



*With my friends, Dr. V S Ramachandran, Neurologist and Sitaram Naidu*



*Talk at Bharatiya Vidya Bhavan, Banglore*



*Talk at Portland, USA*



*With Joseph Mar Ireneus, presently Joseph Mar Thoma, the Metropolitan of the Mar Thoma Syrian Church, at the United Nations Conference of religious leaders, New York, 2000*



*With head of the Brahmakumaris at the United Nations Conference of religious leaders*



*Sunanda and I with the then President of India, Dr. A P J Abdul Kalam, Justice Venkatachalaiah, and Dr. Ajay Kumar Singh, at the Peepal Grove School, Sadum*



*With students of the Satsang Vidyalaya at its inception*



*With dear friends at my residence, Madanapalle (l-r, Dr. Vijaynarayana Reddy, Mohan Kumar, Surya Deo, Jyoti Narang, Kirana Reddy, Sobha Reddy, and Prabha Reddy)*



*With Head Mistress and students of Satsang  Vidyalaya*



*Trip to Kailash: At Yama Dwar (entrance to the Kailash Parikrama)*



*At the lake near Peepal Grove School, Sadum*



*At the retreat in the Peepal Grove School (l-r, Ajay, Kaizer, Geeta, Radhika, Sobha, Anjali, Abhijit, Sridhar)*



*Trip to Kailash: Gurupoornima at Paryang*



*Trip to Kailash: The Kargyupa Buddhist Monastery at Horchu*



*The Golden temple Amritsar*



*View of the Holy Kailash mountain*



*The Taj Mahal Hotel, Mumbai where Babaji appeared as a Sikh*



*With His Highness Marthanda Varma of Travancore at the talks in Trivandrum*



*With Sri Krishnadas Ji*

*With Dr. Karan Singh at his residence*



*With the sadhu samaj at the Purna Kumbh Mela, Haridwar, 2010*



*Meditation Hall at my residence, Madanapalle*



*With dear friends, Brigadier Narayan, Dr. Ajai Kumar Singh, IPS, and Sri. Achyut Rao, IPS*



*With dear friends in Satsang Vidyalaya, Madanapalle (l-r, Anita Reddy, Jayasri Achyut Rao, Bhusan, and Uma Narayan*



*With dear friends: Kathyayini Ratan and Deepak Ratan*



*With Federico Grandi at the release of* Jewel in the Lotus *in Spanish at Buenos Aires, Argentina*

#  କେଦାରନାଥ : ସ୍ରୋତମୁଖଗୁଡ଼ିକର ଉନ୍ମୁକ୍ତୀକରଣ

ଆମେ ତୁଙ୍ଗନାଥ ଓ ମଦ୍ମହେଶ୍ୱରନାଥ ଯାତ୍ରା ପୂରା କରି, ଗୁପ୍ତକାଶୀ ଓ ସୋନପ୍ରୟାଗ ଦେଇ କେଦାରନାଥରେ ପହଞ୍ଚିଲୁ । ରାସ୍ତାରେ ବର୍ଣ୍ଣନା କରିବା ପରି କିଛି ଘଟି ନ ଥିଲା, କେବଳ ଆମେ ଦୁଇଥର କସ୍ତୁରୀ ମୃଗ ଦେଖିପାରିଥିଲୁ ।

ଶ୍ରୀ ଗୁରୁ ବାବାଜୀଙ୍କ ସହିତ ସାକ୍ଷାତ କରିବାର ମୋର ଗୁପ୍ତ ଇଚ୍ଛା ପୂର୍ଣ୍ଣ ହେଲା ନାହିଁ । ଯେତେବେଳେ ବାବାଜୀଙ୍କୁ ଏହି ଇଚ୍ଛା ବିଷୟରେ କହିଲି, ସେ ମୋ ଉପରେ ବିରକ୍ତ ହେଲେ । କହିଲେ ଯେ, କ୍ରିୟା ଯୋଗ ଏବଂ ଆଧ୍ୟାତ୍ମିକ ଅଭ୍ୟାସର ଉଦ୍ଦେଶ୍ୟ ବାବାଜୀଙ୍କ ସହିତ ସାକ୍ଷାତ କରିବା ନୁହେଁ ବରଂ କ୍ରମଶଃ ଉନ୍ନତ ହୋଇ ନିଜକୁ ଏକ ଆଧ୍ୟାତ୍ମିକ ବ୍ୟକ୍ତି ରୂପରେ ପରିବର୍ତ୍ତିତ କରିବା ହେଉଛି ଏହାର ଉଦ୍ଦେଶ୍ୟ । ଯଦି ଶ୍ରୀଗୁରୁ ଆବଶ୍ୟକ ବୋଲି ମନେ କରିବେ ତେବେ ତୁମେ ନ ଚାହିଁଲେ ମଧ୍ୟ ଆସି ଉପସ୍ଥିତ ହେବେ । କିନ୍ତୁ ତେବେ ମଧ୍ୟ ମୁଁ ଆଶା କରି ରହିଲି ଯେ, କେବେହେଲେ କେଉଁଠାରେ ମୋତେ ସେ ଦର୍ଶନ ଦେବାର କୃପା କରିବେ ।

ଯେତେବେଳେ ଆପଣ ମନ୍ଦାକିନୀ ଉପରର ପୋଲ ପାର ହୋଇ ମନ୍ଦିରକୁ ଯାଉଥିବା ସଂକୀର୍ଣ୍ଣ ଗଳିରେ ପଶିବେ, ସେତେବେଳେ ବାଁ ପଟର ଛୋଟ ପାହାଡ଼ଗୁଡ଼ିକ ଉପରେ କିଛି ଛୋଟ ଛୋଟ କୁଟୀର ଦେଖାଯିବ । ସେଗୁଡ଼ିକର ଅଧିକାଂଶ ହେଉଛି ପ୍ରାକୃତିକ ଗୁମ୍ଫାଗୁଡ଼ିକର ପରିବର୍ଦ୍ଧିତ, ପରିବର୍ତ୍ତିତ ରୂପ, ଯେଉଁଗୁଡ଼ିକରେ କେତେଜଣ ଯୋଗୀ ଏକାନ୍ତବାସ କରନ୍ତି । ସେମିତି ଗୋଟିଏ ଗୁମ୍ଫା ବାବାଜୀଙ୍କର ପ୍ରିୟ ଥିଲା । ତାହାକୁ ଜଣେ ଉତ୍ତର ଭାରତୀୟ ବ୍ୟବସାୟୀ ନିର୍ମାଣ କରିଥିଲେ । ପ୍ରତିବର୍ଷ ତୀର୍ଥଯାତ୍ରୀମାନେ କେଦାର ଆସୁଥିବା ସମୟରେ ସେଠାକୁ ଆସିବା ତାଙ୍କର ସଉକ ଥିଲା । ମୁଁ ଯେତେଦୂର ଜାଣେ, ବାବାଜୀଙ୍କର ହାତଗଣତା ଶିଷ୍ୟମାନଙ୍କ ମଧ୍ୟରୁ ସେ ଜଣେ ଥିଲେ । ମୋର ତାଙ୍କ ସହିତ ବହୁବାର ଭେଟ ହୋଇଛି । 1983ରେ ଦିଲ୍ଲୀରେ ତାଙ୍କର ଦେହାନ୍ତ ହୋଇଗଲା ।

ଆମେ ଯେତେବେଳେ କେଦାରରେ ପହଞ୍ଚିଲୁ, ଦେଖିଲୁ କୁଟୀର ପରିଷ୍କାର ଓ ପ୍ରସ୍ତୁତ । ଗୋଟାଏ କୋଣରେ ସପ୍ତାହକ ପାଇଁ ଧୁନିର କାଠ ଗଦା ହୋଇଥିଲା । ସେହି ସଜ୍ଜନ ବ୍ୟକ୍ତି ନିଜର ରୋଷେୟାକୁ ତାଗିଦ କରିଦେଇଥିଲେ ପ୍ରତିଦିନ ଆମମାନଙ୍କପାଇଁ ଦୁଇବେଳା ଖାଦ୍ୟ ଓ ଫୁଟା ହୋଇଥିବା କ୍ଷୀର ଆଣି କୁଟୀରରେ ପହଞ୍ଚାଇ ଦେବାକୁ ।

ଗୁମ୍ଫାର ବାହାରର ଦୃଶ୍ୟ ଅତ୍ୟନ୍ତ ସୁନ୍ଦର ଥିଲା । ହିମ ଧାରଣ କରିଥିବା କେଦାର ପର୍ବତଶୃଙ୍ଗ ଅସ୍ତଗାମୀ ସୂର୍ଯ୍ୟଙ୍କର କିରଣଦ୍ୱାରା ଲୋହିତ ବର୍ଣ୍ଣ ଧାରଣ କରି ମନ୍ଦିର ପଛରେ ଉତ୍ତୁଙ୍ଗ ଭାବରେ ଠିଆହୋଇ ରହିଥାଏ; ମନ୍ଦିର, ଯେଉଁଠାରେ ଅସୀମଙ୍କର ଲିଙ୍ଗ ରୂପରେ ଉପାସନୀୟ ଏକ ଶୁଭ୍ର ପ୍ରତୀକ ରଖା ହୋଇଥିଲା । ଲିଙ୍ଗ, ହେଉଛି ମହାନ୍ ଯୋଗୀ ଶିବଙ୍କର ଭାବୋତ୍ତେଜିତ ରୁଦ୍ର ରୂପର ପ୍ରତୀକ । ଚାରିପଟେ କେଦାରଙ୍କର ସାଥୀ ଦଣ୍ଡାୟମାନ । ସେମାନେ ମଧ୍ୟ ହିମଶୁଭ୍ର ବସ୍ତ୍ର ପରିଧାନ କରିଥିଲେ । ପ୍ରଚଣ୍ଡ ଶୀତ ସତ୍ତ୍ୱେ ସେଠାରେ କେତେଗୁଡ଼ିଏ ସୁଖପୂର୍ଣ୍ଣ ଦିବସ ମୁଁ ବାବାଜୀଙ୍କ ସହିତ ବିତାଇଲି ।

ପ୍ରତିଦିନ ସକାଳେ ଆମେ ମନ୍ଦିରକୁ ଯାଇ ଦେବତାଙ୍କର ଦର୍ଶନ କରୁ । ମନ୍ଦିରର ଦକ୍ଷିଣ ଭାରତୀୟ ବରିଷ୍ଠ ପୂଜାରୀ ସବୁବେଳେ ବାବାଜୀଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ । ଆମକୁ ଯେତେ ସମୟ ଇଚ୍ଛା ସେତେ ସମୟ ଭିତରେ ବସିବାର ଅନୁମତି ଥିଲା । ଗର୍ଭ ଗୃହରେ ନିଃସନ୍ଦେହରେ ଏକ ସ୍ପର୍ଶନୀୟ ଶକ୍ତି ବିଦ୍ୟମାନ ଥିଲା । ସେଠାରେ ମୋତେ ଲାଗୁଥିଲା ଯେ, ମୁଁ ଅନାୟାସରେ ଗଭୀର ଧ୍ୟାନରେ ବୁଡ଼ିଯାଇ ପାରିବି ।

ତା'ପରେ ଆମେ ଭୈରବ ପାହାଡ଼କୁ ଯାଉଥିଲୁ । ସେଠାରୁ ଦୃଶ୍ୟ ଆହୁରି ଅଧିକ ବିସ୍ମୟକର ଥିଲା । ଆମେ ସେଠାରେ ଘଣ୍ଟା ଘଣ୍ଟା ଧରି ଧ୍ୟାନରେ ବସି ରହୁଥିଲୁ, ପ୍ରାୟ ଆଖି ଖୋଲା ରଖୁଥିଲୁ । ପାହାଡ଼ ପାଖରେ, ଯେଉଁଠାରେ ଭୈରବନାଥଙ୍କର ମୂର୍ତ୍ତି ସ୍ଥାପିତ ଥିଲା, ସେଠାରେ ଦୁଇଟି କୁଡ଼ିଆ ଥିଲା । ଗୋଟିକରେ ଉଦାସୀ ପନ୍ଥର ଜଟାଜୁଟଧାରୀ ଜଣେ ସାଧୁ ରହୁଥିଲେ । ଦ୍ୱିତୀୟଟିରେ ରହୁଥିଲେ ଗଞ୍ଜା ପିଉଥିବା ଜଣେ ନାଗା । ଦି'ଜଣଯାକ ବାହାରି ଆସି ବାବାଜୀଙ୍କୁ ପ୍ରଣାମ କରି ତାଙ୍କର ଆଶୀର୍ବାଦ ନେଉଥିଲେ ।

ଆମେ ଦି'ପହର ସୁଦ୍ଧା ଫେରିଆସି ରୋଷେୟା ଆଣିଥିବା ଖାଦ୍ୟକୁ ଭୋଜନ କରୁଥିଲୁ । ବେଳେ ବେଳେ ସେହି ଦିଲ୍ଲୀର ବ୍ୟବସାୟୀ ସ୍ୱୟଂ ବାବାଜୀଙ୍କର ଆଶୀର୍ବାଦ ନେବାକୁ ଏବଂ ନିଜର ଆଶଙ୍କା ଦୂର କରିବାକୁ ଆସୁଥିଲେ । ସନ୍ଧ୍ୟାବେଳେ ଆମେ ଗୁମ୍ଫାରେ ହିଁ ରହୁଥିଲୁ । ବାବାଜୀ ମୋତେ ଠୋକର କ୍ରିୟା ଏବଂ କ୍ରିୟା-ଯୋଗର ଅନ୍ୟ ଉନ୍ନତ ସାଧନାଗୁଡ଼ିକ ବିଷୟରେ ଶିଖାଇଲେ । ମୁଁ ପ୍ରଶ୍ନ କଲେ ସେ ଧୈର୍ଯ୍ୟର ସହିତ ସେସବୁ ବିଷୟରେ ଚର୍ଚ୍ଚା କରୁଥିଲେ । ରାତିରେ ହାଲ୍‌କା ଭୋଜନ ପରେ ଆମେ

ଡେରିଯାଏ ଧୁନି ସାମ୍ନାରେ ଧ୍ୟାନରେ ବସୁ । ତା'ପରେ ମୁଁ ଶୋଇଯାଏ; କିନ୍ତୁ ବାବାଜୀ ସବୁବେଳ ପରି ଧୁନି ସାମ୍ନାରେ ପଥରର ମୂର୍ତ୍ତି ପରି ବସି ରହନ୍ତି । ଏହିପରି ଆନନ୍ଦପୂର୍ଣ୍ଣ ଛଅ ଦିନ ବିତିଗଲା ।

ସପ୍ତମ ଦିନ ସେ କହିଲେ, ''ମୋତେ ଚାରିଦିନ ନିଜ ଗୁରୁଙ୍କ ସହିତ ରହିବାପାଇଁ ଯିବାକୁ ପଡ଼ିବ । ବର୍ତ୍ତମାନ ସେ ବେଶି ଦୂରରେ ନାହାନ୍ତି; କିନ୍ତୁ ତୁମକୁ ମୁଁ ସାଙ୍ଗରେ ଧରି ଯାଇପାରିବି ନାହିଁ । କାଲି ସକାଳେ ଶ୍ରୀ ଗୁରୁ ବାବାଜୀ ପଠାଇଥିବା ତିନିଜଣ ବ୍ୟକ୍ତି ତୁମର ମସ୍ତିଷ୍କର ବହୁ ପରିସର ସତ୍ତା ପର୍ଯ୍ୟନ୍ତ ପହଞ୍ଚିବାର ମାର୍ଗକୁ ଖୋଲିବା ପାଇଁ ଓ ପୁଷ୍ଟ କରିବାପାଇଁ ସହାୟତା କରୁଥିବା ଏକ ବିଶେଷ ପ୍ରକ୍ରିୟା ଉଦ୍ଦେଶ୍ୟରେ ତୁମକୁ ଏକ ଗୁପ୍ତ ସ୍ଥାନକୁ ନେଇଯିବେ । ସେମାନେ ଏକ କୂଟ ଶବ୍ଦ (କୋଡ୍ ୱାର୍ଡ) ଫୁସ୍‌ଫୁସ୍ ହୋଇ କହିବେ । ସେମାନଙ୍କ ବ୍ୟତୀତ ତାହା ମୁଁ ଜାଣେ ଓ ତୁମେ । ତୁମେ ସେମାନଙ୍କ ସହିତ ନିଶ୍ଚିନ୍ତ ହୋଇ ଚାଲିଯାଇ ପାରିବ । ମୁଁ ସେଠାରେ ଥିବି । ଏହା ଭିତରେ ବିଶ୍ରାମ ନିଅ ଏବଂ ନିଜର ଅଭ୍ୟାସ ଜାରି ରଖ । ଆଜି ରାତିରେ କିଛି ଖାଇବ ନାହିଁ ଆଉ ବହୁତ ପାଣି ପିଇବ ।''

ଏତିକି କହି ସେ ସ୍ନେହରେ ମୋର ମସ୍ତକ ସ୍ପର୍ଶ କଲେ ଓ ଚାଲିଗଲେ । ମୁଁ ତାଙ୍କ ମାଧ୍ୟମରେ ଖବର ପଠାଇବାକୁ ଚାହୁଁଥିଲି ଯେ ମୁଁ ଶ୍ରୀଗୁରୁ ବାବାଜୀଙ୍କର ଦର୍ଶନପାଇଁ ଅତ୍ୟନ୍ତ ଉଦ୍‌ଗ୍ରୀବ ବୋଲି । କିନ୍ତୁ ମୁଁ ନିରବ ରହିବାକୁ ଉଚିତ ମନେକଲି । ସେ ଜାଣିଥିଲେ ଏବଂ ମୋର କିଛି କହିବାର ଆବଶ୍ୟକତା ନ ଥିଲା । ସବୁ କଥାର ନିଜ-ନିଜର ଉପଯୁକ୍ତ ସମୟ ଥାଏ ।

× × ×

ସେମାନେ ଆସିଲେ, ପରଦିନ ସକାଳେ; ତିନିଜଣ ଲୋକ । ତିନିଜଣଯାକ ଏକା ପ୍ରକାରର ଥିଲେ – ସେମାନଙ୍କ ଶରୀରରେ ଗୋଟାଏ ବି ରୁମ ନ ଥିଲା, ଗୋରା, ଅଣ୍ଟାରୁ ଆଣ୍ଠୁ ପର୍ଯ୍ୟନ୍ତ ସେମାନେ ଧୋତି ପରି ଧଳା ବସ୍ତ୍ର ପିନ୍ଧିଥିଲେ । ସେମାନେ କାଠର କଠଉ ପିନ୍ଧିଥିଲେ, ଯେଉଁଗୁଡ଼ିକ ଚାଲିବାବେଳେ ଠକ୍-ଠକ୍ ଶବ୍ଦ କରୁଥିଲେ । ସେମାନଙ୍କର ଗାଢ଼ ବାଦାମୀ ରଙ୍ଗର କାନ୍ଧ ପର୍ଯ୍ୟନ୍ତ ଲମ୍ବିଥିବା କେଶ ଥିଲା । ସେମାନେ ମୁହଁରେ ଶଲ୍ୟ ଚିକିତ୍ସକମାନଙ୍କ ମୁଖାବରଣ ପରି ସବୁଜ ପଟି (ଜୈନ ମୁନିମାନଙ୍କ ପରି) ବାନ୍ଧି ରଖିଥିଲେ । ସେମାନଙ୍କର ମୁହଁର ଦେଖାଯାଉଥିବା ଅଂଶ ଥିଲା କେବଳ ଚଉଡ଼ା କପାଳ ଓ ବାଦାମୀ ଆଖି ।

ସେମାନେ ସମବେତ ସ୍ୱରରେ ହିନ୍ଦୀରେ ମଧୁର ଅଥଚ ଦୃଢ଼ ସ୍ୱରରେ କହିଲେ – ''ମଧୁ, ଆମମାନଙ୍କୁ ତୁମକୁ ଏକ ବିଶେଷ ପ୍ରକ୍ରିୟାପାଇଁ ଏକ ଗୁପ୍ତ ସ୍ଥାନକୁ ନେଇଯିବାପାଇଁ ପଠାଯାଇଛି । ଆମ ସହିତ ଚାଲ ।''

‘‘ବାବାଜୀ ମୋତେ ଦେଇଯାଇଥିବା କୂଟ ଶବ୍ଦ କୁହନ୍ତୁ’’, ମୁଁ କହିଲି ।

ସେମାନେ ଏକାସାଙ୍ଗରେ ଧିମା ସ୍ୱରରେ ସେହି କୂଟ ଶବ୍ଦକୁ ଦୋହରାଇଲେ । ମୁଁ ବିନା ଦ୍ୱିଧାରେ ତାଙ୍କ ସହିତ ବାହାରି ପଡ଼ିଲି । ଆମେ ତଳକୁ ଓହ୍ଲାଇଲୁ । ମନ୍ଦିର ପାରି ହୋଇ ତା’ର ପଛକୁ ଚାଲିଲୁ । ଗୋଟାଏ ଜାଗାରେ ସେମାନେ କହିଲେ, ‘‘ଏହା ସେହି ସ୍ଥାନ, ଯେଉଁଠାରୁ ଆଦି ଶଙ୍କରାଚାର୍ଯ୍ୟ ମହାନ ଶ୍ରୀଗୁରୁଙ୍କ ସହିତ ସାକ୍ଷାତ କରିବାପାଇଁ ଗୁପ୍ତ ରାସ୍ତା ବ୍ୟବହାର କରିଥିଲେ । ତା’ପରେ ସେ ଜନତାର ଦୃଷ୍ଟିରୁ ଉଭାନ ହୋଇଗଲେ ।’’

ପ୍ରାୟ ଆଉ ଦଶମିନିଟ ଚାଲିବା ପରେ ସେ କହିଲେ, ‘‘ଏବେ ଆମକୁ ତୁମ ଆଖିରେ ପଟି ବାନ୍ଧିବାକୁ ପଡ଼ିବ ।’’ ମୋନେ ମୋ ଆଖିରେ କଳା କପଡ଼ା ବାନ୍ଧିଦେଇ ଆଗକୁ ନେଇ ଚାଲିଲେ । ତା’ପରେ ମୁଁ ସେମାନଙ୍କୁ କୌଣସି କବାଟ ଖୋଲିବାର ଶୁଣିପାରିଲି, ପୁଣି ସେମାନେ ତୀଖ ପାହାଚ ଓହ୍ଲାଇ ମୋତେ ତଳକୁ ନେଇଗଲେ । ନିଃଶବ୍ଦତା ଏବଂ ବାହାରେ ବହୁଥିବା ଥଣ୍ଡା ପବନର ଅଚାନକ ଅନୁପସ୍ଥିତରୁ ମୁଁ ଜାଣିଲି ଯେ ଆମେ କୌଣସି ଭୂଗର୍ଭସ୍ଥ ସୁଡ଼ଙ୍ଗରେ ଥିଲୁ ।

ଆମେ ଯେତେବେଳେ ରହିଗଲୁ, ମୁଁ ଧୂପର ସୁଗନ୍ଧ ଅନୁଭବ କଲି । ଆଖିରୁ ପଟି ଖୋଲି ଦିଆଗଲା । ଦେଖିଲି ଭୂଗର୍ଭରେ ତେଲର ଦୀପଦ୍ୱାରା ଆଲୋକିତ ଏକ ବଡ଼ ଗୁମ୍ଫାରେ ମୁଁ ଅଛି । ଗୁମ୍ଫାର ମଧ୍ୟଭାଗରେ ସ୍ଥିତ ଅଗ୍ନିକୁଣ୍ଡରୁ ସୁଗନ୍ଧ ଆସୁଥାଏ । ଗୁମ୍ଫାର ଅନ୍ୟ ପଟେ ବାବାଜୀଙ୍କୁ ଦେଖି ମୁଁ ଆଶ୍ୱସ୍ତ ହେଲି । ‘‘ଡର ନାହିଁ’’, ସେ କହିଲେ ‘‘ତୁମର ମସ୍ତିଷ୍କର କେତେଗୁଡ଼ିଏ କେନ୍ଦ୍ରକୁ କ୍ରିୟାନ୍ୱିତ କରିବାର ଅଛି । ସେଥିପାଇଁ କିଛି ଧ୍ୟାନେତର ମାଧ୍ୟମଗୁଡ଼ିକର ଉପଯୋଗ କରିବାକୁ ପଡ଼ିବ, କାରଣ ଅଧିକ ସମୟ ନାହିଁ । ଆମକୁ ଶୀଘ୍ର କରିବାର ଅଛି । ଯଦି ଏହି କେନ୍ଦ୍ରଗୁଡ଼ିକୁ ଏହିପରି ଭାବରେ କ୍ରିୟାନ୍ୱିତ କରା ନ ଯିବ ତେବେ ଉଚ୍ଚତର ପରିସରରେ ପହଞ୍ଚିବାପାଇଁ ତୁମର ମାର୍ଗ ଉନ୍ମୁକ୍ତ ହେବାକୁ କେତେ ଜନ୍ମର ସମୟ ଲାଗିଯିବ । ଏବେ ପ୍ରାଚୀନମାନଙ୍କଦ୍ୱାରା ପ୍ରଯୁକ୍ତ ସୋମରସ ପାନ କର । ଏହାକୁ ମୁଁ ତୁମ ପାଇଁ ବିଶେଷ ଭାବରେ ପ୍ରସ୍ତୁତ କରିଛି ।’’ ସେ ମୋତେ ହାଲ୍କା ହଳଦିଆ ରଙ୍ଗର ଦ୍ରବଣପୂର୍ଣ୍ଣ ଏକ ରୁପାର ଗିନା ଦେଲେ ।

ମୁଁ ବଜ୍ରାସନରେ ବସି ସେହି କଡ଼ା-ମିଠା ତରଳକୁ ପିଇନେଲି । ମନର ସ୍ଥିତିରେ ପରିବର୍ତ୍ତନର ଯେଉଁ ପ୍ରଥମ ଅନୁଭବ ହେଲା, ତାହା କିଛି ଅଂଶରେ ଛାତ୍ର ଥିବା ସମୟରେ ରଞ୍ଜିତ ସହିତ ମିଶି ଅଧା ବୋତଲ ବିୟର ପିଇବା ପରି ଥିଲା, ପୁଣି ତାହା ବଦଳିଗଲା ଓ ଗଭୀର ହୋଇଗଲା । ତିନିଜଣ ବ୍ୟକ୍ତି, ଯେ ମୋତେ ସେଠାକୁ ଆଣିଥିଲେ, ଟକା ପକାଇ ବସି ସାମବେଦର ଶ୍ଳୋକ ପାଠ କରୁଥିଲେ । ମୋର ମନ ପାଠର ଲୟରେ ଏକାକାର

ହୋଇଗଲା, ପୁଣି ତାହା ବାହାରେ ବିସ୍ତାରିତ ହେଲା ଏବଂ ମୋର ଶରୀରର ବାହାରକୁ ନିର୍ଗତ ହୋଇଗଲା । ଆଖି ଖୋଲି ମୁଁ ତୀବ୍ର ବହୁରଙ୍ଗର ଜ୍ୟୋତି ଆଖପାଖରେ ଦେଖିଲି । ମୁଁ ପଢ଼ିଥିବା LSDର ଅନୁଭୂତି ବିଷୟ ମୋର ମନେପଡ଼ିଗଲା ।

ବାବାଜୀ ସାବଧାନରେ ମୋତେ ବାଁପଟେ ଥିବା ଖଣ୍ଡେ ପଥର ପାଖକୁ ନେଇଗଲେ ଓ ତାହା ଉପରେ ଶବାସନର ମୁଦ୍ରାରେ ମୋତେ ଶୁଆଇ ଦେଲେ । ଯେତେବେଳେ ସେ କହିଲେ, ଜଣାପଡୁଥାଏ ଯେମିତି ତାଙ୍କର ସ୍ୱର ବହୁ ଦୂରରୁ ଭାସି ଆସୁଥାଏ । "ଆଖି ବନ୍ଦ କର", ସେ କହିଲେ, "ଏବଂ ନିଜର ଆତ୍ମାକୁ ନିଜର ଶରୀରରୁ ବାହାରିଯିବାକୁ ଦିଅ ।" କ୍ଷଣକ ମଧ୍ୟରେ ମୁଁ ନିଜକୁ ଗୁମ୍ଫାର ବାଁପଟ କାନ୍ଥ ପାଖରେ ଠିଆ ହୋଇଥିବାର ଦେଖିଲି । ବିସ୍ମୟର ସହିତ ପଥର ଉପରେ ଶବ କରି ପଡ଼ିରହିଥିବା ନିଜର ଶରୀରକୁ ମୁଁ ଦେଖୁଥାଏ ।

ବାବାଜୀଙ୍କର ନିର୍ଦ୍ଦେଶ ଅନୁସାରେ, ତିନିଜଣ ସାଥୀ, ଯେ ବର୍ତ୍ତମାନ ପାଠ ବନ୍ଦ କରିଦେଇଥିଲେ, ଏକ କଳା ଅର୍ଦ୍ଧଗୋଲକ ଆଣି ମୋ ମୁଣ୍ଡ ପାଖରେ ରଖିଲେ । ସେଥିରୁ ସେମାନେ ଦୁଇଟି ସୁନେଲି ତା'ର ବାହାର କରି ମୋର ମୁଣ୍ଡର ଦୁଇପଟେ ଯୋଡ଼ିଦେଲେ । ପୁଣି ସେମାନେ ସେହି ଯନ୍ତ୍ରକୁ ଉପରୁ ଜୋରରେ ଦବାଇଲେ । ମୁଁ ନିଜର ସୁରକ୍ଷିତ କୋଣରୁ ନିଜର ସେହି ଶରୀରକୁ ମୃଗୀ ରୋଗୀ ପରି ବାତ ମାରୁଥିବାର ଦେଖିଲି । ମିନିଟ୍‌କ ପାଇଁ ମୁଁ ମୋର ସୁରକ୍ଷିତ ସ୍ଥାନରୁ ଯାହା ଦେଖୁଥିଲି, ତାକୁ ଦେଖି ଡରିଗଲି, ପର ମୁହୂର୍ତ୍ତରେ ମୁଁ ନିଜକୁ ନିଜର ଶରୀର ଭିତରେ ଫେରି ପାଇଲି, ମୋତେ ଭୀଷଣ ଭାବରେ ବାତ ମାରୁଥାଏ ।

ଏକ ତୀବ୍ର କଷ୍ଟ ମୋର ମେରୁଦଣ୍ଡରେ ତଳୁ ଉପରକୁ ଉଠିଲା । ଏତେ ଉଷ୍ମତା ସୃଷ୍ଟି ହେଲା ଯେ, ମୋତେ ଲାଗିଲା ମୋର ସାରା ଶରୀର, ବିଶେଷ ଭାବରେ ମୁଣ୍ଡ, ଜଳିଯାଉଛି । ମୁଁ ପାଖାପାଖି ଭାବିନେଲି ଯେ, ଏହା ମୋର ଶେଷ ଏବଂ ବୋଧହୁଏ ମୁଁ ଏଥିରୁ ବାହାରି ଆସିପାରିବି ନାହିଁ । ଅଚାନକ ଏକ ଗର୍ଜନ ପରି ଶବ୍ଦ, ଯାହା ଶୀଘ୍ର ଏକ ଆରାମଦାୟକ ଗୁଣୁଗୁଣୁ ଶବ୍ଦରେ ପରିବର୍ତ୍ତିତ ହୋଇଗଲା, ମୋର ଚେତନାରେ ପ୍ରବେଶ କରିଗଲା । ଏମିତି ଲାଗୁଥାଏ ଯେପରି କେହି ଜଣେ ଜିମ୍ ରିଭ୍ସ୍ (Jim Reeves)ଙ୍କ ସ୍ୱରରେ ଏକ ଲମ୍ବା ଓଁକାର କରୁଛି । ବ୍ୟଥା ବନ୍ଦ ହୋଇଗଲା, ଗରମ କମିଗଲା ଏବଂ ଶୀତରାତିରେ ଅଗ୍ନିକୁଣ୍ଡର ଆରାମଦାୟକ ଉଷ୍ମତା ପରି ଉଷ୍ମତା ମୋର ଶରୀର ଓ ଆତ୍ମାରେ ମିଳିମିଶିଗଲା । ମୋର ମସ୍ତକଶୀର୍ଷରୁ ଏକ ମିଷ୍ଟ ଅମୃତର ସ୍ରୋତ ମୋର ମେରୁଦଣ୍ଡ ଦେଇ ବହିବାକୁ ଲାଗିଲା ଏବଂ ଆପାଦମସ୍ତକ ମୁଁ ଏକ ଆଶ୍ଚର୍ଯ୍ୟଜନକ ଆନନ୍ଦଦାୟୀ ଉନ୍ମାଦନା ଅନୁଭବ କଲି ।

ଆଖି ଖୋଲି ମୁଁ ଆଖପାଖକୁ ଦେଖିଲି । ସବୁ ଜିନିଷ ତାଜା, ନୂଆ ଏବଂ ଜୀବନୀ-ଶକ୍ତିରେ ପ୍ରକମ୍ପିତ ହେଉଥାଏ । ମୁଁ ଏକ ନୂଆ ବ୍ୟକ୍ତି ଥିଲି; ପୁରୁଣାରୁ ପୁନର୍ଜୀବିତ ହୋଇଥିବା ବ୍ୟକ୍ତି । ପୁରୁଣା, ଯେ ମରିଗଲା ଏବଂ ଅଦୃଶ୍ୟ ହୋଇଗଲା ପରି ଲାଗୁଥାଏ । ମୁଁ ଏକ ପୃଥକ ଆତ୍ମା ନ ଥିଲି । ଚେତନାର କେନ୍ଦ୍ର ସବୁ ସ୍ଥାନରେ ଥିଲା । ଧୂଳିକଣାରୁ ଆରମ୍ଭ କରି ଆକାଶଗଙ୍ଗା ପର୍ଯ୍ୟନ୍ତ । ସବୁ ପ୍ରତିବନ୍ଧକ ଦୂର ହୋଇ ଯାଇଥାଏ । ଯେବେ ମୁଁ ବାବାଜୀଙ୍କୁ ଚାହିଁଲି, ମୋତେ ଲାଗିଲା, ମୁଁ ବାବାଜୀ ଥିଲି, ଯେ ମୋତେ ଚାହିଁଥିଲେ ।

ବାବାଜୀ କହିଲେ, ''ହଁ, ତୁମର ପୁନର୍ଜନ୍ମ ହୋଇଛି । ଏହା ହିଁ ହେଉଛି ଦ୍ୱିଜ, ଦି'ଥର ଜନ୍ମ ହେବାର ଅସଲ ଅର୍ଥ । ଧୀରେ ଧୀରେ ଜାଗ୍ରତ ହୁଅ କାରଣ ତୁମକୁ ନୂତନ ସ୍ୱୟଂସତ୍ତା ସହିତ ସମୀକୃତ ହେବାକୁ କିଛି ସମୟ ଲାଗିବ । ନବଜାତ ଶିଶୁ ପରି ତୁମକୁ ଆଣ୍ଠେଇ କରି ଚାଲିବାକୁ ପଡ଼ିବ, ପୁଣି ବସିବ ଓ ତା'ପରେ ଟଳମଳ ପାଦରେ ଚାଲିବାକୁ ପଡ଼ିବ ଯେତେବେଳ ପର୍ଯ୍ୟନ୍ତ ଅଭ୍ୟାସଦ୍ୱାରା ତୁମକୁ ସ୍ଥିର ଗତିର ପୂର୍ଣ୍ଣ ବିକଶିତ ମଣିଷର ବିଶ୍ୱାସଭରା ପଦକ୍ଷେପ ପ୍ରାପ୍ତ ନ ହେବ ।

ମୋର ତୁମକୁ ଆଶୀର୍ବାଦ । ଶ୍ରୀ ଗୁରୁବାବାଜୀ ଋଷିକେଶରେ ଶୀଘ୍ର ହିଁ କୌଣସି ଏକ ସମୟରେ ନିଜର ପୁରୁଣା ଶିଷ୍ୟ ମଧୁକୁ ଦର୍ଶନ ଦେବେ ବୋଲି କଥା ଦେଇଛନ୍ତି । ଏବେ ଆମକୁ ନିଜର ଗୁମ୍ଫାକୁ ଯିବା ଉଚିତ । ଆଖି ବନ୍ଦ କରି ପଦ୍ମାସନରେ ବସିଯାଅ ।''

ମୁଁ ତାଙ୍କର ଆଜ୍ଞାପାଳନ କଲି । ଲାଗିଲା ଯେମିତି ଗୋଟାଏ ଶକ୍ତିଶାଳୀ ପବନ ମୋତେ କୁଆଡ଼େ ଉଡ଼େଇ ନେଉଛି । କିଛି ସମୟ ପରେ ମୋତେ ତଳକୁ ଓହ୍ଲାଇବା ପରି ଲାଗିଲା ଓ ତା'ପରେ ଗତି ବନ୍ଦ ହୋଇଗଲା । ବାବାଜୀ କହିଲେ, ''ଆଖି ଖୋଲ'', ମୁଁ ଆଖି ଖୋଲି ନିଜକୁ ଆମର ନିବାସ – ପର୍ବତ ଶିଖରରେ ଥିବା ଗୁମ୍ଫାରେ ଦେଖିଲି । ''ଏହିପରି ପରିବହନ ଆଉ କେବେ ଉପଯୋଗ ହେବ ନାହିଁ, କେବଳ ପୃଥିବୀରେ ତୁମର ଜୀବନର ଅନ୍ତିମ ସମୟରେ ଏକ ବିଶେଷ କାର୍ଯ୍ୟପାଇଁ ଏହାର ଉପଯୋଗ ହେବ'', ବାବାଜୀ କହିଲେ । ଏବେ ଲାଲାଜୀଙ୍କ ନିକଟକୁ ଯାଅ ଏବଂ ତାଙ୍କୁ ଆମପାଇଁ କିଛି ଖାଦ୍ୟ ପଠାଇବାକୁ କହ । ଏହା ଭିତରେ ମୁଁ ଧୁନି ଲଗାଉଛି ।''

ଆମେ ଆଉ ଚାରିଦିନ ସେଠାରେ ରହିଲୁ । ସେହି ସମୟରେ ମୁଁ ବାବାଜୀଙ୍କଠାରୁ ବାଦରାୟଣ ବ୍ୟାସଙ୍କର ବ୍ରହ୍ମସୂତ୍ର ଜାଣିଲି ଏବଂ ଏକ ଗୂଢ଼ ଜ୍ଞାନବାଦୀ ପୁସ୍ତକ 'ପିଷ୍ଟିସ୍ ସୋଫିଆ' ବିଷୟରେ ଆଲୋଚନା କଲି ।



#  ଆକାଶରୁ ଅଗ୍ନିଗୋଲକ

ପଞ୍ଚମ ଦିନ ଆମେ ଋଷିକେଶ ଉଦ୍ଦେଶ୍ୟରେ ତଳକୁ ଓହ୍ଲାଇବା ଆରମ୍ଭ କଲୁ । ଆମର ରାସ୍ତା ସୋନପ୍ରୟାଗ, ରୁଦ୍ରପ୍ରୟାଗ ଦେଇ ଯାଉଥିଲା । ରୁଦ୍ରପ୍ରୟାଗରେ ଜଣେ ବୈଷ୍ଣବ ବୈରାଗୀଙ୍କ ସହିତ ଦୁଇଟି ନଦୀର ସଙ୍ଗମ ନିକଟରେ ରହିଲୁ । ପରଦିନ ଆମେ ଦେବପ୍ରୟାଗରେ ପହଞ୍ଚିଲୁ । ସେଠାରେ ଆମେ ଦୁଇଦିନ ଜଣେ ବୃଦ୍ଧ ନେପାଳୀ ଯୋଗୀଙ୍କ ସହିତ ବିତାଇଲୁ । ତାଙ୍କୁ ବହୁ ବର୍ଷ ପୂର୍ବେ ପଶୁପତିନାଥ ମନ୍ଦିର ନିକଟରେ ଅଳ୍ପ ସମୟ ପାଇଁ ଶ୍ରୀଗୁରୁ ବାବାଜୀଙ୍କୁ ଭେଟିବାର ସୌଭାଗ୍ୟ ପ୍ରାପ୍ତ ହୋଇଥିଲା । ମୁଁ ତାଙ୍କଠାରୁ ସେହି ସାକ୍ଷାତ୍କାରର ବିବରଣୀ ଶୁଣି ଭାରି ରୋମାଞ୍ଚିତ ହେଲି ।

ଦେବପ୍ରୟାଗରୁ ଦିନେ ସକାଳୁ ବାହାରି ଆମେ ବଶିଷ୍ଠ ଗୁମ୍ଫାରେ ପହଞ୍ଚିଗଲୁ । ସେଠାରେ ପୂର୍ବରୁ ମୁଁ ମୋର ଅତିରିକ୍ତ ଭାବରେ କ୍ଷତବିକ୍ଷତ ହୋଇଥିବା ପାଦର ବିଶ୍ରାମ ଓ ଚିକିତ୍ସାପାଇଁ ବେଶ କିଛିଦିନ ରହିଯାଇଥିଲି । ସେଠାରେ କେରଳର ଜଣେ ବ୍ରହ୍ମଚାରୀ କୃପାପୂର୍ବକ ମୋର ଯତ୍ନ ନେଇଥିଲେ । ସେହି ବ୍ରହ୍ମଚାରୀଜୀ ପୂର୍ବରୁ ବାବାଜୀଙ୍କୁ ଭେଟି ନ ଥିଲେ; କିନ୍ତୁ ବାବାଜୀ ତାଙ୍କର ଗୁରୁ ପୁରୁଷୋତ୍ତମାନନ୍ଦଙ୍କୁ ତାଙ୍କର ବ୍ୟାସ ଗୁମ୍ଫାରେ ପ୍ରାରମ୍ଭିକ ଦିନମାନଙ୍କରେ ଭେଟି ସାରିଥିଲେ । ତେବେ ମଧ୍ୟ ସେ ବାବାଜୀଙ୍କୁ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଜଣେ ସନ୍ଥକୁ ଦେବାପରି ସମ୍ମାନ ଦେଲେ ।

କିନ୍ତୁ ବାବାଜୀ ବଶିଷ୍ଠ ଗୁମ୍ଫାରେ ରହିବାକୁ ଚାହିଁ ନ ଥିଲେ । ବଶିଷ୍ଠ ଗୁମ୍ଫା ପାଖରେ ଯଦି ଆପଣ ଗଙ୍ଗାର ପଥୁରିଆ କୂଳ ଧରି କିଛି ତଳକୁ ଯିବେ ଏବଂ ମନଦେଇ ଡାହାଣରେ ଥିବା ପାହାଡ଼କୁ ଦେଖିବେ, ତେବେ ଗୋଟାଏ ବଡ଼ ବରଗଛର ଓହଳ ଭିତରେ ଭଲ ଭାବରେ ଲୁଚି ରହିଥିବା ଏକ ଛୋଟ ଗୁମ୍ଫା ଦେଖିପାରିବେ । ଏହାକୁ ଅରୁନ୍ଧତୀ ଗୁମ୍ଫା କୁହାଯାଏ । ବାବାଜୀ ସେଠାରେ ରହିବାକୁ ଠିକଣା କଲେ । ସେ କହିଲେ, ସେ ଗୁମ୍ଫା ତାଙ୍କୁ ଭଲ ଲାଗେ ଓ ସେ ସେଠାରେ କେତେଥର ରହି ସାରିଛନ୍ତି । ଆମେ ଖସଡ଼ା ପଥୁରିଆ ଅତି ସଂକୀର୍ଣ୍ଣ ଉଦ୍‌ଗତ ସ୍ଥାନ ଚଢ଼ି ଅରୁନ୍ଧତୀ ଗୁମ୍ଫାରେ ପହଞ୍ଚିଲୁ । ତାହା

କେବଳ ଦି'ଜଣଙ୍କପାଇଁ ଯଥେଷ୍ଟ ଥିଲା । ତା' ସାମ୍ନାରେ ବାରଣ୍ଡା ପରି ଗୋଟାଏ ବଡ଼ ସମତଳ ପଥର ଥିଲା, ଯାହା ଧୁନି ଲଗାଇବା ପାଇଁ ଉପଯୁକ୍ତ ଥିଲା । ଆମେ ଗଙ୍ଗାର ସବୁଜ ଜଳରେ ବୁଡ଼ ପକାଇଲୁ ଓ ସନ୍ଧ୍ୟା ହେବା ପୂର୍ବରୁ ଧୁନି ଜଳାଇବାପାଇଁ ପର୍ଯ୍ୟାପ୍ତ କାଠ ସଂଗ୍ରହ କରିନେଲୁ । ଠିକଣା ହୋଇଥିଲା ଯେ ମୁଁ ଦିନରେ ଥରେ, ଆମ ଦି'ଜଣଙ୍କପାଇଁ ବଶିଷ୍ଠ ଗୁମ୍ଫାରୁ ଖାଦ୍ୟ ଆଣିବି । ଆମେ ଗୋଟିଏ ଆନନ୍ଦପୂର୍ଣ୍ଣ ସପ୍ତାହ ଅରୁନ୍ଧତୀ ଗୁମ୍ଫାରେ ବିତାଇଲୁ ।

ଯେଉଁଦିନ ଆମେ ଅରୁନ୍ଧତୀ ଗୁମ୍ଫାରେ ବିତାଇଲୁ, ସେଦିନ କୌଣସି କାରଣବଶତଃ ମୁଁ ଭାରି କ୍ଲାନ୍ତ ଅନୁଭବ କରୁଥାଏ । ବାବାଜୀଙ୍କ ପାଦ ଚିପୁ ଚିପୁ (ଯେତେବେଳେ ମୋତେ ବାବାଜୀ ଅନୁମତି ଦେଉଥିଲେ, ମୋତେ ଏହି କାମ କରିବାକୁ ଭାରି ଭଲ ଲାଗୁଥିଲା) ମୁଁ ଶୋଇଗଲି । ମୋତେ ଜଣା ନ ଥିଲା ମୁଁ କେତେବେଳେ ଶୋଇଗଲି ଓ କ'ଣ ହେଲା; କିନ୍ତୁ ଅଧରାତିରେ ମୁଁ ଚମକି ପଡ଼ି ଉଠିପଡ଼ିଲି । କ'ଣ ଗୋଟାଏ ଜିନିଷ ମୋର ଗୋଡ଼କୁ ଧରିଥିଲା । ପ୍ରଥମେ ମନକୁ ଆସିଲା ଯେ, କୌଣସି ଜଙ୍ଗଲୀ ଜାନୁଆର ମୋତେ ଭିଡ଼ି ନେବାକୁ ଚେଷ୍ଟା କରୁଛି । ଯେତେବେଳେ ମୁଁ ଉଠି ବସିବାକୁ ଚେଷ୍ଟା କଲି, ବାବାଜୀଙ୍କର ସାନ୍ତ୍ୱନା ବାଣୀ ଶୁଣିପାରିଲି, ''ଶୋଇ ରହ ବାପା, ତୁମେ ବହୁତ ଥକି ଯାଇଛ । ତୁମର ମାଂସପେଶୀଗୁଡ଼ିକୁ ଢିଲା କରିବା ଆବଶ୍ୟକ ।'' ସେହି ମୁହୂର୍ତ୍ତରେ ଦେଖିପାରିଲି, ମୋର ଡାହାଣ ଗୋଡ଼ ତାଙ୍କର କୋଳରେ ଥିଲା ଓ ସେ ତାହାକୁ ମାଲିସ କରୁଥିଲେ ।

'ବାବାଜୀ !' ମୁଁ ପ୍ରତିରୋଧ କଲି ଓ ଗୋଡ଼କୁ ଭିଡ଼ିନେବାକୁ ଚେଷ୍ଟା କଲି; କିନ୍ତୁ ସଫଳ ହେଲି ନାହିଁ । ''ଚୁପ୍ ରହ ଓ ଶୋଇ ଯାଅ'', ବାବାଜୀ କହିଲେ, ''ତୁମକୁ ଡର ଲାଗୁଛି କି, ଯଦି ତୁମର ଗୋଡ଼ ମୋ କୋଳରେ ରହିବ ତେବେ ନର୍କକୁ ଯିବ ବୋଲି ? ଭ୍ରଷ୍ଟ ସଂସାରଠାରୁ ବଡ଼ ନର୍କ ଆଉ କୌଣସି ନର୍କ ନାହିଁ, ଶୋଇପଡ଼ । ସକାଳେ ତୁମକୁ ଜଲଦି ଉଠାଇ ଦେବି ।'' ମୁଁ ଅନ୍ଧାରରେ ସେହି ମହାତ୍ମାଙ୍କର ଦୟାଳୁ ସ୍ୱଭାବଦ୍ୱାରା ଅଭିଭୂତ ହୋଇ କାନ୍ଦିପକାଇଲି, ଆଉ ଶୋଇଗଲି ।

ଅରୁନ୍ଧତୀ ଗୁମ୍ଫାରେ ବାବାଜୀ ମୋତେ ଆଖି ଖୋଲା ରଖି ଧ୍ୟାନ କରିବାର ପ୍ରଣାଳୀ ଶିଖାଇଲେ । ''ଅନେକ ଲୋକଙ୍କପାଇଁ'', ବାବାଜୀ କହିଲେ, ''ଆଖି ବନ୍ଦ କରି ଧ୍ୟାନ କରିବା ସହଜରେ ସମ୍ଭବ ହୁଏ ନାହିଁ । ଏହିପରି କରୁଥିବା ସମୟରେ ସେମାନେ ଭାବନ୍ତି ସେମାନେ ଧ୍ୟାନ କରୁଛନ୍ତି; କିନ୍ତୁ ବାହ୍ୟ ଜଗତରୁ ମୁକ୍ତ ହେବାପାଇଁ ଅସମର୍ଥ ମନ ଏକ ଆନ୍ତରିକ ଦୁନିଆ ସୃଷ୍ଟି କରିନିଏ ଏବଂ ପୁନଃ ଚିନ୍ତନର ପ୍ରକ୍ରିୟାରେ ଧନ୍ଦି ହୋଇଯାଆନ୍ତି ।

ତେଣୁ ସେପରି ନ କରି ତୁମେ ଆଖି ଖୋଲା ରଖିପାର ଏବଂ ତଳେ ଥିବା ଗଙ୍ଗାଙ୍କୁ ଦେଖ, ଅନବରତ ବହୁଥିବା, ସ୍ୱୟଂ ଜୀବନଧାରା ପରି ଲାଗିରହିଥିବା, ସ୍ଥିର ପୁଷ୍କରିଣୀ ପରି କେବେହେଲେ ବାସି ନୁହେଁ, ଅହରହ ବଦଳୁଥିବା, ସର୍ବଦା ନୂତନ, ସ୍ଫଟିକ ପରି ସ୍ୱଚ୍ଛ, ଯେପରି ସର୍ବଦା ପ୍ରସାରିତ ହେଉଥିବା 'ବ୍ରହ୍ମ', ଯାହା ମୂଳ ହେଉଛି 'ବୃଃ' ଏବଂ ଯାହାର ଅର୍ଥ ହେଉଛି ବିସ୍ତୃତ ହେବା, ଅଗ୍ରସର ହେବା ।

ଏମିତି ଦେଖୁ ଦେଖୁ ତୁମେ ଏକାକାର ହୋଇଯିବ ବ୍ରହ୍ମାଣ୍ଡୀୟ ଜୀବନର ଗତି ସହିତ ଯାହାର କୌଣସି ସୀମା ନାହିଁ । କିଛି କଳ୍ପନା କର ନାହିଁ । ଖୋଲା ମନରେ ସାକ୍ଷୀ ଭାବରେ ଦେଖ, କିଛି ଲକ୍ଷ୍ୟ ନିର୍ଦ୍ଧାରିତ କର ନାହିଁ । 'ସ୍ୱାମୀତ୍ୱର ଭାବ ତ୍ୟାଗ କରି ଆନନ୍ଦ ଅନୁଭବ କର' – ଯେପରି ଈଶାବାସ୍ୟୋପନିଷଦ୍ କହୁଛି, 'ତେନ ତ୍ୟକ୍ତେନଭୁଞ୍ଜୀଥା' ।

ଅରୁନ୍ଧତୀ ଗୁମ୍ଫାରେ ଯେଉଁ ଅସାମାନ୍ୟ ଘଟଣାଗୁଡ଼ିକ ଘଟିଲା, ସେମାନଙ୍କ ମଧ୍ୟରୁ ପ୍ରଥମଟିକୁ ମୁଁ 'ଦୋସା ଘଟଣା' କହେ । ଗୁମ୍ଫାରେ ଆମର ଅନ୍ତିମ ଦିନ ସକାଳେ ମୁଁ କ୍ରିୟାର ଅଭ୍ୟାସ କରୁଥିବା ବେଳେ ନିଜର ଧ୍ୟାନ ଭ୍ରୂର ମଧ୍ୟସ୍ଥ ଆଜ୍ଞାଚକ୍ରରେ ଦୁଇଟି ପାଖୁଡ଼ା ଥିବା ଶ୍ୱେତ କମଳ ଉପରେ କେନ୍ଦ୍ରିତ କରିବାର ଚେଷ୍ଟା କରୁଥାଏ; କିନ୍ତୁ ମୁଁ ଯେତେ ଚେଷ୍ଟା କଲେ ମଧ୍ୟ, ମୋତେ କେବଳ ଦିଶୁଥାଏ ମୋର ପସନ୍ଦର ଜଳଖିଆ, ଦକ୍ଷିଣ ଭାରତୀୟ ମସଲା ଦୋସାର ପ୍ରତିଛବି । ମୋତେ ପ୍ରଥମ ଥର ଜଣାଗଲା ଯେ, ମସଲା ଦୋସା ମୋତେ କେତେ ଭଲ ଲାଗେ । ସମ୍ମୋହିତ କରିଦେବା ପରି, ମୁଁ ସେହି ପ୍ରତିଛବିରୁ ନିସ୍ତାର ପାଇବାପାଇଁ ବହୁତ ସଂଘର୍ଷ କଲି ।

ବାବାଜୀ ମୋ ପାଖକୁ ଆସିଲେ, କାନ୍ଧକୁ ଥାପୁଡ଼େଇଲେ ଆଉ ପଚାରିଲେ, "ତେବେ ଆଜି ତୁମେ କେଉଁଠାରେ ଧ୍ୟାନକୁ କେନ୍ଦ୍ରିତ କରୁଛ ?" "ଆଜ୍ଞା ଚକ୍ର", ମୁଁ ଉତ୍ତର ଦେଲି । "ଆଚ୍ଛା ? ଆଉ ତା'ର ରୂପ ମସଲା ଦୋସା ପରି ?" ଏତିକି କହି ହସିବାକୁ ଲାଗିଲେ ।

"ଆପଣ ବି ବାବାଜୀ", ମୁଁ କହିଲି, "ମୋତେ ଜଣାଅଛି ଯେ ମୋ ମନରେ କେତେବେଳେ, କ'ଣ ଚାଲିଛି ସବୁ ଆପଣ ଜାଣିପାରନ୍ତି; କିନ୍ତୁ ଦୟାକରି ହସନ୍ତୁ ନାହିଁ, ଏହି ପରିସ୍ଥିତିରୁ ବାହାରି ଆସିବାର ଉପାୟ ବତାନ୍ତୁ ।"

"ଆଚ୍ଛା, ଛାଡ଼ ମାଫ୍ କର", ବାବାଜୀ କହିଲେ, "ହସିବି ନାହିଁ ।" କାଲି ଆମେ ଋଷିକେଶ ଯିବା ଓ ମୁଁ ତୁମକୁ ଏହି ସମ୍ମୋହରୁ ମୁକ୍ତ ହେବାପାଇଁ ସାହାଯ୍ୟ କରିବି । ପ୍ରଥମ ସୋପାନ ହେଲା ଯେ, ମନଭରି ମସଲା ଦୋସା ଖାଅ । ଋଷିକେଶର ମାଡ୍ରାସ କାଫେରେ ଚମତ୍କାର ମସଲା ଦୋସା ହୁଏ । ଯେତେ ଚାହିଁବ ସେତେ ମସଲା

ଦୋସା ମୁଁ ତୁମକୁ ଆଣିଦେବି ଏବଂ ସେତେବେଳେ ତୁମେ ଏହି ସମ୍ମୋହରୁ ମୁକ୍ତ ହୋଇଯିବ । ତାନ୍ତ୍ରିକ ମହାବାକ୍ୟ 'ଯୋଗ ଭୋଗୟତେ' ଏହି ତଥ୍ୟ ଉପରେ ଆଧାରିତ ଯେ, ବେଳେବେଳେ ତୁମେ କୌଣସି ସମ୍ମୋହରୁ ସେତେବେଳ ପର୍ଯ୍ୟନ୍ତ ବାହାରି ଆସିପାରିବ ନାହିଁ, ଯେପର୍ଯ୍ୟନ୍ତ ତୁମେ ତାହାକୁ ଭୋଗ ନ କରିବ । ଏବେ ସେ ଚିନ୍ତା ଛାଡ଼ି ପୁଣି ଧ୍ୟାନ କରିବାକୁ ଚେଷ୍ଟା କର ।

ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେ ମନରେ ପରଦିନ ମନଭରି ଦୋସା ଖାଇବାର ବିଚାର ଆସିବା ମାତ୍ରେ ମୋତେ ସେହି ପ୍ରତିଛବିରୁ ମୁକ୍ତି ମିଳିଗଲା, ଯାହା ମୋର କ୍ରିୟାରେ ବାଧା ଉପୁଜାଉଥିଲା ଓ ମୁଁ ସହଜରେ ନିଜର ଅଭ୍ୟାସ ପୂର୍ଣ୍ଣ କରିପାରିଲି ।

ଆଉ ଦ୍ୱିତୀୟ ଅନୁଭବ ଏକ ଭୟ ଉଦ୍ରେକକାରୀ ଅନୁଭବ ରୂପରେ ଆରମ୍ଭ ହେଲା । ଅରୁନ୍ଧତୀ ଗୁମ୍ଫାରେ ଆମର ତୃତୀୟ ରାତି, ମୁଁ ଏକ ଶବ୍ଦ ଶୁଣି ଉଠିପଡ଼ିଲି । ପ୍ରଥମେ ତ ମୋତେ ସେହି ଶବ୍ଦ ମେଘ ଘଡ଼ଘଡ଼ି ପରି ଲାଗିଲା । ମୁଁ ଆଖି ଖୋଲି ବାବାଜୀଙ୍କୁ ନିଜସ୍ୱ ମୁଦ୍ରାରେ ବସିଥିବାର ଦେଖିଲି, ସେ ମୋ ଆଡ଼କୁ ପଛ କରି ନିଜର ସ୍ୱାଭାବିକ ମୁଦ୍ରାରେ ବସିଥିଲେ ଏବଂ ଧୁନିର ଆଲୁଅରେ ତାଙ୍କର ଆକୃତି ଛାୟାଚିତ୍ରିତ ଥିଲା । ମୁଁ ତାଙ୍କର ଆକୃତିକୁ ଟପି ବାହାରକୁ ଚାହିଁଲି । ଦେଖିଲି ଦୁଇଟି ଫାଙ୍କ ହୋଇଯାଇଥିବା ବାଦଲ ମଧ୍ୟରୁ ପ୍ରାୟ ପୂର୍ଣ୍ଣିମାର ଚନ୍ଦ୍ର ଆକାରର କୌଣସି ଏକ ପଦାର୍ଥ ବାହାରି ଆସିଲା; କିନ୍ତୁ ତାହା ଚନ୍ଦ୍ର ହୋଇପାରିବ ନାହିଁ, ଚନ୍ଦ୍ର ଶୀତଳ, ରୁପେଲି ଓ ଶୁଭ୍ର କିରଣ ଯୁକ୍ତ; କିନ୍ତୁ ଏହି ଗୋଲକଟି ଥିଲା ଗୋଟାଏ ଜ୍ୱଳନ୍ତ ନିଆଁର ଗୋଲକ ଏବଂ ସେ ଯେତେ ନିକଟକୁ ଆସୁଥାଏ, ଶବ୍ଦ ସେତିକି ବଢୁଥାଏ, ତା'ପରେ ତାହା ଗୁମ୍ଫା ଆଡ଼କୁ ଆସିଲା ଓ ବଜ୍ରପାତ ହେବାପରି ଶବ୍ଦ କରି ସିଧା ଧୁନି ଉପରେ ରହିଗଲା ।

ମୁଁ ଏତେ ଡରିଯାଇଥିଲି ଯେ, ଉଠି ବସି ପାରିଲି ନାହିଁ; କିନ୍ତୁ ବାବାଜୀ ମୂର୍ତ୍ତିଟିଏ ପରି ବସିଥାଆନ୍ତି; ଅବିଚଳ, ସ୍ଥିର । ମୁଁ ତାଙ୍କୁ ଡାକିବାକୁ ଚେଷ୍ଟା କଲି; କିନ୍ତୁ ମୋର ସ୍ୱରଯନ୍ତ୍ର ବିକଳ ହୋଇଗଲା । କୌଣସିମତେ ଚେଷ୍ଟା କରି ମୁଁ ବସିଗଲି; କିନ୍ତୁ ମୋର ସାରା ଦେହ ଥରୁଥାଏ ।

ମୋର ଚକ୍ଷୁ ସାମ୍ନାରେ ଏକ ଦୃଶ୍ୟ ସଂଘଟିତ ହେଲା । ଘଡ଼ଘଡ଼ି ଶବ୍ଦ ବନ୍ଦ ହୋଇ ଏକ ଅପୂର୍ବ ଶାନ୍ତି ବିରାଜିଲା । ନିଆଁର ପିଣ୍ଡୁଳା, ଯାହା ପ୍ରାୟ ଦୁଇଫୁଟ ବ୍ୟାସବିଶିଷ୍ଟ ଥିଲା, ଦି'ଖଣ୍ଡରେ ବିଭକ୍ତ ହୋଇଗଲା ଓ ତାହା ଭିତରୁ ଯେଉଁ ଜିନିଷ ବାହାରିଲା, ତାକୁ ଦେଖି ମୋର ସାରା ଶରୀରରେ ରୋମାଞ୍ଚର ଲହରୀ ଖେଳିଗଲା । ତାହା ନାଗସାପ ପରି ଫଣା

ଥିବା ଏକ ବିଦ୍ୟୁତ୍-ନୀଳ ରଙ୍ଗର ଚମକୁଥିବା ସର୍ପ ଥିଲା । ତାହା ଯେପରି କୌଣସି ସ୍ୱଚ୍ଛ ବାଇଗଣୀ ରଙ୍ଗର କାଚପରି ପଦାର୍ଥରେ ପ୍ରସ୍ତୁତ ହୋଇଥିଲା । ତାହା ମଧ୍ୟରେ ବିଦ୍ୟୁତ୍‌ର ତନ୍ତୁ ଝଲୁଥିଲା । ସେହି ସର୍ପ ପରି ପଦାର୍ଥର ଆଖି ଜଳୁଥିଲା ଓ ସେ ଧୀରେ ଧୀରେ 'ଫଁ ଫଁ' ହେଉଥିଲା ।

ମୋର ସବୁ ଭୟ ଉଭାନ୍ ହୋଇଗଲା, ଯେତେବେଳେ ସେ ଜୀବଟି ନଇଁପଡ଼ି ତା'ର ଫଣାଦ୍ୱାରା ବାବାଜୀଙ୍କର ଚରଣ ସ୍ପର୍ଶ କଲା । ବାବାଜୀ ତା'ର ଫଣାକୁ ଡାହାଣ ହାତରେ ଛୁଇଁ ତାକୁ ଆଶୀର୍ବାଦ କଲେ, ତା'ପରେ ଏମିତି ଗୋଟାଏ କାମ କଲେ, ଯାହାକୁ ଦେଖି ମୋତେ ଲାଗିଲା ଯେ, ମୁଁ ଗୋଟାଏ ବାଜେ ସ୍ୱପ୍ନ ଦେଖୁଛି ନା ସତରେ ଏସବୁକୁ ପ୍ରତ୍ୟକ୍ଷ କରୁଛି ! ସେ ନରମ ଭାବରେ 'ଫଁ ଫଁ' ଶବ୍ଦ କଲେ, ଯେପରି ସର୍ପର କଥାର ଉତ୍ତର ଦେଲେ !

ସେହି ନୀଳରଙ୍ଗର ନାଗ ସିଧା ହୋଇଗଲା ଓ ବାବାଜୀଙ୍କ ଆଡ଼କୁ ମୁହଁ କରି ବସିଲା । ଫଁ ଫଁ ହୋଇ ବାର୍ତ୍ତାଳାପ ବହୁ ସମୟ ଧରି ଚାଲିଲା । ତା'ପରେ ବାବାଜୀ କହିଲେ, ''ମଧୁ ଆଗେଇ ଆସ ଆଉ ସର୍ପଲୋକର ଉପନାୟକଙ୍କୁ ସାକ୍ଷାତ କର ।'' ମୁଁ ଆଗକୁ ଯାଇ ବାବାଜୀଙ୍କ ପଛରେ ବସିଗଲି । ବାବାଜୀ କହିଲେ, ''ନାଗରାଜଙ୍କୁ ପ୍ରଣାମ କର ।'' ମୁଁ ନଇଁପଡ଼ି ପ୍ରଣାମ କଲି । ପାଖରୁ ଦେଖିଲି, ସେ ବେଶ ବଡ଼ ଥିଲେ ଓ ତାଙ୍କର ଚମକୁଥିବା ବୁଦ୍ଧିଯୁକ୍ତ ଆଖି ଥିଲା । ସାପ ଫଁ ଫଁ ହେଲେ ଓ ତାଙ୍କର ଦି'ଖଣ୍ଡ ହୋଇଯାଇଥିବା ଜିଭରେ ମୋର ମସ୍ତକ ସ୍ପର୍ଶ କଲେ । ମୁଁ ଦେଖିଲି, ମୋତେ ବିଲ୍‌କୁଲ୍ ଡର ଲାଗିଲା ନାହିଁ ଯଦ୍ୟପି ମୋତେ ଲାଗିଲା ଯେମିତି ହାଲ୍‌କା ବିଜୁଳିର ଧାରା ମୋର ଦେହ ଭିତର ଦେଇ ଚାଲିଯାଉଛି ।

ପୁଣି ହଠାତ୍ ସେ ପିଣ୍ଡୁଳା ଭିତରକୁ ପଶିଗଲେ, ତାହାର ଦି'ଖଣ୍ଡ ହୋଇଯାଇଥିବା ଭାଗ ଖଟ୍‌କିନା ବନ୍ଦ ହୋଇଗଲା, ଘଡ଼ଘଡ଼ି ଶବ୍ଦ କରି ପିଣ୍ଡୁଳା ଉଡ଼ିଗଲା ଓ ଜଲ୍‌ଦି ବାଦଲ ଭିତରେ ଅଦୃଶ୍ୟ ହୋଇଗଲା । ବାବାଜୀଙ୍କୁ ଏହିସବୁ ଜିନିଷର ଅର୍ଥ ନ ପଚାରି ରହିପାରିଲି ନାହିଁ, ''ବାବାଜୀ ବୁଝାନ୍ତୁ ଏସବୁ କ'ଣ ? ମୁଁ ଯଦି ଏସବୁ କଥା କାହାକୁ କହିବି, ସେ ମୋତେ ବିଲ୍‌କୁଲ୍ ପାଗଳ ବୋଲି ଭାବିବ ଅଥବା ଭାବିବ ଯେ ମୁଁ ମନଗଢ଼ା କାହାଣୀ କହୁଛି । ତେଣୁ ମୁଁ ଏସବୁ ମୋ ଭିତରେ ହିଁ ରଖିବି; କିନ୍ତୁ ଦୟାକରି ମୋତେ ଏହାର ଅର୍ଥ କ'ଣ କହନ୍ତୁ ।''

''ହଁ, ତୁମେ ଠିକ୍ କଥା କହୁଛ'', ବାବାଜୀ କହିଲେ, ''ଅଧିକାଂଶ ଲୋକ ତୁମର ଅନୁଭବକୁ ବିଶ୍ୱାସ କରିବେ ନାହିଁ; କିନ୍ତୁ ନିଜର ଆତ୍ମଜୀବନୀ ଲେଖିବା ସମୟରେ ତୁମକୁ ଏହା ଲୋକମାନଙ୍କୁ ଜଣାଇବାକୁ ପଡ଼ିବ । କିଏ ବିଶ୍ୱାସ କରୁ ବା ନ କରୁ ସେଥିରେ କିଛି ଯାଏ ଆସେ ନାହିଁ । ମୁଁ ତୁମକୁ ବୁଝାଉଛି । ସତ୍ୟ ଅନେକ ସମୟରେ ଗଳ୍ପଠାରୁ ମଧ୍ୟ ଅଧିକ ଆଶ୍ଚର୍ଯ୍ୟଜନକ ହୁଏ ।

ଆକାଶ ଗଙ୍ଗାରେ ଏକ ନକ୍ଷତ୍ର ମଣ୍ଡଳ ଅଛି ଯେଉଁଥିରେ ସାତଟି ଗ୍ରହ ଓ ଅଠରଟି ଚନ୍ଦ୍ର ଅଛି । ସେମାନଙ୍କ ମଧ୍ୟରୁ ଗୋଟିଏ ଗ୍ରହକୁ ସର୍ପଲୋକ କୁହାଯାଏ । ସେଥିରେ ଅତ୍ୟନ୍ତ ଉନ୍ନତ ଓ ଫଣାବାଲା ସାପ ରହନ୍ତି । ସେହି ସର୍ପମାନଙ୍କୁ ନାଗ ଦେବତା କୁହାଯାଏ । ଯାହାକୁ ତୁମେ ଦେଖିଲ, ସେ ସେହି ଲୋକର ଉପନାୟକ ଥିଲେ । ତାଙ୍କୁ ନାଗରାଜ କୁହାଯାଏ, ନାଗମାନଙ୍କର ପରମ ନାୟକ ହେଉଛନ୍ତି ପାଞ୍ଚ ଫଣା ଥିବା ସୁନେଲି ରଙ୍ଗର ସର୍ପ । ତାଙ୍କୁ ପ୍ରାଚୀନ ଭାରତୀୟ ଶାସ୍ତ୍ରରେ ଅନନ୍ତ କୁହାଯାଏ ।

ହଜାର ହଜାର ବର୍ଷ ପୂର୍ବେ ଯେତେବେଳେ ମଣିଷ ନିଜର ମାନସିକ ବିକାଶର ଶୈଶବରେ ଥିଲା, ସେତେବେଳେ ତା'ର ସର୍ପଲୋକ ସହିତ ନିୟମିତ ସମ୍ପର୍କ ଥିଲା । ବୁଦ୍ଧିମାନ ଓ ଉନ୍ନତ ନାଗ ପୃଥିବୀକୁ ଆସୁଥିଲେ ଓ ଦୀର୍ଘସମୟ ଧରି ରହି ମଣିଷକୁ ଶିକ୍ଷା ଦେଉଥିଲେ । ସର୍ପ ପୂଜା, ଯାହା ତୁମେ ସବୁ ପ୍ରାଚୀନ ସଭ୍ୟତାରେ ଦେଖିପାରିବ, ପୁରାତନ ସମୟରୁ ଉନ୍ନତ ନାଗମାନଙ୍କୁ ଶ୍ରଦ୍ଧାଞ୍ଜଳି ଦେବାର ଏକ ରୂପ । ସେମାନଙ୍କର ଗଭୀର ଜ୍ଞାନ ହେତୁ ତାଙ୍କର ପ୍ରତିମାଗୁଡ଼ିକୁ ଆଦର କରାଯାଏ । ସେମାନେ ପ୍ରଥମେ କୁଣ୍ଡଳିନୀ ଶକ୍ତିର ରହସ୍ୟ ବିଷୟରେ ମଧ୍ୟ ଶିଖାଇଥିଲେ । ତାହାର ଚିହ୍ନ ମଧ୍ୟ ସର୍ପାକୃତି । ବିଶ୍ୱକୁ 'ଅଷ୍ଟାଙ୍ଗ ଯୋଗସୂତ୍ର' ନେଇଥିବା ପତଞ୍ଜଳି ମଧ୍ୟ ନାଗ ଥିଲେ । ତାଙ୍କୁ ଅଧା ନାଗ ଓ ଅଧା ମଣିଷ ରୂପରେ ଦର୍ଶାଯାଏ । ଫାରାଓଙ୍କର ମୁଣ୍ଡ ଉପର ନାଗ ଏବଂ ଯୋଗୀଦେବ ଶଙ୍କରଙ୍କର ଗଳାରେ ପଡ଼ିଥିବା ନାଗ, ସବୁ ହେଉଛନ୍ତି କିଛି ବିଶେଷ ମଣିଷଙ୍କୁ ନାଗ ଗୁରୁମାନଙ୍କ ଦ୍ୱାରା ଦିଆଯାଇଥିବା ଜ୍ଞାନ ଏବଂ ଶକ୍ତିର ପ୍ରତୀକାତ୍ମକ ନିରୂପଣ ।

କିନ୍ତୁ ଯେପରି ସବୁବେଳେ ହୁଏ, ମଣିଷ ଯେମିତି ଶକ୍ତିଶାଳୀ ହୋଇ ଚାଲିଲା, ସେ ଅଧିକ ସ୍ୱାର୍ଥପର ଓ ଚତୁର ମଧ୍ୟ ହୋଇ ଚାଲିଲା । ସମସ୍ତେ ନ ହେଲେ ମଧ୍ୟ ଅଧିକାଂଶ ମଣିଷ ବ୍ୟକ୍ତିଗତ ଲାଭ ପାଇଁ ଅନ୍ୟକୁ ମାରିବାକୁ ପ୍ରସ୍ତୁତ ହୋଇଗଲେ । କିଛି ଲୋକଙ୍କୁ ମାନସିକ ଓ ଆଧ୍ୟାତ୍ମିକ ରୂପରେ ଶ୍ରେଷ୍ଠତର ନାଗମାନଙ୍କଠାରୁ ବିପଦର ସମ୍ଭାବନା ଦେଖାଗଲା ଓ ସେମାନଙ୍କର ଋଣକୁ ଭୁଲିଯାଇ, ଯେଉଁ ଶକ୍ତି ସେମାନେ ନାଗମାନଙ୍କଠାରୁ ପାଇଥିଲେ, ସେସବୁକୁ ସେହିମାନଙ୍କ ବିରୁଦ୍ଧରେ ପ୍ରୟୋଗ କରିବାରେ ଲାଗିଲେ ।

ଗୋଟାଏ ସମୟରେ ବହୁ ପରିମାଣର ନାଗମାନଙ୍କର ହତ୍ୟା ହେଲା । ନାଗମାନଙ୍କର ପରମ ନାୟକ ନାଗମାନଙ୍କୁ ପୃଥିବୀରୁ ଫେରାଇ ନେବାକୁ ଓ ମଣିଷମାନଙ୍କଠାରୁ ସବୁ ସମ୍ପର୍କ ତୁଟାଇବାର ନିର୍ଣ୍ଣୟ ନେଲେ । କେବଳ କିଛି ଆଧ୍ୟାତ୍ମିକ ରୂପରେ ଉନ୍ନତ ବ୍ୟକ୍ତିମାନଙ୍କ ସହିତ ସମ୍ପର୍କ ଜାରି ରହିଲା । ରାତି ରାତି ନାଗଙ୍କୁ ସର୍ପଲୋକକୁ ନେଇ ନିଆଗଲା । କିଛି ନାଗ ଯେ ଅସୁସ୍ଥ ଥିଲେ କିମ୍ବା ବହୁତ ବୁଢ଼ା ଥିଲେ, ରହିଗଲେ । ଗୋଟାଏ ଅଧେ ବିରଳ ଉଦାହରଣ ଥିଲେ ସେମାନେ, ଯେଉଁମାନେ ପରମ ନାୟକଙ୍କ ଆଜ୍ଞା ବିରୁଦ୍ଧରେ ବିଦ୍ରୋହ କଲେ କାରଣ ସେମାନେ ଭାବୁଥିଲେ ଯେ, ତେବେ କି ମଣିଷମାନଙ୍କ ସହିତ କିଛି କାମ କରିବାର ସମ୍ଭାବନା ରହିଛି, ସେମାନେ ମଧ୍ୟ ରହିଗଲେ ।

ସାପ ଓ ନାଗ, ଯେଉଁଗୁଡ଼ିକ ପୃଥିବୀରେ ଅଛନ୍ତି, ସେମାନେ ସେହି ରହିଯାଇଥିବା ନାଗମାନଙ୍କର ସନ୍ତାନ । ଅନ୍ତଃ-ପ୍ରଜନନ କାରଣରୁ ସେମାନେ ମନ୍ଦବୁଦ୍ଧି ହୋଇଗଲେ ଓ ସେମାନଙ୍କ ନିକଟରେ ସେମାନଙ୍କର ନିଜର ପୂର୍ବପୁରୁଷମାନଙ୍କର ମହାନ ଗୁଣ ରହିଲା ନାହିଁ । କିନ୍ତୁ, ଯେପରି ମୁଁ କହିଛି ସେମାନଙ୍କର ମଣିଷ ଜାତିର କିଛି ଉନ୍ନତ ବ୍ୟକ୍ତିମାନଙ୍କ ସିହତ ସମ୍ପର୍କର ସୂତ୍ର ଆଜିପର୍ଯ୍ୟନ୍ତ ରହିଛି । ଯେତେବେଳେ ଶିରିଡ଼ିର ସାଇଁନାଥ ତିନିଦିନ ପର୍ଯ୍ୟନ୍ତ ନିଜର ଶରୀର ଛାଡ଼ି ଚାଲିଗଲେ ଏବଂ ଚତୁର୍ଥ ଦିନ ଫେରିଆସିଲେ, ସାଧାରଣ ଜନତା ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ଭାବିଥିଲେ ଯେ, ତାଙ୍କର ମୃତ୍ୟୁ ହୋଇଯାଇଛି; କିନ୍ତୁ ସାଇଁନାଥ କିଛି ଅନ୍ତରଙ୍ଗ ବନ୍ଧୁଙ୍କୁ କହିଥିଲେ ଯେ, ସେ କୌଣସି ଅନ୍ୟ ଲୋକର ଗୋଟାଏ ବିବାଦର ସମାଧାନ କରିବାକୁ ଯାଇଥିଲେ ।

ଯେଉଁ ଅନ୍ୟ ଲୋକ ବିଷୟରେ ସେ କହୁଥିଲେ, ସେ ଥିଲା ସର୍ପଲୋକ ବିବାଦ, ଯାହା ବିଷୟରେ ତୁମକୁ କହିପାରିବି ନାହିଁ । କିନ୍ତୁ ପୂରାପୂରି ଭାବରେ ତା'ର ସମାଧାନ ହୋଇ ପାରି ନ ଥିଲା । ପୁଣି ତାହା ଆରମ୍ଭ ହୋଇଯାଇଛି । ନାଗରାଜ, ଯେ ଏବେ ଏଠାକୁ ଆସିଥିଲେ, ସେ ଶ୍ରୀ ଗୁରୁଙ୍କଠାରୁ ସହାୟତା ମାଗିବାକୁ ଯାଇଥିଲେ ଏବଂ ତାଙ୍କର ପରାମର୍ଶକ୍ରମେ ମୋ ସହିତ ଆଲୋଚନା କରିବାକୁ ଆସିଥିଲେ ।''

'ବାବାଜୀ', ମୁଁ କହିଲି, ''ଏହା ସବୁ ଏତେ ଆଶ୍ଚର୍ଯ୍ୟକର ଲାଗୁଛି ଯେ, ଯଦି ମୁଁ କେବେ ଆତ୍ମକଥା ଲେଖେ – ହୋଇପାରେ ଯେ ମୁଁ କେବେ ଲେଖିବି କାରଣ ଆପଣ ସେପରି କହୁଛନ୍ତି, ତାହାହେଲେ ପାଠକ ତ ଏହାକୁ ଅସନ୍ତୁଳିତ ମସ୍ତିଷ୍କର ପ୍ରଳାପ କିମ୍ବା ନିଛକ କଳ୍ପନା କହି ନାକଚ କରିଦେବେ, ହେଲେ ମୁଁ ଖାତିର୍ କରିବି ନାହିଁ । ଯାହା ହେବାର ଥିବ ହେବ ।''

ବାବାଜି ହସିଲେ, ''ମୁଁ ପୁଣି କହୁଛି'', ସେ କହିଲେ, ''ସତ୍ୟ କାହାଣୀଠାରୁ ମଧ୍ୟ ଚମକପ୍ରଦ ହୁଏ । ଯଦି ତୁମର କାହାଣୀରୁ ସେମାନଙ୍କୁ ଉତ୍ତେଜନା ମିଳିବ, ତେବେ ଆଶା କରାଯାଏ ଯେ ସେମାନଙ୍କୁ ହୁଏତ କେବେ ବି ହେଲେ ଏହି ଜ୍ଞାନ ହେବ ଯେ ଚେତନାର ଆହୁରି ଅଧିକ ଉଚ୍ଚସ୍ତର ହୁଏ, ଯାହାକୁ ଶୁଷ୍କ ତର୍କ କିମ୍ବା ମଣିଷର ବର୍ତ୍ତମାନର ବୁଦ୍ଧିଦ୍ୱାରା ବୁଝିହୁଏ ନାହିଁ ।

ତେବେ ମଧ୍ୟ ଯେତେବେଳେ ଆତ୍ମକଥା ଲେଖିବ, ସେତେବେଳେ ବୈଜ୍ଞାନିକ ସଂସାର ଅନ୍ତରୀକ୍ଷ ଏବଂ ଅନ୍ୟ ଗ୍ରହମାନଙ୍କ ବିଷୟରେ ନିଜର ଜ୍ଞାନ-ବୃଦ୍ଧି କରିସାରିଥିବ । ଅନ୍ୟ ଗ୍ରହରେ ବା ତାରକୀୟ ମଣ୍ଡଳଗୁଡ଼ିକରେ ଜୀବନ ଅଛି ବା ଜୀବନ ଥିଲା, ଜୀବନରୂପୀମାନଙ୍କର ଅସ୍ତିତ୍ୱ ଏବଂ ବିକାଶପାଇଁ ଆବଶ୍ୟକ ପାଣି ତଥା ଅନ୍ୟ ପରିସ୍ଥିତିଗୁଡ଼ିକର ବ୍ରହ୍ମାଣ୍ଡରେ ବର୍ତ୍ତମାନ ପର୍ଯ୍ୟନ୍ତ ଅଜଣା ଅଂଶଗୁଡ଼ିକରେ ବିଦ୍ୟମାନ ଥିବାର ସନ୍ଧାନରୁ ଏହି ସମ୍ଭାବନାକୁ ସମର୍ଥନ ମିଳିବ । ହୁଏତ ମନରେ ପ୍ରତିକୂଳଭାବେ ନ ରଖିଥିବା କୌଣସି ବୈଜ୍ଞାନିକ ତୁମର କାହାଣୀକୁ ଉଚିତ ଧ୍ୟାନ ଦେବାର ଯୋଗ୍ୟ ଭାବିବେ । ଏହା ବ୍ୟତୀତ, ଏକଥା ମନେରଖିବା ଉଚିତ ଯେ କୌଣସି କଥା, ଯାହା ସ୍ଥାପିତ ମାନଦଣ୍ଡ ଅନୁଯାୟୀ ନୁହେଁ, ତାହାକୁ ଅବୈଜ୍ଞାନିକ କହି ନାକଚ କରିଦିଆଯାଇଥାଏ, କିଛି ଅଧିକ ଆଶା କରିବ ନାହିଁ ।

ତୁମେ ଥକି ଯାଇଥିବ, ଯାଅ ଶୋଇଯାଅ ।''



# ସ୍ୱାସ୍ଥ୍ୟଲାଭ ଓ ଶ୍ରୀ ଗୁରୁଙ୍କ ଦର୍ଶନ

ଦୋସା ଘଟଣା ଏବଂ ନାଗରାଜଙ୍କର ଆଗମନର ପରଦିନ ସକାଳୁ ଗଙ୍ଗା ନଦୀର ଡାହାଣ ପାଖରେ ଥିବା ଏକ ସଂକୀର୍ଣ୍ଣ ପାଦଚଲା ରାସ୍ତା ଧରି ଆମେ ଋଷିକେଶ ଉଦ୍ଦେଶ୍ୟରେ ବାହାରି ପଡ଼ିଲୁ । ଦୃଶ୍ୟ ଖୁବ୍ ମନୋମୁଗ୍ଧକର ଥିଲା । କଳକଳ ହୋଇ ବହୁଥିବା ନଦୀ, କିଚିରିମିଚିରି ହେଉଥିବା ପକ୍ଷୀ, ପର୍ବତ ଶ୍ରେଣୀ ଏବଂ ସାଧାରଣ କୁଟୀରଗୁଡ଼ିଏ ଯେଉଁଥିରେ ଗମ୍ଭୀର ସାଧୁମାନେ ରହୁଥିଲେ କାରଣ ସେମାନେ ଲୋଭୀ ନଗରବାସୀମାନଙ୍କଦ୍ୱାରା ବିବ୍ରତ ହେବାକୁ ଚାହୁଁ ନ ଥିଲେ । ଗୋଟାଏ ଜାଗାରେ, ନିକଟସ୍ଥ ପାହାଡ଼ ଉପରେ ଆମେ ମୟୂର ଦେଖିଲୁ । ସେମାନଙ୍କ ମଧ୍ୟରୁ ଜଣେ ପୁଚ୍ଛ ମେଲାଇ ନାଚୁଥିଲା । ଲଘୁ ପୁଚ୍ଛ ବାନର ଏବଂ କଳା ମୁହଁ ଥିବା ଲଙ୍ଗୁର ମଧ୍ୟ ଥିଲେ ।

ଆମେ ଲଛମନ ଝୁଲା ଉପରେ କିଛି ସମୟ ଅଟକିଲୁ, ଏହା ଗଙ୍ଗା ଉପରେ ଲୁହାର ଦଉଡ଼ିରେ ପ୍ରସ୍ତୁତ ହଲଚଲ ହେଉଥିବା ଏକ ସଂକୀର୍ଣ୍ଣ ପୋଲ । ବିଭିନ୍ନ ପ୍ରକାରର ସାଧୁସନ୍ୟାସୀ ଲଛମନଝୁଲା ଓ ତାହାର ଆଖପାଖରେ ରହୁଥିଲେ । ବିଭିନ୍ନ ସମ୍ପ୍ରଦାୟର ଅନେକ ଆଶ୍ରମ ମଧ୍ୟ ଆଖପାଖରେ ତିଆରି ହୋଇଥିଲା । ସେଠାରେ ଚାଲୁଚାଲୁ ଢୋଲ ଓ ମଞ୍ଜୀରାର ଧ୍ୱନି ଶୁଣାଯାଉଥାଏ । ସ୍ଥାନଟି ସୁନ୍ଦର ଥିଲା ।

ଆମେ ଆଉ କିଛିବାଟ ତଳକୁ ଓହ୍ଲାଇ ଗୋଟାଏ ସ୍ନାନ-ଘାଟରେ ପହଞ୍ଚିଲୁ ଏବଂ ସେଠାରେ ବୁଡ଼ ପକାଇଲୁ । ପାଖରେ ଥିବା ଅନ୍ନ-କ୍ଷେତ୍ରରୁ ରୁଟି ଏବଂ ଡାଲି ନେଇଆସିଲୁ ଏବଂ ଗଙ୍ଗାତୀରରେ ବସି ତୃପ୍ତିର ସହିତ ଭୋଜନ କଲୁ । ଆହା ! ଜୀବନ କେତେ ଆନନ୍ଦଦାୟୀ ହୋଇପାରିବ ଯଦି ଆପଣ ବୁଲିପାରିବେ, ଏହିପରି ଚିନ୍ତାମୁକ୍ତ ଓ ଉତ୍‌ଫୁଲ୍ଲିତ ଭାବରେ ବାବାଜୀଙ୍କ ପରି ବ୍ୟକ୍ତିଙ୍କ ସହିତ; ଯେ ମୋର ପିତା, ମାତା, ଗୁରୁ ଏବଂ ପ୍ରିୟ ବନ୍ଧୁ ।

ଆମେ ଏକ ବିରାଟ ପିପ୍ପଳୀ ଗଛ ମୂଳରେ କିଛି ସମୟ ବିଶ୍ରାମ ନେଲୁ ଓ ପୁଣି ଆମର ଯାତ୍ରାରେ ଚାଲିଲୁ । ଦି'ପହର ଗଡ଼ିଗଲା ପରେ ଆମେ 'ମୁନି କି ରେତୀ'ରେ ପହଞ୍ଚିଗଲୁ । ମୋତେ ଋଷିକେଶ ଭାରୀ ଭଲ ଲାଗୁଥାଏ, ଏହି ସ୍ଥାନରେ ଏପରି କିଛି

ଚମତ୍କାରିତା ଥିଲା, ଯାହାକୁ ମୁଁ ନିଜର ପ୍ରଥମ ପ୍ରବାସ କାଳରେ ହିଁ ଅନୁଭବ କରିଥିଲି, ଯେତେବେଳେ ମୁଁ 'ଡିଭାଇନ ଲାଇଫ୍ ସୋସାଇଟି'ରେ ରହୁଥିଲି । ଖୁସି ଲାଗୁଥିଲା ଯେ ପୁଣି ଥରେ ମୁଁ ଋଷିକେଶରେ ଅଛି, ତା' ମଧ୍ୟ ପ୍ରିୟ ବାବାଜୀଙ୍କ ସହିତ । ହୃଦୟ ଶାନ୍ତ ତଥା ତାଙ୍କର ସାନ୍ନିଧ୍ୟରେ ହରଷିତ ଥିଲା ।

ବଦ୍ରୀନାଥ ଯାଉଥିବା ସଡ଼କର ଗୋଟାଏ ପାଖରେ ଗଙ୍ଗା ଥିଲା ଏବଂ ଅନ୍ୟପଟରେ ଡିଭାଇନ ଲାଇଫ୍ ସୋସାଇଟି ଓ ଯୋଗ ନିକେତନ । ଅଧିକାଂଶ ଅନ୍ୟ ଆଶ୍ରମ ଗଙ୍ଗାର ଅନ୍ୟପଟେ ଆରକୂଳରେ ଥିଲା । ଯେଉଁ ପାଦଚଲା ରାସ୍ତା ଆମେ ବ୍ୟବହାର କରୁଥିଲୁ ସେଥିରେ ଯାଇ ଆମେ ସିଧା ଅନ୍ୟପଟେ ପହଞ୍ଚିଗଲୁ । ଗଙ୍ଗାର ଧାରେ ଧାରେ ସାଧୁମାନଙ୍କର ବାସସ୍ଥାନ ଥିଲା । କେତେକ ଏକୁଟିଆ ଛୋଟ ଛୋଟ କୁଡ଼ିଆରେ ରହୁଥିଲେ ଓ କେତେଜଣ ବଡ଼ ଆଶ୍ରମମାନଙ୍କରେ ।

ବାବାଜୀ ମୋତେ ସିଧା ମୌନୀବାବାଙ୍କ ଗୁମ୍ଫାକୁ ନେଇଗଲେ । ଏହା ନୀଳକଣ୍ଠ ପାହାଡ଼ ଉପରେ ଥିବା ନୀଳକଣ୍ଠେଶ୍ୱର ମନ୍ଦିର ଯିବାର ରସ୍ତାରେ ପଡ଼େ । ଗଙ୍ଗାର ଧାର ସହିତ ଚାଲୁଚାଲୁ ଏକ ଜଙ୍ଗଲ ପଡ଼େ ଯେଉଁଠାରେ ଆଜି ମଧ୍ୟ ହାତୀ ବୁଲିବାର ଦେଖାଯାଏ । ସେହି ଜଙ୍ଗଲର ଅଧିକାଂଶ ଭାଗ ହେଉଛି ରାଜାଜୀ ରାଷ୍ଟ୍ରୀୟ ଉଦ୍ୟାନର ଅଂଶ । ଘନ ଜଙ୍ଗଲ ଭିତରକୁ ପଶିବାର ଠିକ୍ ପୂର୍ବରୁ ପ୍ରସିଦ୍ଧ ମହେଶ ଯୋଗୀଙ୍କଦ୍ୱାରା ନିର୍ମିତ ବାତାନୁକୂଳିତ ଗୁମ୍ଫାଗୁଡ଼ିକ ରହିଛି । ସେ ବୋଧହୁଏ ପ୍ରଥମ ବ୍ୟକ୍ତି ଥିଲେ ଯେ ଯୋଗ ପ୍ରଣାଳୀକୁ, ଯାହାକୁ ସେ ଟି. ଏମ୍ (ଟ୍ରାନ୍ସେଡେଣ୍ଟାଲ ମେଡିଟେସନ୍) କହୁଥିଲେ, ଜଗତ ପ୍ରସିଦ୍ଧ କରାଇ ସେଥିରୁ ପଇସା ରୋଜଗାର କରିବାର ପ୍ରଥାର ପ୍ରଚଳନ କରିଥିଲେ ।

ବାବାଜୀ ଓ ମୌନୀବାବାଙ୍କ ମଧ୍ୟରେ ବୁଝାମଣା ଥିଲା ଯେ, ଋଷିକେଶ ଆସିଲେ ବାବାଜୀ ସେହି ଗୁମ୍ଫାରେ ରହିବେ ଓ ସେ ନୀଳକଣ୍ଠ ପର୍ବତ ଉପରେ ଥିବା ନିଜର ଅନ୍ୟ ଗୁମ୍ଫାକୁ ଚାଲିଯିବେ । ସେମାନଙ୍କଦ୍ୱାରା ପ୍ରଯୁକ୍ତ ସଞ୍ଚାରର ଉଚ୍ଚତର ମାଧ୍ୟମ, ଟେଲିଫୋନଠାରୁ ମଧ୍ୟ ଉତ୍ତମ କାର୍ଯ୍ୟ କରୁଥିଲା ।

ଆମେ ଗୁମ୍ଫାରେ ପହଞ୍ଚିବା ପରେ ମୌନୀବାବାଙ୍କର ଜଣେ ଯୁବକ ଶିଷ୍ୟ ଆମକୁ ସ୍ୱାଗତ କଲେ । ଜଟା ଓ ଘନ ଦାଢ଼ି ଥିବା ସେହି ଡେଙ୍ଗା, ସୁସ୍ଥସବଳ, ଶ୍ୟାମଳ ବର୍ଣ୍ଣର ଯୁବକଙ୍କୁ, ଯେ କେବଳ ଗୋଟିଏ ଗେରୁଆ ରଙ୍ଗର ପତଳା ଧୋତି ପିନ୍ଧିଥିଲେ, ବାବାଜୀ ପୁତ୍ର ସମ୍ବୋଧନ କଲେ । ସେ ବାବାଜୀଙ୍କର ପାଦସ୍ପର୍ଶ କଲେ । ବାବାଜୀ ମୋତେ ସେହି ଯୁବକ ସାଧୁଙ୍କୁ ପ୍ରଣାମ କରିବାକୁ କହିଲେ କାରଣ ସେ ମୋର ବୟୋଜ୍ୟେଷ୍ଠ ଥିଲେ । ସେ ମଧ୍ୟ ମୋତେ ଅଭିବାଦନ କଲେ, କାରଣ ମୁଁ ବାବାଜୀଙ୍କର ଶିଷ୍ୟ ଥିଲି ।

ପ୍ରଶସ୍ତ ଗୁମ୍ଫାଟି ମୁହଁରେ ଧୁନି ପୂର୍ବରୁ ଜଳୁଥିଲା । କାଠର ଦି'ଟା ପଟା ଉପରେ କମ୍ବଳ ବିଛାହୋଇ ଥିଲା । ତାହା ଥିଲା ଆମର ବିଛଣା । ''ମୁଁ କମଣ୍ଡଳୁରେ ସଜ ପାଣି ଭରିଦେଇଛି ଏବଂ ଆପଣ ଦି'ଜଣଙ୍କ ପାଇଁ ରୁଟି, ଡାଲି ଓ ତରକାରି ନେଇଆସିଛି'', ଯୁବକ ସାଧୁ କହିଲେ, ''ବାବା ଏଇ ନବଯୁବକପାଇଁ କିଛି ମିଶ୍ରି ମଧ୍ୟ ପଠାଇଛନ୍ତି । ବାବା ଆଜ୍ଞା ଦେଇଛନ୍ତି, ମୁଁ ସକାଳେ ଓ ସନ୍ଧ୍ୟାରେ ଖାଦ୍ୟ ଆଣିବି । ସେ କିଛିଦିନ ଭିତରେ ଆପଣଙ୍କୁ ସାକ୍ଷାତ କରିବେ ବୋଲି ଆଶା କରିଛନ୍ତି ଓ ପ୍ରଣାମ ଜଣାଇଛନ୍ତି । କୌଣସି ଅନ୍ୟ ଜିନିଷର ଆବଶ୍ୟକତା ହେଲେ ମୋତେ ଜଣାଇବେ ।'' ସେ ବାବାଜୀଙ୍କ ଚରଣରେ ଦଣ୍ଡବତ କରି ଚାଲିଗଲେ ।

''ଆରେ, ମୁଁ ତୁମକୁ କହିବାକୁ ଭୁଲି ଯାଇଛି'', ବାବାଜୀ କହିଲେ, ''ମୌନୀବାବା ନୀଳକଣ୍ଠରେ ଥରେ ଶ୍ରୀ ଗୁରୁବାବାଜୀଙ୍କର ଦର୍ଶନ ପାଇଛନ୍ତି ଓ ତାଙ୍କର ଆଶୀର୍ବାଦ ପାଇସାରିଛନ୍ତି'', ମୁଁ ଭାବିଲି, ବାବାଜୀ ମଧ୍ୟ କେମିତି କେବେକେବେ କିଛି ଭୁଲିଯାଇ ପାରନ୍ତି !

ଆମେ ଗୁମ୍ଫାରେ ଏକୋଇଶଟି ସୁଖର ଦିନ ବିତାଇଲୁ । ମୁଁ ବ୍ୟବହାରିକ ଯୋଗ ବିଷୟରେ ବହୁ ଉପଦେଶ ଲାଭ କଲି ଓ ପବିତ୍ର ଗ୍ରନ୍ଥଗୁଡ଼ିକର ସାରକଥା ବିଷୟରେ ଶିକ୍ଷା ପାଇଲି । ଉପନିଷଦ, ଯୋଗସୂତ୍ର ହଠଯୋଗ ପ୍ରଦୀପିକା, ଷଡ୍‌ଚକ୍ର ନିରୂପଣ, ଗୋରଖ ଶତକ, କୁଳର୍ଣ୍ଣବ ତନ୍ତ୍ର, ମହାନିର୍ବାଣ ତନ୍ତ୍ର ଏବଂ ନାଗାର୍ଜୁନଙ୍କର ପ୍ରସିଦ୍ଧ ବୌଦ୍ଧ ଶାସ୍ତ୍ର ପ୍ରଜ୍ଞା ପାରମିତା ହେଉଛନ୍ତି ସେହି ମହାନ ପୁସ୍ତକମାନଙ୍କ ମଧ୍ୟରୁ କେତୋଟି, ଯାହା ବିଷୟରେ ବାବାଜୀ ମୋ ସହିତ ଆଲୋଚନା କଲେ । ଆଲୋଚନା କରିବାପାଇଁ ତାଙ୍କର କୌଣସି ପୁସ୍ତକର ଆବଶ୍ୟକତା ନ ଥିଲା । ସବୁ ତାଙ୍କର ମନ ଭିତରେ ଥିଲା । ସେହି ଏକୋଇଶ ଦିନ ଭିତରେ ଯାହା ଯାହା ସବୁ ଘଟିଗଲା ସେସବୁକୁ ମୁଁ ସମ୍ପୂର୍ଣ୍ଣ ଭାବରେ ଆପଣଙ୍କୁ କହିବାକୁ ଯାଉ ନାହିଁ, ନ ହେଲେ ମୁଁ ଲେଖି ଚାଲିଥିବି ।

ମୁଁ ଆପଣଙ୍କୁ ତିନୋଟି ଘଟଣା ବିଷୟରେ ଅବଗତ କରାଇବି ଯେଉଁଗୁଡ଼ିକୁ ମୁଁ ମୁଖ୍ୟ ଘଟଣା ବୋଲି ଭାବୁଛି ଓ ଯେଉଁଗୁଡ଼ିକ ପ୍ରାସଙ୍ଗିକ ମଧ୍ୟ ।

ପ୍ରଥମ ହେଲା ମୋର ଋଷିକେଶରେ ମାଡ୍ରାସ କାଫେକୁ ଯିବା ବିଷୟରେ । ସେ ସମୟରେ ମାଡ୍ରାସ କାଫେ ଗୋଟିଏ ଛୋଟ ଦୋକାନ ଥିଲା, ଯାହାକୁ ଜଣେ ଦକ୍ଷିଣଭାରତୀୟ ଚଳାଉଥିଲେ । ପ୍ରଥମେ ସେ ସନ୍ନ୍ୟାସୀ ହେବାକୁ ଚେଷ୍ଟା କରିଥିଲେ, ଅସଫଳ ହେଲେ ଏବଂ ଦକ୍ଷିଣଭାରତୀୟ ଯାତ୍ରୀଙ୍କର ସଂଖ୍ୟା କ୍ରମାଗତ ଭାବରେ ବଢୁଥିବାର ଦେଖି, ସେମାନଙ୍କ ଖିଆପିଆର ଆବଶ୍ୟକତାକୁ ଦୃଷ୍ଟିରେ ରଖି ସେ ଗୋଟିଏ ରେଷ୍ଟୋରାଁ ଖୋଲିଦେଲେ ।

ବହୁ ବର୍ଷ ପରେ ଅଜ୍ଞାତ ଆତତାୟୀମାନେ ତାଙ୍କୁ ହତ୍ୟା କଲେ ଓ ରେସ୍ତୋରାଁ ସ୍ଥାନୀୟ ଲୋକଙ୍କ ହାତକୁ ଚାଲିଗଲା ।

ଆମେ ଗୁମ୍ଫାରେ ପହଞ୍ଚିବାର ଦ୍ୱିତୀୟ ଦିନ, ବାବାଜୀ ମୋତେ କୋଡ଼ିଏ ଟଙ୍କା ଦେଲେ ଏବଂ ମାଡ୍ରାସ କାଫେକୁ ଯାଇ ମସଲା ଦୋସା ଖାଇଆସିବାକୁ କହିଲେ । "ଯେତେ ପାରିବ ଖାଇବ", ସେ କହିଲେ, "ଏବଂ ନିଜକୁ ସମ୍ପୂର୍ଣ୍ଣ ଭାବରେ ତୃପ୍ତ କରିବ ।"

ମୁଁ ଡଙ୍ଗାରେ ନଦୀ ପାର ହୋଇ ମାଡ୍ରାସ କାଫେ ଆଡ଼କୁ ଚାଲିଲି । ସେଇଟିକୁ ମୁଁ ମୋର ପୂର୍ବଥର ଋଷିକେଶ ଆସିବାବେଳେ ଆବିଷ୍କାର କରିଥିଲି । ସେଠାରେ ପହଞ୍ଚି ଗୋଟାଏ ମସଲା ଦୋସା ବରାଦ ଦେଲି । ଦୋସାର ପ୍ରତିଟି ଖଣ୍ଡ ମୁଁ ଭାରି ଆଗ୍ରହରେ ତୃପ୍ତିରେ ଖାଇଲି, ଦ୍ୱିତୀୟଟିର ବରାଦ ଦେଲି ଓ ତାକୁ ମଧ୍ୟ ଖାଇଦେଲି । ତା'ପରେ କପେ କଫି । ମୁଁ ଜୋର୍‌ରେ ଗୋଟାଏ ହେଉଡ଼ି ମାରିଲି ଓ ରେସ୍ତୋରାଁର ବାହାରକୁ ଚାଲିଆସିଲି । ତା'ପରେ କେବେହେଲେ ମୋର ମସଲା ଦୋସାପାଇଁ ବିଶେଷ ଆଗ୍ରହ ହୋଇ ନାହିଁ । ଆଗ୍ରହ ପୂରାପୂରି ଭାବରେ ମେଣ୍ଟିଗଲା । ମୁଁ ଏବେ ବି ବେଳେବେଳେ ମସଲା ଦୋସା ଖାଏ କିନ୍ତୁ ତା'ର ସମ୍ମୋହନରେ ବଶୀଭୂତ ହୋଇ ନୁହେଁ ।

ଦ୍ୱିତୀୟ ଘଟଣା ହେଉଛି ଜଣେ ଆମେରିକୀୟ ଯୁବତୀ ସହିତ ମୋର ଭେଟ । ତାଙ୍କର ଅସଲ ନାଁ ଗୋପନୀୟତା ଦୃଷ୍ଟିରୁ ପ୍ରକାଶ କରୁ ନାହିଁ । କାହାଣୀ ଶେଷ ପର୍ଯ୍ୟନ୍ତ ମୁଁ ଜେନି ନାଁର ଉପଯୋଗ କରିବି ।

ପ୍ରାୟ ପ୍ରତିଦିନ ପଢ଼ାପଢ଼ି ପରେ ଏବଂ ଦି'ପହରର ଖାଇବା ପୂର୍ବରୁ ମୁଁ ଏକୁଟିଆ ଗୁମ୍ଫା ତଳେ ଟିକିଏ ବୁଲାବୁଲି କରୁଥିଲି, ବୁଡ଼ ପକାଇବା ପୂର୍ବରୁ ଥଣ୍ଡା ପବନ ଓ ବହମାନ ଜଳର ଶବ୍ଦ ଉପଭୋଗ କରି ଗଙ୍ଗାକୂଳରେ ବସେ ଓ ଖାଇବା ବେଳକୁ ଗୁମ୍ଫାକୁ ଫେରିଆସେ । ବାବାଜୀ ମୋତେ ଏକାଏକା ବୁଲିବାକୁ ଉତ୍ସାହିତ କରୁଥିଲେ ଓ ମୋତେ ମଧ୍ୟ ଖୁବ୍ ଭଲ ଲାଗୁଥିଲା ।

ଦିନେ ଯେତେବେଳେ ମୋତେ ଭାରି ଭଲ ଲାଗୁଥିବା ପଥରଟି ଉପରେ ଏମିତି ଖାଲିଟାରେ ବସିଥିଲି, ମୁଁ ସୁନେଲି ବାଳ ଥିବା ଓ ନୀଳରଙ୍ଗର ଡ୍ରେସ ପିନ୍ଧିଥିବା ଜଣେ ଯୁବତୀକୁ ପାଖରେ ଥିବା ଅନ୍ୟ ଏକ ପଥର ଉପରେ ବସିଥିବାର ଦେଖିଲି । ତା'ର ପାଦ ଦୁଇଟି ଗଙ୍ଗାର ଥଣ୍ଡା ପାଣିରେ ବୁଡ଼ି ରହିଥାଏ ଓ ମୁଁ ମୋ ବସିଥିବା ଜାଗାରୁ ତା'ର ଗମ୍ଭୀର ଓ ଉଦାସ ରୂପ ଦେଖିପାରୁଥାଏ । ତା'ର ଦେହର ରଙ୍ଗ ଓ କେଶର ରଙ୍ଗରୁ ମୁଁ ଅନୁମାନ କଲି ଯେ, ସେ ୟୁରୋପୀୟ କିମ୍ବା ଆମେରିକୀୟ ହୋଇଥିବ ।

ମୁଁ ଦେଖୁ ଦେଖୁ ସେ ହଠାତ୍ ବାନ୍ତି କରିବା ଆରମ୍ଭ କଲା । କାଳେ ବାନ୍ତି ନଦୀରେ ପଡ଼ିଯିବ ବୋଲି ସେ ମୁହଁକୁ ଅନ୍ୟ ଆଡ଼କୁ ବୁଲାଇ ଦେଇଥିଲା । ମୁଁ ଦେଖିପାରିଲି ଯେ, ତାକୁ ଭାରି କଷ୍ଟ ହେଉଛି । ସେ ବାନ୍ତି କରୁଥାଏ ଓ ହାତରେ ପେଟକୁ ଜୋର୍‌ରେ ଚାପୁଥାଏ । ବାନ୍ତି କରିସାରିବା ପରେ ସେ ପାଖରେ ଥିବା ଗୋଟିଏ ଫ୍ଲାସ୍କରୁ ଅଳ୍ପ ଢୋକେ କ'ଣ ପିଇଲା । ସେହି ସମୟରେ ସେ ମୋତେ ଦେଖିଲା ଓ ମୋତେ ଲାଗିଲା ଯେ, ସେ ଲଜ୍ଜିତ ହେଲା । ତା'ର ଚେହେରା ହଳଦିଆ ପଡ଼ି ଯାଇଥାଏ ଓ ସେ ନିଜର ପାଦ ଆଡ଼କୁ ଚାହିଁଲା ।

ମୋର ହୃଦୟରେ ଗୋଟାଏ ଗଭୀର ସହାନୁଭୂତିର ଭାବନା ଭରିଗଲା । ମୁଁ ତା' ପାଖକୁ ଯାଇ ତା' ସହିତ କଥାବାର୍ତ୍ତା କରିବାକୁ ଚାହୁଁଥିଲି, ତା'ର ହାତ ଧରି ତାକୁ ସାନ୍ତ୍ୱନା ଦେବାକୁ ଚାହୁଁଥିଲି, ସାହସ ଦେବାକୁ ଚାହୁଁଥିଲି ଏବଂ ଜାଣିବାକୁ ଚାହୁଁଥିଲି ଯେ, ମୁଁ କ'ଣ ତାକୁ କିଛି ସାହାଯ୍ୟ କରିପାରିବି କି ବୋଲି । କିନ୍ତୁ ମୁଁ ଦୋଦୋପାଞ୍ଚ ହେଉଥିଲି । ମୁଁ ସ୍ୱାଧୀନ ଥିଲି ଓ ଦୁନିଆର ପଙ୍କରେ ପଶିବାକୁ ଚାହୁଁ ନ ଥିଲି । ଏହା କ'ଣ କେବଳ ଯୌନ–ଆକର୍ଷଣ ଥିଲା, ଯାହା କରୁଣ ରୂପ ଧାରଣ କରୁଥିଲା ? ସେତିକିବେଳେ ମୋର ବାବାଜୀ କହିଥିବା କଥା ମନେପଡ଼ିଗଲା, ''ତୁମେ ତେରବର୍ଷ କାଳ ପ୍ରତିଦିନ ତେରଘଣ୍ଟା ଧ୍ୟାନ କରୁଥାଇ ପାର; କିନ୍ତୁ ତୁମକୁ ଯଦି କୌଣସି ବ୍ୟଥିତ ଜୀବର ପୀଡ଼ିତ ଡାକ ଶୁଣାଯିବ ନାହିଁ, ତେବେ ତୁମର ପୂରା ତେର ବର୍ଷ ବେକାର ହୋଇଯିବ, ଯଦି ଧ୍ୟାନ ତୁମର ହୃଦୟକୁ କୋମଳ କରି ନାହିଁ, ତେବେ ସେପରି ଧ୍ୟାନକୁ ଝର୍କା ବାହାରକୁ ଫିଙ୍ଗିଦିଅ । ସେଥିରେ କିଛି ଲାଭ ନାହିଁ ।''

ମୂର୍ଖ, ତୁମେ କେତେ ସ୍ୱାର୍ଥପର ହୋଇପାର ! ମୁଁ ନିଜେ ନିଜକୁ କହିଲି । ମୁଁ ଉଠି ଠିଆହେଲି, ତା' ପାଖକୁ ଗଲି ଓ ପଚାରିଲି, ''ମୁଁ କ'ଣ ତୁମକୁ କିଛି ସାହାଯ୍ୟ କରିପାରିବି ?''

ପ୍ରଥମେ ତ ସେ ଚମକି ପଡ଼ିଲା । ପୁଣି ଆଶ୍ୱସ୍ତ ହୋଇ କହିଲା, ''ଯଦି କେହି ମୋର ସହାୟତା କରିପାରନ୍ତା ! କିନ୍ତୁ ସେପରି ହେବାର ନୁହେଁ ।''

: ''କିନ୍ତୁ କାହିଁକି ?''

''ସେ ଗୋଟାଏ ଲମ୍ବା କାହାଣୀ; କିନ୍ତୁ ମୁଁ ମୋର ଦୁଃଖର ଭାର ତୁମ ଉପରେ ଲଦିଦେବାକୁ ଚାହେଁ ନାହିଁ ।''

''ପ୍ଲିଜ ମୋତେ କୁହ, ମୁଁ ଜାଣିବାକୁ ଚାହେଁ'', ମୁଁ କହିଲି ଓ ନିକଟରେ ଥିବା ପଥର ଉପରେ ବସିଗଲି ।

“ଠିକ୍ ଅଛି”, ସେ କହିଲା, “ଯଦି ତୁମେ ଜାଣିବାକୁ ହିଁ ଚାହୁଁଛ ।”

ତା’ପରେ ସେ ମୋତେ ତା’ ନିଜର କାହାଣୀ ଶୁଣାଇଲା । ସେ ଆମେରିକାର ଫିଲାଡେଲଫିଆର ବାସିନ୍ଦା ଏବଂ ଏକ ସୂକ୍ଷ୍ମ-ଜୀବବିଜ୍ଞାନୀ (ମାଇକ୍ରୋ ବାଇଓଲଜିଷ୍ଟ) ଥିଲା । ତାକୁ ବିଭିନ୍ନ ସ୍ଥାନରେ ଭ୍ରମଣ କରିବାକୁ ଭାରି ଭଲ ଲାଗୁଥିଲା । ଚାରିବର୍ଷ ପୂର୍ବରୁ ସେ ଭାରତ ଆସିଥିଲା ଏବଂ ଅନ୍ୟ ସବୁ ଜାଗା ବ୍ୟତୀତ ହରିଦ୍ୱାର ଓ ଋଷିକେଶରେ ମଧ୍ୟ ବୁଲିଥିଲା । କୌଣସି ଅଜଣା କାରଣରୁ, ଯାହାର କାରଣ ସେ କେବେ ବୁଝିପାରି ନାହିଁ, ସେ ଋଷିକେଶ ଓ ଗଙ୍ଗାନଦୀର ପ୍ରେମରେ ପଡ଼ିଗଲା । ଏମିତିକି ସେ ସବୁ ବର୍ଷ ଆସେ ଓ ଏଠାରେ ଗୋଟାଏ ମାସ ରହେ । ସେ କହିଲା ଯେ, ତା’ର ହିନ୍ଦୁଧର୍ମ ବା ତାହାର ଗୁରୁମାନଙ୍କ ପ୍ରତି କୌଣସି ଆଗ୍ରହ ନ ଥିଲା, ତାକୁ ଖାଲି ପାହାଡ଼ମାନଙ୍କରେ ବୁଲିବା ଓ ଗଙ୍ଗାନଦୀ କୂଳରେ ରହିବାଟା ପସନ୍ଦ ଥିଲା; ଗଙ୍ଗାନଦୀ, ଯାହାକୁ ସେ ପ୍ରେମ କରୁଥିଲା, ତା’ର କୂଳରେ ।

ଛଅମାସ ପୂର୍ବରୁ ବିପଦର ପାହାଡ଼ ମୁଣ୍ଡ ଉପରେ ଭାଙ୍ଗି ପଡ଼ିଲା । ତାକୁ ଯେଉଁ ବାରମ୍ବାର ବଦହଜମ ହେଉଥିଲା ଓ ପେଟରେ କଷ୍ଟ ହେଉଥିଲା, ସେଥିରେ ବ୍ୟତିବ୍ୟସ୍ତ ହୋଇ ସେ ଡାକ୍ତରଙ୍କ ପାଖକୁ ଗଲା । ସେ ଆବଶ୍ୟକ ପରୀକ୍ଷା ଇତ୍ୟାଦି କରି କହିଲେ, ତା’ର ବୃହଦନ୍ତ୍ରରେ କ୍ୟାନ୍ସର୍ ହୋଇଛି । ଦି’ମାସର ଚିକିତ୍ସା ପରେ ବେମାର କମିଗଲା ପରି ଜଣାଗଲା କିନ୍ତୁ ପୁଣି ଦି’ସପ୍ତାହ ମଧ୍ୟରେ ଭୟଙ୍କର ଭାବରେ ଲେଉଟାଇଲା । ଡାକ୍ତର ଆହୁରି ଦି’ମାସ ଚିକିତ୍ସା କଲେ ଓ ତା’ପରେ ଆଶା ଛାଡ଼ିଦେଲେ । ସେ କହିଲେ ଯେ, ସେ ପୂରା ଚେଷ୍ଟା କରିଥିଲେ; କିନ୍ତୁ ବେମାର ବହୁତ ବଢ଼ିଯାଇଥିଲା । ସେ ଏକଥା ମଧ୍ୟ କହିଲେ ଯେ, ତାକୁ ସେ ମିଥ୍ୟା ଆଶା ଦେବାକୁ ଚାହାଁନ୍ତି ନାହିଁ । ଡାକ୍ତର କହିବା ଅନୁଯାୟୀ ସେ ଦି’ମାସରୁ ଅଧିକ ବଞ୍ଚିବ ନାହିଁ । କେବଳ ଏତିକି କରାଯାଇ ପାରିବ ଯେ, ବେମାରର କଷ୍ଟ କମାଇବାପାଇଁ ସେ କଷ୍ଟ ନିବାରକ ଔଷଧ ଖାଇଚାଲିବ ।

ଏବେ ତା’ ପେଟରେ କିଛି ଖାଦ୍ୟ ରହୁ ନାହିଁ । ଯାହା ବି ସେ ପିଉଛି ତାହା ପିଇବା ମାତ୍ରେ ବାନ୍ତିରେ ବାହାରି ଆସୁଛି ଏବଂ ତା’ର ମଳରେ ମଧ୍ୟ ରକ୍ତ ପଡ଼ିବା ଆରମ୍ଭ ହୋଇଯାଇଛି । ଏହି ପରିସ୍ଥିତିରେ ସେ ଋଷିକେଶ ଆସିବାର ନିଷ୍ପତ୍ତି କଲା । ସେ ଠିକଣା କଲା ଯେ, ଶେଷ ହେବା ପୂର୍ବରୁ ସେ ନିଜର ପ୍ରିୟ ନଦୀର ସାନ୍ନିଧ୍ୟରେ ରହିବ ଏବଂ ଋଷିକେଶରେ କିଛି ସମୟ କଟାଇବ । ଏଇ ବେମାର ତା’ର ଶରୀରକୁ ନଷ୍ଟ କରିଦେଇ ପାରେ; କିନ୍ତୁ ତାକୁ ଲାଗିଲା ଯେ ତା’ର ଆତ୍ମା ଋଷିକେଶରେ ଶାନ୍ତି ପାଇବ, ନଦୀର ଶୀତଳ ଜଳଦ୍ୱାରା ପ୍ରଶମିତ ହେବ ।

ତା'ର ଭାଇ, ମା' ଏବଂ ସାଙ୍ଗମାନେ ଏହାକୁ ପାଗଳାମି ବୋଲି ଭାବିଲେ; କିନ୍ତୁ ସେ ମାନିଲା ନାହିଁ, ଟିକେଟ୍ କାଟିଲା, ଭିସା ନେଲା ଏବଂ ଚାଲି ଆସିଲା । ସେ ଋଷିକେଶ ଆସିବାର ଦି'ହପ୍ତା ହୋଇଗଲାଣି ଏବଂ ଦେହ ଖରାପରୁ ଖରାପ ହୋଇ ଚାଲିଛି । ଏବେ ତ ତା' ପେଟରେ ପାଣି ମଧ୍ୟ ରହୁ ନାହିଁ । ତାକୁ ଲାଗୁଛି ତା'ର ଅନ୍ତ ନିକଟରେ । ମୁଁ କ'ଣ ତା'ର ମୃତ୍ୟୁର ଖବର ତା' ଭାଇକୁ ଦେଇପାରିବି ? ସେ ସ୍ୱର୍ଗାଶ୍ରମରେ ରହୁଥିଲା । ମୁଁ ଯଦି ତା' ସହିତ ସେ ପର୍ଯ୍ୟନ୍ତ ଯିବି, ତା'ହେଲେ ସେ ତା'ର ବଡ଼ଭାଇର ଟେଲିଫୋନ୍ ନମ୍ବର ଏବଂ ପୋଷ୍ଟଅଫିସରେ ସାର୍ବଜନୀନ ଫୋନ୍‌ରୁ ଫୋନ୍ କରିବାପାଇଁ ଆବଶ୍ୟକ ହେଉଥିବା ପଇସା ଦେଇଦେବ । ତା' ପାଖରେ ତିନିଦିନ ପରେ ଯିବାର ଟିକେଟ ଥିଲା; କିନ୍ତୁ ତାକୁ ଲାଗୁ ନାହିଁ, ସେ ସେତେବେଳ ପର୍ଯ୍ୟନ୍ତ ବଞ୍ଚିବ ।

ତାକୁ କଥା ବନ୍ଦ କରିବାକୁ ପଡ଼ିଲା, କାରଣ ତା'ର ଭୀଷଣ ବାନ୍ତି ହେବା ଆରମ୍ଭ ହେଲା, ପରେ ଯେତେବେଳେ ମୁହଁ ଧୋଇ କୁଳି କରିସାରିଲା, ମୁଁ କହିଲି, ''ଜେନି, ଠିକ୍ ଅଛି, ତୁମର ଗୁରୁମାନଙ୍କ ଉପରେ ବିଶ୍ୱାସ ନାହିଁ; କିନ୍ତୁ ପ୍ଲିଜ ତୁମେ ମୋର ଗୁରୁଙ୍କୁ ସାକ୍ଷାତ କରିବ ଚାଲ ସେ ହେଉଛନ୍ତି ବେଶ ଅଲଗା ପ୍ରକାରର । ମୁଁ ଜାଣେ ନାହିଁ ଯେ ପରିଣାମ କ'ଣ ହେବ; କିନ୍ତୁ ମୋର ବିଶ୍ୱାସ ଯେ ତାଙ୍କର ଆଶୀର୍ବାଦ ତୁମପାଇଁ ଉତ୍ତମ ପ୍ରମାଣିତ ହେବ । ପ୍ଲିଜ୍ ଜେନି !''

''ଠିକ୍ ଅଛି'', ସେ କହିଲା, ''ତୁମେ ଭଲ ଲୋକ ପରି ଜଣାପଡୁଛ, ମୁଁ ଯିବି; କିନ୍ତୁ କେବେ ?''

: ''ତୁମେ ଏଇଠି କିଛି ସମୟ ଅପେକ୍ଷା କର । ମୁଁ ତାଙ୍କ ନିକଟକୁ ଯାଇ ବୁଝିଆସିବି ଯେ ସେ କେବେ ତୁମକୁ ସାକ୍ଷାତ କରିପାରିବେ, ଦୟାକରି ମୋର ଫେରିବା ପୂର୍ବରୁ ଚାଲିଯିବ ନାହିଁ । ଠିକ୍ ତ ?''

ମୁଁ ଭାବୁଛି ସେଦିନ ମୁଁ ଯେତେ ଜୋରରେ ଦୌଡ଼ି ବାବାଜିଙ୍କ ପାଖରେ ପହଞ୍ଚିଲି, ସେପରି କେବେହେଲେ ଦୌଡ଼ି ନାହିଁ । ବାବାଜୀ ଗୁମ୍ଫା ସାମ୍ନାରେ ଠିଆ ହୋଇଥିଲେ । ମୁଁ ଏତେ ଧଇଁସଇଁ ହୋଇ ଯାଇଥିଲି ଯେ, ମୋତେ ପ୍ରଥମେ ଲମ୍ବା ନିଃଶ୍ୱାସ ନେଇ ସମ୍ଭାଳି ନେବାକୁ ପଡ଼ିଲା । ''ଭାରି ଜୋର୍‌ରେ ଦୌଡ଼ିଲ'', ବାବାଜୀ ଟିପ୍ପଣୀ ଦେଲେ ।

''ବାବାଜୀ'', ମୁଁ ଜଲଦି ଜଲଦି କହିଲି, ''ଜଣେ ଆମେରିକୀୟ ଯୁବତୀକୁ ଆପଣଙ୍କ ନିକଟକୁ ଆଣିବାକୁ ଚାହୁଁଛି...''

''ଆହା ! ତାହାହେଲେ ଏବେ ଯୋଗୀ ଜଣେ ଆମେରିକୀୟ ଯୁବତୀକୁ ଭେଟିଛି ଆଉ...'' ମୁଁ ପୂର୍ବରୁ ସେପରି କେବେ କରି ନ ଥିଲି; କିନ୍ତୁ ସେତେବେଳେ ମୁଁ ତାଙ୍କ

କଥାରେ ବାଧା ଦେଇ କହିଲି, ‘‘ବାବାଜୀ, ସେମିତି କଥା ନୁହେଁ ଯେ ମୁଁ... ନା, ନା, ସେ ଭାରି ଅସୁସ୍ଥ ଆଉ... ।’’

‘‘ତାକୁ ଡାକ୍ତରଙ୍କ ପାଖକୁ ନେଇଯାଅ । ଡିଭାଇନ ଲାଇଫ୍ ସୋସାଇଟିରେ ଡାକ୍ତରଖାନା ଅଛି । ମୁଁ ତ ଡାକ୍ତର ନୁହେଁ । ଆଉ ଯାହା ବି ହେଉ ମୁଁ ବର୍ତ୍ତମାନ କୌଣସି ଆମେରିକୀୟ ଝିଅକୁ ଭେଟିବାକୁ ଚାହୁଁ ନାହିଁ ।’’

‘‘କିନ୍ତୁ ବାବାଜୀ’’, ମୁଁ ଦୃଷ୍ଟିରେ ଅନୁନୟ ଭରି କହିଲି, ‘‘ଏତେ କଠୋର ହୁଅନ୍ତୁ ନାହିଁ । ତାକୁ ଆପଣଙ୍କର ଆଶୀର୍ବାଦର ଆବଶ୍ୟକତା ଅଛି । ତା’ ସହିତ ଆପଣ କଥାବାର୍ତ୍ତା କରିବା ଦରକାର ନାହିଁ । ଖାଲି ଆପଣଙ୍କର ପବିତ୍ର ଦୃଷ୍ଟି ତା’ ଉପରେ ପଡ଼ିଲେ ହେଲା । ଦୟା କରନ୍ତୁ ବାବାଜୀ...’’

ବାବାଜୀ ସ୍ନେହର ସହିତ ତାଙ୍କର ହାତ ମୋ କାନ୍ଧରେ ରଖି ମୃଦୁ ହସିଲେ, ‘‘ବାପା, ମୁଁ ତୁମକୁ ପରୀକ୍ଷା କରୁଥିଲି । ମୁଁ ଅବଶ୍ୟ ତାକୁ ଭେଟିବି । ତାକୁ ନେଇଆସିବ, ନା ମୁଁ ତଳକୁ ଯିବି ?’’

‘‘ନା, ନା, ମୁଁ ତାକୁ ହିଁ ନେଇଆସିବି’’, ମୁଁ କହିଲି ଓ ତାଙ୍କୁ ଧନ୍ୟବାଦ ନ ଜଣାଇ ତୀର ପରି ଛୁଟିଗଲି । ସେ ସେହିଠାରେ ଥିଲା, ମୋତେ ଅପେକ୍ଷା କରି ।

‘‘ଆସ’’, ମୁଁ କହିଲି, ‘‘ସେ ତୁମକୁ ଭେଟିବେ ।’’

ଏଥର ଆମେ ଧୀରେ ଧୀରେ ଚାଲିଲୁ, କାରଣ ସେ ଏତେ ଦୁର୍ବଳ ଥିଲା ଯେ ତାକୁ କଷ୍ଟକରି ଚାଲିବାକୁ ପଡୁଥିଲା । ଅଧିକାଂଶ ସମୟ ମୋତେ ଆଶ୍ରୟ କରି ଚାଲୁଥିଲା । ଗୁମ୍ଫାରେ ପହଞ୍ଚିଲା ବେଳକୁ ତା’ର ଭାଙ୍ଗିପଡ଼ିବା ପରି ଅବସ୍ଥା ହୋଇଯାଇ ଥାଏ । ‘‘ମୋ କମଣ୍ଡଳୁରୁ ତାକୁ ପାଣି ଦିଅ’’, ବାବାଜୀ ହିନ୍ଦୀରେ କହିଲେ, ‘‘ଆଉ ତାକୁ ସତରଞ୍ଜିରେ ବସାଅ ।’’

ସେ ଧୀରେ ଧୀରେ ସାବଧାନତାର ସହିତ ଅଳ୍ପ ପାଣି ପିଇଲା, ବୋଧହୁଏ ଡରୁଥିଲା ଯେ କାଳେ ପୁଣି ବାନ୍ତି ହୋଇଯିବ । ସେ ଯେତେବେଳେ ବସିଲା, ତା’ଆଡ଼କୁ ମୁହଁ କରି ବାବାଜୀ ବସିଗଲେ । ସେ ତାଙ୍କର ଡାହାଣ ହାତକୁ ବଢ଼ାଇ ଆଶୀର୍ବାଦ କରିବାକୁ ତା’ର ମସ୍ତକରେ ଲଗାଇଲେ । ସେ ସାଙ୍ଗେ ସାଙ୍ଗେ ଆରମ୍ଭ କରିଦେଲା । ଖାଣ୍ଟି ଆମେରିକୀୟ ଉଚ୍ଚାରଣରେ ନିଜର ପୂରା କାହାଣୀ କହି ଚାଲିଲା । ମୋତେ ଲାଗିଲା, ସେ ଖୁବ୍ ଜଲ୍‌ଦି ଜଲ୍‌ଦି କଥା କହୁଛି ଏବଂ ସ୍ପଷ୍ଟ ଭାବରେ କହିବାପାଇଁ ତା’ କଥାରେ ବାଧା ଦେଲି । ବାବାଜୀ କହିଲେ, ‘‘ନା ନା କହିଚାଲ, ମୁଁ ତୁମ କଥା ପୂରାପୂରି ଭାବରେ ବୁଝିପାରୁଛି ।

କହ ସବୁ କଥା ।'' ତାଙ୍କର ଉଚ୍ଚାରଣ ପୂରା ତା'ର ଉଚ୍ଚାରଣ ପରି ଥିଲା । ଜେନି ତା'ର କାହାଣୀ ସମାପ୍ତ କରିବାକୁ ଯାଇ କହିଲା, ''ଆଉ ଡାକ୍ତରମାନେ କହିଛନ୍ତି ଯେ, ମୋ ପାଖରେ ମାତ୍ର ଦେଢ଼ମାସ ସମୟ ଅଛି । ମୁଁ ଶୀଘ୍ର ମରିବାକୁ ଯାଉଛି । ମୁଁ ଜୀବନର ଏହି ମୋଡ଼ରେ ଠିଆ ହୋଇଛି ସାର୍ !''

ବାବାଜୀଙ୍କର ଆଖି ଦୁଇଟି ଅସୀମ ଦୟାରେ ଭରିଗଲା । ''ମା', ମୋର ପ୍ରିୟ କନ୍ୟା'', ସେ କହିଲେ, ''ଆମେ ସମସ୍ତେ ମରିବା । ତୁମେ, ମୁଁ, ସେ, ଆମେ ସମସ୍ତେ ମରିବା । ତାହାକୁ ଶାନ୍ତ ମନରେ ସ୍ୱୀକାର କର । ମୃତ୍ୟୁ ସହିତ ବୁଝାମଣା କରିନେଲେ ସେ ବନ୍ଧୁ ହୋଇଯାଏ । ମୁଁ ତୁମକୁ ଏକ ସରଳ ଧ୍ୟାନ-କ୍ରିୟା ଏବଂ ନିଃଶ୍ୱାସ ନେବାର ପ୍ରଣାଳୀ ଶିଖାଇ ଦେଉଛି, ଯାହାଦ୍ୱାରା ତୁମର କଷ୍ଟ କମିଯିବ । ଶାନ୍ତିରେ ନିଜର ଦେଶକୁ ଫେରିଯାଅ । ମହାତ୍ମାମାନଙ୍କର ଆଶୀର୍ବାଦ ତୁମ ସହିତ ଅଛି ।''

ଏହାପରେ ସେ ତାକୁ ଏକ ସରଳ ପ୍ରଣାଳୀ ଶିଖାଇଲେ, ଯାହାର ଅଭ୍ୟାସ ତାକୁ ଦିନରେ ଦୁଇଥର କରିବାର ଥିଲା । ତା'ର ମୁହଁରୁ ଚିନ୍ତାର ରେଖାଗୁଡ଼ିକ ମିଳେଇଗଲା ଓ ସେ ପୂରାପୂରି ଶାନ୍ତ ଓ ସ୍ଥିର ଦେଖାଗଲା । ବାବାଜୀ ମୋତେ ତାକୁ ସ୍ୱର୍ଗାଶ୍ରମରେ ଛାଡ଼ି ଆସିବାକୁ କହିଲେ । ଯେତେବେଳେ ଆମେ ତଳକୁ ଆସିଲୁ, ଜେନି ଆଶ୍ଚର୍ଯ୍ୟ ହୋଇଗଲା ଯେ ସେ ଦି'ଘଣ୍ଟାରୁ ଅଧିକ ସମୟ ଧରି ବାନ୍ତି କରି ନ ଥିଲା । ସେ ମୋତେ ବହୁତ ଧନ୍ୟବାଦ ଦେଲା । ତାକୁ ସ୍ୱର୍ଗାଶ୍ରମରେ ଛାଡ଼ିଦେଇ ମୁଁ ଗୁମ୍ଫାକୁ ଫେରିଆସିଲି ।

''ତାକୁ କ'ଣ ଭଲ ଲାଗୁଛି ?'' ବାବାଜୀ ପଚାରିଲେ । ମୁଁ କହିଲି, ''ହଁ'' ।

''ତୁମେ ଗୋଟିଏ କାର୍ମିକ ଋଣ ଶୋଧ କଲ, ଯାହା ତୁମର ପୂର୍ବଜନ୍ମରୁ ତୁମ ଉପରେ ଭାର ହୋଇ ଥିଲା'', ବାବାଜୀ କହିଲେ । ''କେତେ ଜନ୍ମ ପୂର୍ବରୁ ତୁମେ ବେମାର ଥିବାବେଳେ ସେ ତୁମର ଶୁଶ୍ରୂଷା କରିଥିଲା । ଏବେ ଯେତେବେଳେ ସେ କଷ୍ଟରେ ଥିଲା, ତୁମେ ତା'ର ସହାୟତା କଲ । ଏବେ ସେ ବିଷୟରେ ଆଉ କିଛି ପ୍ରଶ୍ନ ନାହିଁ, ବୁଝିଲ ? ଆଉ ଗୋଟାଏ କଥା, ମୁଁ ତାକୁ ଆଉ ଭେଟିବାକୁ ଚାହେଁ ନାହିଁ ।''

''ଆଜ୍ଞା ବାବାଜୀ'', ମୁଁ କୁଣ୍ଠାର ସହିତ କହିଲି କାରଣ ମୋତେ ଜେନି ସହିତ ପୂର୍ବ ଜନ୍ମର ସମ୍ପର୍କ ବିଷୟ ଜାଣିଥିଲେ ଖୁସି ଲାଗିଥାଆନ୍ତା । କିନ୍ତୁ ମୁଁ ଏକଥା ମଧ୍ୟ ଜାଣିଥିଲି ଯେ ସେ ଜାଣନ୍ତି କ'ଣ କରିବା ଉଚିତ, କ'ଣ ଅନୁଚିତ, ଆଉ ଏହି ପାଠ ଅନୁଭବରୁ ଶିଖିଥିଲି ।

ମୁଁ ବାବାଜୀଙ୍କର ଅନୁମତି ନେଇ ଯେଉଁଦିନ ସେ ଋଷିକେଶ ଛାଡୁଥିଲା, ସେଦିନ ତାକୁ ବିଦାୟ ଜଣାଇବାକୁ ଗଲି । ସେ ପୂର୍ବାପେକ୍ଷା ଭଲ ଦିଶୁଥିଲା । ସେ କହିଲା ଯେ ଗତ

ଦୁଇଦିନ ଭିତରେ ସେ କେବଳ ଦୁଇଥର ବାନ୍ତି କରିଛି, ସେ କିଛି ଚା' ପିଇ ପାରିଛି ଏବଂ ଖଣ୍ଡିଏ ବିସ୍କୁଟ ମଧ୍ୟ ଖାଇପାରିଛି । ସେ ମୋତେ ବାବାଜୀଙ୍କୁ ଲକ୍ଷଲକ୍ଷ ଧନ୍ୟବାଦ ଜଣାଇବାକୁ କହିଲା ଏବଂ ତାଙ୍କୁ ଜଣାଇଦେବାକୁ କହିଲା ଯେ, ସେ ତାଙ୍କୁ କେବେହେଲେ ଭୁଲିବ ନାହିଁ । ''ସେ ମୋ ପାଇଁ ଯୀଶୁଖ୍ରୀଷ୍ଟ'', ସେ କହିଲା ।

ସେ ମୋ ସହିତ ସମ୍ପର୍କ ରଖିବାକୁ ଚାହୁଁଥିଲା; କିନ୍ତୁ ମୋର କୌଣସି ଠିକଣା କିମ୍ବା ଟେଲିଫୋନ ନମ୍ବର ନ ଥିଲା । ବିଦାୟ ନେବାର କିଛି ସମୟ ପୂର୍ବରୁ ସେ ମୋତେ ଆଲିଙ୍ଗନ କରି ମୋର ଗାଲରେ ଚୁମ୍ବନ କରି ମୋତେ ଚକିତ କରିଦେଲା । ଲାଜେଇ ଯାଇ ମୁଁ ତାକୁ ଛାଡ଼ିଦେଇ ଗୁମ୍ଫାକୁ ଫେରିଆସିଲି । ''ଚମକି ପଡ଼ିଲ, ନା ?'' ବାବାଜୀ ଧୀରେ ଧୀରେ ହସି ହସି ନିଜକୁ ନିଜେ କେବଳ ଏତିକି ହିଁ କହିଲେ ।

× × ×

ସମୟର ଚକ ଘୂରିଲା । ଖୁବ୍ ଶୀଘ୍ର ଜେନି ଅତୀତର ଘଟଣା ହୋଇଗଲା । କେବେ କେମିତି ମୁଁ ଭାବିଲି ନିଶ୍ଚୟ, ଯେ ତା'ର କ'ଣ ହେଲା; କିନ୍ତୁ କେବଳ ଏତିକି ମାତ୍ର । ବାବାଜୀ କେବେହେଲେ କିଛି କହି ନ ଥିଲେ ।

ତିନିବର୍ଷ ପରେ ମୁଁ ଏକ ବିଶେଷ ଏକାନ୍ତବାସପାଇଁ ଋଷିକେଶ ଯାଇଥିଲି । ବାବାଜୀ କୈଳାସ ପର୍ବତକୁ ଯାଇଥିଲେ । ସେ ମୋତେ ସାଙ୍ଗରେ ନେବାକୁ ମନା କରିଦେଇଥିଲେ । ମୋର ଦିନଚର୍ଯ୍ୟାପାଇଁ ଏକ ବିଶେଷ ନିର୍ଦ୍ଦେଶ ଦିଆଯାଇଥିଲା । ମୋତେ ଏକାନ୍ତବାସ ପରେ ତାଙ୍କୁ ଅପେକ୍ଷା କରିବାର ଥିଲା ।

ଦିନେ ସନ୍ଧ୍ୟାରେ ମୁଁ ସ୍ୱର୍ଗାଶ୍ରମ ପାଖରେ ଗଙ୍ଗାକୂଳରେ ବସିଥାଏ । ମୁଁ ସୁନେଲି ବାଳ ଥିବା ଗୋଟିଏ ଝିଅକୁ ନଦୀ ଆଡ଼କୁ ଆସୁବାର ଦେଖିଲି । ମୋତେ ମୋର ଆଖିକୁ ବିଶ୍ୱାସ ହେଲା ନାହିଁ । ସେ କ'ଣ ଜେନି ଥିଲା ? ମୋର ଶେଷଥର ଦେଖିଥିବା ତୁଳନାରେ ସେ ଟିକିଏ ମୋଟା ଦିଶୁଥିଲା; କିନ୍ତୁ ସେ ନିଶ୍ଚିତ ଭାବରେ ଜେନି ଥିଲା । ମୁଁ ସ୍ଥିର ନିଶ୍ଚିତ ହେବାକୁ ଚାହିଁଲି ଓ ତା' ଆଡ଼କୁ ଦୌଡ଼ିଲି । ମୁଁ ତା' ପଛରେ ରହି ଧୀରେ ଡାକିଲି, ''ଜେନି ?''

ସେ ବୁଲିପଡ଼ି ମୋତେ ଦେଖିଲା, ପୁଣି ଚିତ୍କାର କଲା, ''ହେ ଭଗବାନ୍ ! ମଧୁ, ମୋର ବିଶ୍ୱାସ ହେଉ ନାହିଁ !'' ସେ ଡେଇଁପଡ଼ି ଠିଆ ହୋଇଗଲା, ମୋତେ ଆଲିଙ୍ଗନ କଲା ଓ ମୋ ଗାଲରେ ଚୁମ୍ବନ କଲା । ପଚାରିଲା, ''ଇଏ ତୁମର କ'ଣ ହୋଇଯାଇଛି ? ତୁମେ ଭଲଭଲ କପଡ଼ା ପିନ୍ଧିଛ, ପ୍ୟାଣ୍ଟ୍, ଆଉ କମିଜ, ନିଜର ସୁନ୍ଦର କେଶକୁ କାଟି

ଦେଇଛ । ବସ କଥାବାର୍ତ୍ତା କରିବା, ମୁଁ ତୁମକୁ ଏଠିସେଠି ଖୋଜୁଛି, ଦି'ଥର ଗୁମ୍ଫାକୁ ଗଲି, ସେଠାରେ ଜଣେ ଲଙ୍ଗଳା ବାବାଜୀ ଥିଲେ, ଯେ ଇଂରାଜୀ ଜାଣି ନ ଥିଲେ ।''

ତା'ପରେ ସେ କହିଲା କେମିତି ଫିଲାଡେଲଫିଆ ପହଞ୍ଚିଲା ପରେ ତା'ର ସ୍ୱାସ୍ଥ୍ୟ ସୁଧୁରିବାକୁ ଆରମ୍ଭ କଲା । ତା'ର ବାନ୍ତି କମ୍ ହୋଇଗଲା ଏବଂ ଶୀଘ୍ର ବନ୍ଦ ମଧ୍ୟ ହୋଇଗଲା । ତା'ର ପେଟ ମୋଡ଼ିହେବା ମଧ୍ୟ ବନ୍ଦ ହୋଇଗଲା ଏବଂ ପୀଡ଼ାନାଶକ ଔଷଧର ଆବଶ୍ୟକତା ପଡ଼ିଲା ନାହିଁ । ଚିକିତ୍ସା ରୂପରେ ସେ କେବଳ ବାବାଜୀ ଶିଖାଇଥିବା ପ୍ରଣାଳୀର ବ୍ୟବହାର କରୁଥିଲା । ସେ ସାମାନ୍ୟ ଖାଦ୍ୟ ଖାଇପାରିଲା । ଦି'ମାସ ପରେ ମଧ୍ୟ (ଯାହା ଡାକ୍ତରମାନଙ୍କ ମତରେ ଥିଲା ତା'ର ଜୀବିତ ରହିବାର ସୀମାରେଖା) ସେ ବଞ୍ଚିଲା ଏବଂ ଏତେ ସୁସ୍ଥ ଭାବରେ, ଯେମିତି ସେ ପୂର୍ବରୁ କେବେ ନ ଥିଲା । ଆଉ ଦି' ସପ୍ତାହ ଅପେକ୍ଷା କଲା ପରେ ସେ ନିଜର ଡାକ୍ତରଙ୍କ ପାଖକୁ ଗଲା । ସେ ତାକୁ ବଞ୍ଚିଥିବାର ଦେଖି ଓ ଏତେ ସୁସ୍ଥ ଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କେତେଗୁଡ଼ିଏ ପରୀକ୍ଷା କରିବା ପରେ ତାକୁ ସୁସ୍ଥ ବୋଲି ଘୋଷଣା କଲେ । କ୍ୟାନ୍ସର ଭଲ ହୋଇ ଯାଇଥିଲା । ସେ କହିଲେ ଏହା ସ୍ୱତଃ ଉପଶମନର ଏକ ବିରଳ ଉଦାହରଣ ଥିଲା । ପ୍ରକୃତରେ କହିବାକୁ ଗଲେ ଏହା ଏକ ଚମତ୍କାର ଥିଲା । ତା'ର ମୋ ସହିତ ସମ୍ପର୍କ କରିବାର କୌଣସି ଉପାୟ ନ ଥିଲା । ଏହି ଭିତରେ ତାକୁ ଗୋଟିଏ ପ୍ରୟୋଗଶାଳାରେ ଚାକିରି ମିଳିଗଲା ଏବଂ ଦୀର୍ଘ ସମୟ ଧରି ତାକୁ ଛୁଟି ମିଳିଲା ନାହିଁ । ତାକୁ ଦୁଇ ସପ୍ତାହର ଛୁଟି ମିଳିବା ମାତ୍ରେ ସେ ଭାରତକୁ ଆସିବାରେ ବିଳମ୍ବ କଲା ନାହିଁ ଏବଂ ଋଷିକେଶ ପହଞ୍ଚିଗଲା । ପରଦିନ ତାକୁ ଦିଲ୍ଲୀରୁ ଆମେରିକାକୁ ଉଡ଼ିଯିବାର ଥିଲା ।

''ମୁଁ କୌଣସି ନା କୌଣସି ଉପାୟରେ ତୁମକୁ ଭେଟିବାକୁ ଚାହୁଁଥିଲି, ଆଉ ମୋତେ ବ୍ୟକ୍ତିଗତ ରୂପରେ ଗୁରୁଙ୍କୁ ସାକ୍ଷାତ କରିବାର ଅଛି, ତାଙ୍କୁ ଧନ୍ୟବାଦ ଦେବାର ଅଛି । ଆଲିଙ୍ଗନ କରିବାର ଅଛି ଆଉ...''

''ମିନିଟିଏ ରହ'', ମୁଁ କହିଲି, ''ତୁମେ ତାଙ୍କୁ ଭେଟିପାରିବ ନାହିଁ । ସେ ତିବ୍ବତରେ ଥିବା କୈଳାସ ପର୍ବତକୁ ଯାଇଛନ୍ତି । ମାସକ ପୂର୍ବରୁ ତାଙ୍କର ଫେରିବାର ସମ୍ଭାବନା ନାହିଁ । ତାଙ୍କ ସହିତ ଭେଟ ହେଲେ ମୁଁ ତୁମର ଧନ୍ୟବାଦ ତାଙ୍କ ପର୍ଯ୍ୟନ୍ତ ପହଞ୍ଚାଇ ଦେବି ।''

: ''ମୋ କଥା ହେଉଛି, ତାଙ୍କ ସହିତ ସାଢ଼େ ତିନିବର୍ଷ ବିତାଇବା ପରେ ବାବାଜୀ ମୋତେ ଘରକୁ ଫେରିଯିବାକୁ କହିଲେ । ଏବେ ମୁଁ ବର୍ଷରେ ଥରେ ମାସକପାଇଁ ତାଙ୍କ ସହିତ ରହେ, ସେ ବାଛିଥିବା କୌଣସି ସ୍ଥାନରେ । ସୌଭାଗ୍ୟବଶତଃ ଆମର ଦେଖା ହୋଇଗଲା । ହୋଇପାରେ ଏଇ ଯୋଜନାଟି ତାଙ୍କରି ।''

‘‘ତା’ହେଲେ ଶ୍ରୀ ବାରବୁଲା, ତୁମେ କ’ଣ ମୋତେ କିଛି ଠିକଣା ଆଉ ଫୋନ ନମ୍ବର ଦେଇପାରିବ, ଯେମିତି ମୁଁ ତୁମ ସହିତ ସମ୍ପର୍କ ରଖି ପାରିବି ?’’

ମୁଁ ତାକୁ ମୋର ଅସଲ ନାଁ, ଠିକଣା ଓ ଫୋନ୍ ନମ୍ବର ଦେଇଦେଲି । ଆମେ କିଛି ସମୟ ବୁଲାବୁଲି କରି ଓ କଥାବାର୍ତ୍ତା କରି ବିତାଇଲୁ । ଋଷିକେଶ ଦିନକୁ ଦିନ ବ୍ୟସ୍ତତର ଓ କୋଳାହଳମୟ ହୋଇ ଯାଉଥିଲା । ଆମେ ମାଡ୍ରାସ କାଫେରେ କଫି ପିଇଲୁ । ମୁଁ ତାକୁ ମୋର ଜୀବନ ଓ ମୋର ଜୀବନରେ ବାବାଜୀ କିପରି ଆସିଲେ, ସେସବୁ କଥା କହିଲି । ତା’ପରେ ଆମେ ସ୍ୱର୍ଗାଶ୍ରମକୁ ଗଲୁ, ଯେଉଁଠାରେ ସେ କୋଠରି ନେଇଥିଲା ।

ସକାଳେ ନୌକାଘାଟ ପାଖରେ ମୁଁ ତାକୁ ବିଦାୟ ଦେଲି । ଅନ୍ୟ କୂଳରେ ଗୋଟାଏ ଟ୍ୟାକ୍ସି ତାକୁ ଅପେକ୍ଷା କରିଥାଏ । ତାକୁ ଦିଲ୍ଲୀ ଯାଇ ରାତିଅଧରେ ଉଡ଼ାଜାହାଜ ଧରିବାର ଥିଲା ।

ସେ ମୋତେ ତା’ର ଠିକଣା ଦେଲା; କିନ୍ତୁ ମୁଁ ତାକୁ ଚିଠି ଲେଖିଲି ନାହିଁ । ସ୍ୱଭାବଗତ ଭାବରେ ମୋର ଚିଠି ଲେଖିବା ପସନ୍ଦ ନୁହେଁ, ଏହାକୁ ମଧ୍ୟ ସ୍ଥଗିତ ରଖିଲି ।

ଯେତେବେଳେ ବାବାଜୀ ଋଷିକେଶ ଫେରିଲେ, ମୁଁ ତାଙ୍କୁ ସବୁ କଥା କହିଲି ଓ ଜେନିର ଧନ୍ୟବାଦ ଜଣାଇଦେଲି । ‘‘ଆହା, ଠିକ୍ ଅଛି । ସେ ଗୋଟିଏ ଭଲ ଝିଅ ଓ ମୋର ଆଶୀର୍ବାଦ ତାହା ସହିତ ରହିଛି । ମୁଁ ତା’ର ଦେଖାଚାହାଁ କରିବି ଓ ଯାହା ତା’ ପାଇଁ ଠିକ୍ ସେକଥା କରିବି ।’’

ମାସକ ପରେ ମୁଁ ଘରକୁ ଫେରିଆସିଲି । ଦି’ମାସ ପରେ ମୋ ପାଖକୁ ଆମେରିକାରୁ ଗୋଟିଏ ଚିଠି ଆସିଲା, ମୁଁ ଭାବିଲି ସେଇଟି ଜେନିର ହୋଇଥିବ ଓ ଆଗ୍ରହର ସହିତ ଖୋଲିଲି । ତା’ର ହିଁ ଥିଲା; କିନ୍ତୁ ତା’ର ଭାଇର ଏକ ଟିପ୍ପଣୀ ସହିତ, ଯାହା ଏହିପରି ଥିଲା :

ପ୍ରିୟ ଶ୍ରୀ ଏମ୍,

ମୁଁ ହେଉଛି ବର୍ଣ୍ଣାଡ୍ । ଜେନିର ଭାଇ । ଷୋହଳ ତାରିଖ ଅକ୍ଟୋବର ଦିନ ରାତିରେ ଶୋଇଥିବା ସମୟରେ ଜେନିର ମୃତ୍ୟୁ ହୋଇଯାଇଛି । ଭାରତରୁ ଫେରିବା ପରେ ସେ ସୁସ୍ଥ ଥିଲା । ଡାକ୍ତରମାନଙ୍କର ରିପୋର୍ଟ ଅନୁସାରେ ସେ ନିଦରେ ଶୋଇଥିବା ସମୟରେ ହୃଦ୍‌ଘାତରୁ ମରିଯାଇଛି । ତା’ର ବିଛଣା ପାଖରେ ଆପଣଙ୍କୁ ସେ ଲେଖିଥିବା ଗୋଟିଏ କୌତୂହଳୋଦ୍ଦୀପକ; କିନ୍ତୁ ଆମମାନଙ୍କପାଇଁ ବେଶ ପ୍ରହେଳିକାମୟ ଗୋଟିଏ ଚିଠି ବନ୍ଦ ଲଫାଫାରେ ମିଳିଛି । ବୋଧହୁଏ ପରଦିନ ସେ ଆପଣଙ୍କୁ ସେ ଚିଠିଟି ପଠାଇବାକୁ ଚାହୁଁଥିଲା;

କିନ୍ତୁ ତାହା କରିପାରିଲା ନାହିଁ, ତେଣୁ ଆପଣଙ୍କୁ ସେଇଟି ପଠାଇଦେବା ଉଚିତ ହେବ ବୋଲି ଭାବିଲୁ । ଆପଣ ଉତ୍ତର ଦେବାକୁ ବାଧ୍ୟ ନୁହନ୍ତି; କିନ୍ତୁ ଯଦି ଦେବେ, ତେବେ ଆମକୁ, ବିଶେଷଭାବରେ ଜେନିର ମା'ଙ୍କୁ ଭଲ ଲାଗିବ । ଧନ୍ୟବାଦ ।

ବର୍ଣ୍ଣାଡ଼୍

ମୁଁ ଜେନିର ଚିଠି ଖୋଲିଲି, ଯେଉଁଟି ଅନ୍ୟ ଲଫାଫାରେ ଥିଲା । ସେଥିରେ ଲେଖା ଥିଲା –

ପ୍ରିୟ ମଧୁ,

ତୁମ ସହିତ ପୁଣି ଦେଖାହେବାରୁ ଭାରି ଖୁସି ଲାଗିଲା । ମୋର ବିଶ୍ୱାସ, ତୁମେ ଗୁରୁଙ୍କୁ ମୋର ଧନ୍ୟବାଦ ଜଣାଇ ଦେଇଥିବ । ମୁଁ ପୂରାପୂରି ଭାବରେ ସୁସ୍ଥ ଅଛି; କିନ୍ତୁ କାଲି ରାତିରେ ଗୋଟାଏ ବିଶେଷ ଘଟଣା ଘଟିଲା, ଯାହା ମୁଁ ତୁମକୁ କହିବାକୁ ଚାହେଁ । ମୁଁ ଗୋଟିଏ ଭାରି ସୁସ୍ପଷ୍ଟ ସ୍ୱପ୍ନ ଦେଖିଲି । ଗୁରୁ ମୋ ସାମ୍ନାରେ ପ୍ରକଟ ହେଲେ ଓ ଖୁବ୍ ସୁନ୍ଦର ଭାବରେ ହସି କହିଲେ, ''ତାହାହେଲେ ପ୍ରିୟ କନ୍ୟା, ତୁମେ ପୂରା ଠିକ୍ ଅଛ ନା ?''

ମୁଁ କହିଲି, ''ହଁ ଗୁରୁଜୀ ।''

''ତେବେ କ'ଣ ଏହା ଘର ବାହୁଡ଼ା ସମୟ ନୁହେଁ, ମା' ? ନିଜର ପ୍ରକୃତ ଘର ? ମୁଁ ସେଠାରେ ତୁମକୁ ସ୍ୱାଗତ କରିବାପାଇଁ ଉପସ୍ଥିତ ରହିବି ।''

ତା'ପରେ ସେ ଇନ୍ଦ୍ରଧନୁ ପରି ଜ୍ୟୋତିର ଚାକଚକ୍ୟ ମଧ୍ୟରେ ବିଲୀନ ହୋଇଗଲେ । ମଧୁ, ତୁମ କ'ଣ ଜାଣିଛ, ଏହାର ଅର୍ଥ କ'ଣ ? ଯାହା ବି ହେଉ, ଦେଖାହେଲେ ତାଙ୍କୁ ପଚାରିବ । ଆଶାକରେ କେବେହେଲେ ତୁମ ସହିତ ଦେଖାହେବ । ଦୟାକରି ଉତ୍ତର ଦେବ ଓ ସମ୍ପର୍କ ଜାରିରଖିବ ।

ସ୍ନେହ ସହ

ତୁମର ଜେନି ।

ମୁଁ ଶୋଇବା ଘରକୁ ଯାଇ ଏମିତି କାନ୍ଦିଲି, ଯେମିତି କେବେ ବି କାନ୍ଦି ନ ଥିଲି । ମୁଁ ଏକ ଉତ୍ତମ ବନ୍ଧୁକୁ ହରାଇ ଦେଇଥିଲି । ଆଉ ବାବାଜୀ ଯାହା କହିଥିଲେ, ତା'ର କ'ଣ ଅର୍ଥ ଥିଲା ?

ରାତିରେ ଯେତେବେଳେ ମୁଁ ଧ୍ୟାନରେ ବସିଲି, ମୁଁ ହୃଦୟଚକ୍ରରେ ତାଙ୍କୁ କଳ୍ପନା କରି ବାବାଜୀଙ୍କୁ ପଚାରିଲି, ''ଦୟାକରି କହନ୍ତୁ ବାବାଜୀ, ଜେନିର କ'ଣ ହେଲା ? ମୁଁ ଜାଣେ ଆପଣ ଏପରି ପ୍ରଶ୍ନର ଉତ୍ତର ଦେବାକୁ ପସନ୍ଦ କରନ୍ତି ନାହିଁ । ମୁଁ ଏକଥା ବି ଜାଣେ

ଯେ ଆପଣ ମୋତେ ଆପଣଙ୍କ ଉପରେ ନିର୍ଭର କରି ରହିବାକୁ ଚାହାଁନ୍ତି ନାହିଁ; କିନ୍ତୁ ଦୟାକରି ଏଇ ଥରକପାଇଁ ମୋ ପ୍ରଶ୍ନର ଜବାବ ଦିଅନ୍ତୁ । ଜେନି ମୋର ପ୍ରିୟ ବାନ୍ଧବୀ ଥିଲା, ଆପଣ ମଧ୍ୟ ତାକୁ ସ୍ନେହ କରୁଥିଲେ ।''

ଉତ୍ତର ସେହିଦିନ ରାତିରେ ଏକ ସ୍ୱପ୍ନ ମାଧ୍ୟମରେ ଆସିଲା । ବାବାଜୀ ସାଧାରଣତଃ ଶୁଭ୍ର ଧୋତି ପିନ୍ଧୁଥିଲେ । ସେହି ରାତିରେ ସେ ବାଇଗଣୀ ରଙ୍ଗର ଧୋତି ପିନ୍ଧି ପ୍ରକଟ ହେଲେ । ''ପୁଣି ମୋତେ ଏହି ପ୍ରକାରର ପ୍ରଶ୍ନ କରିବ ନାହିଁ ।'' ସେ ମୋତେ କହିଲେ, ''ଆଉ ନିଜର ଧ୍ୟାନରେ ମୋତେ ବିରକ୍ତ କର ନାହିଁ । ଧ୍ୟାନ ହେଉଛି ଉଚ୍ଚତର ବିକାଶ ପାଇଁ ଏବଂ ଅନ୍ୟମାନଙ୍କର ସହାୟତାପାଇଁ, ଯେତେବେଳେ ମନ ସେତେବେଳେ ମୋତେ ଆହ୍ୱାନ କରିବାପାଇଁ ନୁହେଁ ।

ତେବେ ବି, ଯେତେବେଳେ ତୁମେ ପଚାରୁଛ, ତେବେ ଶୁଣ – ଯେତେବେଳେ ମୁଁ ଜେନିକୁ ଘରକୁ ଫେରିବାକୁ କହିଲି, ସେତେବେଳେ ମୋର ଉଦ୍ଦେଶ୍ୟ ଥିଲା ସେହି ଆରାମଦାୟକ ସ୍ଥାନ, ଯେଉଁଠାକୁ ପୃଥିବୀରେ କଠିନ ଜୀବନ ବିତାଇବା ପରେ ସବୁ ମଣିଷ ଯାଆନ୍ତି । ହଁ, ସେ ସେଠାରେ ଅଛି, ଆଉ ମୁଁ ସେଠାରେ ତାକୁ ସ୍ୱାଗତ କରିବାକୁ ଉପସ୍ଥିତ ଥିଲି । କିଛି ସମୟ ବିଶ୍ରାମ ଦେବାପରେ ମୁଁ ତାକୁ ଭାରତରେ ଉପଯୁକ୍ତ ଗର୍ଭ ପାଇବାପାଇଁ ସାହାଯ୍ୟ କରିବି ଓ ଆଧ୍ୟାତ୍ମିକ ପ୍ରଗତି ପାଇଁ ତାହାର ସହାୟତା କରିବି । ତୁମକୁ ମୁଁ ଏତିକି ହିଁ କହିବି । ଏହା ଉପରେ ଆଉ ପ୍ରଶ୍ନ କରିବାର ନାହିଁ ।''

ଏତିକି କହି ସେ ସୁନେଲି ବାଦଲ ପଛପଟେ ଅଦୃଶ୍ୟ ହୋଇଗଲେ । ଉଠିବା ବେଳକୁ ମୁଁ ଆଶ୍ୱସ୍ତ ଓ ବାବାଜୀଙ୍କ ପ୍ରତି କୃତଜ୍ଞ ଥିଲି । ବାବାଜୀ, ମୋର ପ୍ରକୃତ ବନ୍ଧୁ ଓ ଗୁରୁ !

× × ×

ଏବେ ତୃତୀୟ ଘଟଣା, ଯାହାକୁ ମୁଁ ମୋ ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା ବୋଲି ଭାବେ; ଶେଷରେ ମୋତେ ପରମ ଗୁରୁ ଶ୍ରୀ ଗୁରୁ ବାବାଜୀଙ୍କର ଦର୍ଶନ ମିଳିଲା । ତାହା ଏହି ପ୍ରକାରର ଥିଲା ।

ବାବାଜୀ ଓ ମୁଁ ନୀଳକଣ୍ଠ ପର୍ବତରେ ବୁଲୁଥିଲୁ । ଦୂରରୁ ଆମେ ଏକ ହାତୀର ବୋବାଳି ଶୁଣିଲୁ; କିନ୍ତୁ ନିଜନିଜ ଭିତରେ ମଗ୍ନ ହୋଇ ରହିଥିବାରୁ ସେ ବିଷୟରେ ଧ୍ୟାନ ଦେଲୁ ନାହିଁ । ଆମେ ଏକ ଉତ୍ତେଜକ ଆଲୋଚନାରେ ବ୍ୟସ୍ତ ଥିଲୁ । ବାବାଜୀ କହିଲେ, ଭବିଷ୍ୟତରେ ମୁଁ ଲୋକଙ୍କୁ କ୍ରିୟା ଯୋଗର ଦୀକ୍ଷା ଦେବି । ତା'ପରେ ସେ ସେହି ଏକୋଇଶଟି ଯୋଗ୍ୟତା ବିଷୟରେ କହିଲେ, ଯାହା ଦୀକ୍ଷା ନେବାକୁ ଇଚ୍ଛୁକ ଥିବା ବ୍ୟକ୍ତିର ଥିବା ଦରକାର ।

ମୁଁ କହିଲି, ସେ କହୁଥିବା ଯୋଗ୍ୟତାର ସୂଚୀ ଅନୁଯାୟୀ କ୍ରିୟାର ଦୀକ୍ଷାପାଇଁ ଯୋଗ୍ୟ ବ୍ୟକ୍ତି ମିଳିବା ପ୍ରାୟ ଅସମ୍ଭବ । ସେ କହିଲେ, ସେପରି କଥା ନୁହେଁ । ଏହା ମଧ୍ୟ କହିଲେ ଯେ ତାଙ୍କୁ ବୋଧହୁଏ ସାଧାରଣତଃ ଲୋକମାନଙ୍କର ଚରିତ୍ର ବିଷୟରେ ମୋର ବିଚାର ବହୁତ ଭଲ ନୁହେଁ । ମୁଁ କହିଲି, ଜଣେ ସାଧାରଣ ମଣିଷକୁ ତାଙ୍କଦ୍ୱାରା ଦିଆଯାଇଥିବା ଯୋଗ୍ୟତାର ମାପକାଠିରେ ମାପି ହେବ ନାହିଁ । ତେଣୁ ଅନୁରୋଧ କଲି ତାଙ୍କର ଯୋଗ୍ୟତାର ତାଲିକାରୁ କିଛି ଅଂଶ ବାଦ୍ ଦେବାପାଇଁ । ପ୍ରାୟ ଘଣ୍ଟାଏ ଉପରେ ଆମେ ଯୁକ୍ତିତର୍କ କଲୁ, ଏପରି ସାଧାରଣତଃ ହୁଏ ନାହିଁ । ଶେଷକୁ ସେ ତାଲିକାକୁ ଛୋଟ କରି ଦଶଟି ସର୍ତ୍ତ ରଖିଲେ, ତେବେ ବି ମୁଁ କହିଲି ଯେ, ମୋର ମତ ଅନୁସାରେ ପ୍ରଥମ ଚାରୋଟି ଯୋଗ୍ୟତା ଯଥେଷ୍ଟ ଥିଲା । ମୁଁ ତାଙ୍କୁ ପ୍ରାର୍ଥନା କଲି ଯେ ମଣିଷସମାଜ ପ୍ରତି ନିଜର କରୁଣା ହେତୁ ସେ ମୋର କଥା ମାନି ନିଅନ୍ତୁ ।

ସେ କହିଲେ ଯେ ସମୟ ବଦଳିଗଲାଣି ଏବଂ ଶିଷ୍ୟ ଗୁରୁଙ୍କୁ କରୁଣାର ଶିକ୍ଷା ଦେଲେଣି । ଏକଥା ଅସହ୍ୟ ଥିଲା । ମୋ ଆଖିକୁ ଲୁହ ଆସିଗଲା । ଯେତେବେଳେ ବାବାଜୀ ମୋତେ ସାନ୍ତ୍ୱନା ଦେଉଥିଲେ, ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ଏକ ଅପୂର୍ବ ସୁନ୍ଦର ସୁଗନ୍ଧ ପବନରେ ଖେଳିଗଲା । ବାବାଜୀ କହିଲେ, ''ହଉ ଠିକ୍ ଅଛି । କ୍ଷମା କର । ମୁଁ ତୁମକୁ ଆଘାତ ଦେଇଛି । ଏବେ ଲୁହ ପୋଛି ଠିଆ ହୁଅ । ତୁମର ଇଚ୍ଛା ପୂର୍ଣ୍ଣ ହେବାକୁ ଯାଉଛି ।'' ସେ ମୋ ପାଖରେ ଠିଆ ହୋଇଗଲେ ଓ ଆମେ ଦି'ଜଣ ନୀଳକଣ୍ଠ ଆଡ଼କୁ ମୁହଁ କରି ଠିଆ ହୋଇଗଲୁ । ଦୀର୍ଘ ଶାଳଗଛଗୁଡ଼ିକର ପଛରୁ ଏକ ଏତେ ସୁନ୍ଦର, ଏତେ ଲୋକାତୀତ ଆକୃତି ପ୍ରକଟ ହେଲେ ଯେ, ମୋର ରୁମ ଟାଙ୍କୁରି ଉଠିଲା । ମୁଁ ସହଜ ବୁଦ୍ଧିରେ ଜାଣିଗଲି ଯେ, ସେ ଶ୍ରୀଗୁରୁ ବାବାଜୀ ଥିଲେ ଯେ ନିଜର ସ୍ନେହ ଓ କରୁଣା ହେତୁ ମୋତେ ଦର୍ଶନ ଦେବାକୁ ଆସିଥିଲେ ।

ମୋର ପ୍ରିୟ ଗୁରୁ ତାଙ୍କର ପାଦତଳେ ପଡ଼ିଯାଇ ସାଷ୍ଟାଙ୍ଗ ପ୍ରଣାମ କଲେ, ମୁଁ ମଧ୍ୟ ତାହା କଲି । 'ଉଠ', ଏକ ମଧୁର ସ୍ୱର କହିଉଠିଲା, ''ମୋର ତୁମ ସହିତ କିଛି ଜରୁରୀ କାମ ଅଛି । ଶୁଣ ମହେଶ'', ସେ ମୋର ଗୁରୁଙ୍କୁ କହିଲେ, ''ମୁଁ ଭାବୁଛି ତୁମେ ମଧୁର କଥା ମାନିନେବା ଉଚିତ । ସମୟ ବଦଳି ଯାଇଛି । ମୋ ମତରେ ଆମକୁ ଯୋଗ୍ୟତାର ସୂଚୀକୁ ଛୋଟ କରିଦେବା ଉଚିତ ।'' ''ଯଥା ଆଜ୍ଞା'', ମୋର ଗୁରୁ କହିଲେ ।

ମୁଁ ନିଜ ସମ୍ମୁଖରେ ଦଣ୍ଡାୟମାନ ହୋଇଥିବା ସେ ସୁନେଲି ରଙ୍ଗର ସତ୍ତାଙ୍କଠାରୁ ନିଜର ଦୃଷ୍ଟି ଅପସାରଣ କରିପାରିଲି ନାହିଁ । ସେ ନଗ୍ନ-ଶରୀର ଥିଲେ, ଗୋଟିଏ କୌଣସିମତେ ଆଣ୍ଠୁ ପର୍ଯ୍ୟନ୍ତ ପହଞ୍ଚୁଥିବା ଚକ୍‌ଚକ୍ କରୁଥିବା ଧୋତି ପିନ୍ଧିଥିଲେ । ତାଙ୍କର

ଲମ୍ବା ଖଇରିଆ ବାଳ କାନ୍ଧ ପର୍ଯ୍ୟନ୍ତ ଝୁଲୁଥାଏ । ସେ ସ୍ୱର୍ଗୀୟ ଦିଶୁଥିଲେ । ତାଙ୍କ ଶରୀରରୁ ଆସୁଥିବା ମଧୁର ବାସ୍ନା ମୋର ଆତ୍ମାରେ ପ୍ରବେଶ କରିଗଲା । ସେ ମୋ ଆଡ଼କୁ ବୁଲିଗଲେ । ମୁଁ ଯେମିତି ସେହି କରୁଣାପୂରିତ ଆଖିକୁ ଚାହିଁଲି, ମୋର ପୂର୍ବ ଜନ୍ମଗୁଡ଼ିକର ଏବଂ ତାଙ୍କ ସହିତ (ଶ୍ରୀଗୁରୁ ବାବାଜୀଙ୍କ ସହିତ) ମୋର ସମ୍ବନ୍ଧର କଥା ମନେପଡ଼ିଗଲା ।

"ଏଠାକୁ ଆସ", ସେ କହିଲେ ଓ ନିଜର ହାତଦୁଇଟି ମୋର କାନ୍ଧ ଉପରେ ରଖିଦେଲେ । ତା'ପରେ ସେ ମୋର ଓଠକୁ ସ୍ନେହରେ ସ୍ପର୍ଶ କଲେ, "ମଧୁ, ମୋର ପୁତ୍ର, ତୁମକୁ ନିଜର ବିକାଶପାଇଁ ଏହି ଜୀବନ ଦେଇ ଯିବାର ଥିଲା । କିନ୍ତୁ ତୁମେ ନିଜର କାର୍ଯ୍ୟ ସମାପ୍ତ କରି ମୋ ପାଖକୁ ଫେରିଆସିବ । ମହେଶ ବହୁତ ଦୟାଳୁ । ସେ ହେଉଛନ୍ତି ତୁମର ବିଶେଷ-ମାର୍ଗଦର୍ଶକ ।" ମୋ ଆଖିରୁ ଲୁହର ଧାର ବହିଚାଲିଥାଏ ଏବଂ ମୋର ସମ୍ପୂର୍ଣ୍ଣ ଅସ୍ତିତ୍ୱ ଏପରି ଆନନ୍ଦୋଚ୍ଛ୍ୱାସରୁ କମ୍ପିତ ହେଉଥାଏ, ଯେପରି ଅନୁଭବ ପୂର୍ବରୁ କେବେ ହୋଇ ନ ଥିଲା । ଏହି ଅନୁଭୂତି ସମ୍ପୂର୍ଣ୍ଣ ଭାବରେ ନୂତନ ଥିଲା ।

ପୁଣି ସେ ମୋର ଗୁରୁଙ୍କୁ ଚାହିଁ କହିଲେ, "ମୁଁ କୃତଜ୍ଞ ଯେ, ତୁମେ ଏହି ବାଳକକୁ ନିଜ ସହିତ ରଖିଛ । ମହେଶ, ମୋର ତୁମ ସହିତ ଏକ ଜରୁରୀ କଥା ଅଛି, ସୂକ୍ଷ୍ମ କାୟାରେ ଗୁରୁବାର ଦିନ ସାକ୍ଷାତ କର ।"

ସେ ଆଶୀର୍ବାଦର ମୁଦ୍ରାରେ ନିଜର ହାତ ଉଠାଇଲେ । ଆମେ ପୁଣି ତାଙ୍କର ଚରଣରେ ମଥାନତ କଲୁ । ଆମେ ମୁଣ୍ଡ ଉଠାଇବା ବେଳକୁ ସେ ଯାଇ ସାରିଥିଲେ । କେବଳ ମଧୁର ବାସ୍ନା ବାକି ଥିଲା । ଆମେ ଚୁପ୍‌ଚାପ୍ ଗୁମ୍ଫାକୁ ଚାଲିଆସିଲୁ । ମୋର ହୃଦୟ ସେତେବେଳେ ମଧ୍ୟ ଶ୍ରୀଗୁରୁ ବାବାଜୀଙ୍କଦ୍ୱାରା ପରିପୂର୍ଣ୍ଣ ହୋଇ ରହିଥାଏ । ଧ୍ୟାନ ପରେ ମୁଁ ଶୋଇବାକୁ ଚାଲିଗଲି; କିନ୍ତୁ ସବୁଦିନ ପରି ବାବାଜୀ ଧୁନି ସାମ୍ନାରେ ବସିରହିଲେ, ପଥର ପରି ସ୍ଥିର, ଫୁଲ ପରି କୋମଳ ।



#  ଏକ ପ୍ରକୃତ ସାଧୁ

ଆମର ପରବର୍ତ୍ତୀ ଲକ୍ଷ୍ୟ ସ୍ଥଳ ଥିଲା ଉତ୍ତରକାଶୀ । ଏହିଠାରୁ ହେଉଛି ଗଙ୍ଗୋତ୍ରୀ ଏବଂ ଗୋମୁଖ (ଗଙ୍ଗାନଦୀର ଉତ୍ସ)କୁ ଯିବାର ରାସ୍ତାର ଆରମ୍ଭ । ତେହ୍ରି, ନରେନ୍ଦ୍ର ନଗର ଓ ଅନ୍ୟାନ୍ୟ ସ୍ଥାନ ଦେଇ ଆମେ ଉତ୍ତରକାଶୀରେ ପହଞ୍ଚିଲୁ । ତେହ୍ରି ବାଟ ଦେଇ ଗଲାବେଳେ ବାବାଜୀ ମୋତେ ଗୋଟାଏ ସ୍ଥାନ ଦେଖାଇଦେଲେ, ଯେଉଁଠାରେ ଅତ୍ୟନ୍ତ ବ୍ୟର୍ଥ ହୋଇ ଯୋଗୀ ରାମତୀର୍ଥ ନଦୀକୁ ଲମ୍ଫ ଦେଇ ଆତ୍ମହତ୍ୟା କରିଥିଲେ ।

ଉତ୍ତରକାଶୀ ସେତେବେଳେ ହିମାଳୟସ୍ଥିତ ଏକ ଶାନ୍ତ ସହର । ବନାରସରେ ବହୁଥିବା ପରି ଗଙ୍ଗା, ଯାହାକୁ ଭାଗୀରଥି ମଧ୍ୟ କହନ୍ତି କିଛି ବାଟ ଉତ୍ତରରୁ ଦକ୍ଷିଣକୁ ବହମାନ । ସେଠାରେ ଏକ ପ୍ରାଚୀନ ଓ ସୁନ୍ଦର ଶିବମନ୍ଦିର ମଧ୍ୟ ରହିଛି ଏବଂ ବନାରସ ପରି (କାଶୀ ନାମରେ ମଧ୍ୟ ପରିଚିତ) ସେଇଟି ମଧ୍ୟ ଶିବଙ୍କର କାଶୀ ବିଶ୍ୱନାଥ ମନ୍ଦିର । ଯୋଗୀମାନଙ୍କର ଈଶ୍ୱର ଶିବ ଯେ ବିଶ୍ୱନାଥ ନାମରେ ଖ୍ୟାତ, ସେ ହେଉଛନ୍ତି ବିଶ୍ୱର ନାଥ ।

ସାଧୁମାନଙ୍କର ଏକ କ୍ଷୁଦ୍ର ସମ୍ପ୍ରଦାୟ ସେଠାରେ ଶାନ୍ତିରେ ବସବାସ କରୁଥିଲେ । ସେମାନେ ସତେଜ ବାୟୁ ଓ ସରଳ ଜୀବନ ଉପଭୋଗ କରୁଥିଲେ । ଭ୍ରମଣ କରୁଥିଲେ, ଧ୍ୟାନ କରୁଥିଲେ ଏବଂ ପ୍ରତିଯୋଗିତା, ରାଜନୀତି ଇତ୍ୟାଦିରୁ ଦୂରରେ ଥିଲେ । ସେଠାରେ ଦୁଇ ତିନୋଟି ଅନ୍ନକ୍ଷେତ୍ର ଥିଲା । ସେଠାରେ ସାଧୁମାନଙ୍କୁ ଦୁଇଥର ମାଗଣା ଭୋଜନ ଦିଆଯାଉଥିଲା । ଏହି ଅନ୍ନକ୍ଷେତ୍ରଗୁଡ଼ିକୁ କାଲୀକମ୍ବଲୀୱାଲା ଆଶ୍ରମ ଓ ପଞ୍ଜାବ-ସିନ୍ଧୁ ଆଶ୍ରମ ଚଳାଉଥିଲେ । ଆଧ୍ୟାତ୍ମିକ ସାଧନାପାଇଁ ନିର୍ଜନବାସ କରିବାକୁ ଚାହୁଁଥିବା ଲୋକମାନଙ୍କ ପାଇଁ କ୍ଷୁଦ୍ର କୁଟିରଗୁଡ଼ିକର ମଧ୍ୟ ବ୍ୟବସ୍ଥା ଥିଲା । ସଂକ୍ଷେପରେ କହିବାକୁ ଗଲେ ଏହା ସାଧକମାନଙ୍କପାଇଁ ଏକ ଆଦର୍ଶ ସ୍ଥାନ ଥିଲା । ଭାରତର କେତେଗୁଡ଼ିଏ ଆଶ୍ରମ, ଯେଉଁଠାରେ ସାଧକମାନଙ୍କୁ ଶିକ୍ଷାନୁଷ୍ଠାନ, ଚିକିତ୍ସାଳୟ ଇତ୍ୟାଦିରେ କାର୍ଯ୍ୟ କରି ବ୍ୟସ୍ତ ରହିବାକୁ ପଡୁଥିଲା, ସେଠାରୁ ସାଧକମାନଙ୍କୁ ସମୟେ ସମୟେ ନିର୍ଜନବାସ ଓ ଶକ୍ତି ଆହରଣ ପାଇଁ ଉତ୍ତରକାଶୀକୁ ପଠାଯାଉଥିଲା ।

ବାବାଜୀ ଦୁଇଟି କୁଟିରର ବନ୍ଦୋବସ୍ତ କଲେ । ଗୋଟିଏ ତାଙ୍କପାଇଁ ଓ ଅନ୍ୟଟି ମୋ ପାଇଁ । ମୁଁ ପଞ୍ଜାବ-ସିନ୍ଧୁ ଅନ୍ନକ୍ଷେତ୍ରକୁ ଦୁଇଥର ଲେଖାଏଁ ଯାଇ ଆମମାନଙ୍କ ପାଇଁ ସାଦା ଭୋଜନ ଆଣୁଥିଲି । ବାବାଜୀ କ୍ୱଚିତ ଖାଉଥିଲେ ଏବଂ ପ୍ରାୟ ଜଙ୍ଗଲରେ ବୁଲୁଥିବା କୁକୁରମାନଙ୍କୁ ତାଙ୍କ ଖାଦ୍ୟକୁ ଦେଇ ଦେଉଥିଲେ । ବାବାଜୀ ସେମାନଙ୍କୁ ଭଲ ପାଉଥିଲେ ଏବଂ ସେମାନେ ମଧ୍ୟ ତାଙ୍କୁ ଭଲପାଉଥିଲେ ।

ବାବାଜୀ ତାଙ୍କର ଶିଷ୍ୟ କୃଷ୍ଣାନନ୍ଦ ଶର୍ମାଙ୍କଠାରୁ ମୋର ସଂସ୍କୃତ-ଶିକ୍ଷାର ବନ୍ଦୋବସ୍ତ କରିଦେଲେ । ଶର୍ମାଜୀଙ୍କର ବୈଦିକ ଅଧ୍ୟୟନରେ ବିଶେଷ ଜ୍ଞାନ ଥିଲା, ବିଶେଷ ଭାବରେ ସାମବେଦରେ । ଆମେ ଆସିବାର ଦୁଇ ସପ୍ତାହ ପରେ ବାବାଜୀ ଗଙ୍ଗୋତ୍ରୀକୁ ଚାଲିଗଲେ । ମୋତେ ମଧ୍ୟ ଏପ୍ରିଲ ପର୍ଯ୍ୟନ୍ତ ସାତ ମାସପାଇଁ ଉତ୍ତର କାଶୀରେ ହିଁ ରହିବାକୁ ନିର୍ଦ୍ଦେଶ ଦେଇଗଲେ । କହିଗଲେ ଯେ, ସେ ଫେରିଲେ ଆମେ ଦି'ଜଣ ଗୋମୁଖ ପର୍ଯ୍ୟନ୍ତ ପଦଯାତ୍ରାରେ ଯିବୁ, ସେଠାରୁ ତପୋବନ ଓ ବାସୁକୀ ତାଲ ।

ମୋର ଉତ୍ତରକାଶୀବାସ ମୋ ଜୀବନର ସବୁଠାରୁ ସୁଖକର ଅନୁଭବ ମଧ୍ୟରେ ଅନ୍ୟତମ । ବାବାଜୀ ଶିଖାଇଥିବା ଯୌଗିକ ପ୍ରଣାଳୀଗୁଡ଼ିକର ଅଭ୍ୟାସ ଏବଂ ସଂସ୍କୃତ ପାଠ ବ୍ୟତୀତ ମୋତେ ସବୁ ପ୍ରକାରର ସାଧୁମାନଙ୍କୁ ଭେଟିବାର ଓ ବହୁ ଆଶ୍ରମକୁ ଯିବାର ସୁଯୋଗ ମିଳିଲା । ମୋର ସବୁଠାରୁ ପସନ୍ଦ ଥିଲା କାଶୀ ବିଶ୍ୱନାଥଙ୍କ ମନ୍ଦିରର ପ୍ରାଙ୍ଗଣ । ମୋତେ ସେଠାରେ ବହୁ ବିଶେଷ ଆଧ୍ୟାତ୍ମିକ ତରଙ୍ଗର ଅନୁଭବ ହେଉଥିଲା ଏବଂ ବେଳେବେଳେ ଉନ୍ନତ ଧରଣର ସାଧକମାନଙ୍କ ସହିତ ସାକ୍ଷାତ ମଧ୍ୟ ହୋଇଯାଉଥିଲା । ମୁଁ ଗର୍ଭଗୃହରୁ ବାହାରକୁ ଆସିବା ମାତ୍ରେ ହିଁ ଗଭୀର ଧ୍ୟାନର ମନୋବୃତ୍ତି ଆସିଯାଉଥିଲା ଏବଂ ପ୍ରାଙ୍ଗଣର କୌଣସି ଶାନ୍ତ କୋଣରେ ଦ୍ୱିପ୍ରହରର ଭୋଜନ ସମୟ ପର୍ଯ୍ୟନ୍ତ ଧ୍ୟାନରେ ବସି ରହୁଥିଲି । ଥରେ ଦି'ଥର ପୂଜାରୀମାନଙ୍କ ଭିତରୁ ଜଣକୁ ମୋତେ ଜାଗୃତ କରିବାକୁ ପଡ଼ିଥିଲା ।

ଥରେ, ଏକ ଗଭୀର ଧ୍ୟାନ ପରେ ଯେତେବେଳେ ମୁଁ ଆଖି ଖୋଲି ଦେଖିଲି, ଜଟାଜୁଟଧାରୀ ଜଣେ ଲଙ୍ଗଳା ବ୍ୟକ୍ତି ମୋ ପାଖରେ ବସିଛନ୍ତି, ମୁଁ ଚମକି ପଡ଼ିଲି । ତାଙ୍କର ଆଖି ରକ୍ତ ପରି ଲାଲ ଥିଲା । ସେ ଆଣ୍ଠୁ ମାଡ଼ି ବସି ମୋତେ ଏପରି ଭାବରେ ନିରୀକ୍ଷଣ କରୁଥିଲେ, ଯେପରି ମୁଁ କୌଣସି ଅଜବ ଜନ୍ତୁ ! ଯେତେବେଳେ ସେ ଦେଖିଲେ ଯେ ମୁଁ ଆଖି ଖୋଲିଛି, ସେ ତାହା ଭିତରକୁ ଚାହିଁଲେ । ମୋତେ ଲାଗିଲା, ଯେମିତି ମୁଁ ଗୋଟାଏ ଏକ୍ସ-ରେ ମେଶିନ ସାମ୍ନାରେ ବସିଛି ! ପୁଣି ତାଙ୍କ ମୁହଁରେ ଏକ ଦନ୍ତହୀନ ହସ ଖେଳିଗଲା ଓ ସେ ପାଗଳଙ୍କ ପରି ନାଚିଲେ ଓ ଚିତ୍କାର କଲେ । ''ସିଦ୍ଧୋ, ସିଦ୍ଧୋ, ଭାଲୋ, ଭାଲୋ, ହୋୟେ ଗ୍ୟାଲୋ ।'' ମୁଁ ଉଠି ଠିଆ ହେବା ପୂର୍ବରୁ ଓ ତାଙ୍କ ସହିତ କଥାବାର୍ତ୍ତା ହେବା

ପୂର୍ବରୁ, ସେ ଏକ ହାଲ୍କା ସିଟି ବଜାଇଲେ, ତୀର ପରି ବେଗରେ ପ୍ରାଙ୍ଗଣରୁ ବାହାରିଗଲେ ଓ ଦୃଷ୍ଟିର ଅନ୍ତରାଳକୁ ଚାଲିଗଲେ ।

ରାମକୃଷ୍ଣ ମଠରର ଜଣେ ବରିଷ୍ଠ ସନ୍ନ୍ୟାସୀ ଏକାନ୍ତବାସପାଇଁ ଉତ୍ତରକାଶୀ ଆସିଥିଲେ । ଆମେ ଦି'ଜଣ ଭାରି ସାଙ୍ଗ ହୋଇଗଲୁ ଓ ପ୍ରାୟ ମନ୍ଦିରର ପ୍ରାଙ୍ଗଣରେ ଧ୍ୟାନ କରିବାପାଇଁ ଏକା ସାଙ୍ଗରେ ଯାଉଥିଲୁ । ସେଦିନ ସେ ମୋ ପାଖରେ ହିଁ ବସିଥିଲେ ଓ ସେ ପୂରା ଘଟଣାଟି ଦେଖିଥିଲେ । ଏହାପରେ ମୁଁ ତାଙ୍କ ପାଖକୁ ଯାଇ ଏହି ଘଟଣାର ଅର୍ଥ ପଚାରିଲି । ସବୁବେଳ ପରି ସେ ଧୀର ସ୍ୱରରେ କହିଲେ, ''ମୋତେ ଲାଗୁଛି ସେହି ବ୍ୟକ୍ତି ଜଣେ ପରମହଂସ ଥିଲେ, ଅର୍ଥାତ୍, ଦୈବୀ ପ୍ରେମରେ ପାଗଳ । ସେ ଯାହା କହିଲେ, ତାହା ବଙ୍ଗଳା ଭାଷାରେ ଥିଲା । 'ସିଦ୍ଧ'ର ଅର୍ଥ ହେଉଛି ଭଲ ଭାବରେ ପରିପକ୍ୱ କିମ୍ବା ତାହାର ଅର୍ଥ ଏମିତି ବି ହୋଇପାରେ, ଯେଉଁ ବ୍ୟକ୍ତି ସିଦ୍ଧ ହୋଇସାରିଛି ଅର୍ଥାତ୍ ଜଣେ ଉଚ୍ଚଦରର ଯୋଗୀ । 'ଭାଲୋ'ର ଅର୍ଥ ହେଉଛି ବଢ଼ିଆ କିମ୍ବା ଭଲ । 'ହୋୟେ ଗ୍ୟାଲୋ'ର ଅର୍ଥ ହେଉଛି ହୋଇଯାଇଛି ବା ଘଟିଯାଇଛି ।

ସେ ଯଦି ତୁମର ଆଧ୍ୟାତ୍ମିକ ଦଶା ଦିଗରେ ଇଙ୍ଗିତ କରୁଥିଲେ, ତାହାହେଲେ ମୁଁ ଏତିକି କହିପାରିବି ଯେ ତୁମେ ଭାଗ୍ୟବାନ ଏବଂ ବାବାଜୀ, ତୁମର ଗୁରୁ, ଯାହା ବିଷୟରେ ତୁମେ ମୋତେ ସେଦିନ କହୁଥିଲ, ସେ ତୁମକୁ ଅତ୍ୟନ୍ତ ଉନ୍ନତ ଆଧ୍ୟାତ୍ମିକ ସ୍ଥିତି ପର୍ଯ୍ୟନ୍ତ ନେଇ ଆସିଛନ୍ତି । ମୁଁ ତୁମକୁ ସମାଧିସ୍ଥ ହେବାର ଦେଖିଛି ଏବଂ ମୋତେ ଲାଗୁଛି ତୁମେ ନିଃସନ୍ଦେହରେ ଚେତନାର ଉଚ୍ଚ ସ୍ତରରେ ରହିଛ ।

ମହାନ ଗୁରୁ ରାମକୃଷ୍ଣ ପରମହଂସ, ରାମକୃଷ୍ଣ ମିଶନର ସଂସ୍ଥାପକ ତଥା ବିବେକାନନ୍ଦଙ୍କ ଗୁରୁ, ଏହି ଶବ୍ଦର ଉପଯୋଗ କରୁଥିଲେ । ଏପରି କୁହାଯାଏ ଯେ ସେ ଆଧ୍ୟାତ୍ମିକ ସାଧକମାନଙ୍କୁ ଭଲ ଭାବରେ ପରୀକ୍ଷା-ନିରୀକ୍ଷା କରୁଥିଲେ ଏବଂ ସନ୍ତୁଷ୍ଟ ହେବା ପରେ କହୁଥିଲେ – ''ସିଦ୍ଧୋ, ସିଦ୍ଧୋ – ଠିକ୍ ଭାବରେ ପକ୍ୱହୋଇ ଯାଇଛି, ଠିକ୍ ଭାବରେ ପକ୍ୱହୋଇ ଯାଇଛି । ମୁଁ ଆଶ୍ଚର୍ଯ୍ୟ ଯେ, ଏହି ବ୍ୟକ୍ତି ସେହି ଶବ୍ଦଗୁଡ଼ିକ ବ୍ୟବହାର କଲେ ।''

× × ×

ଦଶନାମୀ ସମ୍ପ୍ରଦାୟର ଜଣେ ସନ୍ନ୍ୟାସୀ ଲକ୍ଷ୍ମଣପୁରୀ ଦିନେ ମୋତେ କହିଲେ ଯେ ଜଣେ ମହାତ୍ମା ନଦୀ କୂଳରେ ବୁଲନ୍ତି । ସେ ଆଧ୍ୟାତ୍ମିକ ଉନ୍ନତିର ଉତ୍ତୁଙ୍ଗ ଶିଖରରେ ପହଞ୍ଚି ସାରିଛନ୍ତି । ଗୋଟିଏ ପ୍ରସିଦ୍ଧ ମଠ ସହିତ ସମ୍ପୃକ୍ତ ଜଣେ ସନ୍ନ୍ୟାସୀ, ଯେ ତାଙ୍କୁ ପୂର୍ବରୁ ଜାଣିଥିଲେ ଉତ୍ତରକାଶୀକୁ ଆସିଥିଲେ । ଯେତେବେଳେ ସେ ଏହି ଘୂରିବୁଲୁଥିବା ସାଧୁଙ୍କୁ

ଦେଖିଲେ, ସେ ତାଙ୍କର ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କଲେ ଏବଂ ପରେ କେତେଜଣ ସାଧୁଙ୍କୁ ତାଙ୍କର ପୂର୍ବ-ବୃତ୍ତାନ୍ତ କହିଲେ ।

ତାଙ୍କର କହିବା ଅନୁସାରେ ଏହି ମହାତ୍ମା ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପଶ୍ଚିମ ଭାରତରେ ସ୍ଥାପିତ ଦଶନାମୀ ସମ୍ପ୍ରଦାୟର ଏକ ଧନାଢ୍ୟ ଏବଂ ପ୍ରସିଦ୍ଧ ମଠ ସହିତ ସମ୍ପୃକ୍ତ ଥିଲେ । ଯେତେବେଳେ ତାଙ୍କର ମଠାଧୀଶ ହେବାର ସମୟ ଆସିଲା, ସେ ଗୋଟିଏ ଲିଖିତ ଟିପ୍ପଣୀ ଛାଡ଼ି ଚାଲିଗଲେ । ସେ ଲେଖିଥିଲେ ତାଙ୍କୁ ମଠାଧୀଶ ପଦ ସହିତ ସମ୍ପୃକ୍ତ ଆଡ଼ମ୍ବର ଓ ବିଶେଷ ପ୍ରତିଷ୍ଠା ଅପସନ୍ଦ ଥିଲା । ସେ ଏହା ମଧ୍ୟ ଲେଖିଥିଲେ ଯେ, ସେ ସ୍ୱେଚ୍ଛାରେ ପରିବ୍ରାଜକ ସାଧୁ ହେବାକୁ ଯାଉଛନ୍ତି, କେବଳ ପରମବ୍ରହ୍ମ ହେଉଛନ୍ତି ତାଙ୍କର ଆଶ୍ରୟ ।

କିଛିଦିନ ସେ ଦଣ୍ଡୀ ସନ୍ନ୍ୟାସୀ ହୋଇ ରହିଲେ । ସେମାନେ ହେଉଛନ୍ତି ବ୍ରାହ୍ମଣ ସନ୍ନ୍ୟାସୀ ଯେଉଁମାନେ ଦଣ୍ଡ ବା ବାଡ଼ି ଧରି ଚାଲନ୍ତି । ଉତ୍ତରକାଶୀ ଆସି ସେ ଦଣ୍ଡ ଓ କମଣ୍ଡଳୁ ଗଙ୍ଗାକୁ ଫିଙ୍ଗିଦେଲେ । ଯେତେବେଳ ପର୍ଯ୍ୟନ୍ତ ଏହି ସନ୍ନ୍ୟାସୀ (ଯେ ତାଙ୍କୁ ପୂର୍ବରୁ ଜାଣିଥିଲେ) ତାଙ୍କୁ ନ ଦେଖିଥିଲେ, ସେତେବେଳ ଯାଏଁ କେହି ତାଙ୍କର ନାଁ ମଧ୍ୟ ଜାଣି ନ ଥିଲେ । ଲୋକେ ତାଙ୍କୁ ସ୍ୱାମୀ ବୋଲି କହୁଥିଲେ, ଯାହାର ଅର୍ଥ ହେଉଛି ପବିତ୍ର ସନ୍ନ୍ୟାସୀ ।

ମୁଁ ଶୁଣିଲି ସେ ଗଙ୍ଗାକୂଳରେ ବୁଲନ୍ତି କିମ୍ବା ବସନ୍ତି ଏବଂ ରାତିରେ ମନ୍ଦିରର ପ୍ରାଙ୍ଗଣରେ ଶୁଅନ୍ତି । ସେ ପ୍ରାୟ କିଛି କହନ୍ତି ନାହିଁ ଏବଂ ଅନ୍ନକ୍ଷେତ୍ରକୁ ଯାଆନ୍ତି ନାହିଁ । ସେଥିପାଇଁ ଜଣେ ଦକ୍ଷିଣ ଭାରତୀୟ ସାଧୁ ନିଜ ତରଫରୁ ତାଙ୍କପାଇଁ ଖାଦ୍ୟ ଆଣିବାର ଦାୟିତ୍ୱ ନେଇଥିଲେ । ସେ ତାଙ୍କୁ ଦିନରେ ଥରେ ଖାଦ୍ୟ ପହଞ୍ଚାଉଥିଲେ । ମହାତ୍ମା ନିଜର ଅଞ୍ଜଳିରେ ଯେତିକି ଧରୁଥିଲା, କେବଳ ସେତିକି ଖାଉଥିଲେ ଓ ଗଙ୍ଗାଜଳ ପିଉଥିଲେ । ସେ ତାଙ୍କର ଗୋଇଠି ପର୍ଯ୍ୟନ୍ତ ଲମ୍ବିଥିବା ଗୋଟିଏ ପୁରୁଣା ଗେରୁଆ ବସ୍ତ୍ର ପିନ୍ଧୁଥିଲେ । କେବଳ ଗୋଟିଏ କମ୍ବଳ ଧରି ବୁଲୁଥିଲେ, ଯାହା ଦିନବେଳେ ତାଙ୍କର ଧ୍ୟାନ ପାଇଁ ଆସନ ଭଳି ବ୍ୟବହୃତ ହେଉଥିଲା ଏବଂ ରାତିରେ ତାଙ୍କୁ ଶୀତରୁ ରକ୍ଷା କରୁଥିଲା ।

"ଯଦି ତୁମେ ତାଙ୍କର ଦର୍ଶନ କରନ୍ତ, ତେବେ ଭଲ ହୁଅନ୍ତା," ଲକ୍ଷ୍ମଣପୁରୀ କହିଲେ । ତେଣୁ ଗୋଟିଏ ରୌଦ୍ରୋଜ୍ଜ୍ୱଳ ସୋମବାର ସକାଳେ ମୁଁ ତାଙ୍କୁ ସାକ୍ଷାତ କରିବାର ଆଶା ନେଇ ଗଙ୍ଗାକୂଳକୁ ଗଲି । ମୋତେ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଜଣେ ଡେଙ୍ଗା, ପତଳା, ଗେରୁଆ ବସ୍ତ୍ରଧାରୀ ଧୀର ପଦକ୍ଷେପରେ ଗଙ୍ଗାକୂଳରେ ବୁଲୁଥିଲେ । ଲକ୍ଷ୍ମଣପୁରୀ ଦେଇଥିବା ବର୍ଣ୍ଣନା ତାଙ୍କ ସହିତ ଠିକ୍ ଭାବରେ ଖାପ ଖାଉଥିଲା । ଏକ ବଡ଼

ସମତଳ ପଥର ଉପରେ ସେ ଗଙ୍ଗାକୁ ଚାହିଁ ଚକା ପକାଇ ବସିଗଲେ । ମୁଁ ଯେଉଁ ପଥର ଉପରେ ଠିଆ ହୋଇଥିଲି, ତାହା ସେଠାରୁ ଦୂରରେ ନ ଥିଲା ।

ମୁଁ ସାହସ କରି ତାଙ୍କ ପାଖକୁ ଗଲି ଓ ପଥର ପାଖରେ ଚୁପଚାପ ଠିଆ ହେଲି । ସେ ମୋ ଆଡ଼କୁ ବୁଲିଲେ । ମୁଁ ଭକ୍ତିର ସହିତ ସାଷ୍ଟାଙ୍ଗ ପ୍ରଣାମ କଲି, ଚୁପ ରହିଲି । ଶୁଣିଥିଲି ଯେ ସେ ଖୁବ୍ କମ୍ କଥା କହନ୍ତି ଓ ତାଙ୍କର ଶାନ୍ତିଭଙ୍ଗ କରିବା ଉଚିତ ନୁହେଁ । କିନ୍ତୁ ଅପ୍ରତ୍ୟାଶିତ ଘଟଣା ଘଟିଲା । ସେ କଥା କହିଲେ । ସେ ଧୀର ସ୍ୱରରେ ପଚାରିଲେ, ‘‘ତୁମର ନାଁ କ’ଣ ?’’

‘‘ମଧୁ’’, ମୁଁ କହିଲି ।

‘‘ତୁମେ ଏଠି କ’ଣ କରୁଛ ?’’

‘‘ସତ୍ୟର ସନ୍ଧାନ’’, ମୁଁ କହିଲି ।

ଏକ ଦୟାର ଭାବ ତାଙ୍କର ଆଖିରେ ଭରିଗଲା । ସେ କହିଲେ, ‘‘ଭାରି କଷ୍ଟ କାମ ବାପା, ମୁଁ ବହୁବର୍ଷ ଧରି ପରିଶ୍ରମ କରିଚାଲିଛି । ମୋତେ ସତୁରିବର୍ଷ ହୋଇଗଲାଣି । ମୁଁ ମୋର ଦଣ୍ଡୀ ବି ଫିଙ୍ଗିଦେଇଛି, ଭାଗ୍ୟ ଅନୁଯାୟୀ ଯାହା ମିଳେ ତାହା ଖାଏ; କିନ୍ତୁ ତେବେ ବି ସତ୍ୟର ସନ୍ଧାନ ପାଇ ନାହିଁ । ମୁଁ ବେଦାନ୍ତର ସବୁ ପୁସ୍ତକ ପଢ଼ିସାରିଛି; କିନ୍ତୁ ବ୍ରହ୍ମ ମୋତେ ମିଳି ନାହିଁ, ତୁମର ଗୁରୁ ଅଛନ୍ତି ?’’

‘‘ହଁ’’, ମୁଁ ଗର୍ବର ସହିତ କହିଲି, ‘‘ସେ ବହୁତ ଭଲ । ସେ ହେଉଛନ୍ତି ଶ୍ରୀ ଗୁରୁ ବାବାଜୀଙ୍କର ପ୍ରତ୍ୟକ୍ଷ ଶିଷ୍ୟ । ମୁଁ ଭାରି ଭାଗ୍ୟବାନ ।’’

‘‘ମୁଁ ଗୌରବମୟ ବାବାଜୀଙ୍କ ବିଷୟରେ ଶୁଣିଛି’’, ବୃଦ୍ଧ ସନ୍ନ୍ୟାସୀ କହିଲେ, ‘‘କିନ୍ତୁ ବହୁତ କାହାଣୀ ପ୍ରଚଳିତ ଅଛି ଏବଂ ଆଜିକାଲି କାହା ଉପରେ ବିଶ୍ୱାସ କରିବ ଓ କାହା ଉପରେ ନ କରିବ, ସେକଥା ଜାଣିବା ଭାରି କଷ୍ଟ । ଗୁରୁମାନେ ନକଲି, ଆଶ୍ରମ ରାଜନୈତିକ କ୍ରିୟାକଳାପର ଗଡ଼ ଏବଂ ପ୍ରକୃତ ସାଧକମାନେ ଦିଗଭ୍ରଷ୍ଟ ହୋଇଯାଇଛନ୍ତି । ଛାଡ଼, ତୁମେ କ’ଣ ସେହି ମହାନ୍ ବାବାଜୀଙ୍କୁ ଦେଖିଛ ?’’

‘‘ହଁ’’, ମୁଁ କହିଲି, ‘‘ଥରେ, ଯେତେବେଳେ ମୋର ଗୁରୁ ଫେରିଆସିବେ, ଆପଣଙ୍କର ଆପତ୍ତି ନ ଥିଲେ ମୁଁ ଆପଣଙ୍କର ତାଙ୍କ ସହିତ ସାକ୍ଷାତର ବନ୍ଦୋବସ୍ତ କରିବି ।’’

‘‘କିଛି ସପ୍ତାହ ପୂର୍ବେ ଗର୍ବୋଦ୍ଧତ ହୋଇ ମୁଁ ସ୍ୱୀକାର କରିବାକୁ ପ୍ରସ୍ତୁତ ହୋଇ ନ ଥା’ନ୍ତି ଯେ ମୋର ସାହାଯ୍ୟ ଦରକାର’’, ସେ କହିଲେ, ‘‘କିନ୍ତୁ ବର୍ତ୍ତମାନ ମୁଁ ସାହାଯ୍ୟ ନେବାକୁ ପ୍ରସ୍ତୁତ, କେଜାଣି ଏହି ଶରୀର ଆଉ କେତେଦିନ ରହିବ । ଦୟାକରି ତାଙ୍କୁ

ମୋତେ ଭେଟିବାକୁ କହିବ । ଆଜି ମୁଁ କିଛି ଅଧିକା କଥାବାର୍ତ୍ତା କରିପକାଇଲିଣି । ଏବେ ତୁମେ ଯାଅ ବାପା !'' କହି ସେ ହଠାତ୍ କଥାବାର୍ତ୍ତା ବନ୍ଦ କରିଦେଲେ, ମୁଁ ତାଙ୍କୁ ଦଣ୍ଡବତ କରି ଚାଲିଆସିଲି । ବାବାଜୀ ଫେରିବା ପରେ ମୁଁ ତାଙ୍କୁ ସେହି ମହାତ୍ମାଙ୍କ ସହିତ ସାକ୍ଷାତ କରାଇବା ପାଇଁ ନେଇଗଲି ।

କିନ୍ତୁ ସେ ବିଷୟରେ କହିବା ପୂର୍ବରୁ ମୁଁ ମୋର ସଂସ୍କୃତ ଅଧ୍ୟାପକ କୃଷ୍ଣାନନ୍ଦ ଶର୍ମାଙ୍କର ବିସ୍ମୟ ବିଷୟରେ କହିବାକୁ ଚାହେଁ । ଯେତେବେଳେ ସେ ତୈତ୍ତରୀୟ ଉପନିଷଦ ପଢ଼ାଇବା ଆରମ୍ଭ କଲେ, ସେ ଦେଖିଲେ ଯେ ପ୍ରଥମ ପାଠ ଶେଷ କଲାପରେ ମୁଁ କେବଳ ମାତ୍ର ଥରେ ଶୁଣି କୌଣସି ଭୁଲ ନ କରି ଶ୍ଳୋକକୁ ଦୋହରାଇ ପାରୁଛି, ସଠିକ ଉଚ୍ଚାରଣ ଓ ଲୟ ସହିତ । ସେ ମୋତେ ପଚାରିଲେ ମୁଁ କେବେ ମନ୍ତ୍ରୋଚ୍ଚାରଣ ଶିକ୍ଷା କରିଛି କି ନାହିଁ ବୋଲି । ମୁଁ ଯେତେବେଳେ ନାସ୍ତିବାଚକ ଉତ୍ତର ଦେଲି, ସେ ଭାବିଲେ ମୁଁ ମିଛ କହୁଛି । ମୁଁ କହିଲି, ମୋର ତାଙ୍କୁ ମିଥ୍ୟା କହିବାର ଆବଶ୍ୟକତା ନ ଥିଲା ଏବଂ ମୁଁ ତ ବେଶ ସହଜ ଭାବରେ ଗାଉଥିଲି । ଶେଷକୁ ସେ ନିଜର କାନ୍ଧକୁ ଝାଙ୍କି କହିଲେ, ''ହୁଏତ ପୂର୍ବ ଜନ୍ମରେ ଶିଖିଛ । ମୋତେ ତ ଆଉ କୌଣସି କାରଣ ଦିଶୁ ନାହିଁ, କିମ୍ବା ଏହା ହେଉଛି ବାବାଜୀଙ୍କର ଯାଦୁ ।''

ଉତ୍ତରକାଶୀରେ ହିଁ ମୁଁ ଜାଣିଲି ଯେ ଖାଦ୍ୟ କେତେ ମହତ୍ତ୍ୱପୂର୍ଣ୍ଣ ପ୍ରେରଣାର ସ୍ରୋତ ହୋଇପାରେ, ତା'ର ସମ୍ବନ୍ଧ ଗୀତାକୁ ମୁଖସ୍ଥ କରିବା ସହିତ ହେଲେ ମଧ୍ୟ । ମୋତେ ଗୀତା ପାଠ କରିବାକୁ ଭାରି ଭଲ ଲାଗୁଥିଲା । ମୋତେ ବାବାଜୀ ଭାରି ସୁନ୍ଦର ଭାବରେ ଗୀତାପାଠ କରିବା ଶିଖାଇଥିଲେ, ସେ କହିଥିଲେ ଯେ ସେ ତାଙ୍କର ଗୁରୁଙ୍କଠାରୁ ଶିଖିଥିଲେ । କିନ୍ତୁ ମୁଁ ସବୁବେଳେ ପୁସ୍ତକ ବ୍ୟବହାର କରୁଥିଲି । ମୋ କଥା କହିବାକୁ ଗଲେ, କଣ୍ଠସ୍ଥ କରିବା ମୋ ପାଇଁ ଦୁଃସ୍ୱପ୍ନ ପରି ଥିଲା । କୌଣସି ପାଠକୁ ପଢ଼ି ବୁଝିଯିବା ଗୋଟାଏ କଥା, ମୋତେ ସେଇଟା ପସନ୍ଦ ମଧ୍ୟ ଥିଲା; କିନ୍ତୁ ଘୋଷିବା, ମୋ ମତରେ ସମୟ ଓ ଶକ୍ତି ନଷ୍ଟ କରିବା ଥିଲା । ଉତ୍ତରକାଶୀରେ ମୋତେ ଘୋଷିବାପାଇଁ ଅନିଚ୍ଛାକୁ ତ୍ୟାଗ କରିବାକୁ ପଡ଼ିଲା ଓ ଶୀଘ୍ର ହିଁ ମୁଁ ମନେରଖି ଗୀତାପାଠ କରିବାକୁ ଲାଗିଲି । ତାହା ଏହିପରି ଘଟଣା ଥିଲା –

ଅନେକ ଆଶ୍ରମରେ ବେଳେବେଳେ ଉତ୍ତମ ଭୋଜନର ବ୍ୟବସ୍ଥା ହେଉଥିଲା, ଯେଉଁଥିପାଇଁ ସାଧୁ ଓ ବ୍ରହ୍ମଚାରୀମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା । ଭୋଜନ ଆରମ୍ଭ କରିବା ପୂର୍ବରୁ ସାଧୁମାନଙ୍କୁ ଗୀତାର ପଞ୍ଚଦଶ ଅଧ୍ୟାୟ (ପୁରୁଷୋତ୍ତମ ଯୋଗ)ର ପାଠ କରିବାକୁ ପଡୁଥିଲା । ଅଧିକାଂଶ ଯୁବକ ଓ ବୃଦ୍ଧ ବ୍ରହ୍ମଚାରୀଙ୍କର ପଞ୍ଚଦଶ ଅଧ୍ୟାୟ କଣ୍ଠସ୍ଥ

ଥିଲା, ଯେଉଁମାନଙ୍କର ନ ଥିଲା, ସେମାନଙ୍କୁ ହୀନ ଦୃଷ୍ଟିରେ ଦେଖାଯାଉଥିଲା । ତେଣୁ ଏପରି ଦୁଇଟି ଭୋଜି ପରେ ମୁଁ ମଧ୍ୟ କଣ୍ଠସ୍ଥ କରିନେବାକୁ ପ୍ରତିଜ୍ଞା କଲି, ତୃତୀୟ ନିମନ୍ତ୍ରଣ ଦିନ ମୁଁ କୌଣସି ଉପାୟରେ କାମ ଚଳାଇନେଲି ଏବଂ ଚତୁର୍ଥ ପୂର୍ବରୁ ମୁଁ ଯେପରି ଧାରା ପ୍ରବାହ ଥିଲି ! ଏତେ ଭଲ ଖାଦ୍ୟପାଇଁ ପଞ୍ଚଦଶ ଅଧ୍ୟାୟକୁ ମୁଖସ୍ଥ କରିବା ଏକ କ୍ଷୁଦ୍ର ମୂଲ୍ୟ ଥିଲା ।

ଏହିପରି ଏକ ଭୋଜିରେ ମୁଁ ସ୍ୱାମୀ ଭେଙ୍କଟେଶାନନ୍ଦଙ୍କୁ ଭେଟିଲି । ସେ ମୋତେ ସନ୍ଧ୍ୟାରେ ତାଙ୍କର କୁଟିରକୁ ଯିବାକୁ ନିମନ୍ତ୍ରଣ କଲେ । ସେ ଋଷିକେଶସ୍ଥ ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କର ଜଣାଶୁଣା ଶିଷ୍ୟ ଥିଲେ ଏବଂ ବେଦର ଜ୍ଞାନ ଓ ବୁଝାମଣାପାଇଁ ସେ ଦୂରଦୂରାନ୍ତରେ ମଧ୍ୟ ଆଦୃତ ହେଉଥିଲେ । ପ୍ରଥମ ଥର ତାଙ୍କର କୁଟୀରକୁ ଯିବା ପରେ ଆମେ କେତେଗୁଡ଼ିଏ ସନ୍ଧ୍ୟା ଏକତ୍ର ବିତାଇଲୁ । ତାଙ୍କ ସହିତ ହୋଇଥିବା ଆଲୋଚନାରୁ ମୁଁ ବହୁତ କିଛି ଶିଖିଲି ।

ବହୁ ବର୍ଷ ପରେ ମୋତେ ସ୍ୱାମୀ ଭେଙ୍କଟେଶାନନ୍ଦ ଓ ଜିଡ୍ଡୁ କ୍ରିଷ୍ଣମୂର୍ତ୍ତିଙ୍କ ମଧ୍ୟରେ ହୋଇଥିବା ଏକ ସଜୀବ ଆଲୋଚନା ଶୁଣିବାର ସୁଯୋଗ ମିଳିଥିଲା । ସ୍ୱାମୀ ଭେଙ୍କଟେଶାନନ୍ଦଙ୍କର ମତ ଥିଲା ଗୁରୁଙ୍କର ଆବଶ୍ୟକତା ରହିଛି, ଆଉ ସବୁବେଳ ପରି କ୍ରିଷ୍ଣମୂର୍ତ୍ତିଙ୍କର ମତ ଅନୁସାରେ ଗୁରୁ କେବଳ ଅନାବଶ୍ୟକ ନୁହନ୍ତି ବରଂ ସତ୍ୟର ସନ୍ଧାନପାଇଁ ସେ ହେଉଛନ୍ତି ବାଧା ସ୍ୱରୂପ । ସେହି ତର୍କର କୌଣସି ଉପସଂହାର ହୋଇପାରି ନ ଥିଲା ।

× × ×

ବାବାଜୀ ମେ ମାସରେ ଫେରିଲେ ଏବଂ ଆମେ ଉତ୍ତରକାଶୀରେ ପାଞ୍ଚଦିନ ଏକାସାଙ୍ଗରେ ବିତାଇଲୁ । ତା'ପରେ ଗୋମୁଖ ଯିବାର କଥା ଥିଲା । ବାବାଜୀ ଫେରିବା ପରଦିନ ମୁଁ ତାଙ୍କୁ ଆଦରଣୀୟ ବୃଦ୍ଧ ମହାତ୍ମାଙ୍କ କଥା କହିଲି, ''ବୁଝିଗଲି'', ସେ କହିଲେ, ''ଆଉ ତୁମେ ଚାହୁଁଛ ଯେ ମୁଁ ତାଙ୍କୁ ସାକ୍ଷାତ କରେ ?''

''ମୋତେ ଲାଗୁଛି ଯେ କେବଳ ଆପଣ ହିଁ ତାଙ୍କର ସହାୟତା କରିପାରିବେ ।'' ମୁଁ କହିଲି ।

ପରଦିନ ବାବାଜୀ ମୋତେ ନେଇ ମହାତ୍ମାଙ୍କୁ ଦେଖାକରିବାକୁ ଗଲେ । ସେ ତାଙ୍କର ପ୍ରିୟ ପଥରର ଚଟାଣ ଉପରେ ବସିଥିଲେ । ଆମକୁ ଦେଖି ତଳକୁ ଓହ୍ଲାଇ ଆସି, ସେ ହାତଯୋଡ଼ି ବାବାଜୀଙ୍କୁ ପ୍ରଣାମ କଲେ । ମୁଁ ମଧ୍ୟ ତାଙ୍କୁ ସେହିପରି ଭାବରେ ଅଭିବାଦନ

କଲି । ବାବାଜୀ କହିଲେ, ‘‘ପ୍ରଣାମ, ସ୍ୱାମୀଜୀ ଆପଣ କ’ଣ ଚାହୁଁଛନ୍ତି ଯେ ଯେତେବେଳେ ଆମେ କଥାବାର୍ତ୍ତା ହେବା, ସେତେବେଳେ ମୁଁ ମଧୁକୁ ଏଠାରୁ ଚାଲିଯିବାକୁ କହିବି ?’’

‘‘ପ୍ରଣାମ, ଯୋଗୀଜୀ ମହାରାଜ’’, ସନ୍ନ୍ୟାସୀ କହିଲେ, ‘‘ତାକୁ ଏଇଠାରେ ରହିବାକୁ ଦିଅନ୍ତୁ । ହୁଏତ ଆମର ଚର୍ଚ୍ଚାରୁ ତା’ର ଲାଭ ହୋଇପାରେ । ସେ ଏଠାରେ ରହିଲେ ମୋର କିଛି ଅସୁବିଧା ନାହିଁ ।’’

ଏହା ମୋର ସୌଭାଗ୍ୟ ଯେ ସେମାନଙ୍କର ଆଲୋଚନାବେଳେ ମୁଁ ସେଠାରେ ଉପସ୍ଥିତ ଥିଲି । ଆମେ ସେହିଠାରେ ବସିଗଲୁ । ବାବାଜୀ ତାଙ୍କର ସ୍ୱଷ୍ଟ ଢଙ୍ଗରେ କହିଲେ, ‘‘ବାବାଜୀ, ମୁଁ ଆପଣଙ୍କର ଜ୍ଞାନର ଏବଂ ଯେପରି ଭାବରେ ଆପଣ ସାହସର ସହିତ ମଠାଧୀଶ ହେବାକୁ ଅସ୍ୱୀକାର କରିଛନ୍ତି, ତାହାର ଆଦର କରେ । ଆପଣ ନିଜର ଦଣ୍ଡୀ ଓ ମୁକୁଟ ମଧ୍ୟ ଫିଙ୍ଗି ଦେଇଛନ୍ତି ଏବଂ ଆଜି ଏକ ପରିବ୍ରାଜକ ସନ୍ନ୍ୟାସୀ ପରି ସରଳ ଜୀବନ ଯାପନ କରୁଛନ୍ତି । ଏହା ଏକ ବିରାଟ କଥା; କିନ୍ତୁ ତେବେ ବି ଆପଣ ଯେଉଁ ବ୍ରହ୍ମର ସନ୍ଧାନ କରୁଛନ୍ତି, ତାହାଠାରୁ ବହୁତ ଦୂରରେ ଅଛନ୍ତି । କାରଣ ଜ୍ଞାନର ବୋଝ ଏବଂ ପାଣ୍ଡିତ୍ୟ, ଯାହାକୁ ଆପଣ ମୁଣ୍ଡରେ ବୋହି ଚାଲିଛନ୍ତି, ତାହା ସତ୍ୟକୁ ବୁଝିବାରେ ପ୍ରଭାବଶାଳୀ ବାଧକର କାମ କରୁଛି । ମୁଁ କ’ଣ ଆଉ ଆଗେଇବି ?’’

‘‘ନିଶ୍ଚୟ, ଆପଣଙ୍କର କଥା କିଛିଟା ବୋଧଗମ୍ୟ ହେଉଛି ।’’

‘‘ଆପଣ ନିଜର ଅର୍ଜିତ ଜ୍ଞାନରେ ଏତେ ଭରପୂର ହୋଇ ରହିଛନ୍ତି ଯେ ସତ୍ୟ ପାଇଁ ସ୍ଥାନ ହିଁ ନାହିଁ, ସେ ବାହାରେ ରହି ପ୍ରବେଶ କରିବାକୁ ଅପେକ୍ଷା କରିଛି । ନିଜର ବୋଝ ଓହ୍ଲାଇ ଦିଅନ୍ତୁ । ସେସବୁକୁ ଫିଙ୍ଗି ଦିଅନ୍ତୁ ଓ ରିକ୍ତତାକୁ ଆପଣେଇ ନିଅନ୍ତୁ ଯେମିତି ଆପଣ ପ୍ରଚୁର ଭାବରେ ସତ୍ୟକୁ ପାଇପାରିବେ ।’’

‘‘ମୁଁ ସବୁବେଳେ ଭାବେ ଯେ ଈଶାବସ୍ୟ ଉପନିଷଦର ଏହି ଶ୍ଳୋକର ଅସଲ ଅର୍ଥ କ’ଣ ବୋଲି – ଯେ ଜ୍ଞାନର ଆରାଧନା କରେ ସେ ଆହୁରି ଗଭୀର ଅନ୍ଧକାରରେ ପ୍ରବେଶ କରେ’’, ସନ୍ନ୍ୟାସୀ କହିଲେ, ‘‘ମୁଁ ପାରମ୍ପରିକ ଅର୍ଥକୁ କେବେ ସ୍ୱୀକାର କରି ପାରି ନ ଥିଲି ଯେ ଏଠାରେ ‘ଜ୍ଞାନ’ର ଅର୍ଥ ହେଉଛି ଅପରା ବିଦ୍ୟା ବା ଅନାବଶ୍ୟକ ଜ୍ଞାନ ଇତ୍ୟାଦି । ଋଷି ନିଜର କଥା ସିଧାସିଧା କହୁଥିଲେ, ଯଦି ସେ ଏହା ହିଁ କହିବାକୁ ଚାହୁଁଥିଲେ ତେବେ ସିଧା ଅପରା ଶବ୍ଦର ପ୍ରୟୋଗ କରିପାରିଥାଆନ୍ତେ । ଏବେ ମୋର ବୋଧଗମ୍ୟ ହେଉଛି । ଦୟାକରି କହି ଚାଲନ୍ତୁ, ମହାରାଜ ।’’

ବାବାଜୀ କହିଲେ, ‘‘ଆପଣ ଠିକ୍ କହିଲେ । ‘ଅପରା’ ଶବ୍ଦର ପ୍ରୟୋଗ କରାଯାଇ ନାହିଁ କାରଣ ‘ବିଦ୍ୟା’କୁ ବିଶେଷଣର ଆବଶ୍ୟକତା ନ ଥିଲା । ତଥ୍ୟ ହେଉଛି ଯେ କେବଳ

ଜ୍ଞାନ ହିଁ ପରମ ସତ୍ୟ ବୁଝିବାପାଇଁ ବାଧକ ହୋଇଥାଏ ବୋଲି ମୁଁ ବୋଧକରେ । ଦେଖନ୍ତୁ, ମୁଁ ଯେତେବେଳେ କୌଣସି ବିଷୟରେ ଜ୍ଞାନ ପ୍ରାପ୍ତ କରିବାକୁ ଚେଷ୍ଟା କରେ, କ'ଣ ପ୍ରକ୍ରିୟା ହୁଏ ? ପ୍ରଥମେ ମୁଁ ମନଦେଇ ଦେଖେ, ପୁଣି ବୁଝେ, ତା'ପରେ ତାକୁ ସ୍ମୃତିରେ ରଖେ, ନୁହେଁ ?''

:''ଆଜ୍ଞା ।''

''କିନ୍ତୁ 'ସତ୍ୟ' ଅତୀତ ବା ଭୂତ ବସ୍ତୁ ନୁହେଁ । ସେ ଶାଶ୍ୱତ, ସବୁବେଳେ ବର୍ତ୍ତମାନ, ତେଣୁ ତାକୁ ସ୍ମୃତିରେ ସଞ୍ଚୟ କରିହେବ ନାହିଁ କାରଣ ସ୍ମୃତି ହେଉଛି ଭୂତ ବସ୍ତୁ, ମୃତ, ଭୂତ । ଅନ୍ୟ ଦିଗରେ ସତ୍ୟ ବର୍ତ୍ତମାନରେ ଅଛି, ସେ ତ ଏବେ ବି ଅଛି, ଶାଶ୍ୱତ ପ୍ରବାହ, ଜୀବନରେ ଭରପୂର ତେଣୁ ଜ୍ଞାନ ଦ୍ୱାରା ତାହାକୁ ବୁଝିହେବ ନାହିଁ ।

''ମନ, ଯେପରି କେନୋପନିଷଦ କହୁଛି, 'ଏହାକୁ ବୁଝିହେବ ନାହିଁ ।' କେବଳ ଯେତେବେଳେ ମନରୁ ଆମର ବିଜ୍ଞ ମସ୍ତିଷ୍କରେ ଭର୍ତ୍ତି ହୋଇଥିବା ଅଳିଆମଳିଆ ଖାଲି ହୋଇଯାଏ ମନ ସ୍ଥିର ଓ ଶାନ୍ତ ହୋଇଯାଏ । ଏହା ଯେତେବେଳେ କିଛି ହେବାର କିମ୍ବା କିଛି ପାଇବାର ସଂଘର୍ଷରୁ ମୁକ୍ତ ହୋଇଯାଏ ସେତେବେଳେ ସେହି ସଦା ବର୍ତ୍ତମାନ ସତ୍ୟର ପ୍ରକଟିତ ହେବାର ଅବକାଶ ଆସେ ।

ଅହଂକାର ଏବଂ ଶୁଣାଶୁଣି ଦ୍ୱାରା ହୋଇଥିବା ଅପ୍ରତ୍ୟକ୍ଷ ଜ୍ଞାନରେ ରଞ୍ଜିତ କାଚର ଦ୍ୱାରଗୁଡ଼ିକୁ ଏବଂ ଝରକାଗୁଡ଼ିକୁ ଖୋଲା ରଖିବାକୁ ହେବ, ଯେପରି ମଧୁର, ଦୈବୀ ପବନର ପ୍ରବାହ ଭିତରକୁ ଆସିପାରିବ । ଆଶାକରେ ଯାହା ମୁଁ କହୁଛି ତାହା ସ୍ପଷ୍ଟ ହେଉଛି ?''

ଏକ ଦୀର୍ଘ ମୌନତା ପରେ ବୃଦ୍ଧ କଥା କହିଲେ ।

''ଆହା ! ମହାନ ମୌନ ! ମୁଁ ଏପରି ନିରବତାରେ ଜୀବନରେ କେବେହେଲେ ବସି ନାହିଁ । ଯଦିଓ ମୁଁ ସ୍ୱୀକାର କରିବା ଉଚିତ ଯେ ଥରେ ଦି'ଥର ମୁଁ ଏପରି ମାନସିକ ସ୍ଥିତିର ଦ୍ୱାର ଦେଶରେ ଥିଲି, ଯେତେବେଳେ ମୁଁ ବିଶେଷ କିଛି ନ କରି, କେବଳ ନଦୀ ବା ଉପରର ପରିଷ୍କାର ଆକାଶକୁ ଦେଖୁଥିଲି ।''

ବାବାଜୀ କହିଲେ, ''ଯେତେବେଳେ ମୌନ ଆପଣଙ୍କ ଉପରେ ବଳେବଳେ ପ୍ରଭାବ ବିସ୍ତାର କରିବ, କିଛି କରିବେ ନାହିଁ, ବାସ୍, ଶାନ୍ତ ରହିବେ । ଶ୍ରୀ ଗୁରୁ ବାବାଜୀ ଆପଣଙ୍କୁ ଆଶୀର୍ବାଦ ଦିଅନ୍ତୁ, ଆପଣଙ୍କୁ ସତ୍ୟ ପ୍ରାପ୍ତ ହେଉ । ମୋର ଆପଣଙ୍କ ସହିତ ଆଉ ସାକ୍ଷାତ ହେବ ନାହିଁ । ଆମେ ଗୋମୁଖ ଚାଲିଯାଉଛୁ ।''

ଏତିକି କହି ବାବାଜୀ ଉଠି ଠିଆହେଲେ ଓ ଆମେ ବୃଦ୍ଧଙ୍କଠାରୁ ବିଦାୟ ନେଲୁ । ଲୁହଭରା ଆଖିରେ ସେ ବାବାଜୀଙ୍କର ପାଦ ସ୍ପର୍ଶ କରିବାର ପ୍ରୟାସ କଲେ; କିନ୍ତୁ ବାବାଜୀ ତାଙ୍କର କାନ୍ଧକୁ ଧରିନେଇ ତାଙ୍କର ସେହି ଚେଷ୍ଟାରେ ବାଧା ଦେଲେ । ''ଆପଣ ହେଉଛନ୍ତି ତ୍ୟାଗୀ ଶ୍ରେଣୀର ସନ୍ନ୍ୟାସୀ ଏବଂ ଗେରୁଆ ପିନ୍ଧୁଛନ୍ତି, ସେ କହିଲେ, ''ପୁଣି ଆପଣ ଜଣେ ନିଷ୍କପଟ ବ୍ୟକ୍ତି ଏବଂ ବାହାରର ଦୁନିଆପାଇଁ ମୋର ବୟୋଜ୍ୟେଷ୍ଠ । ତେଣୁ ମୁଁ ଆପଣଙ୍କୁ ନିଜର ପାଦ ଛୁଇଁବାକୁ ଦେଇପାରିବି ନାହିଁ । ମୁଁ ଆପଣଙ୍କ ଆଖିରେ ମୋ ପ୍ରତି ସ୍ନେହ ଦେଖିପାରୁଛି, ତାହା ହିଁ ଯଥେଷ୍ଟ ।''

ଆମେ ତାଙ୍କୁ ଗଙ୍ଗାକୂଳରେ ଠିଆ ହୋଇଥିବାର ଛାଡ଼ି ଚାଲିଆସିଲୁ । ଆମେ ଆଖିର ଆଢୁଆଳକୁ ଚାଲିଯିବା ପର୍ଯ୍ୟନ୍ତ ସେ ଆମକୁ ଚାହିଁ ରହିଥା'ନ୍ତି । ''ବାବାଜୀ'', ମୁଁ କହିଲି, ''ମୋତେ ମଧ୍ୟ ସତ୍ୟର ଦର୍ଶନ କରାଇ ଦିଅନ୍ତୁ । ଆଜି ମୁଁ ଭାରି ଗୂଢ଼ କଥା ବୁଝିଲି । ଆପଣ କେତେ ଦୟାଳୁ !''

ବାବାଜୀ ହସିଲେ ଓ ତାଙ୍କର ଡାହାଣ ବାହୁ ମୋ କାନ୍ଧ ଉପରେ ରଖିଦେଲେ, ''ପ୍ରତି କଥା ନିଜର ଉପଯୁକ୍ତ ସମୟରେ'', ସେ କହିଲେ, ''ଗୁରୁବାର ସକାଳେ ଆମେ ଗୋମୁଖକୁ ଯାତ୍ରା ଆରମ୍ଭ କରିବା ।''



# ଶ୍ରୀ ବିଦ୍ୟାର ଦୀକ୍ଷା

ପର ଗୁରୁବାର ଦିନ ଆମେ ଗୋମୁଖ ଉଦ୍ଦେଶ୍ୟରେ ବାହାରି ପଡ଼ିଲୁ । ଏହା ହେଉଛି ଭାଗୀରଥୀ ନଦୀର ଉତ୍ସ ସ୍ଥାନ । ଭାଗୀରଥୀର ଦ୍ୱିତୀୟ ନାମ ହେଉଛି ଗଙ୍ଗା । ପ୍ରାଚୀନ ଭାରତୀୟ ମହାକାବ୍ୟଗୁଡ଼ିକରେ ଉଲ୍ଲେଖ ରହିଛି ଯେ ସଗର ବଂଶର ରାଜା ଭଗୀରଥଙ୍କ ନାମ ଅନୁସାରେ ନଦୀର ନାମକରଣ ହୋଇଥିଲା । ସେ ଗଙ୍ଗାକୁ ତାଙ୍କର ସ୍ୱର୍ଗୀୟ ନିବାସରୁ ପୃଥିବୀକୁ ଆଣିଥିଲେ । ସେହି କାହାଣୀ ହେଉଛି ଏହି ପ୍ରକାରର –

ହଜାର ହଜାର ବର୍ଷ ତଳେ ଶକ୍ତିଶାଳୀ ରାଜା ସଗର ବହୁ ଯୁଦ୍ଧ ଲଢ଼ିଥିଲେ ଓ ଅନେକ ରାଜ୍ୟ ଜିଣିଥିଲେ । ତା'ପରେ ସେ ଅଶ୍ୱମେଧ ଯଜ୍ଞ କଲେ – ସେପରି କଲେ ଯଜ୍ଞ କରୁଥିବା ରାଜା ଗୋଟିଏ ଘୋଡ଼ାକୁ ଅନ୍ୟ ରାଜ୍ୟରେ ସ୍ୱାଧୀନ ଭାବରେ ବୁଲିବାକୁ ଛାଡ଼ିଦେଉଥିଲେ । ଯଦି କେହି ଘୋଡ଼ାକୁ ଧରିଦେଉଥିଲା, ତେବେ ତାକୁ ଯଜ୍ଞ କରୁଥିବା ରାଜାଙ୍କର ସେନା ସହିତ ଯୁଦ୍ଧ କରିବାକୁ ପଡୁଥିଲା । ଯେଉଁ ରାଜ୍ୟରେ ଘୋଡ଼ା ଧରା ହେଉଥିଲା, ସେହି ରାଜ୍ୟ ଯୁଦ୍ଧରେ ଜିଣିବା ପକ୍ଷର ହୋଇଯାଉଥିଲା ।

ସ୍ୱର୍ଗର ରାଜା ଇନ୍ଦ୍ର ଭାବିଲେ, ଯଦି ସଗରର ଯଜ୍ଞ ସଫଳ ହୋଇଯିବ, ତେବେ ସେ ଭାରି ଶକ୍ତିଶାଳୀ ହୋଇଯିବ । ଏମିତି ବି ହୋଇପାରେ ସେ ସ୍ୱର୍ଗକୁ ଅଧିକାର କରିନେବ ଓ ତାଙ୍କର ସିଂହାସନ ଅକ୍ତିଆର କରିନେବ । ତେଣୁ ସେ ନିଜର ଐନ୍ଦ୍ରଜାଲିକ ଶକ୍ତିଦ୍ୱାରା ଘୋଡ଼ା ଚୋରାଇନେଲେ ଓ ମହାନ ଋଷି କପିଳଙ୍କ ଆଶ୍ରମ ପାଖରେ ଲୁଚାଇ ଦେଲେ ।

ସଗରଙ୍କର ଷାଠିଏ ହଜାର ପୁତ୍ର, ଯେଉଁମାନେ ଘୋଡ଼ାକୁ ଖୋଜୁଥିଲେ, କପିଳଙ୍କର ଆଶ୍ରମରେ ପହଞ୍ଚିଗଲେ ଓ ଘୋଡ଼ାକୁ ସେଠାରେ ପାଇଲେ । କପିଳଙ୍କୁ ଘୋଡ଼ା ଚୋରାଇ ନେଇଥିବାର ଭାବି ତାଙ୍କୁ ସେମାନେ ଧମକ ଦେଲେ । ଋଷି ଗଭୀର ଭାବରେ ଧ୍ୟାନମଗ୍ନ ଥିଲେ । ଉପଦ୍ରବଦ୍ୱାରା ବିକ୍ଷୁବ୍ଧ ହୋଇ ସେ ଆଖି ଖୋଲିଲେ ଓ କ୍ରୋଧର ଏକ ବିରଳ ପ୍ରଦର୍ଶନ କରି ସଗରଙ୍କର ଗୋଟିଏ ମାତ୍ର ପୁତ୍ରକୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ଦୃଷ୍ଟିପାତ ଦ୍ୱାରା ଭସ୍ମ କରିଦେଲେ । ଗୋଟିଏ ପୁତ୍ର ବଞ୍ଚିଗଲା, କାରଣ ସେ ତା'ର କାର୍ଯ୍ୟପାଇଁ ଅନୁତାପ କରିଥିଲା ।

ଶେଷ ପୁତ୍ରର ପୁତ୍ର ଅଂଶୁମାନ ନିଜର ଭସ୍ମୀଭୂତ ପୂର୍ବପୁରୁଷମାନଙ୍କର ମୁକ୍ତିପାଇଁ ଘୋର ତପସ୍ୟା କଲେ; କିନ୍ତୁ କପିଳ ମୁନି କହିଲେ, ଭସ୍ମୀଭୂତମାନଙ୍କୁ ମୁକ୍ତି ମିଳିବ; କିନ୍ତୁ ସ୍ୱର୍ଗରୁ ଗଙ୍ଗାନଦୀଙ୍କୁ ପୃଥିବୀକୁ ଆସି ସେହି ଭସ୍ମକୁ ସ୍ପର୍ଶ କରିବାକୁ ପଡ଼ିବ । ଅଂଶୁମାନ ବହୁତ ପ୍ରଯତ୍ନ କଲାପରେ ମଧ୍ୟ ଗଙ୍ଗା ପୃଥିବୀକୁ ଆସିବାକୁ ରାଜି ହେଲେ ନାହିଁ । ତାଙ୍କର ପୁତ୍ର ଦିଲୀପ ମଧ୍ୟ ଚେଷ୍ଟା କରି ଅସଫଳ ହେଲେ । ହେଲେ ତାଙ୍କର ପୌତ୍ର ଭଗୀରଥ କଠିନ ତପସ୍ୟା କରି ଗଙ୍ଗାଙ୍କୁ ରାଜି କରାଇଲେ ଓ ସେ ପୃଥିବୀକୁ ଅବତରଣ କରିବାକୁ ରାଜି ହୋଇଗଲେ; କିନ୍ତୁ ଗୋଟାଏ ସମସ୍ୟା ଥିଲା, ଗଙ୍ଗାବତରଣ ହେତୁ ଯେଉଁ ଭୟାନକ ସଂଘର୍ଷ ହେବ, ସେଥିରେ ପୃଥିବୀ ଧ୍ୱସ୍ତ-ବିଧ୍ୱସ୍ତ ହେବ ଏବଂ ସେଥିରେ ଛେଦ ମଧ୍ୟ ସୃଷ୍ଟି ହୋଇପାରେ ।

କେବଳ ଜଣେ ହିଁ ପୃଥିବୀକୁ ଏହି ବିନାଶରୁ ବଞ୍ଚାଇ ପାରିବେ । ସେ ହେଉଛନ୍ତି କୈଳାସ ପର୍ବତବାସୀ ମହାନ ଯୋଗୀ-ଦେବତା ଶିବ । ଭଗୀରଥଙ୍କର ଭକ୍ତିରେ ପ୍ରସନ୍ନ ହୋଇ ଶିବ ଗଙ୍ଗାଙ୍କର ଉଗ୍ର ଶକ୍ତିଶାଳୀ ଧାରାକୁ ନିଜର ମସ୍ତକରେ ଧାରଣ କରି ତାଙ୍କର ଜଟାଜୁଟ ମଧ୍ୟ ଦେଇ ଧୀର ଭାବରେ ପୃଥିବୀ ପୃଷ୍ଠରେ ଛାଡ଼ିବାପାଇଁ ସହମତ ହେଲେ । ଯେହେତୁ ସେ ଭଗୀରଥଙ୍କର ତପସ୍ୟାରେ ସନ୍ତୁଷ୍ଟ ହୋଇ ଅବତରଣ କରିଥିଲେ, ଗଙ୍ଗାଙ୍କୁ ଭାଗୀରଥୀ ମଧ୍ୟ କୁହାଯାଏ ଏବଂ ଗୋମୁଖ ହେଉଛି ସେହି ସ୍ଥାନ ଯେଉଁଠାରେ ସେ ଅବତରଣ କରିଥିଲେ ।

ଗୋମୁଖର ରାସ୍ତା ଭୈରବ ଘାଟୀ ଏବଂ ଗଙ୍ଗୋତ୍ରୀ ଦେଇ ଯାଇଛି । ସେଠାରେ ଦେବୀ ଗଙ୍ଗାଙ୍କୁ ସମର୍ପିତ ଏକ ମନ୍ଦିର ରହିଛି । ଗଙ୍ଗୋତ୍ରୀର ପାଖଆଖରେ ଅନେକ ଆଶ୍ରମ ଅଛି ଏବଂ ଗ୍ରୀଷ୍ମକାଳ ସାରା ଅନେକ ସାଧୁ ସେଠାରେ ବାସ କରନ୍ତି । ଉର୍ଦ୍ଧ୍ୱରୁ ଗଙ୍ଗା ଅତ୍ୟନ୍ତ ବେଗରେ ଗଙ୍ଗୋତ୍ରୀକୁ ଆସନ୍ତି, ତା'ପରେ ଉତ୍ତରକାଶୀକୁ ଅବତରଣ କରନ୍ତି । ଗଙ୍ଗୋତ୍ରୀରୁ ଆପଣ ଚମକୁଥିବା ସୁଦର୍ଶନ ଶୃଙ୍ଗ ଦେଖିପାରିବେ ।

ଗଙ୍ଗୋତ୍ରୀରେ ଆମେ ଦୁଇଦିନ ଉଦାସୀନ ସମ୍ପ୍ରଦାୟର ଜୁନା ଆଖଡ଼ାର କୁଟିରରେ ବିତାଇଲୁ । ପର୍ବତରୁ ଓହ୍ଲାଉଥିବା ନଦୀର ଶବ୍ଦ ମୋତେ ମୁଗ୍ଧ କରିଦେଇଥିଲା । ଆମକୁ ଗଙ୍ଗୋତ୍ରୀରେ ପହଞ୍ଚିବାକୁ ଚାରିଦିନ ଲାଗିଥିଲା । ଗୋମୁଖ ଉଦ୍ଦେଶ୍ୟରେ ବାହାରିବାର ଦିନକ ପୂର୍ବରୁ ରାତିର ଆମେ ଧୁନିର ସାମ୍ନାରେ ବସିଥିବା ସମୟରେ ବାବାଜୀ ହଠାତ୍ କହିଲେ, ''ସ୍ଥିର ହୁଅ, ବୃଦ୍ଧ ସନ୍ନ୍ୟାସୀ ଶାନ୍ତିରେ ଦେହତ୍ୟାଗ କରିଛନ୍ତି ।'' ଯେତେବେଳେ

ମୁଁ ସେ ବିଷୟରେ ଆଉ କିଛି ପ୍ରଶ୍ନ ପଚାରିବାକୁ ଚେଷ୍ଟା କଲି, ସେ କହିଲେ, ‘‘ବର୍ତ୍ତମାନ ଆଉ ସେ ବିଷୟରେ କିଛି ପ୍ରଶ୍ନ କର ନାହିଁ ।’’

ପରେ ଯେତେବେଳେ ଆମେ ଗୋମୁଖରୁ ଫେରି ଉତ୍ତରକାଶୀ ଗଲୁ, ଲକ୍ଷ୍ମଣପୁରୀ ମୋତେ କହିଲେ ଯେ ଆମର ଉତ୍ତରକାଶୀ ଛାଡ଼ିବାର ଚାରିଦିନ ପରେ ନିଜର ପ୍ରିୟ ପଥର ଚଟାଣରୁ ଗଙ୍ଗାକୁ ଦେଖୁଥିବା ସମୟରେ, ନିଜର ମୁଖକୁ ଆନନ୍ଦର ହସରେ ଉଦ୍ଭାସିତ କରି, ବୃଦ୍ଧ ସନ୍ନ୍ୟାସୀ ଶାନ୍ତିରେ ଦେହତ୍ୟାଗ କରିଛନ୍ତି । ଉତ୍ତରକାଶୀର ଡାକ୍ତରଖାନାର ଡାକ୍ତରଙ୍କ କଥା ଅନୁସାରେ ତାଙ୍କର ହୃଦ୍‌ଘାତ ହୋଇଥିଲା ।

ପରଦିନ ଆମେ ଗଙ୍ଗୋତ୍ରୀରୁ ଗୋମୁଖ ଏବଂ ତପୋବନର ଯାତ୍ରା ଆରମ୍ଭ କରିଦେଲୁ । ପବିତ୍ର ଗ୍ରାମ ଗଙ୍ଗୋତ୍ରୀ ପଛରେ ରହିଯିବା ପରେ ବାତାବରଣ ଶାନ୍ତ ହୋଇଯାଏ । ଭାଗୀରଥୀର ସେପଟେ ଗୁଡ଼ାଏ ପ୍ରାକୃତିକ ଗୁମ୍ଫା ଅଛି । ଚାରିଘଣ୍ଟାରେ ଆମେ ଚିଡ଼ବାସା ପହଞ୍ଚିଗଲୁ । ସେହି ସ୍ଥାନରେ ବହୁ ପରିମାଣରେ ଚିଡ଼ (ଶର) ବା ପାଇନଗଛ ଥିବାରୁ ତାହାର ନାଁ ଏପରି ହୋଇଛି । ସେଠାରୁ ଦୂରରେ ଜ୍ୟୋତି ବିକୀର୍ଣ୍ଣ କରୁଥିବା ଗଙ୍ଗୋତ୍ରୀ ହିମବାହ ଦେଖାଯାଏ ।

ସେଠାରେ ଅଧଘଣ୍ଟାଏ ବିଶ୍ରାମ କରି, ବତୁରା ଚଣା ଖାଇବା ପରେ ପାଣି ପିଇ ଆମେ ଆଗକୁ ଚାଲିଲୁ ଏବଂ ଭୋଜବାସା ଅର୍ଥାତ୍ ଭୋଜପତ୍ର (ଭୂର୍ଜପତ୍ର)ର ବନରେ ପହଞ୍ଚିଗଲୁ । ଭୋଜବାସାରେ ଆମେ ଜଣେ ଲୋହିତ ବସ୍ତ୍ରଧାରୀ ତାନ୍ତ୍ରିକ ସାଧୁଙ୍କର ଅତିଥି ହୋଇଥିଲୁ । ଜଣାପଡୁଥିଲା ସେ ବାବାଜୀଙ୍କୁ ଭଲ ଭାବରେ ଜାଣିଥିଲେ । ସେ ଆମକୁ ରୁଟି, ଡାଲି ଓ ତରକାରି ଇତ୍ୟାଦିର ଉତ୍ତମ ଭୋଜନ ଦେବା ପରେ ଆଉ କିଛିଦିନ ରହିଯିବା ପାଇଁ ବାବାଜୀଙ୍କ ସହିତ ଲଗାଇଥାଆନ୍ତି । ବାବାଜୀ ଗୋମୁଖରେ ରହିବାକୁ ଠିକଣା କରିଥିଲେ, ତେଣୁ ଖାଇବା ପରେ ଆମେ ପୁଣି ବାହାରିପଡ଼ିଲୁ ।

ଭୋଜବାସାରୁ ଭାଗୀରଥୀ ପର୍ବତର ଶୃଙ୍ଗଗୁଡ଼ିକ ଦେଖାଯାଉଥାଏ । କିଛି ସମୟ ପରେ ପିରାମିଡ୍ ପରି ଦିଶୁଥିବା ଶିବଲିଙ୍ଗ ପର୍ବତ ଦୃଷ୍ଟିଗୋଚର ହେଲା । ଏହା ସମୁଦ୍ରତଳରୁ ଏକୋଇଶ ହଜାର ଫୁଟ ଉଚ୍ଚ । ଆଉ ଘଣ୍ଟାଏ ଚାଲିବା ପରେ ଆମେ ଗୋମୁଖରେ ପହଞ୍ଚିଗଲୁ । ମୋତେ ତ ଦୃଶ୍ୟ ଅନିର୍ବଚନୀୟ ଲାଗିଲା । ଗାଈର ମୁହଁ ପରି ଦିଶୁଥିବା ବରଫାବୃତ ଓଷ୍ଠାକୃତି ଏକ ମୁଖରୁ ଗଙ୍ଗା ନିଃସୃତ ହେଉଥିଲେ । ଏହାର ପଛରେ ଥିଲା ଗଙ୍ଗୋତ୍ରୀ ହିମବାହ, ଯାହାକୁ ପଚାଶ କିଲୋମିଟର ଲମ୍ବା ବୋଲି କୁହାଯାଏ । ଚାରିଆଡ଼ଯାକ ଖାଲି ଜମା ହୋଇଥିବା ବରଫ ଆଉ ବରଫ । ବରଫର ବଡ଼ ବଡ଼ ଖଣ୍ଡ ତୀବ୍ର ସ୍ରୋତରେ

ବହି ଅସୁଥାଏ । ମୁଁ ଅତିରିକ୍ତ ଆନନ୍ଦର ଆବେଗରେ ଡେଇଁବାକୁ ଲାଗିଲି, ଭୂଇଁରେ ଲୋଟିଗଲି । "ଶାନ୍ତ ହୁଅ", ବାବାଜୀ ମୃଦୁହସି କହିଲେ, "ଛାଡ଼, ଗୋଟିଏ ସଂକ୍ଷିପ୍ତ ବୁଡ଼ ପକାଇଦେବା ।" ମୁଁ ଜଲ୍‌ଦି ଜଲ୍‌ଦି ବୁଡ଼ି ପଡ଼ି ନିଜର ଦେହହାତ ପୋଛି ପକାଇଲି । ଅଳ୍ପ ସମୟପାଇଁ ସାମାନ୍ୟ ଖରା ପଡ଼ିଲା, ତେଣୁ ଆମେମାନେ ସେଥିରେ ନିଜନିଜକୁ ଓ ଲୁଗାପଟା ଶୁଖାଇ ନେଇପାରିଲୁ ।

ଗୋମୁଖ ଓ ତପୋବନ ମଧ୍ୟରେ କିଛି ପ୍ରାକୃତିକ ଗୁମ୍ଫା ଥିଲା । ସେଠାରେ ବାବାଜୀଙ୍କର ଜଣେ ପୁରୁଣା ବନ୍ଧୁ ଥିଲେ, ଯାହାଙ୍କୁ ସେ କେବଳ 'ଦାଦା' ବୋଲି ଡାକୁଥିଲେ । ସେ ପଶ୍ଚିମବଙ୍ଗର ଥିଲେ ଓ ଗ୍ରୀଷ୍ମ ଋତୁରେ ଏହି ଗୁମ୍ଫାରେ ରହୁଥିଲେ । ଆମେ ହିମବାହର କୂଳେ କୂଳେ ପ୍ରାୟ ଅଧଘଣ୍ଟା ଧରି ତୀଖ ଚଢ଼ାଣିରେ ଚଢ଼ି ତାଙ୍କର ଗୁମ୍ଫାରେ ପହଞ୍ଚିଲୁ । ଦାଦା ଆମର ପ୍ରତୀକ୍ଷା କରୁଥିଲେ । ଏତେ ଦୂରଦୂରାନ୍ତରେ ଥିବା ବରଫଢଙ୍କା ସ୍ଥାନରେ ମଧ୍ୟ ସେ ଧୁନି ଜଳାଇ ରଖିଥିଲେ । ଗୁମ୍ଫା ବେଶ ବଡ଼ ଥିଲା । ଗୁମ୍ଫାମୁଖର ଅଧିକାଂଶ ଅଂଶ ପଥର ଦେଇ ବନ୍ଦ କରି ଦିଆଯାଇଥିଲା । ଭୂଇଁ ଉପରେ କାଠର ପଟା ଖଟ ପରି ବ୍ୟବହାର ହେଉଥିଲା । ସେ ଆମକୁ ଆହୁରି କମ୍ବଳ ମଧ୍ୟ ଦେଲେ ।

ଆମେ ସନ୍ଧ୍ୟାରେ ଭାତ ଓ ଆଳୁ ଖାଇଲୁ ଏବଂ ରାତିଟା ଗୁମ୍ଫାରେ ବିତାଇଲୁ । ଦାଦାଜୀ ମୋତେ କହିଲେ ଯେ ମୋ ପାଇଁ ବାବାଜୀଙ୍କୁ ପାଇବା ବଡ଼ ଭାଗ୍ୟର କଥା । "ସେ ଚେଲା ନେବାକୁ ଭାରି ଇତସ୍ତତଃ କରନ୍ତି", ସେ କହିଲେ, "ତୁମେ ଭାରି ଭାଗ୍ୟବାନ, ଯେତେବେଳେ ବି ମୁଁ ତାଙ୍କୁ ମୋତେ ତାଙ୍କର ଶିଷ୍ୟ କରିନେବାକୁ କହେ, ସେ କୁହନ୍ତି ଯେ ବନ୍ଧୁ ହୋଇ ରହିବା ଭଲ ।"

ପରଦିନ ଆମେ ତପୋବନର ଉଠାଣି ଚଢ଼ିଲୁ, ଦି'ଘଣ୍ଟା ଲାଗିଲା । ଶିବଲିଙ୍ଗର ପୂରା ଶୃଙ୍ଗ ଦେଖାଗଲା ଏଥର । ହିମାଚ୍ଛାଦିତ ପର୍ବତଶ୍ରେଣୀ ଉପରେ ସୂର୍ଯ୍ୟାଲୋକର ପ୍ରତିଫଳନ ବିଭିନ୍ନ ବର୍ଣ୍ଣ ପ୍ରଦର୍ଶନକାରୀ ଥିଲା । ଡାହାଣପଟେ ଭୃଗୁପନ୍ଥ ଶିଖର ଥିଲା ଏବଂ ମେରୁ ଥିଲା । ଶିବଲିଙ୍ଗଙ୍କର ବାଁ ପଟେ ଭାଗୀରଥି ଶୃଙ୍ଗ ଥିଲା । ତା' ପଛରେ ଥିଲା ସତୋପନ୍ତର ଶୃଙ୍ଗ । ଉତ୍ତରରେ ମାନା ପର୍ବତ ଓ ଉତ୍ତୁଙ୍ଗ କୈଳାସ । ଡାହାଣ ଆଡ଼କୁ ସୁଦର୍ଶନ ପର୍ବତ ଶିଖର ଥିଲା । ଆଉ ଅଧଘଣ୍ଟାଏ ମଧ୍ୟରେ ଆମେ ତପୋବନ ଘାଟୀର ସବୁଠାରୁ ଉଚ୍ଚସ୍ଥାନକୁ ଚଢ଼ିଗଲୁ । ଗଙ୍ଗୋତ୍ରୀ ହିମବାହ ଆମର ନିମ୍ନ ଦେଶରେ ପ୍ରସାରିତ ଥିଲା । ଆମେ ଆହୁରି ଆଗକୁ ଚାଲିଲୁ ଓ ସେହି ସ୍ଥାନରେ ପହଞ୍ଚିଗଲୁ, ଯେଉଁଠାରେ ଗଙ୍ଗୋତ୍ରୀ

ଓ କୀର୍ତ୍ତି ହିମବାହ ଦୁଇଟି ମିଳିତ ହୁଅନ୍ତି । ଦକ୍ଷିଣ ପଟେ ଦୂରରେ ଆମେ କେଦାର ଦେଖିପାରୁଥାଉ ଏବଂ ବାଁ ପଟେ ସତୋପନ୍ତ । ତା'ପରେ ଆମେ ଓହ୍ଲାଇ ଗୁମ୍ଫାକୁ ଚାଲିଆସିଲୁ । ଆମେ ଗୁମ୍ଫାରେ ପାଞ୍ଚଦିନ ରହିଲୁ । ଦାଦା ଆମପାଇଁ ସପ୍ତାହକର ଖାଦ୍ୟ ସାମଗ୍ରୀ ଓ କାଠ ଯୋଗାଡ଼ କରି ରଖିଥିଲେ ।

ଦିନେ ବାବାଜୀ ଦାଦାଜୀଙ୍କୁ କହିଲେ, "ଦାଦା, ତୁମେ କାଲି ମଧୁକୁ ଶ୍ରୀ ବିଦ୍ୟାର ଦୀକ୍ଷା ଦେଇଦିଅ ।"

"କିନ୍ତୁ ବାବାଜୀ", ଦାଦାଜୀ ବିରୋଧ କଲେ, "ଆପଣ ଏଠି ଥାଉ ଥାଉ ମୁଁ କେମିତି ଏ କାମ କରିବି ? ଆପଣ ନିଜେ କରନ୍ତୁ ।"

"ନା, ନା ତୁମେ କର । ବିଶେଷ କାରଣ ହେତୁ ମୁଁ ତୁମକୁ ଏହା କରିବାକୁ କହୁଛି ।"

ଦାଦା ରାଜି ହୋଇଗଲେ ଓ ମୋତେ 'କ' ଧ୍ୱନିରୁ ଆରମ୍ଭ ହେଉଥିବା ଲୋପାମୁଦ୍ରା ଶ୍ରେଣୀର ଷୋହଳ ଅକ୍ଷର ବିଶିଷ୍ଟ (ଷୋଡ଼ାକ୍ଷରୀ) ଶ୍ରୀ ବିଦ୍ୟାର ମନ୍ତ୍ର ଦେଲେ, "କ୍ରିୟା ଯୋଗ କୁଣ୍ଡଳିନୀ ଶକ୍ତିପାଇଁ ମେରୁଦଣ୍ଡର ମଧ୍ୟନଳୀର ପଥ ପରିଷ୍କାର କରେ", ଦାଦାଜୀ କହିଲେ, "ଶ୍ରୀ ବିଦ୍ୟାର ଶବ୍ଦ-ତରଙ୍ଗଗୁଡ଼ିକ ମସ୍ତିଷ୍କ-ମେରୁଦଣ୍ଡୀୟ ଚକ୍ରଗୁଡ଼ିକୁ କ୍ରିୟାନ୍ୱିତ କରିବାପାଇଁ ସାହାଯ୍ୟ କରେ ଏବଂ ସେଗୁଡ଼ିକୁ ଉର୍ଦ୍ଧ୍ୱଗାମୀ କୁଣ୍ଡଳିନୀ ଶକ୍ତିକୁ ଧାରଣ କରିବାପାଇଁ ପ୍ରସ୍ତୁତ କରେ ।

ବାବାଜୀ ସ୍ୱୟଂ ଶ୍ରୀ ବିଦ୍ୟାର ଜଣେ ବିଶେଷଜ୍ଞ ଏବଂ ଚକ୍ର-ଧାରଣର ଏହି ପ୍ରଣାଳୀର ଶିକ୍ଷା ମୁଁ କେବଳ ତାଙ୍କର ଆଜ୍ଞାନୁସାରେ ତୁମକୁ ଦେଉଛି ।"

ପରଦିନ ମୁଁ ବାବାଜୀଙ୍କୁ ପଚାରିଲି, "ଆପଣ ମୋର ଗୁରୁ ଏବଂ ଯାହାସବୁ ମୁଁ ଶିଖିଲି, ସେସବୁ ଶିଖିବା କ'ଣ ଜରୁରୀ ? ବିଶେଷରେ ଅନ୍ୟ ଜଣଙ୍କଠାରୁ ? ମୁଁ ଯଦି ଭୁଲ ପ୍ରଶ୍ନ କରିଥାଏ, ତେବେ କ୍ଷମା କରିବେ ।"

ବାବାଜୀ କହିଲେ, "ବାପା, ତୁମକୁ ବିଭିନ୍ନ ପ୍ରକାରର ଆଧ୍ୟାତ୍ମିକ ସାଧକ ଓ ତଥାକଥିତ ଆଧ୍ୟାତ୍ମିକ ଗୁରୁ ମିଳିବେ । ମୁଁ ଚାହେଁ ତୁମେ ଏହି ବିଷୟରେ ପୂରା ଜ୍ଞାନ ଅର୍ଜନ କରିନିଅ ତାହାହେଲେ ତୁମର କାହାକୁ ଡରିବାର ଆବଶ୍ୟକତା ପଡ଼ିବ ନାହିଁ ଯେ ସେ ଶ୍ରୀ ବିଦ୍ୟା ଜାଣନ୍ତି; କିନ୍ତୁ ତୁମେ ଜାଣ ନାହିଁ ।

ଦ୍ୱିତୀୟତଃ କିଛି ଆଧ୍ୟାତ୍ମିକ ସାଧକଙ୍କୁ ନିଜର ବିକାଶକୁ ଶକ୍ତିଶାଳୀ କରିବାପାଇଁ ଶ୍ରୀ ବିଦ୍ୟାର ଆବଶ୍ୟକତା ପଡ଼ିପାରେ ଯଦି ତୁମେ ଏସବୁ ନ ଜାଣିବ, ତେବେ ସେମାନଙ୍କର ସହାୟତା କିପରି କରିବ ?

ସବୁ ପ୍ରକାରର ସିଦ୍ଧାନ୍ତ ହେଉଛନ୍ତି ଛାଞ୍ଚ । ଆକାରହୀନ, ନମନଶୀଳ, ଅକ୍ଷତ ପଦାର୍ଥଗୁଡ଼ିକୁ ସେଥିରେ ନ୍ୟସ୍ତ କରିବା ଆବଶ୍ୟକ, ଯାହାଦ୍ୱାରା କୌଣସି ବ୍ୟବସ୍ଥା କରାଯାଇ ପାରିବ; କିନ୍ତୁ ମନେରଖ ଛାଞ୍ଚକୁ ନ ଭାଙ୍ଗିଲେ ତୁମେ ଛାଞ୍ଚରେ ପଡ଼ିଯାଇଥିବା ପଦାର୍ଥକୁ ବାହାରକୁ ଆଣିପାରିବ ନାହିଁ ।

ତେଣୁ ଛାଞ୍ଚର ଆବଶ୍ୟକତା ଅଛି ଏବଂ ଶେଷରେ ତା'ର ବିସର୍ଜନର ମଧ୍ୟ । ବୁଝିଲ ?''

''ହଁ ବାବାଜୀ, କିଛି କିଛି ବୁଝିପାରୁଛି'', ମୁଁ ବିନୟର ସହିତ କହିଲି ।

ଗୋମୁଖରୁ ଆମେ ଋଷିକେଶ ଫେରିଆସିଲୁ ।



# ଜର୍ମାନଠାରୁ ଶିଖିଥିବା ବିଦ୍ୟା

ବାବାଜୀଙ୍କ ସହିତ ତିନିବର୍ଷ ରହିବା ଭିତରେ ଆମେ ଥରେ ଗୋମୁଖ, ଦି'ଥର ଗଙ୍ଗୋତ୍ରୀ, ଥରେ ଯମୁନୋତ୍ରୀ ଏବଂ ଦି' ଦି' ଥର ବଦ୍ରିନାଥ, କେଦାରନାଥ ଗଲୁ । ଗଙ୍ଗୋତ୍ରୀକୁ ଆମେ ଦ୍ୱିତୀୟଥର ଯାଇଥିବାବେଳେ ବାବାଜୀଙ୍କର ଜଣେ ଜର୍ମାନ ବିଦ୍ୟାର୍ଥୀଙ୍କୁ ଭେଟିଲୁ, ଯେ ମସ୍ତିଷ୍କରୋଗ-ବିଶେଷଜ୍ଞ ଥିଲେ । ବାବାଜୀ ତାଙ୍କୁ କେବଳ 'ଜର୍ମାନ' କହୁଥିଲେ । ମୁଁ ତାଙ୍କର ଅସଲ ନାଁ ଆପଣଙ୍କୁ କହିପାରିବି ନାହିଁ । ବ୍ୟକ୍ତିଗତ କାରଣରୁ ସେ ନିଜର ନାଁ ଗୋପନ ରଖିବାକୁ ମତେ ଅନୁରୋଧ କରିଥିଲେ । ମୁଁ ମଧ୍ୟ କେବଳ ତାଙ୍କୁ ଜର୍ମାନ ହିଁ କହିବି । ସେ ଆମର ଗଙ୍ଗୋତ୍ରୀର କୁଟୀରକୁ ଆମ ସହିତ ଦେଖାକରିବାକୁ ଆସିଲେ ।

ବାବାଜୀ ଏହି କଥା କହି ତାଙ୍କର ପରିଚୟ ଦେଲେ, "ଆମ ଜର୍ମାନ ଡାକ୍ତର ଷ୍ଟୁଟ୍‌ଗାର୍ଟରୁ ଆସିଛନ୍ତି । ସେ ଜଣେ ତନ୍ତ୍ରିକା ବିଜ୍ଞାନୀ (ନ୍ୟୁରୋଲଜିଷ୍ଟ) ଏବଂ ଦଶବର୍ଷ ଧରି ମୋର ଛାତ୍ର । ସେ ଗଙ୍ଗୋତ୍ରୀରେ ମାସେ ରହିବେ । ମୁଁ ତୁମକୁ ତାଙ୍କଠାରୁ ମାନବ ଶରୀର ସଂରଚନା, ମସ୍ତିଷ୍କ ସଂରଚନା ଏବଂ ମସ୍ତିଷ୍କ-ମେରୁଦଣ୍ଡର ଅଧାରଭୂତ ଜ୍ଞାନ ପ୍ରାପ୍ତ କରିନେବା ଚାହେଁ । ନିଜର ମସ୍ତିଷ୍କର କାର୍ଯ୍ୟପ୍ରଣାଳୀକୁ ବୁଝିପାରିବା ହେଉଛି ନିଜକୁ ନିଜେ ବୁଝିପାରିବାର ଏକ ଉପାୟ । ଯାହାକୁ ଆମେ ସାଧାରଣତଃ ମନ କହୁ, ତାହା ହେଉଛି ମସ୍ତିଷ୍କ ହିଁ । ଯଦି ତୁମେ ଭଲ ଭାବରେ ବୁଝିପାରିବ, ତେବେ ଚେତନାର ଉଚ୍ଚତର ସ୍ତରଗୁଡ଼ିକର ଗବେଷଣା କରିବା ସହଜସାଧ୍ୟ ହେବ, ଯାହା ସାଧାରଣ ବିଚାର ପ୍ରକ୍ରିୟାଠାରୁ ଊର୍ଦ୍ଧ୍ୱରେ ।

ଆମେ ବାକ୍-ରହିତ ରୂପରେ ସମ୍ପର୍କ ରଖୁ ଏବଂ ସେ ତୁମ ବିଷୟରେ ବହୁତ କିଛି ଜାଣନ୍ତି ।"

ଡାକ୍ତର ସାହେବଙ୍କର ପଢ଼ାଇବାର ଶୈଳୀ ଭାରି ପକ୍କା ଥିଲା, ଯାହା ହେଉଛି ଜର୍ମାନ ଲୋକମାନଙ୍କର ବିଶେଷତ୍ୱ । ତାଙ୍କ ପାଖରେ ଚିତ୍ର ଓ ଚାର୍ଟ୍ ଥିଲା । ମୁଁ ଅନୁମସ୍ତିଷ୍କ, ମଧ୍ୟମସ୍ତିଷ୍କ, ଯାହାକୁ ଲିମ୍ବିକ୍ ସିଷ୍ଟେମ୍ ବା 'ସରୀସୃପୀୟ ମସ୍ତିଷ୍କ' ବୋଲି କୁହାଯାଏ,

କୋର୍ପସ କେଲୋସମ୍‌ଦ୍ୱାରା ଯୋଡ଼ି ହୋଇଥିବା ଦୁଇ ଗୋଲାର୍ଦ୍ଧ ଥିବା ପ୍ରମସ୍ତିଷ୍କ, ମେରୁଦଣ୍ଡ, ସ୍ୱାୟତ୍ତ ସ୍ନାୟୁତନ୍ତ୍ର, ଅନୁକମ୍ପୀ ସ୍ନାୟୁତନ୍ତ୍ର, ସ୍ନାୟୁମଣ୍ଡଳ ଏବଂ ମସ୍ତିଷ୍କ-ମେରୁଦଣ୍ଡ-ତନ୍ତ୍ର ସହିତ ସମ୍ବନ୍ଧ ଥିବା ଅନ୍ୟ ସବୁ ବିଷୟର ଅଧ୍ୟୟନ କଲି; ଖାଲି ନିଜେ ଶବ-ପରୀକ୍ଷା ବା କଟାକଟି କଲି ନାହିଁ ।

ସେହି ଅଧ୍ୟୟନବେଳେ ମୁଁ ଜାଣିଲି ଯେ, 1700-1800 ଶତାବ୍ଦୀ ସୁଦ୍ଧା ମସ୍ତିଷ୍କ-ବିଜ୍ଞାନୀମାନଙ୍କର ସନ୍ଦେହ ଥିଲା ଯେ ମସ୍ତିଷ୍କର ଦୁଇଟି ଗୋଲାର୍ଦ୍ଧ ଯଦ୍ୟପି ଗୋଟିଏ ଅନ୍ୟଟି ସହିତ ଯୋଡ଼ିହୋଇ ରହିଥିଲା ଏବଂ ଗୋଟିଏ ଅନ୍ୟଟିର କାର୍ଯ୍ୟକଳାପର ପରିପୂରକ ଥିଲା, ବାସ୍ତବରେ ତାଙ୍କର ଅଲଗା ଅଲଗା ବୈଶିଷ୍ଟ୍ୟ ଥିଲା । ଜର୍ମାନଜଣକ ଜର୍ମାନୀରେ ନିଜର ପ୍ରୟୋଗଶାଳାରେ ଯୋଗ-ଶାସ୍ତ୍ରର ହଠଯୋଗ ପ୍ରଦୀପିକା ଏବଂ ଷଡ଼୍‌ଚକ୍ର ନିରୂପଣ ପରି ପ୍ରାଚୀନ ଗ୍ରନ୍ଥଗୁଡ଼ିକରୁ ମିଳୁଥିବା ଜ୍ଞାନର ତୁଳନା ଆଧୁନିକ ତନ୍ତ୍ରିକା-ବିଜ୍ଞାନ ସହିତ କରୁଥିଲେ । ତାହା ସହିତ ସେ ସନ୍ଧାନ କରୁଥିଲେ ଯେ, ଚେତନାର ବିସ୍ତାର ତନ୍ତ୍ରିକା-ବିଜ୍ଞାନର ଭାଷାରେ ବ୍ୟାଖ୍ୟାୟିତ କରାଯାଇପାରିବ କି ନାହିଁ । ଏହା ଏକ ନୂତନ ଆବିଷ୍କାର ହେବ ।

ଏବେ ଯେବେ ମୁଁ ଅଲିଭ ସୈକ୍ସଙ୍କର ବହି, ଏଣ୍ଟୋନିଓ ଆର୍. ଦମାସିୟୋଙ୍କର 'Descarte's Error', ନିଜର ବନ୍ଧୁ ଡାକ୍ତର ବି.ଏମ୍. ରାମଚନ୍ଦ୍ରନଙ୍କର 'Phantoms in the Brain' ଇତ୍ୟାଦି ପଢ଼େ, ମୋତେ ଲାଗେ ଜର୍ମାନଙ୍କର ସିଦ୍ଧାନ୍ତରେ ଆଜିର ତନ୍ତ୍ରିକା-ବିଜ୍ଞାନୀମାନଙ୍କର ସବିସ୍ତାର ପ୍ରତିପାଦିତ ସିଦ୍ଧାନ୍ତଗୁଡ଼ିକରେ ବୀଜ ନିହିତ ଥିଲା । ଦୁର୍ଭାଗ୍ୟ ଯେ, ଏହି ବିଷୟରେ ଲେଖୁଥିବା କୌଣସି ଲେଖକ ଯୋଗ-ଶାସ୍ତ୍ରର ପ୍ରାଚୀନ ଗ୍ରନ୍ଥଗୁଡ଼ିକର ଅଧ୍ୟୟନ କରି ନାହାନ୍ତି । ଏହାଠାରୁ ଅଧିକ ଦୁଃଖର କଥା ହେଉଛି ଯେ, ମୋ ସହିତ ଦେଖା ହେବାର ତିନିବର୍ଷ ପରେ ଜର୍ମାନ ସଡ଼କ ଦୁର୍ଘଟଣାରେ ପ୍ରାଣ ହରାଇଲେ । ତେଣୁ ଯେଉଁ ଅନୁସନ୍ଧାନ ସେ କରୁଥିଲେ, ସବୁ ନିଷ୍ଫଳ ଗଲା ।

ବାବାଜୀ କହିଲେ ଯେ ଜର୍ମାନଙ୍କର ପୁନର୍ଜନ୍ମ ତାଙ୍କର ଅନୁସନ୍ଧାନପାଇଁ ଅନୁକୂଳ ପରିସ୍ଥିତିରେ ହେବ । ମୋତେ ଜଣା ନାହିଁ କେତେବେଳେ, କେଉଁଠି, କିପରି; କିନ୍ତୁ ମୁଁ ଆପଣମାନଙ୍କୁ ଜର୍ମାନଙ୍କର ବାବାଜୀଙ୍କ ସହିତ ପ୍ରଥମ ସାକ୍ଷାତର ମୋହିତ କରିଦେବା ପରି କାହାଣୀ କହିବାକୁ ଚାହେଁ, ଯେପରି ଜର୍ମାନ ମୋତେ କହିଥିଲେ ।

"ମୁଁ ଦୁଇଟି କାରଣରୁ ହିମାଳୟକୁ ଆସିଲି । ଗୋଟିଏ ହେଲା ତ ସିଧା-ସିଧା ହିମାଚ୍ଛାଦିତ ପର୍ବତଗୁଡ଼ିକର ଶୁଦ୍ଧ ଆକର୍ଷଣ, ହିମାଳୟକୁ ଯାତ୍ରା କରିଥିବା କିଛି ପର୍ଯ୍ୟଟକଙ୍କର ମନୋମୁଗ୍ଧକର ବିବରଣୀ ଶୁଣି ମୁଁ ମନ୍ତ୍ର-ମୁଗ୍ଧ ହୋଇଯାଇଥିଲି । ଦ୍ୱିତୀୟ କାରଣ ହେଲା

ହିନ୍ଦୁଦର୍ଶନ, ତନ୍ତ୍ର ଏବଂ ଯୋଗରେ ମୋର ରୁଚି । ସାର୍ ଜନ୍ ଉଡ୍ରଫ୍‌ଙ୍କର ‘The Serpent Power’ (କୁଣ୍ଡଳିନୀ ଶକ୍ତି) ପଢ଼ି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି ଯେ କୁଣ୍ଡଳିନୀ ଶକ୍ତିର ମାର୍ଗ ଏବଂ ମସ୍ତିଷ୍କ-ମେରୁଦଣ୍ଡ ତନ୍ତ୍ରରେ କେତେ ସାମଞ୍ଜସ୍ୟ ଅଛି । ସବୁଠାରୁ ଉର୍ଦ୍ଧ୍ୱରେ ଥିବା ଚକ୍ର, ବ୍ରହ୍ମ-ରନ୍ଧ୍ର ଇତ୍ୟାଦିର ବର୍ଣ୍ଣନା କରାଯାଇ ପାରି ନ ଥା'ନ୍ତା ଯଦି ପୁରାତନ ଯୋଗୀମାନଙ୍କୁ ମାନବ-ଶରୀର-ରଚନା ଏବଂ ମସ୍ତିଷ୍କର ସଂରଚନାର ଗଭୀର ଜ୍ଞାନ ନ ଥା'ନ୍ତା ।

ସେହି ସବୁରୁ ମୋତେ ପ୍ରେରଣା ମିଳିଲା ଯେ, ମୁଁ ହିମାଳୟକୁ ଯିବି ଓ ପ୍ରକୃତ ଯୋଗୀମାନଙ୍କର ସନ୍ଧାନ କରିବି, ଯଦି ଏବେ ବି ସେମାନେ ଥାଆନ୍ତି । ସେତେବେଳକୁ ମୁଁ ପୂରାପୂରି ଭାବରେ ମସ୍ତିଷ୍କବିଜ୍ଞାନୀ ହୋଇଯାଇଥିଲି ଓ ଷ୍ଟୁଟଗାର୍ଟ୍‌ର ଏକ ଡାକ୍ତରଖାନାରେ କାମ କରୁଥିଲି । ଭାରି କଷ୍ଟରେ ମୁଁ ମୋ ଯାତ୍ରାର ଅସଲ ଉଦ୍ଦେଶ୍ୟ ବିଷୟରେ ନ କହି ମାସକର ଛୁଟି ଯୋଗାଡ଼ କଲି । ସେ ସମୟରେ ଯଦି କୌଣସି ବୈଜ୍ଞାନିକ ଯୋଗ ବା ସେଥି ସମ୍ବନ୍ଧିତ ବିଷୟରେ ରୁଚି ରଖୁଥିଲା, ତେବେ ବୈଜ୍ଞାନିକ ସମ୍ପ୍ରଦାୟ ସାଧାରଣତଃ ତାକୁ ପରମ୍ପରା ବିରୋଧୀ ଓ ପୂରାପୂରି ଭାବରେ ଅବୈଜ୍ଞାନିକ ବୋଲି ଭାବୁଥିଲେ ।

ସେ ସମୟରେ ହିମାଳୟକୁ ଯାତ୍ରା ଏତେ ସହଜ ନ ଥିଲା । ମୁଁ ଉଡ଼ାଜାହାଜରେ ଦିଲ୍ଲୀ ଆସିଲି ଓ ସେଠାରୁ ରେଳଗାଡ଼ିରେ ହରିଦ୍ୱାରରେ ପହଞ୍ଚିବାକୁ ପୂରା ଦିନେ ଲାଗିଗଲା । ସେଠାରୁ ମୁଁ ଗୋଟାଏ ଧଡ଼ଧଡ଼ିଆ ବସ୍‌ରେ ଚଢ଼ିଲି । ମୋତେ ଋଷିକେଶରେ ପହଞ୍ଚିବାକୁ ଅଧା ଦିନ ଲାଗିଗଲା । ଋଷିକେଶରେ ‘ଡିଭାଇନ୍ ଲାଇଫ୍ ସୋସାଇଟି’ରେ ରହିବାପାଇଁ ସ୍ଥାନ ପାଇବା ପରେ ମୁଁ ଆଶ୍ରମର ମୁଖ୍ୟ ସ୍ୱାମୀ ଶିବାନନ୍ଦଙ୍କଠାରୁ ସାହାଯ୍ୟ ମାଗିଲି । ସ୍ୱାମୀଜୀ କହିଲେ, ମୋର ଏଣେ ତେଣେ ବୁଲିବାର ଆବଶ୍ୟକତା ନାହିଁ, ଯାହା ଶିଖିବାର କଥା, ସେ ମୋତେ ଶିଖାଇ ଦେବେ । ମୁଁ କିନ୍ତୁ ସନ୍ତୁଷ୍ଟ ହେଲି ନାହିଁ । ମୋର ନଜର ଥିଲା ଉଚ୍ଚତର ହିମାଳୟରେ । କିଛିଦିନ ପରେ ମୁଁ ଉତ୍ତର କାଶୀ ଯାଉଥିବା ଗୋଟିଏ ବସ୍‌ର ସନ୍ଧାନ ପାଇଗଲି । ସେ ସମୟରେ ଉତ୍ତରକାଶୀରେ ପହଞ୍ଚିବାକୁ ପୂରା ଗୋଟାଏ ଦିନ ଲାଗିଯାଉଥିଲା । ରାସ୍ତା ବିପଜ୍ଜନକ ଥିଲା । ବସର ଗଢ଼ୱାଲୀ ଡ୍ରାଇଭର ଆହୁରି ବିପଜ୍ଜନକ ଥିଲା ।

ପରଦିନ ଆଉ ଗୋଟାଏ ବସ ଧରି ମୁଁ ଗଙ୍ଗୋତ୍ରୀରେ ପହଞ୍ଚିଗଲି । ଗଙ୍ଗୋତ୍ରୀରେ ଗୋଟିଏ ପୁରୁଣା ଆଶ୍ରମରେ ମୋତେ ରହିବାପାଇଁ ଜାଗା ମିଳିଗଲା । ମୁଁ ଚାଲିଚାଲି ଗୋମୁଖ ଯିବାର ଯୋଜନା କରୁଥାଏ । ଦିନେ ମୁଁ ଗଙ୍ଗୋତ୍ରୀ-ମନ୍ଦିର ପାଖରେ ବୁଲୁଥିଲି । ମନରେ ଖାଲି ଏହି କଥା ଖେଳୁଥାଏ ଯେ, କେବେ ଓ କେମିତି ମୁଁ ଜଣେ ଜ୍ଞାନୀ ଯୋଗୀଙ୍କୁ ପାଇବି ।

ଠିକ୍ ସେତିକିବେଳେ ମୋ ସାମ୍ନାରୁ ଜଣେ ଡେଙ୍ଗା, ଡାଗଡ଼ା, ଗୋରା ଏବଂ କେବଳ ଶୁଭ୍ର ଧୋତି ପିନ୍ଧିଥିବା ଓ ଲମ୍ବା କହିରିଆ ବାଳ ଥିବା ଜଣେ ବ୍ୟକ୍ତି ଆସୁଥିବାର ଦେଖିଲି । ସେ ସିଧା ମୋ ଆଡ଼କୁ ଆସିଲେ ଜର୍ମାନ ଭାଷାରେ କହିଲେ, ''ଗ୍ୟୁଟେନ ଟାଗ ।''

ମୋତେ ମୋର ନିଜର କାନକୁ ବିଶ୍ୱାସ ହେଲା ନାହିଁ । 'ଗ୍ୟୁଟେନ ଟାଗ' ମୁଁ ଦୋହରାଇଲି । ''ପ୍ରକୃତରେ ମୋର ଜର୍ମାନ ଭାଷାର ଜ୍ଞାନ ଏତେ ଭଲ ନୁହେଁ, ଆମେ କ'ଣ ଇଂରେଜୀରେ କଥାବାର୍ତ୍ତା ହୋଇପାରିବା ?'' ଅଜଣା ବ୍ୟକ୍ତି କହିଲେ । ''ଅବଶ୍ୟ'', ମୁଁ କହିଲି । ସେ ମୋତେ ଏକଥା କହି ଆଶ୍ଚର୍ଯ୍ୟ କରିଦେଲେ – ''ତେବେ ଠିକ୍ ଅଛି ଡାକ୍ତର, ଆମେ କେଉଁଠି ବସି କଥାବାର୍ତ୍ତା କରିବା ଚାଲ । ଚାଲ, ମୋ କୁଟୀରକୁ ଚାଲ ।''

ଏମିତି ଭାବରେ ଆମର ପ୍ରଥମ ସାକ୍ଷାତ ହୋଇଥିଲା ।

ଜର୍ମାନ ମୋତେ କହିଥିଲେ ଯେ ସେହିଦିନ ତାଙ୍କୁ କ୍ରିୟା-ଯୋଗ ଶିକ୍ଷା ଦିଆଗଲା । ଦଶବର୍ଷ ଧରି ସେ ତା'ର ଅଭ୍ୟାସ କରୁଛନ୍ତି ଏବଂ ବାବାଜୀଙ୍କ ମାର୍ଗ-ଦର୍ଶନରେ ଯୋଗ ତଥା ବେଦାନ୍ତର ଅଧ୍ୟୟନ କରୁଛନ୍ତି । ସେ ବାବାଜୀଙ୍କୁ ନିଜର ଗୁରୁ ମାନୁଥିଲେ । ସେ ଶ୍ରୀ ଗୁରୁଙ୍କ ସାକ୍ଷାତ ପାଇ ନ ଥିଲେ । ବାବାଜୀ ତାଙ୍କୁ କହିଥିଲେ ଯେ ମୁଁ ନିଜର ଏକ ପୂର୍ବଜନ୍ମରେ ଶ୍ରୀଗୁରୁଙ୍କର ଶିଷ୍ୟ ଥିଲି ।

ଜର୍ମାନଙ୍କର ଜୀବନର ଉଦ୍ଦେଶ୍ୟ ଥିଲା, ଯୌଗିକ ଅଭ୍ୟାସଦ୍ୱାରା ଚେତନାକୁ ଅଣାଯାଉଥିବା ରୂପାନ୍ତରଣର ବୈଜ୍ଞାନିକ ଆଧାର ସ୍ଥାପନ କରିବା । ଆମେ ମୋର ଶିକ୍ଷା ସମାପ୍ତ ହେବା ପରେ ଡାକ୍ତରଙ୍କଠାରୁ ବିଦାୟ ନେଲୁ ଏବଂ ଋଷିକେଶ ଫେରିଆସିଲୁ । କିଛିଦିନ ପରେ ଜର୍ମାନଙ୍କର ଗୋମୁଖ ଯିବାର ଥିଲା ।



# ୩୪. ତ୍ରିଭେନ୍ଦ୍ରମକୁ ଆଗମନ

ବାବାଜୀଙ୍କ ସହିତ ସାକ୍ଷାତ ହେବାର ତିନିବର୍ଷ ବିତିଯାଇଥାଏ । ମୋତେ ଲାଗୁଥାଏ ମୋ ଜୀବନର ଏହି ଆନନ୍ଦଦାୟୀ ପରିସ୍ଥିତି ସବୁଦିନପାଇଁ ଏହିପରି ଭାବରେ ଚାଲିଥିବ । ମୋତେ ହିମାଳୟ ଭଲ ଲାଗୁଥିଲା, ମୁଁ ବାବାଜୀଙ୍କୁ ଭଲ ପାଉଥିଲି ଏବଂ କିଛି ମାଲପତ୍ର ନ ନେଇ ଏଭଳି ସ୍ୱାଧୀନ ଭାବରେ ଘୂରିବୁଲିବା ମୋର ପସନ୍ଦ ଥିଲା । ଭାରି ଖୁସି ଥିଲି ଯେ ବିଶୁଦ୍ଧ ସ୍ୱାର୍ଥ ଏବଂ ଲୋଭଦ୍ୱାରା ଚାଳିତ ତଥାକଥିତ ସଭ୍ୟସମାଜରେ ରହିବାର ଜଟିଳତା ଏବଂ କଷ୍ଟରୁ ରକ୍ଷା ପାଇଯାଇଥିଲି । ମୋ ପାଇଁ ବାବାଜୀ ଭଗବାନ ଥିଲେ ଏବଂ ତାଙ୍କ ସହିତ ଏହି ପାହାଡ଼ ଓ ନଦୀ ମଣ୍ଡିତ ଇନ୍ଦ୍ରଜାଲ ସଦୃଶ ଦୁନିଆରେ ରହିବା, ସ୍ୱର୍ଗରେ ରହିବା ପରି ଥିଲା । ମୋର ମନକୁ କେବେହେଲେ ଆସି ନ ଥିଲା ଯେ ମୋତେ ଦିନେ ଏହି ଆଦର୍ଶ ପରିବେଶକୁ ଛାଡ଼ି ଚାଲିଯିବାକୁ ପଡ଼ିବ । ସେତିକିବେଳେ ବାବାଜୀ ଏମିତି ଗୋଟାଏ କାମ କଲେ, ଯାହାଦ୍ୱାରା ମୋର ସ୍ୱପ୍ନ ଭାଙ୍ଗିଗଲା ।

କେତେଥର, ବିଶେଷ ଭାବରେ ସେହି ବର୍ଷ, ବାବାଜୀ ମୋତେ ଅଳ୍ପ ସମୟପାଇଁ ଏକୁଟିଆ ରହିବାପାଇଁ ପଠାଉଥିଲେ । କିନ୍ତୁ ସେଦିନ ସକାଳେ ସେ ଯାହା କଲେ, ତାହା ସମ୍ପୂର୍ଣ୍ଣ ରୂପରେ ଅପ୍ରତ୍ୟାଶିତ ଥିଲା । ସେ ମୋର ଭିତର ପର୍ଯ୍ୟନ୍ତ ଝାଙ୍କିଦେଲେ । ସକାଳର ଧ୍ୟାନ ପରେ ମୁଁ ଯେତେବେଳେ ତାଙ୍କୁ ଦଣ୍ଡବତ କରିବାକୁ ଆସିଲି, ସେ ଗମ୍ଭୀର ସ୍ୱରରେ କହିଲେ, ‘‘ମଧୁ, ମୁଁ ଦେଖୁଛି ଯେ ତୁମର ମୋ ଉପରେ ନିର୍ଭର କରିବାର ମନୋବୃତ୍ତି ବଢ଼ିଚାଲିଛି । ମୋର ଆଧ୍ୟାତ୍ମିକ ଶିକ୍ଷାର ଉଦ୍ଦେଶ୍ୟ ହେଉଛି, ତୁମେ ଠିକ୍ ଅର୍ଥରେ ସ୍ୱାଧୀନ ହୋଇଯିବା ଏବଂ ସ୍ୱାଧୀନ ହୋଇ ମୁକ୍ତ ହେବା । ଯେଉଁ ଯୋଗୀର ଚେତନା ସୀମିତ ଆତ୍ମାର ପଞ୍ଜୁରି ଭାଙ୍ଗି ସାରିଛି, ତାକୁ କୌଣସି ଆଶାବାଡ଼ିର ଆବଶ୍ୟକତା ନାହିଁ, ଗୁରୁ ଭାବରେ ମଧ୍ୟ ନୁହେଁ ।’’

ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେ, ତାଙ୍କର କଥାର ପ୍ରଥମ ଧକ୍କା ପରେ କ୍ରୋଧର ଏକ ତୋଫାନ ମୋ ଭିତରେ ହୋଇଗଲା । ‘‘ତେବେ କୁହନ୍ତୁ ମୁଁ କ’ଣ କରିବି’’, ମୁଁ ସିଧା ତାଙ୍କର ଆଖିକୁ ଚାହିଁ ପଚାରିଲି, ‘‘ମୋର ଯାହା ବି ଥିଲା, ସବୁ ଛାଡ଼ି ଚାଲିଆସିଛି,

ଏପରିକି ମୋର ମା'ଙ୍କୁ ମଧ୍ୟ ଏବଂ ଫେରିବାର ସବୁ ରାସ୍ତା ବନ୍ଦ କରିଦେଇଛି । ମୁଁ ଭାବିଥିଲି, ଆପଣ ମୋର ଆଶ୍ରୟ; କିନ୍ତୁ ଜଣାପଡୁଛି ତାହା ନୁହେଁ । କହନ୍ତୁ, ମୋର କ'ଣ କରିବା ଉଚିତ, ମୁଁ କରିବି ।''

''ଯାଅ'', ବାବାଜୀ କହିଲେ, ''ତୁମକୁ ଏଠାରୁ ଚାଲିଯିବାକୁ ପଡ଼ିବ ଓ ନିଜେ ନିଜେ ସ୍ୱାଧୀନ ଭାବରେ ରହିବାକୁ ପଡ଼ିବ ।''

ମୁଁ କହିଲି ନାହିଁ, ଆପତ୍ତି-ଅଭିଯୋଗ କଲି ନାହିଁ ବା କୌଣସି ବାହାନା କଲି ନାହିଁ । କହିଲି, ''ଆପଣ ଯାହା ଚାହୁଁଛନ୍ତି ତାହା ଖୁବ୍ ଶୀଘ୍ର କରିଦିଆଯିବ'' ଏବଂ ରାଗରୋଷରେ ଜଳି ମୋର ସାମାନ୍ୟ ଯାହା ଥିଲା, ସେସବୁକୁ ଏକାଠି କରିନେଲି, ସବୁ ମିଶି ଗୋଟାଏ କନାର ଥଳି, ଗୋଟାଏ କମ୍ବଳ, ଗୋଟାଏ ବାଡ଼ି ଏବଂ ଗୋଟିଏ କମଣ୍ଡଳୁ ଥିଲା । ତା'ପରେ ତାଙ୍କର ପାଦସ୍ପର୍ଶ କରି ବାହାରିପଡ଼ିଲି । ସେ ଚୁପ୍‌ଚାପ୍ ମୋର ମଥାରେ ହାତ ରଖିଲେ ଓ ଚାହିଁରହିଲେ, ଯେପର୍ଯ୍ୟନ୍ତ ମୁଁ ତାଙ୍କର ଦୃଷ୍ଟିର ଅନ୍ତରାଳ ହୋଇ ନ ଗଲି ।

ବାବାଜୀଙ୍କର ଦୃଷ୍ଟି-ବଳୟରୁ ବାହାରି ଆସିବା ପରେ ମୁଁ ଗଙ୍ଗାକୂଳରେ ବସିଗଲି ଓ ଭୋ ଭୋ ହୋଇ କାନ୍ଦି କାନ୍ଦି ଭାଙ୍ଗିପଡ଼ିଲି । କାନ୍ଦପାଇଁ ମୋର ସାରା ଦେହ ଜୋର୍‌ରେ ହଲୁଥାଏ । ଲୁହ ଭୟ ଓ କ୍ରୋଧକୁ ଭସେଇ ନେଲା । ପୁଣି ମୁଁ ନିଜକୁ ସମ୍ଭାଳି ନେଲି ଯେପରି ମହାନ ମହେଶ୍ୱର ନାଥ ଓ ଶ୍ରୀଗୁରୁ ବାବାଜୀଙ୍କ ଶିଷ୍ୟର କର୍ତ୍ତବ୍ୟ ହେବା ଉଚିତ । ମୁଁ ଉତ୍ତରକାଶୀ ଆଡ଼କୁ ଚାଲିଲି ।

ମୁଁ ଅଧଘଣ୍ଟାଏ ଟେହରୀକୁ ଯାଇଥିବା ରାସ୍ତାରେ ଚାଲିଥିବି କି ନାହିଁ, ବର୍ଷା ଆରମ୍ଭ ହୋଇଗଲା । ମୁଁ ପୂରାପୂରି ଭାବରେ ଭିଜିଗଲି; କିନ୍ତୁ ଚାଲିଥାଏ । ବର୍ଷା ବନ୍ଦ ହୋଇଗଲା ଓ ସୂର୍ଯ୍ୟ ଦେଖାଦେଲେ । ମୁଁ ନିଜକୁ ନିଜେ କହିଲି, ''ତେବେ ଏମିତି ହୁଏ ପରିବ୍ରାଜକ ଯୋଗୀ ! ବର୍ଷା ତାକୁ ଓଦା କରେ ଓ ସୂର୍ଯ୍ୟ ତାକୁ ଶୁଖାଏ । ସେ ଭିକ୍ଷା କରିଥାଏ ଓ ଯେଉଁଠି ଜାଗା ମିଳେ, ସେଠି ଶୁଏ ।'' ମୋର ମନ ଉଲ୍ଲାସରେ ଭରିଗଲା । ବାସ୍ତବରେ ଏହା ଥିଲା ସ୍ୱାଧୀନତାର ମଧୁର ସ୍ୱାଦ ।

ଚନ୍ଦ୍ରଭାଗା କୂଳରେ ମୁଁ ମୟୂରମାନଙ୍କୁ ମଗ୍ନ ହୋଇ ନାଚୁଥିବାର ଦେଖିଲି । ସେହି ଆନନ୍ଦ ମୋର ହୃଦୟ ମଧ୍ୟରେ ପ୍ରବେଶ କରିଗଲା, ମୁଁ ସେମାନଙ୍କ ଭିତରୁ ଅନ୍ୟତମ ହୋଇଗଲି ଏବଂ ଉନ୍ମୁକ୍ତତାର ତରଙ୍ଗରେ ନାଚିଉଠିଲି । କିଏ ଜଣେ ମୋ ପଛରେ ଚାଲୁଥିଲେ । ମୁଁ ପଛକୁ ଫେରି ଚାହିଁବାର ପ୍ରଲୋଭନର ପ୍ରତିରୋଧ କଲି । ସିଧା ଆଗକୁ ଚାହିଁ ମୁଁ ଚାଲୁଥାଏ । କିଏ ହାଲ୍କା ଭାବରେ ନିଜର ହାତ ମୋ ଡାହାଣ କାନ୍ଧ ଉପରେ

ରଖିଲା । ଜଣାଶୁଣା ପରି ଲାଗିଲା, ସେହି ସ୍ପର୍ଶ, ନା, ଏମିତି ହୋଇପାରିବ ନାହିଁ, ମୁଁ ନିଜକୁ ନିଜେ କହିଲି । ସେତିକିବେଳେ ସ୍ନେହସିକ୍ତ ସେହି ସ୍ୱର ଶୁଭିଲା, ''ମଧୁ !''

''ବାବାଜୀ !'' ମୁଁ ବୁଲିପଡ଼ି ତାଙ୍କୁ ଦେଖିଲି । ସେ ମୋତେ ପ୍ରେମରେ ଚାହିଁଥାଆନ୍ତି । ମୁଁ ମୋର ଲୁହକୁ କଷ୍ଟରେ ବନ୍ଦ କଲି ଏବଂ ଚେହେରାରେ ଗମ୍ଭୀର ଭାବ ଆଣିଲି ।

''ତାହାହେଲେ'', ସେ କହିଲେ, ''ତୁମେ ଯାଉଛ ?''

''ଆଜ୍ଞା ବାବାଜୀ, ମୁଁ ଯାଉଛି । ଆପଣ ମୋତେ ବାହାର କରିଦେଲେ ।''

''ଆଚ୍ଛା, ମୁଁ ଯିବାକୁ କହିଲି, ତୁମେ ଚାଲିଗଲ । ଏବେ ଯଦି ମୁଁ ଆସିବାକୁ କହିବି ତେବେ ଫେରି ଆସିବ ?''

ମସ୍ତିଷ୍କର ଗୋଟାଏ ଭାଗ କହିଲା, ମନା କରିବାକୁ, ନଇଁ ନ ପଡ଼ିବାକୁ; କିନ୍ତୁ ଅନ୍ୟ ଅଂଶ ବିଶେଷ ସଂଘାତ ନ କରି ଜିଣିଗଲା । ମୁଁ କହିଲ, ''ହଁ ।''

''ତେବେ ଆସ'', ବାବାଜୀ କହିଲେ, ''ଚାଲ ଫେରିଯିବା । ମୁଁ ତ କେବଳ ତୁମର ପରୀକ୍ଷା କରୁଥିଲି । ଏବେ ଚାଲ ।''

ମୁଁ ତାଙ୍କ ପଛେ ପଛେ ଋଷିକେଶ ଚାଲିଆସିଲି । ଆମେ ମୌନ ରହିଥାଉ । ମୋର ହୃଦୟ ପ୍ରେମ ଏବଂ କୃତଜ୍ଞତାରେ ଉଛୁଳି ପଡୁଥାଏ ।

× × ×

ଛଅ ମାସ ପରେ ଯେତେବେଳେ ମୁଁ ଆଶ୍ୱସ୍ତ ହୋଇଗଲି ଯେ, ସବୁକିଛି ଠିକ୍‌ଠାକ୍ ଚାଲିଛି ଏବଂ ମୁଁ ସବୁଦିନପାଇଁ ହିମାଳୟର ଯାଦୁକରୀ ପରିବେଶରେ ରହିବି, ବାବାଜୀ ମୋତେ ଝାଙ୍କିଦେଇ ସେହି ଭ୍ରମ ଧାରଣାରୁ ବାହାର କରିଆଣିଲେ ।

ଦିନେ ସନ୍ଧ୍ୟାରେ ଧୁନି ପାଖରେ ବସି ସେ ବୋମା ପକାଇଦେଲେ । ''ମଧୁ ତୁମର ଯାହା ଶିଖିବା କଥା ତୁମେ ସବୁ ଶିଖିଯାଇଛ ଓ ତୁମର ହୃଦୟ-କମଳ ପ୍ରସ୍ଫୁଟିତ ହୋଇଯାଇଛି । ଏହା ହେଉଛି ସମତଳ ଭୂମିକୁ ଫେରିବାର ସମୟ, ବାହାରର ଦୁନିଆକୁ । ଶୀଘ୍ର ହିଁ ତୁମକୁ ମୋ'ଠାରୁ ବିଦାୟ ନେଇ ନିଜର ମା' ବାପାଙ୍କ ନିକଟକୁ ଫେରିବାକୁ ହେବ ।''

''କିନ୍ତୁ ବାବାଜୀ'', ମୁଁ ବିରୋଧ କଲି, ''ଆପଣ ମୋତେ ମିଛ ଓ ଠକାମିର ଦୁନିଆକୁ ପଠାଇବାକୁ ଚାହାଁନ୍ତି, ଯେଉଁଠାରେ ସମସ୍ତେ ପଇସା ପଛରେ ଧାଇଁଛନ୍ତି ଆଉ ଲୋଭ ହେଉଛି ଯେଉଁଠାରେ ସମ୍ରାଟଙ୍କର ସମ୍ରାଟ ? ମୁଁ ଏହି ସ୍ୱର୍ଗୀୟ ପର୍ବତଘାଟୀଗୁଡ଼ିକରେ କାହିଁକି ଘୂରି ବୁଲିପାରିବି ନାହିଁ ? ସବୁ ଚିନ୍ତାରୁ ମୁକ୍ତ ହୋଇ ରହି ପାରିବି ନାହିଁ କାହିଁକି ?

ମୁଁ ଆପଣଙ୍କୁ କଥା ଦେଉଛି, ଆପଣଙ୍କୁ ବାରମ୍ବାର ବିରକ୍ତ କରିବି ନାହିଁ । ମୁଁ ଆପଣଙ୍କଠାରୁ ଦୂରରେ ରହିବି ଓ ଆପଣ ଡାକିଲେ ହିଁ ପାଖକୁ ଆସିବି ।'' ମୁଁ ଭାଙ୍ଗିପଡ଼ିଲି ଓ ନିର୍ଲଜ୍ଜ ଭାବରେ କାନ୍ଦି ଚାଲିଲି ଜୋର୍‌ରେ ।

''ନିଜକୁ ସମ୍ଭାଳ'', ବାବାଜୀ କହିଲେ । ''ତୁମେ ଜାଣ ଯେ ମୁଁ କ୍ୱଚିତ କାହାକୁ ଶିଷ୍ୟ କରେ । ମୁଁ ତୁମକୁ ଶ୍ରୀଗୁରୁଙ୍କର ସ୍ପଷ୍ଟ ନିର୍ଦ୍ଦେଶ ଅନୁସାରେ ଗ୍ରହଣ କଲି । ନିଃସନ୍ଦେହରେ ମୁଁ ତୁମକୁ ସ୍ନେହ କରେ ଏବଂ ତୁମର ରକ୍ଷା କରିବି; କିନ୍ତୁ ତାଙ୍କର ଇଚ୍ଛା ବିରୁଦ୍ଧରେ ଯାଇପାରିବି ନାହିଁ । ଏଇଟା ତାଙ୍କର ଇଚ୍ଛା ଥିଲା ଯେ, ସାଢ଼େ ତିନିବର୍ଷର ପ୍ରଶିକ୍ଷଣ ପରେ ତୁମକୁ ସମତଳ ଭୂମିକୁ ପଠାଯିବ । ସେ ଯୋଜନା କରିଥିବା ଅନୁଯାୟୀ, ଲୋକମାନଙ୍କୁ ଶିକ୍ଷା ଦେବା ହେବ ତୁମର ଜୀବନର ଲକ୍ଷ୍ୟ ।

ଆଉ, ତୁମେ ଏତେ ସ୍ୱାର୍ଥପର ଓ କ୍ଷୁଦ୍ର ମନୋବୃତ୍ତିର କିପରି ହୋଇପାରୁଛ ? ଅସଲ କଥା ହେଲା, ତୁମେ ସେହି ତଥାକଥିତ ସଭ୍ୟ ସମାଜରେ ଜୀବନ ବିତାଇବାର କଷ୍ଟ ଓ ଦୁଃଖକୁ ଡରିଯାଉଛ । ଦୁନିଆରେ ଉତ୍ତମ ଓ ବିଶୁଦ୍ଧ ଲୋକ ମଧ୍ୟ ଅଛନ୍ତି, ଯେଉଁମାନେ ତୁମର ଜ୍ଞାନଦ୍ୱାରା ଲାଭବାନ ହେବେ । ଅହଂକାରୀ, ଆତ୍ମକେନ୍ଦ୍ରିକ, ସ୍ୱୟଂନିଯୁକ୍ତ ଜ୍ଞାନର ଗୁରୁ ଯାହାଙ୍କୁ 'ପତିତ' ବୋଲି କହନ୍ତି, ସେମାନଙ୍କର ମଧ୍ୟ ଉଚ୍ଚସ୍ତରରେ ପହଞ୍ଚିବାର ପୂରା ସମ୍ଭାବନା ଅଛି, ଯଦି ସେମାନଙ୍କୁ ସଠିକ ମାର୍ଗ-ଦର୍ଶନ ଦିଆଯିବ । ଯଦି ତୁମେ ସେମାନଙ୍କୁ ରୋଗଗ୍ରସ୍ତ ବୋଲି ଭାବିବ, ତେବେ ଦେଖ, ରୋଗୀମାନଙ୍କପାଇଁ ହିଁ ଡାକ୍ତରର ଆବଶ୍ୟକତା ପଡ଼େ । ତେଣୁ ଦୟାଳୁ ହୁଅ ଏବଂ ନିଜର ବ୍ୟକ୍ତିତ୍ୱକୁ, ନିଜର ବିଶିଷ୍ଟତାକୁ ବାକି ମାନବତା ମଧ୍ୟରେ ବିଲୀନ କରିଦିଅ । ତୁମେ ମହାନ ବୋଧିସତ୍ତ୍ୱଙ୍କର ଶପଥ ତ ଜାଣିଛ ହିଁ, ଯେତେବେଳ ପର୍ଯ୍ୟନ୍ତ ମୁଁ ପ୍ରତିଟି ଜୀବିତ ପ୍ରାଣୀକୁ ନିର୍ବାଣ ପର୍ଯ୍ୟନ୍ତ ନେଇଯାଇ ପାରିବି ନାହିଁ, ସେପର୍ଯ୍ୟନ୍ତ ବାରମ୍ବାର ମୁଁ ଜନ୍ମଗ୍ରହଣ କରିବି । କେତେ ଉଚ୍ଚ ଆଦର୍ଶ ! ତୁମର କ'ଣ କହିବାର ଅଛି, ବାପା ?''

ସେତେବେଳକୁ ମୁଁ ନିଜକୁ ସମ୍ଭାଳିନେଇ ସାରିଥିଲି, ''ମୋତେ ତ ଏହା ଭଲ ଲାଗୁ ନାହିଁ; କିନ୍ତୁ ଯାହା ଆପଣ ଓ ଶ୍ରୀଗୁରୁ ଚାହାଁନ୍ତି, ତାହା ହିଁ ହେବ ।''

''ଉତ୍ତମ ବାଳକ'', ବାବାଜୀ କହିଲେ, ''ତୁମର ଭାବୁକତାପୂର୍ଣ୍ଣ ବିସ୍ଫୋଟ ତ ଆଶା କରାଯାଉଥିଲା ଏବଂ ତାହା ମଧ୍ୟ ଠିକ୍ କଥା; କିନ୍ତୁ ମୁଁ ଦେଖୁଛି ତୁମେ ତାକୁ ସମ୍ଭାଳିନେବା ଶିଖିଗଲଣି । ଭାରି ଭଲ କଥା ।''

''କିନ୍ତୁ ମୋର ଗୋଟାଏ ପ୍ରଶ୍ନ ଅଛି ବାବାଜୀ, ଏହାର ଅର୍ଥ କ'ଣ ମୁଁ ଆଉ କେବେ ଆପଣଙ୍କୁ ଭେଟିବି ନାହିଁ କିମ୍ବା...''

‘‘ନାହିଁ, ନାହିଁ ବାପା, ତୁମେ ନିଶ୍ଚିତ ଭାବରେ ମୋର ଦେଖା ପାଇବ । ଯେତେବେଳେ ମୋତେ ଦରକାର ହେବ, ମୁଁ ତୁମକୁ ଭେଟିବି । ସ୍ୱପ୍ନ ବା ଧ୍ୟାନରେ ସମ୍ପର୍କ ସ୍ଥାପିତ ହେବ ଏବଂ ମୁଁ କହିବି ତୁମକୁ କେଉଁଠିକୁ କେତେବେଳେ ଯିବାକୁ ପଡ଼ିବ ।

ତୁମକୁ ଯେତେ ପାରିବ ସେତେ ବିଭିନ୍ନ ଧାର୍ମିକ ଧାରାଗୁଡ଼ିକର ଶିକ୍ଷା ବିଷୟରେ ନିଜକୁ ଅବଗତ କରାଇବାକୁ ପଡ଼ିବ ଏବଂ ପୂର୍ବରୁ ସ୍ଥାପିତ ହୋଇଥିବା ଆଶ୍ରମଗୁଡ଼ିକରେ ରହିବାକୁ ପଡ଼ିବ । ତୁମକୁ ବିଭିନ୍ନ ଗୁରୁମାନଙ୍କୁ ମଧ୍ୟ ସାକ୍ଷାତ କରିବାକୁ ପଡ଼ିବ, ସେମାନେ ପ୍ରସିଦ୍ଧ ହୁଅନ୍ତୁ ବା ନ ହୁଅନ୍ତୁ । ତୁମେ ପସନ୍ଦ କରିପାରିବ ଯେ, ତୁମେ କାହାକୁ ସାକ୍ଷାତ କରିବାକୁ ଚାହୁଁଛ ଓ କାହାକୁ ସାକ୍ଷାତ କରିବାକୁ ଚାହୁଁ ନାହଁ; କିନ୍ତୁ କିଛି ସମୟ ରାମକୃଷ୍ଣ ମଠରେ ନିଶ୍ଚିତ ଭାବରେ ବିତାଇବ ଏବଂ ନିଜର ପ୍ରଶିକ୍ଷଣ-କାଳର ଶେଷ ଭାଗରେ ଜେ. କୃଷ୍ଣମୂର୍ତ୍ତିଙ୍କୁ ଅବଶ୍ୟ ଭେଟିବ ।

ଫେରିଯାଇ ସାଧାରଣ ଲୁଗାପଟା ପିନ୍ଧିବ ଓ ଅନ୍ୟମାନଙ୍କ ପରି ରହିବ । ନିଜକୁ ବିଶିଷ୍ଟ ଜ୍ଞାନ ଓ ଶକ୍ତି ଥିବା ଲୋକ ପରି ଦେଖାଇବ ନାହିଁ । ଏସବୁକୁ ଗୁପ୍ତ ହିଁ ରହିବାକୁ ଦିଅ । ଯଦି କେହି ଜାଣିନେଲା ଯେ, ତୁମ ନିକଟରେ ବିଶିଷ୍ଟ ସାମର୍ଥ୍ୟ ରହିଛି, ତେବେ ତାକୁ ଚୁପ୍ ରହିବାକୁ କହିବ । ଏହାକୁ ଯେପରି ସେ ବିଜ୍ଞାପିତ ନ କରିବ ।

କେତେ ବର୍ଷ ପର୍ଯ୍ୟନ୍ତ ତୁମେ ଅନ୍ୟମାନଙ୍କୁ ଶିକ୍ଷା ଦେବାର କାମ କରିବା ଦରକାର ନାହିଁ । ତା'ର ସମୟ ଆସିବ ଓ ତୁମକୁ ସବୁଜ ପତାକା ଦେଖାଇ ଦିଆଯିବ । ତୁମେ ବୁଝିପାରିବ ଓ ତା'ପରେ ଉପଦେଶ-ପ୍ରବଚନ-ଶିକ୍ଷା ଦେବାର ସମୟ ଆରମ୍ଭ ହେବ । ତେବେ ମଧ୍ୟ ଯେତେଦୂର ସମ୍ଭବ ଏହି କାର୍ଯ୍ୟ ଚୁପ୍‌ଚାପ୍ ଭାବରେ କରିବ । କେବଳ ସେହିମାନଙ୍କୁ ଶିକ୍ଷା ଦେବ ଯେଉଁମାନେ ପ୍ରକୃତ ସାଧକ, ତାହା ମଧ୍ୟ ଲୋକଦେଖାଣିଆ ଭାବରେ ନୁହେଁ, ଅଧିକ ଶିଷ୍ୟ ଜମା କରିବା ଉଦ୍ଦେଶ୍ୟରେ ନୁହେଁ । ଅନୁର୍ବର ଜମିରେ ହଜାର ହଜାର ମଞ୍ଜି ବରବାଦ କରିବାଠାରୁ ଭଲ ହେଉଛି ଉର୍ବର ଜମିରେ କିଛି ଅଳ୍ପ ମଞ୍ଜି ବୁଣିବା ।’’

‘‘ବାବାଜୀ, ମୋର ଏକ ବିରାଟ ସମସ୍ୟା ଅଛି । ମୋର ମା' ବାପା କୌଣସି ପାତ୍ରୀ ଖୋଜି ମୋତେ ବାହା କରିଦେବାକୁ ଚାହିଁବେ । ମୋର କ'ଣ କରିବା ଉଚିତ ?’’

‘‘ଚିନ୍ତା କର ନାହିଁ, ତାହା ହେବ ନାହିଁ; କିନ୍ତୁ ମୁଁ ତୁମକୁ କହିବାକୁ ଚାହେଁ ଯେ, ଶ୍ରୀଗୁରୁଙ୍କର ଇଚ୍ଛା ହେଉଛି ଯେ ଅନ୍ତତଃ ତୁମେ ବିବାହ କର, ତୁମର ସନ୍ତାନସନ୍ତତି ହୁଅନ୍ତୁ ଏବଂ ତୁମେ ଏକ ସାଧାରଣ ଗୃହସ୍ଥ ପରି ଜୀବନଯାପନ କର । ଏକ ଆଦର୍ଶ ସ୍ଥାପିତ କର । ଏପରି କିଛି ଲୋକ ଅଛନ୍ତି, ଯେଉଁମାନଙ୍କର ଧାରଣା ଯେ ଚେତନାର ଉଚ୍ଚତମ

ସ୍ତରରେ ପହଞ୍ଚିବାପାଇଁ ସନ୍ନ୍ୟାସ ହେଉଛି ଏକମାତ୍ର ରାସ୍ତା । ଏହାକୁ ଅସତ୍ୟ ପ୍ରମାଣିତ କର । ବହୁବର୍ଷ ପୂର୍ବେ ଶ୍ୟାମାଚରଣ ଲାହିଡ଼ୀ ଏହା କରିଥିଲେ । ଏବେ ତୁମକୁ ଏହା କରିବାକୁ ପଡ଼ିବ । ତାହା ସହିତ, ଯାହା ସଙ୍ଗେ ତୁମର ବିବାହ ହେବ, ତୁମର ମସ୍ତିଷ୍କକୁ ପରିପକ୍ୱ କରିବାରେ ତା'ର ଭୂମିକା ରହିବ ଏବଂ ତୁମେ ତାକୁ ଜେ. କୃଷ୍ଣମୂର୍ତ୍ତିଙ୍କ ସହିତ ସାକ୍ଷାତ ପରେ ଭେଟିବ ।''

ମୁଁ ଆହୁରି କେତେ ବିଷୟରେ ବାବାଜୀଙ୍କ ସହିତ ବିସ୍ତାରିତ ଭାବରେ କଥାବାର୍ତ୍ତା କଲି ଏବଂ ପରଦିନ ଋଷିକେଶ ଯାଉଥିବା ରେଳଗାଡ଼ି ଧରିଲି । ବାବାଜୀ ମୋତେ କିଛି ପଇସା ଦେଲେ, ଜଣେ ଶ୍ରୀ ଅଗ୍ରୱାଲଙ୍କ ଠିକଣା ଦେଇ କହିଲେ, ''ଦିଲ୍ଲୀ ଯାଅ ଓ ଅଗ୍ରୱାଲଙ୍କୁ ସାକ୍ଷାତ କର । ମୁଁ ତାଙ୍କୁ ତୁମକୁ ତାଲବ୍ୟ କ୍ରିୟାର ଶିକ୍ଷା ଦେବାକୁ ନିର୍ଦ୍ଦେଶ ଦେଇଛି । ତା'ପରେ ତ୍ରିଭାନ୍ଦ୍ରମ ଯାଅ । ଅଗ୍ରୱାଲ ତୁମକୁ ଟିକେଟ୍ ଓ କିଛି ପଇସା ଦେବେ ।'' ପ୍ରଥମ ଥରପାଇଁ ବାବାଜୀ ମୋତେ ଆଲିଙ୍ଗନ କଲେ । ମୁଁ ଲୁହଭରା ଆଖିରେ ବିଦାୟ ନେଲି ।

ଦିଲ୍ଲୀରେ ଶ୍ରୀ ଅଗ୍ରୱାଲ ରେଳ ଷ୍ଟେସନର ନିର୍ଗମନ ଦ୍ୱାରପାଖରେ ମୋତେ ଅପେକ୍ଷା କରୁଥିଲେ । ''ବାବାଜୀ କହିଲେ ଯେ ତୁମେ ଆସୁଛ'', ସେ କହିଲେ । ସେ କାର୍‌ରେ ବସାଇ ତାଙ୍କର ଗ୍ରେଟର କୈଳାଶର ଘରକୁ ନେଇଗଲେ । ପରଦିନ ସେ ମୋତେ ତାଲବ୍ୟ କ୍ରିୟା ଶିଖାଇଲେ । ସନ୍ଧ୍ୟାବେଳେ ଜଣେ ଦରଜି ମୋ ପାଇଁ ଦି'ହଳ ସାର୍ଟ ପ୍ୟାଣ୍ଟ୍ ନେଇ ଆସିଲା । ''ବାବାଜୀଙ୍କର ଆଦେଶ'', ଶ୍ରୀ ଅଗ୍ରୱାଲ କହିଲେ, ''ତୁମକୁ ତୁମର ବ୍ରହ୍ମଚାରୀ ବେଶ ତ୍ୟାଗ କରି ଏହାକୁ ପିନ୍ଧିବାକୁ ପଡ଼ିବ । ମୁଁ ତୁମପାଇଁ ହଳେ ସ୍ୟାଣ୍ଡଲ୍ ଏବଂ ଗୋଟିଏ ବ୍ୟାଗ୍ ମଧ୍ୟ ଆଣିଛି ।''

ତୃତୀୟ ଦିନ ଶ୍ରୀ ଅଗ୍ରୱାଲ ମାଡ୍ରାସକୁ ଶୟନଯାନର ରେଳ ଟିକେଟ ଓ କିଛି ପଇସା ଦେଲେ । ''ମାଡ୍ରାସରେ ପହଞ୍ଚି ତ୍ରିଭେନ୍ଦ୍ରମର ଟିକେଟ୍ କିଣିନେବ'', ସେ କହିଲେ, ''ଆଉ ବାବାଜୀଙ୍କ କଥା ମନେରଖିବ । ଏକାବେଳେକେ ସାଧାରଣ ବ୍ୟକ୍ତି ହୋଇ ରହିବ । ନିଜର ଆଧ୍ୟାତ୍ମିକ ପ୍ରବୃତ୍ତିଗୁଡ଼ିକୁ ଲୁଚାଇ ରଖିବ ଓ ଆଧ୍ୟାତ୍ମିକ ଅଭ୍ୟାସଗୁଡ଼ିକୁ ଗୁପ୍ତ ରଖିବ ।''

ଶ୍ରୀ ଅଗ୍ରୱାଲ ମୋତେ ମାଡ୍ରାସ ମେଲରେ ବସାଇଲେ ଓ 'ଶ୍ରୀ ଗୁରୁଙ୍କର ଜୟ' କହି ବିଦାୟ ନେଲେ ।



#  ଜୀବନର ଲକ୍ଷ୍ୟପାଇଁ ପ୍ରସ୍ତୁତି

ରେଳଗାଡ଼ି ସନ୍ଧ୍ୟାରେ ତ୍ରିଭେନ୍ଦ୍ରମରେ ପହଞ୍ଚିଲା । ରେଳଷ୍ଟେସନ ସବୁଦିନ ପରି ଶୂନଶାନ ଥିଲା । ମୁଁ ଗାଡ଼ିରୁ ଓହ୍ଲାଇ ପାଖରେ ଗୋଟିଏ ଭଣ୍ଡାରି ଦୋକାନକୁ ଗଲି ଓ ମୋର ବାପାଙ୍କ ଭାଷାରେ ଗୋଟାଏ ବଢ଼ିଆ ହେୟାର୍‌କଟ୍ କଲି । ଭଣ୍ଡାରି ମୋର କାନ୍ଧ ପର୍ଯ୍ୟନ୍ତ ଲମ୍ବିଥିବା ବାଳକୁ କାଟିଦେଲା ଓ ଦାଢ଼ି ଖିଅର କରିଦେଲା । ଅନ୍ଧାର ହୋଇଯାଇଥିଲା, ରାସ୍ତାରେ ଦେଖା ହୋଇଯାଇଥିବା ଚିହ୍ନାପରିଚୟ ଲୋକମାନଙ୍କୁ ନିଜର ଏତେ ଦିନ ଧରି ଅନୁପସ୍ଥିତ ରହିବାର କାରଣ ବୁଝାଇବାର ବିରକ୍ତିରୁ ମୋତେ ରକ୍ଷା ମିଳିଗଲା । ମୁଁ ଚାଲିଚାଲି ଯିବି ବୋଲି ଠିକଣା କଲି ଓ ପଇଁଚାଳିଶ ମିନିଟ୍‌ରେ ଘରେ ପହଞ୍ଚିଗଲି । ଆଶା ଥିଲା ଯେ, ବାପା ମା' ସେତେବେଳ ପର୍ଯ୍ୟନ୍ତ ଘର ବଦଳାଇ ନ ଥିବେ ।

ସାବଧାନରେ ଗେଟ୍ ଖୋଲି ମୁଁ ବଗିଚାରେ ପଶିଲି । ସବୁକିଛି ଆଗ ପରି ଥିଲା । ମୁଁ ଡ୍ରଇଂ ରୁମରେ ପହଞ୍ଚିଲି । ସବା ପ୍ରଥମେ ଯାହାଙ୍କୁ ମୁଁ ଦେଖିଲି, ସେ ଥିଲେ ମୋର ବାପା । ସେ ନିଜର ପ୍ରିୟ ଆରାମ ଚଉକିରେ ବସି ପଲ ବ୍ରଣ୍ଟନଙ୍କର 'ସର୍ଚ୍ଚ ଇନ୍ ସିକ୍ରେଟ ଇଣ୍ଡିଆ' ପଢୁଥିଲେ । ଯେମିତି ସେ ମୋତେ ଭିତରକୁ ଆସିବାର ଦେଖିଲେ, ବହି ରଖିଦେଲେ ଓ ମୋତେ ଚାହିଁଲେ । ସେ ଆଶ୍ଚର୍ଯ୍ୟଜନକ ଭାବରେ ଶାନ୍ତ ସଂଯତ ଥିଲେ । ''ତୁମେ କେଉଁଠି ଥିଲ ? ଆମେ ଭାବିଥିଲୁ ଯେ କୌଣସି ଦୁର୍ଘଟଣା ଇତ୍ୟାଦିରେ ତୁମେ ମରିଯାଇଛ'', ସେ କହିଲେ, ''ଏହାପରେ, ତୁମେ ଯୁଆଡ଼େ ବି ଯାଅ, ସମ୍ପର୍କ ରଖ । ଏବେ ଯାଇ ତୁମର ମା'ଙ୍କୁ ଦେଖାକର ।''

ମୁଁ ଖାଇବା ଘର ଦେଇ ରୋଷେଇଘରେ ପହଞ୍ଚିଲି । ମୋର ମା' ସବୁଦିନ ପରି ରୋଷେଇ କରୁଥିଲେ । ଯେମିତି ସେ ମୋତେ ଦେଖିଲେ, ବଡ଼ ଡଙ୍କି, ଯେଉଁଟାକୁ ସେ ଧରିଥିଲେ, ତାଙ୍କ ହାତରୁ ଖସିପଡ଼ିଲା । ସେ ମୋତେ ଜାବୁଡ଼ି ଧରି ଅସମ୍ଭାଳ ଭାବରେ କାନ୍ଦିବାକୁ ଲାଗିଲେ । ''ଆମକୁ ଛାଡ଼ି ତୁମେ କୁଆଡ଼େ ଚାଲିଯାଇଥିଲ ? ତୁମେ ଗୋଟାଏ ଚିଠି ବି ଲେଖିପାରିଲ ନାହିଁ ? ତୁମର ଭଉଣୀମାନେ କେତେ ମନଦୁଃଖ କରୁଥିଲେ !''

"ମୁଁ ହିମାଳୟରେ ଥିଲି", ମୁଁ କହିଲି, "ଗୋଟାଏ ବିଶେଷ ଉଦ୍ଦେଶ୍ୟରେ । ମୁଁ ଏହାଠାରୁ ଅଧିକ ଆପଣଙ୍କୁ କିଛି କହିପାରିବି ନାହିଁ; କିନ୍ତୁ ଆପଣ ଆଶ୍ୱସ୍ତ ରହନ୍ତୁ ମୁଁ ଭଲ କାମ କରୁଥିଲି, କିଛି ମନ୍ଦ କାମ ନୁହେଁ ।"

"ଏହାପରେ ଯେତେବେଳେ ତୁମେ ଯିବାକୁ ଚାହିଁବ, କହିକରି ଯିବ", ମା' କହିଲେ, "ଆମେ ତୁମକୁ ଅଟକାଇବୁ ନାହିଁ । ଏବେ ତୁମର ଭଉଣୀମାନଙ୍କ ପାଖକୁ ଯାଅ ।"

ମୁଁ ସେମାନଙ୍କର କୋଠରିକୁ ଗଲି । ସେମାନେ ମୋତେ ଦେଖି ଚମକି ପଡ଼ିଲେ । ମୋର ସାନ ଭଉଣୀ, ଯେ ମୋ'ଠାରୁ ଚଉଦବର୍ଷ ସାନ ଥିଲା, ଦୌଡ଼ି ଆସି ମୋତେ 'ଦାଦା', 'ଦାଦା' କହି କୁଣ୍ଢାଇ ପକାଇଲା ।

ତାହା ଏକ ଭାବବିଭୋର ପୁନର୍ମିଳନ ଥିଲା । ସେଦିନ ମୋର ମା' ମୋର ପ୍ରିୟ ଅଣ୍ଡା ତରକାରି ଓ ଭାତ ରାନ୍ଧିଥିଲେ ।

× × ×

ଏବେ ଷାଠିଏ ବର୍ଷ ବୟସରେ, ଉତ୍ତର ଆମେରିକାର ମିଶିଗାନ ରାଜ୍ୟର କୀନୀଓ୍ୱାଓ କାଉଣ୍ଟିରେ ଲେକ ସୁପିରିୟର ନିକଟରେ ଥିବା କପର ହାର୍ବରର ସୁନ୍ଦର ଫେନି ହୋ ହ୍ରଦ ପାଖରେ କାଠର କୋଠରିରେ ବସି ମୁଁ ସେହିସବୁ ଘଟଣାର ନିର୍ଦ୍ଦିଷ୍ଟ ତାରିଖ ଇତ୍ୟାଦି କହିପାରୁ ନାହିଁ, ଯାହାସବୁ ମୁଁ ବର୍ତ୍ତମାନ ବର୍ଣ୍ଣନା କରିବାକୁ ଯାଉଛି । ତେବେ ଏକ ସାଧାରଣ କାଳାନୁକ୍ରମିକ କ୍ରମ ରଖିବାର ଚେଷ୍ଟା କରିବି ।

ତ୍ରିଭେନ୍ଦ୍ରମ ଫେରିବାର ପ୍ରଥମ ବର୍ଷ ମୁଁ ଦୁଇଥର ମାଈଁମାଙ୍କୁ ଦେଖାକରିବାକୁ ଗଲି । ଦ୍ୱିତୀୟ ଥର ସେ ମୋତେ ଆଲିଙ୍ଗନ କଲେ । କନ୍ୟାକୁମାରୀ ଯିବାବେଳେ ସୁଚିନ୍ଦ୍ରମ ପାଖରେ ମରତ୍ୱ ମଲଈ ପାହାଡ଼କୁ ଗଲି ଓ ସେଠାର ଗୁମ୍ଫାରେ କିଛି ସମୟ ବିତାଇଲି । ମୋତେ ମରତ୍ୱ ମଲଈ ଏତେ ଭଲ ଲାଗିଲା ଯେ, ପରେ ମୁଁ ବହୁ ସପ୍ତାହାନ୍ତରେ ସେଠାକୁ ଯାଇଛି । କେତେଥର ମୋର ଅନ୍ତରଙ୍ଗ ବନ୍ଧୁମାନେ ମୋ ସହିତ ଯାଇଥିଲେ । ରଞ୍ଜିତ ଦି'ଥର ଯାଇଥିଲା, ଥମାସ କୁରିୟନ, ଯାହାକୁ ମୁଁ ସ୍ନେହରେ 'ଥାମାଚନ' (ଥମାସପିତା) ବୋଲି ଡାକୁଥିଲି ଥରେ, ଆଉ ତାମିଲ ଭାଇମାନଙ୍କ ମଧ୍ୟରୁ ଜଣେ ଶିବାନନ୍ଦ ମଧ୍ୟ ଥରେ ।

ଥରେ ମୁଁ ଦି'ରାତି ଗୁମ୍ଫାରେ ଏକୁଟିଆ ବିତାଇଲି । ଦ୍ୱିତୀୟ ରାତିରେ କାହାର 'ନୈନା', 'ନୈନା' ଚିତ୍କାରରେ ମୋର ଧ୍ୟାନ ଭାଙ୍ଗିଗଲା ଦେଖିଲି ଜଣେ ପତଳା, ଗେଡ଼ା

ଲୋକ, ମୋ ପାଖରେ ଠିଆ ହୋଇଥିଲା । ସେ ଗୋଟାଏ ଫଟା ଖାକି ରଙ୍ଗର ପ୍ୟାଣ୍ଟ୍ ପିନ୍ଧିଥିଲା, ତା'ର ଆଖିଗୁଡ଼ା ବାହାରକୁ ବାହାରି ଆସିଥିଲା ପରି ଥିଲା । ମୁଁ ଆଖି ଖୋଲିବା ପରେ ସେ ଉତ୍ତେଜିତ ହୋଇ ତାମିଲ ଭାଷାରେ କହିଲା, ''ମୁଁ ତୁମକୁ ଶିବରାଜ ଯୋଗ ଶିଖାଇବାକୁ ଆସିଛି, ତିରମୁଲରଙ୍କର ସିଦ୍ଧାନ୍ତ, ମସ୍ତିଷ୍କରେ ଆହୁରି ସାତଟି କେନ୍ଦ୍ର ରହିଛି । ଶ୍ରୀ ଗୁରୁଙ୍କ ଆଜ୍ଞା, ଆସ ଶିଖ ।''

ମୁଁ ଉଠିପଡ଼ି ତାଙ୍କୁ ସମ୍ମାନ ଜଣାଇଲି । ସେ ବସିପଡ଼ିଲେ ଓ ମୋତେ ତାଙ୍କ ସାମ୍ନାରେ ବସିବାର ଇଙ୍ଗିତ ଦେଲେ । ଗୁହାଦ୍ୱାରରୁ ଚନ୍ଦ୍ରର ଶୀତଳ କିରଣ ଆସୁଥାଏ । ସେ ସରଳ ଭାଷାରେ ଶିବରାଜ ଯୋଗର ସାରକଥା ମୋତେ ଶିଖାଇଲେ । ତା'ପରେ ସେ ଯେଉଁସବୁ ଆସନ କରାଇଥିଲେ, ପୁଣି ମୋତେ କରିବାକୁ କହିଲେ ଏବଂ ଜଣାପଡୁଥାଏ ସେଥିରେ ସନ୍ତୁଷ୍ଟ ହୋଇ ତାଳି ମାରିଲେ । ତା'ପରେ ଲମ୍ଫ ପ୍ରଦାନ କରି ଅନ୍ଧାରରେ ଅଦୃଶ୍ୟ ହୋଇଗଲେ । ବହୁ ବର୍ଷ ପରେ ମୋର ବନ୍ଧୁ ମଦନଗୋପାଳ ସହିତ ଥରେ ମରତ୍ୱ ମଲାଇ ଯାଇଥିବା ସମୟରେ ମୋର ତାଙ୍କ ସହିତ ଦେଖା ହୋଇଥିଲା । ମୋର ବନ୍ଧୁ ଭାବିଲେ ସେ ଏଣୁତେଣୁ ବକୁଛନ୍ତି; କିନ୍ତୁ ମୁଁ ବୁଝିପାରିଲି, ସେ କିଛି ଗୁରୁତ୍ୱପୂର୍ଣ୍ଣ କଥା ଜଣାଇବାକୁ ଚାହୁଁଛନ୍ତି ।

ମୁଁ ସ୍ୱାମୀ ଅଭେଦାନନ୍ଦଙ୍କୁ ମଧ୍ୟ ଦି'ଥର ଭେଟିଥିଲି । ମୁଁ ପୁଚ୍ଛରା ଯାଇଥିଲି । ସେଠାରେ ଜଣେ ନକଲି ସ୍ୱାମୀଙ୍କୁ ଭେଟିଥିଲି । ସେ ନିଜକୁ ସ୍ୱର୍ଗତ ପୁଚ୍ଛରା ସ୍ୱାମୀଙ୍କର ଉତ୍ତରାଧିକାରୀ ଭାବରେ ପ୍ରତିଷ୍ଠିତ କରିଥିଲେ । ମୁଁ ସ୍ୱାମୀ ଚିନ୍ମୟାନନ୍ଦଙ୍କୁ ମଧ୍ୟ ଦେଖା କରିଥିଲି । ସେ ତ୍ରିଭେନ୍ଦ୍ରମରେ ଗୀତା ବିଷୟରେ ପ୍ରବଚନ ଦେଉଥିଲେ ।

ତ୍ରିଭେନ୍ଦ୍ରମ ପବ୍ଲିକ ଲାଇବ୍ରେରୀ, ବ୍ରିଟିଶ କାଉନସିଲ ଲାଇବ୍ରେରୀ ଏବଂ ଆମେରିକାନ ଲାଇବ୍ରେରୀଗୁଡ଼ିକ ଥିଲା ମୋର ପ୍ରିୟ ସ୍ଥାନ । ମୁଁ ସେଠାରେ ଦର୍ଶନ, ଧର୍ମ, ମନୋବିଜ୍ଞାନ, ଶରୀରତତ୍ତ୍ୱ, ମାନବ ଶରୀର ସଂରଚନା ଇତ୍ୟାଦି ବିଷୟରେ ପୁସ୍ତକ, ଯାହାର ତାଲିକା ବାବାଜୀ ମୋତେ ଦେଇଥିଲେ, ସେସବୁ ପଢ଼ିଲି । ଅନ୍ୟ ବହି, ଯେପରିକି P.G. Wodehouse (ଯାହାଙ୍କର ବହି ଆଜି ମଧ୍ୟ ମୁଁ ଶୋଇବାବେଳେ ପଢ଼ିବାକୁ ଭଲପାଏ), Conan Doyle, Dickens, James Joyce ଆଦି ଲେଖକମାନଙ୍କର ବହି ମଧ୍ୟ ପଢ଼ିଲି । ବାବାଜୀ ମୋତେ ଯେଉଁ ପୁସ୍ତକ ତାଲିକା ଦେଇଥିଲେ, ସେଥିରୁ ମୋର ସବୁଠାରୁ ପ୍ରିୟ ଥିଲା Blavatskyଙ୍କର ଲେଖାଗୁଡ଼ିକ ଏବଂ ଅବଶ୍ୟ ଜେ. କୃଷ୍ଣମୂର୍ତ୍ତିଙ୍କର ପୁସ୍ତକଗୁଡ଼ିକ । ଜେ. କୃଷ୍ଣମୂର୍ତ୍ତିଙ୍କଦ୍ୱାରା ଲିଖିତ 'Commentaries on Living' ହେଉଛି ମୋର ଅତ୍ୟନ୍ତ ପ୍ରିୟ ପୁସ୍ତକ । ଯେତେଥର ତାକୁ ମୁଁ ପଢ଼ିଛି, ସେତେଥର

କିଛି କିଛି ନୂଆ ଜିନିଷ ପାଇଛି ।

ମୋର ନୂଆ ଲୋକଙ୍କ ସହିତ ବନ୍ଧୁତ୍ୱ ହେଲା । ପ୍ରେମ କୁକିଲ୍ୟ ଓ ଗୋବିନ୍ଦନ ନାୟାରଙ୍କ ପରି ମୋର କେତେଜଣ ବନ୍ଧୁ ପ୍ରତିଷ୍ଠିତ ପରିବାରରୁ ଆସିଥିଲେ । କେତେଜଣ ସାଧାରଣ ପରିବାରରୁ ଆସିଥିଲେ; କିନ୍ତୁ ମୋ ପାଇଁ ସମସ୍ତେ ସମାନ ଥିଲେ ।

ଦ୍ୱିତୀୟ ପ୍ରକାରର ବନ୍ଧୁମାନଙ୍କ ମଧ୍ୟରୁ କେତେଜଣ ଜଣାଶୁଣା ଅପରାଧୀ ଥିଲେ । ସେମାନଙ୍କ ସହିତ ବନ୍ଧୁତାର ଅର୍ଥ ଥିଲା ଦଳଗତ କଳିତକରାଳରେ ଜଡ଼ିତ ହୋଇ ପଡ଼ିବା କିମ୍ୱା ମଦ୍ୟପାନ କରିବା; କିନ୍ତୁ ମୁଁ ସେସବୁକୁ ଖାତିର କରୁ ନ ଥିଲି । ମୋର ତ ପରିବର୍ତ୍ତନର ସେହି ବୀଜ ବପନ କରିବାର ଥିଲା, ଯାହା ଆଜି ନ ହେଲେ ହୁଏତ ପରବର୍ତ୍ତୀ କେଉଁ ଜନ୍ମରେ ଅଙ୍କୁରିତ ହେବ । ବାବାଜୀ ମୋର ଆଖି ଖୋଲି ଦେଇଥିଲେ ଓ ମୁଁ ଖରାପରୁ ଖରାପ ଲୋକ ଭିତରେ ଲୁଚିରହିଥିବା ସନ୍ଥ ହେବାର ସମ୍ଭାବନା ଦେଖି ପାରୁଥିଲି । ଯେପରି ବାବାଜୀ କହୁଥିଲେ, ''ରୋଗୀକୁ ହିଁ ଡାକ୍ତରର ଆବଶ୍ୟକତା ହୋଇଥାଏ ।''

ଏହା ଭିତରେ ମୁଁ ବାପାଙ୍କର ସଡ଼କ ଠିକାଦାରୀ କାମର ତଦାରଖ କରିବାରେ ତାଙ୍କୁ ସାହାଯ୍ୟ କରୁଥାଏ । ସନ୍ଧ୍ୟାରେ ମୁଁ ଏକା ଏକା ଲମ୍ୱା ରାସ୍ତା ଚାଲୁଥିଲି । ମୁଁ ମନ୍ଦିରକୁ ଯାଉଥିଲି, ମସଜିଦ୍ ଯାଉଥିଲି, ଚର୍ଚ୍ଚକୁ ଯାଉଥିଲି, କବିତା ଲେଖୁଥିଲି, ଯାହା କେବେହେଲେ ଛପା ହେଲା ନାହିଁ ଓ ପ୍ରବନ୍ଧ ଲେଖିବାର ଚେଷ୍ଟା କରୁଥିଲି । ବର୍ଷେ ଏହିପରି ଭାବରେ ବିତିଗଲା । ବାବାଜୀଙ୍କଠାରୁ କୌଣସି ପ୍ରକାରର ଖବରଅନ୍ତର ମିଳିଲା ନାହିଁ । ଭାବିଲି ବୋଧହୁଏ ସେ ମୋତେ ତାଙ୍କୁ ଛାଡ଼ି ରହିବାର ଶିକ୍ଷା ଦେଉଛନ୍ତି ।

ଦିନେ ଶୋଇବା ପୂର୍ବରୁ, ସେ ଶିଖାଇଥିବା ପ୍ରଣାଳୀ ବ୍ୟବହାର କରି ମୁଁ ତାଙ୍କୁ ଖବର ପଠାଇଲି, ''ଯଦି ଆପଣ ଖୁବ୍ ଶୀଘ୍ର ମୋ ସହିତ ସମ୍ପର୍କ ସ୍ଥାପିତ ନ କରିବେ ତେବେ ମୁଁ ପୁଣି ଆପଣଙ୍କୁ ଖୋଜି ହିମାଳୟକୁ ଚାଲିଆସିବି । ପ୍ରଣାମ'' ସେହି ରାତିରେ ବାବାଜୀ ମୋର ସ୍ୱପ୍ନରେ ଆସିଲେ । ମୁଁ ତାଙ୍କୁ ଗୋଟାଏ ଲମ୍ୱା ସବୁଜ ପୋଷାକ ଏବଂ ଧଳା ପଗଡ଼ି ପିନ୍ଧିଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ''ଆଜମିରକୁ ଆସ'', ସେ କହିଲେ, ''ମୁଁ ତୁମପାଇଁ ସେଠାରେ ପ୍ରତୀକ୍ଷା କରିବି ।''



#  ଜଣେ ସୂଫୀ ଗୁରୁଙ୍କଠାରୁ ଦୀକ୍ଷା

ମୁଁ ଯେତେବେଳେ ମୋର ମା' ବାପାଙ୍କୁ କହିଲି ଯେ ମୁଁ ଆଜମିର ଯିବାକୁ ଚାହେଁ, ସେମାନେ ବିଶେଷ ବିରୋଧ କଲେ ନାହିଁ । ମୋର ମା' କିଛି ପଇସା ମଧ୍ୟ ଦେଲେ । ସେହି ପଇସା ଓ ମୋର ପକେଟ ଖର୍ଚ୍ଚ ପଇସା ମୋର ଯାତ୍ରାପାଇଁ ଯଥେଷ୍ଟ ଥିଲା । ସେ ସମୟରେ ସେଇଟା ଗୋଟାଏ ଲମ୍ବା ଯାତ୍ରା ଥିଲା । ମୋତେ ପ୍ରଥମେ ମାଡ୍ରାସ ଯିବାର ଥିଲା, ସେଠାରୁ ଦିଲ୍ଲୀ ଓ ତା'ପରେ ଜୟପୁର । ଜୟପୁରରୁ ଲୋକାଲ ଗାଡ଼ିରେ ଆଜମିର । ମୁଁ ଆଜମିର ଶରିଫଙ୍କ ପ୍ରାଙ୍ଗଣରେ ପହଞ୍ଚିଗଲି, ଯେଉଁଠାରେ ମହାନ ସୂଫୀ ସନ୍ଥ ଖ୍ୱାଜା ମୋଇନୁଦ୍ଦିନ ଚିଶ୍‌ତୀଙ୍କର ଦରଗାହ ରହିଛି । ହିନ୍ଦୁ ଓ ମୁସଲମାନ ଉଭୟ ତାଙ୍କୁ ଭାରି ଶ୍ରଦ୍ଧା କରନ୍ତି, ସମ୍ମାନ ପ୍ରଦର୍ଶନ କରନ୍ତି । ସମସ୍ୟାର ସମାଧାନ ପାଇଁ ମଧ୍ୟସ୍ଥତାର ନିବେଦନ କରିବାପାଇଁ ଯାତ୍ରୀମାନଙ୍କର ଓ ଶ୍ରଦ୍ଧାଳୁମାନଙ୍କର ଲମ୍ବା ଧାଡ଼ି ସେଠାରେ ଲାଗିରହିଥାଏ । ସବୁ ତୀର୍ଥସ୍ଥାନମାନଙ୍କ ପରି ଆଜମିରରେ ମଧ୍ୟ ଚାଲାକ ଠକମାନେ ଅଛନ୍ତି । ସେମାନେ ଆପଣଙ୍କୁ ଚାରିଆଡୁ ଘେରି ପକାଇବେ ଓ ପଇସା ଦେଲେ ସେ ଖ୍ୱାଜାଙ୍କଠାରୁ ଆପଣଙ୍କପାଇଁ ବିଶେଷ କୃପାର ବ୍ୟବସ୍ଥା କରିଦେବେ ବୋଲି କହିବେ । ସେମାନଙ୍କ ମଧ୍ୟରୁ ଅନେକେ ସନ୍ଥଙ୍କର ବଂଶଧର ହେବାର ଦାବି କରିବେ । ସେମାନେ ନିଜର ମହତ୍ତ୍ୱ ପ୍ରଦର୍ଶନ କରିବାପାଇଁ ବିଭିନ୍ନ ପ୍ରକାରର ରଙ୍ଗିନ ପୋଷାକ ପିନ୍ଧନ୍ତି ।

ସେଠାରେ ଫୁଲ, ଶାଲ, ଧୂପ ଏବଂ କବର ଉପରେ ଚଢ଼ାଇବାପାଇଁ ଅନ୍ୟାନ୍ୟ ଜିନିଷ ବିକ୍ରି ହେଉଥିବା ଅସଂଖ୍ୟ ଦୋକାନ ଥିଲା । ସେତେବେଳେ ସପ୍ତାହାନ୍ତ ଥିଲା । ଭୀଷଣ ଭିଡ଼ ଭିତରେ ମୁଁ ଜଣାଶୁଣା, ନଗ୍ନ-ଶରୀରରେ କେବଳ ଧୋତି ପିନ୍ଧିଥିବା, ଜଟାଜୁଟ ଥିବା ଜଣେ ବ୍ୟକ୍ତିଙ୍କୁ ଖୋଜୁଥାଏ ଏବଂ ଭାବୁଥାଏ ଯେ ସେ ଏଠି ଲମ୍ବା ସବୁଜ ପୋଷାକ ଓ ଟୋପିପିନ୍ଧା ମୁସଲମାନ ଫକିରମାନଙ୍କ ଭିତରେ କେତେ ଅଜବ ଦିଶିବେ । ହତାର ଦକ୍ଷିଣପଟକୁ ଗୋଟାଏ ପୁରୁଣା ମସ୍‌ଜିଦ୍ ଥିଲା, ଯାହାକୁ ଜଣେ ସନ୍ଥ ବ୍ୟବହାର କରୁଥିଲେ ବୋଲି କୁହାଯାଏ । ସେଇଟି କବର ଥିବା ମକବରା ନିକଟରେ ଥିଲା । ମୁଁ ଡାହାଣକୁ ବୁଲିଯାଇ ମସ୍‌ଜିଦ୍ ଆଡ଼କୁ ଗଲି ।

ସେତେବେଳେ ନମାଜପାଇଁ ସମୟ ହୋଇ ନ ଥିଲା । ମସ୍‌ଜିଦ୍‌ରେ କେବଳ କେତେଜଣ ଲୋକ ମାଳା ଗଡ଼ାଇବାକୁ ବା କୋରାନ ପଢ଼ିବାକୁ କିମ୍ୱା ଚୁପଚାପ ଚିନ୍ତନ-ମନନ କରିବାକୁ ବସିଥିଲେ । ଯେତେବେଳେ ମୁଁ ଦେଖିଲି, ସେହି ଲମ୍ୱା ପୋଷାକ ପିନ୍ଧିଥିବା ଲୋକମାନଙ୍କ ଭିତରେ ନମାଜ କରୁଥିବା ବେଳର ମୁସଲମାନୀ ଭଙ୍ଗୀରେ, ଯାହାକୁ ଯୋଗୀମାନେ ବଜ୍ରାସନ କହନ୍ତି, ସେହିପରି ଭାବରେ ବାବାଜୀ ବସିଛନ୍ତି, ମୋର ଆଶ୍ଚର୍ଯ୍ୟର କଳ୍ପନା ଆପଣମାନେ କରି ନିଅନ୍ତୁ । ସେ ପୂରାପୂରି ଭାବରେ ସେହିପରି ଲୁଗାପଟା ପିନ୍ଧିଥିଲେ, ଯେପରି ମୁଁ ସ୍ୱପ୍ନରେ ଦେଖିଥିଲି – ଲମ୍ୱା ସବୁଜ ପୋଷାକ ଏବଂ ଧଳା ପଗଡ଼ି ।

ସେ ମୋତେ ପାଖକୁ ଆସିବାକୁ ଇଙ୍ଗିତ କଲେ । ମୁଁ ତାଙ୍କୁ ଦଣ୍ଡବତ କରିବା ପୂର୍ବରୁ ସେ ଉଠି ଠିଆ ହୋଇଗଲେ ଏବଂ ମୋତେ ଭିଡ଼ିଧରି ଅସଲି ମୁସଲମାନ ରୀତିରେ ତିନିଥର ଆଲିଙ୍ଗନ କଲେ । ଆଲିଙ୍ଗନ କରୁକରୁ ସେ ଧୀର ସ୍ୱରରେ କହିଲେ, ‘‘ଦଣ୍ଡବତ ନୁହେଁ ମୁସଲମାନମାନଙ୍କର ନିୟମ ଜାଣ ନାହିଁ ? କେବଳ ପରମାତ୍ମାଙ୍କ ସାମ୍ନାରେ ମଥା ନତ କର, ମହମ୍ମଦଙ୍କ ସାମ୍ନାରେ ମଧ୍ୟ ନୁହେଁ । ଯଦି କାହାର କ୍ଷତି ନ ହୁଏ, ତେବେ ପରିସ୍ଥିତି ଅନୁସାରେ ନିଜର ବ୍ୟବହାରକୁ ବଦଳାଇ ନିଅ । ‘ପ୍ରତ୍ୟେକକୁ ତାହାର ସାମର୍ଥ୍ୟ ଓ ଆବଶ୍ୟକତା ଅନୁସାରେ’ ଏକ ଅତି ଉତ୍ତମ ସୂଫୀ ପ୍ରବାଦ । ଯେତେବେଳେ ରୋମରେ ଅଛ, ସେତେବେଳେ ଜଣେ ରୋମବାସୀ ପରି ରହ ।’’

ମୁଁ ତାଙ୍କର ହାତ ଧରି ତାଙ୍କର ଅଙ୍ଗୁଳି-ଚୁମ୍ୱନ କଲି । ‘‘ମୋ ପାଖରେ ବଜ୍ରାସନରେ ବସ’’, ବାବାଜୀ କହିଲେ, ‘‘କବର ଆଡ଼କୁ ମୁହଁ କରି ଧ୍ୟାନରେ ବସ ।’’ ମୋର ହୃଦୟ ଆନନ୍ଦର ଏକ ଉଚ୍ଛ୍ୱାସରେ ଭରିଯାଇଥିଲା, ଯାହା ମୋର ମସ୍ତିଷ୍କଆଡ଼କୁ ଅଗ୍ରସର ହେଉଥିଲା । ମୋର ମସ୍ତିଷ୍କରେ ସୁନ୍ଦର ସବୁଜ ଓ ବାଇଗଣୀ ରଙ୍ଗର ଜ୍ୟୋତି ବିସ୍ତୃତ ହୋଇଗଲା । ମୁଁ ସେହିପରି ଆନନ୍ଦୋଚ୍ଛ୍ୱାସରେ ସବୁଦିନପାଇଁ ରହିବାକୁ ଚାହୁଁଥିଲି, ବାହାରର କୋଳାହଳପୂର୍ଣ୍ଣ ଦୁନିଆରୁ ମୁକ୍ତ ହୋଇ; କିନ୍ତୁ ବାବାଜୀ ମୋତେ ସେହି ସମାଧିରୁ ବାହାର କଲେ । ‘‘ଚାଲ, ଯିବା’’ ଏବଂ ପ୍ରାଙ୍ଗଣର ମହତ୍ତ୍ୱପୂର୍ଣ୍ଣ ସ୍ଥାନସବୁ ଦେଖାଇବାକୁ ନେଇଗଲେ ।

ପ୍ରଥମେ ଆମେ କବର ପାଖକୁ ଗଲୁ । ବହୁତ ଭିଡ଼ ଥିଲା; କିନ୍ତୁ ସେଠାରେ ଦେଖାଶୁଣା କରୁଥିବା ଲୋକ ବାବାଜୀଙ୍କୁ ଦେଖିଲେ ଓ ଭାରି ଶ୍ରଦ୍ଧାର ସହିତ ଆମକୁ ଭିତରକୁ ପଠାଇଦେଲେ । ଭିତରର ସ୍ଥାନ ଭାରି ସୁନ୍ଦର ଥିଲା । ମକବରାରେ ଭକ୍ତି-ଭାବନାର ଅନୁଭବ ହେଉଥିଲା । କବର ଲାଲ ଓ ସବୁଜ ମଖମଲରେ ଢଙ୍କା ହୋଇଥଲା । ଭିଡ଼ର ଧକ୍କାଧକ୍କି ମଧ୍ୟରେ ବି ମୁଖ୍ୟ କାଦିମ ଆମକୁ ବେଶ କିଛି ସମୟ ଭିତରେ ରହିବାକୁ

ଦେଲେ । ସମସ୍ତେ ଆରବୀ ଭାଷାରେ ପ୍ରାର୍ଥନା ଓ ଜପ କରୁଥିଲେ । ମୁଁ ରୋମାଞ୍ଚିତ ହେଲି ଓ ମୋର ଆଖିରୁ ଲୁହ ବହିଚାଲିଲା । ବାବାଜୀ କୌଣସି ଅଦୃଶ୍ୟ ବ୍ୟକ୍ତି ସହିତ ଫୁସ୍‌ଫୁସ୍ ହୋଇ କଥାବାର୍ତ୍ତା କରୁଥାଆନ୍ତି । କିଛି ସମୟ ପରେ ସେ 'ସଲାମ' କହି ବେଶ ତଳକୁ ନଇଁପଡ଼ିଲେ ଏବଂ ମୋତେ ଇଙ୍ଗିତ କଲେ ଯେ, ଏଥର ଯିବାକୁ ହେବ । ଆମକୁ ବାହାରକୁ ଛାଡ଼ିବା ପୂର୍ବରୁ ମୁଖ୍ୟ କାଦିମ ବାବାଜୀଙ୍କର ହସ୍ତ-ଚୁମ୍ବନ କଲେ ।

ଆମେ ମକବରାର ପରିକ୍ରମା କଲୁ ଓ ପ୍ରାଙ୍ଗଣରୁ ବାହାରକୁ ଚାଲିଆସିଲୁ । ଚାଲିଚାଲି ଦଶମିନିଟ୍ ମଧ୍ୟରେ ଆମେ ଉସ୍ମାନୀ ଛିଲ୍ଲାରେ ପହଞ୍ଚିଗଲୁ, ଯେଉଁଠାରେ ଖ୍ୱାଜା ମୋଇନୁଦ୍ଦିନ ଚିସ୍ତୀ ଚାଳିଶଦିନ ଧରି ଏକାନ୍ତବାସ କରିଥିଲେ । ସୂଫୀ ଭାଷାରେ ଏହି ପ୍ରକାରର ଚାଳିଶଦିନ ବ୍ୟାପୀ ତୀବ୍ର ଚିନ୍ତନ-ମନନକୁ ଛିଲ୍ଲା କୁହାଯାଏ । ତାହା ଏକ ନିର୍ଜନ ଓ ଶାନ୍ତିପୂର୍ଣ୍ଣ ସ୍ଥାନ ଥିଲା ଯେଉଁଠାରୁ ହ୍ରଦ ଦିଶୁଥିଲା । ଶୁଷ୍କ ରାଜସ୍ଥାନରେ ସେହି ହ୍ରଦ ଥିଲା ଏକ ସୁନ୍ଦର ଦୃଶ୍ୟ । ସେଠାରେ ବାବାଜୀ ମୋଇନୁଦ୍ଦିନ ଚିସ୍ତୀଙ୍କର ଜୀବନ, ତାଙ୍କଦ୍ୱାରା ସ୍ଥାପିତ ସୂଫୀ ସମ୍ପ୍ରଦାୟ (ଘରାନା) ଏବଂ ତାଙ୍କର ଶିକ୍ଷା ବିଷୟରେ ସଂକ୍ଷେପରେ କହିଲେ ।

ସେ ଅସ୍ତହାନ ନିକଟରେ ଥିବା ସଞ୍ଜାରରେ 1135ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କୁ ମୋଇନୁଦ୍ଦିନ ହସନ ନାଁ ଦିଆଯାଇଥିଲା । ତାଙ୍କର ପିତାଙ୍କ ନାମ ଥିଲା ଗୟାସୁଦ୍ଦିନ ହସନ । ସେ ଖୁରସାନାର ଏକ ସୂଫୀ ଦଳର ସଦସ୍ୟ ଥିଲେ । ତାଙ୍କର ମା' ବିବି ମାହନୂର ଜିଲାନର ପ୍ରସିଦ୍ଧ ସୂଫୀ ସନ୍ଥ ଶେଖ ମୋହିୟୁଦ୍ଦିନ ଅବଦୁଲ କାଦ୍ରୀଙ୍କର ପରିବାରର ସଦସ୍ୟ ଥିଲେ । ଶେଖ ସାହେବ କାଦ୍ରିୟା ନାମକ ସୂଫୀ ସମ୍ପ୍ରଦାୟର ସ୍ଥାପନା କରିଥିଲେ । ପନ୍ଦରବର୍ଷ ବୟସରେ ମୋଇନୁଦ୍ଦିନଙ୍କ ମା'ବାପାଙ୍କର ଦେହାନ୍ତ ହୋଇଗଲା । ତାହାର କିଛିଦିନ ପରେ ସେ ଇବ୍ରାହିମ କନ୍ଦୁଜୀଙ୍କର ସଂସ୍ପର୍ଶରେ ଆସିଲେ । ଯୁବକ ମୋଇନୁଦ୍ଦିନ ଦେଇଥିବା ଅଙ୍ଗୁର ପେଛାକୁ ଗ୍ରହଣ କରିବାପରେ କନ୍ଦୁଜୀ ସାହେବ ତାଙ୍କୁ କିଛି ମିଠେଇ ଦେଲେ ଯାହାକୁ ସେ ନିଜେ କିଛି ସମୟ ଚୋବାଇ ସାରିଥିଲେ । ସେହି ମିଠେଇ ଖାଇବା ପରେ ହଠାତ୍ ହସନଙ୍କୁ ଦୁନିଆ ଅସାର ମନେହେଲା ଏବଂ ସେ ଉଚ୍ଚତର ସତ୍ୟର ସନ୍ଧାନରେ ଲାଗିପଡ଼ିଲେ ।

ସେ ଘର ଛାଡ଼ିଦେଲେ ଓ ମୁସଲମାନମାନଙ୍କର ଜ୍ଞାନ ଓ ସୂଫୀ ପ୍ରଭାବର କେନ୍ଦ୍ର ବାଗଦାଦ, ସମରକନ୍ଦ ଏବଂ ବୁଖାରାର ଯାତ୍ରା କଲେ । କୁହାଯାଏ, ବାଗଦାଦରେ ସେ ପ୍ରସିଦ୍ଧ ସୂଫୀ ସନ୍ଥ ଅବଦୁର କାଦିର ଜିଲାନୀଙ୍କୁ ଭେଟିଥିଲେ । ତା'ପରେ ସେ ମକ୍କା ମଦୀନା ଗଲେ । ପୁଣି ଇରାନର ହାରନକୁ ଗଲେ । ସେଠାରେ ସେ ତାଙ୍କର ଗୁରୁଙ୍କର ସାକ୍ଷାତ ପାଇଲେ, ଯେ ପ୍ରକୃତରେ ତାଙ୍କୁ ହିଁ ଖୋଜୁଥିଲେ । ହାରନର ଖ୍ୱାଜା ଉସ୍ମାନ ସୀରିୟାର ଖ୍ୱାଜା ଅବୂ ଇଶାକଙ୍କଦ୍ୱାରା ସ୍ଥାପିତ ସୂଫୀମାନଙ୍କର ଚିସ୍ତିୟା ସମ୍ପ୍ରଦାୟ ସମ୍ପର୍କିତ ଗୁରୁ

ଥିଲେ । ସେବେଠାରୁ ହସନଙ୍କର ନାମ ଖ୍ୱାଜା ମୋଇନୁଦ୍ଦିନ ଚିସ୍ତୀ ହୋଇଗଲା । ଏହିପରି, ସେ ଚିସ୍ତିୟା ସମ୍ପ୍ରଦାୟର ସଂସ୍ଥାପକ ନ ଥିଲେ; କିନ୍ତୁ କେତେକ ଲୋକ ତାଙ୍କୁ ତାହା ଭାବନ୍ତି ।

ନିଜ ଗୁରୁଙ୍କ ସହିତ ତିନିବର୍ଷ ରହିଥିବା ସମୟରେ ସେ କଠିନ ତପସ୍ୟା କରିଥିଲେ । ତା'ପରେ ସେ ପୁଣି ଭ୍ରମଣ କରିବାକୁ ଲାଗିଲେ, ସନ୍ଥ-ଦରବେଶମାନଙ୍କ ସହିତ ସାକ୍ଷାତ କରିବାକୁ ଲାଗିଲେ । ସୁହରାବର୍ଦୀ ସମ୍ପ୍ରଦାୟର ମହାନ ସନ୍ଥ ଶେଖ ଅବୂ ନଜୀବ ସୁହରାବର୍ଦୀଙ୍କୁ ମଧ୍ୟ ଭେଟିଲେ । ସେ ଅନେକ ସୂଫୀସନ୍ଥଙ୍କର କବରଗୁଡ଼ିକ ଭ୍ରମଣ କଲେ ଏବଂ ଅନେକ ଉଚ୍ଚ ଦରର ସୂଫୀମାନଙ୍କୁ ସାକ୍ଷାତ କଲେ । ସେମାନେ ଥିଲେ ତବ୍ରୀଜର ଅବୂ ସଈଦ, ଅସ୍ତ୍ରାବାଦର ନସୀରଦ୍ଦିନ ଏବଂ ହସନ ଖର୍କାନୀ । ଏହି ସାକ୍ଷାତ୍କାରଗୁଡ଼ିକ ବିଷୟରେ ଭାରି ଆକର୍ଷକ କାହାଣୀମାନ ପ୍ରଚଳିତ ରହିଛି ।

ଚଉବନ ବର୍ଷ ବୟସରେ ତାଙ୍କର ଗୁରୁ ଉସ୍ମାନ ହାରନ ମୋଇନୁଦ୍ଦିନଙ୍କୁ ନିଜର ଉତ୍ତରାଧିକାରୀ ବୋଲି ଘୋଷଣା କଲେ । ସେ ତାଙ୍କୁ ନିଜର ନମାଜର ଟୋପି ଓ ବାଡ଼ି ଦେଲେ ଏବଂ ଏବେ ସେ ନିଜର କାମ କରନ୍ତୁ ବୋଲି କହି, ତାଙ୍କୁ ବିଦାୟ ଦେଲେ । ଖ୍ୱାଜା ମୋଇନୁଦ୍ଦିନ ଏହାପରେ ହଜ କରିବାକୁ ଗଲେ, କାବାର ପରିକ୍ରମା କଲେ ଓ ମଦୀନାରେ ପହଞ୍ଚିଲେ, ଯେଉଁଠାରେ ମହମ୍ମଦଙ୍କର କବର ରହିଛି । କୁହାଯାଏ ଯେ ତାଙ୍କୁ ଭାରତର ଆଜମିରରେ ସ୍ଥାୟୀ ହେବାପାଇଁ ଆଜ୍ଞା ମିଳିଲା ।

1191 ମସିହାରେ ସେ ପ୍ରଥମ ଥର ଆଜମିର ଆସିଲେ । 1200ରେ ବଲ୍ଖ ଓ ବାଗବାଦ ଯାତ୍ରା କଲେ । କିଛି ସମୟ ପରେ ସେ ମୁଲତାନ ଓ ଦିଲ୍ଲୀ ଦେଇ ଆଜମିରକୁ ଫେରିଆସିଲେ । ଦିଲ୍ଲୀରେ ସେ ଖୁରସାନାର ସୂଫୀ ସନ୍ଥ କୁତୁବଶାହଙ୍କୁ ଭେଟିଲେ, ଯେ ତାଙ୍କର ଶିଷ୍ୟ ହୋଇଗଲେ । ସେ ମହାନ ସୂଫୀ ସନ୍ନ୍ୟାସୀ ବାବା ଫରୀଦ ଗଞ୍ଜ-ଏ-ସାକାରଙ୍କୁ ମଧ୍ୟ ଭେଟିଲେ । ଦିଲ୍ଲୀର ବିଖ୍ୟାତ ସୂଫୀ ସନ୍ଥ ନିଜାମୁଦ୍ଦିନ ଔଲିୟା ହେଉଛନ୍ତି ଏହି ଗଂଜ-ଏ-ସାକାରଙ୍କର ପରମ୍ପରାର ।

ଖ୍ୱାଜାଙ୍କର ଅନ୍ତିମ ସମୟରେ ଖୁରସାନାର କୁତୁବ ଶାହ ଆଜମିରରେ ଖ୍ୱାଜା ମୋଇନୁଦ୍ଦିନଙ୍କ ସହିତ ଥିଲେ । ଦିନେ ଖ୍ୱାଜା ନିଜର ପୋଷାକ, ପଗଡ଼ି ଏବଂ ନିଜର ଗୁରୁଙ୍କଠାରୁ ପାଇଥିବା ଦୈବଶକ୍ତିଯୁକ୍ତ ବାଡ଼ି କୁତୁବ ଶାହଙ୍କୁ ଦେଇ କହିଲେ ଯେ ସେ ଅଳ୍ପଦିନ ମଧ୍ୟରେ ଦେହତ୍ୟାଗ କରିବେ । ପୁଣି ସେ ତାଙ୍କୁ ଦିଲ୍ଲୀରେ ଯାଇ ରହିବାକୁ କହିଲେ । କୁତୁବଶାହଙ୍କୁ ତାଙ୍କର ଅନ୍ତିମ କଥା ଥିଲା, "ଯେଉଁଠାରେ ବି ରହିବ, ଜଣେ ଆଦର୍ଶ ବ୍ୟକ୍ତି ପରି ବଞ୍ଚିବ ।"

କୁତୁବଶାହଙ୍କୁ ଦିଲ୍ଲୀ ପଠାଇବାର କୋଡ଼ିଏ ଦିନ ପରେ 1229 ମସିହାର କୌଣସି ଗୋଟିଏ ଦିନ ନମାଜ ପରେ ଖ୍ୱାଜା ମୋଇନୁଦ୍ଦିନ ଚିସ୍ତୀ ଶୋଇବା କୋଠରିକୁ ଯିବା ପୂର୍ବରୁ ନିର୍ଦ୍ଦେଶ ଦେଇଗଲେ ଯେ, ସକାଳ ପର୍ଯ୍ୟନ୍ତ ତାଙ୍କୁ ଯେପରି ଖଟ୍‌ଖଟ୍ କରି ବିରକ୍ତ କରା ନ ଯାଏ । କୁହାଯାଏ ଯେ, ସାରା ରାତି ତାଙ୍କର କୋଠରିରୁ ସାରଙ୍ଗୀବାଦନର ମୃଦୁ ଧ୍ୱନି ଭାସି ଆସୁଥିଲା । ସକାଳେ ସେ ନମାଜପାଇଁ ଆସିଲେ ନାହିଁ । କବାଟ ଖୋଲିବା ପରେ ଦେଖାଗଲା, ପଲଙ୍କ ଉପରେ ତାଙ୍କର ମୃତଦେହ ରହିଛି । ତାଙ୍କର ମୁହଁରେ ଥିଲା ଅନନ୍ତ ଆନନ୍ଦର ମୃଦୁମନ୍ଦ ହାସ୍ୟ । ବାବାଜୀ କହିଲେ, ଖ୍ୱାଜା ମୋଇନୁଦ୍ଦିନ ଚିସ୍ତୀ ବହୁ ପୁସ୍ତକ ଲେଖିଥିଲେ । ସେଥିରୁ ଯେଉଁଗୁଡ଼ିକ ଉପଲବ୍ଧ, ସେଗୁଡ଼ିକ ହେଲେ – ଅନୀସ-ଉଲ-ଅରୱାହ, ହଦୀସ-ଉଲ-ମାରିଫ, କଂଜୁଲ ଇସରାର ଏବଂ କସ୍ଫୁଲ ଇସରାର ।

ଖ୍ୱାଜା ମୋଇନୁଦ୍ଦିନ ଚିସ୍ତୀ ଯାହାଙ୍କୁ ଭାରତରେ ଭକ୍ତିର ସୂଫୀ ଲହର, ସୂଫୀବାଦର ଭକ୍ତିମାର୍ଗର ପ୍ରଣେତା ଥିଲେ । ରକ୍ଷଣଶୀଳ ଇସଲାମ ଧର୍ମରେ କୌଣସି ବାଦ୍ୟଯନ୍ତ୍ର ବିନା କେବଳ କୋରାନର ଆବୃତ୍ତି କରିବାର ଅନୁମତି ଦିଆଯାଇଛି । ସବୁ ପ୍ରକାରର ସଙ୍ଗୀତକୁ ସେହି ଧର୍ମରେ ନିଷେଧ କରାଯାଇଛି; କିନ୍ତୁ ସୂଫିୟା ସମ୍ପ୍ରଦାୟ ସଙ୍ଗୀତର ଉପଯୋଗ କରିଥା'ନ୍ତି ଏବଂ ବାଦ୍ୟଯନ୍ତ୍ର ବଜାଇବା ଓ ଗୀତ ଗାଇବାକୁ ନିଜର ଆଧ୍ୟାତ୍ମିକ ସାଧନାର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ବୋଲି ମନେକରନ୍ତି । ଏହି ପ୍ରକାରର ସଙ୍ଗୀତକୁ ସମା କହନ୍ତି ଏବଂ ଯଦି ଏହା ଠିକ୍ ଭାବରେ କରାଯାଏ, ତାହାହେଲେ ଗାଇବା ଓ ଶୁଣିବା ଲୋକ ଉଭୟଙ୍କର ଆନନ୍ଦ ଏପରି ଏକ ଉଚ୍ଚ ସ୍ଥିତିରେ ପହଞ୍ଚିଯାଏ, ଯାହା ଚେତନାର ବିସ୍ତାରରେ ପ୍ରତିଫଳିତ ହୁଏ ।

ଚିସ୍ତିୟା ସମ୍ପ୍ରଦାୟ ମୁଖ୍ୟ ଭାବରେ ସର୍ବସ୍ୱ ବଳିଦାନ କରିଦେଇଥିବା ପ୍ରେମ ଉପରେ ଆଧାରିତ । ପରମତତ୍ତ୍ୱ ଓଢ଼ଣା ଟାଣିଥିବା ପ୍ରେମିକା ଓ ଗୀତ ଗାଉଥିବା ବ୍ୟକ୍ତି ହେଉଛି ପ୍ରେମିକ, ଯାହାର ଆତ୍ମା ନିଜର ପ୍ରେମିକାର ସୁନ୍ଦର ରୂପକୁ କ୍ଷଣକପାଇଁ ଦେଖିବାକୁ ବ୍ୟାକୁଳ । ସୂଫୀ ପ୍ରେମରେ ପଡ଼େ, ବୋଧ-ବୁଦ୍ଧି ଲୋପ ପାଇଯିବା ପରି ପ୍ରେମ ଏବଂ ସେ ପ୍ରେମିକା ସହିତ କ୍ଷଣକପାଇଁ ମିଳିତ ହେବାକୁ, ତାହାର ଆଖିରେ ଆଖି ମିଳାଇବାକୁ, ତାକୁ ଆଲିଙ୍ଗନ କରିବାକୁ ବ୍ୟାକୁଳ ହୁଏ । ସେ ପ୍ରେମର ଅପୂର୍ବ ମଦିରାର ନିଶାରେ ନିଜର ସୀମିତ ବ୍ୟକ୍ତିସତ୍ତାକୁ ହରାଇ ଦିଏ । ଦୈବୀ ଆତ୍ମାର ପ୍ରେମରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ବିଲୀନ କରିଦେବାକୁ 'ଫନା' ହେବା କୁହାଯାଏ ।

କବ୍‌ବାଲି ଏବଂ ଗଜଲ ଗାଉଥିବା ଗାୟକମାନେ ଚିସ୍ତିୟା ସମ୍ପ୍ରଦାୟ ଏବଂ ଖ୍ୱାଜା ମୋଇନୁଦ୍ଦିନ ଚିସ୍ତୀଙ୍କ ପାଖରେ ଋଣୀ । ଭାରତର ସୂଫୀ ଦରଗାହଗୁଡ଼ିକରେ, ବିଶେଷ

ଭାବରେ ଆଜମିର ଏବଂ ଦିଲ୍ଲୀର ନିଜାମୁଦ୍ଦିନ ଦରଗାହରେ, ଦିନ ଓ ରାତିର କିଛି ନିର୍ଦ୍ଦିଷ୍ଟ ସମୟରେ ହୃଦୟକୁ ଦ୍ରବୀଭୂତ କରିଦେବା ପରି କବ୍‌ବାଲୀ ଓ ଗଜଲ ହାରମୋନିୟମ ଓ ତାବଲାର ସଙ୍ଗତରେ ଗାନ କରାଯାଏ ।

ସନ୍ଧ୍ୟା ହୋଇଯାଉଥାଏ । ଯେପରି ସୂର୍ଯ୍ୟ ଅସ୍ତଯିବା ଆରମ୍ଭ କଲେ, ପ୍ରାୟ ଅଧଡଜନ ସ୍ଥାନୀୟ ମସଜିଦଗୁଡ଼ିକରୁ ସନ୍ଧ୍ୟା ନମାଜପାଇଁ ଆଜାନର ଧ୍ୱନି ଉଠିଲା । ''ଏବେ ମୁଁ ତୁମକୁ ଜଣେ ସୂଫୀଙ୍କ ନିକଟକୁ ନେଇଯିବି । ସେ ହେଉଛନ୍ତି ସୈୟଦ ଗୁଦ୍ରୀ ଶାହ ସାହେବ, ସେ ନିକଟରେ ରହନ୍ତି । ତୁମର କ'ଣ ପିଲାଦିନେ ଶିଖାଯାଇଥିବା ନମାଜ ପଢ଼ିବାର ପ୍ରଣାଳୀ ମନେଅଛି ?''

''ନାହିଁ ବାବାଜୀ, ପୂରାପୂରି ଭାବରେ ମନେ ନାହିଁ ।''

''ଠିକ୍ ଅଛି, ବ୍ୟସ୍ତ ହେବାର ନାହିଁ । ଯାହା ଅନ୍ୟମାନେ କରିବେ, ସେହିପରି କରିଚାଲିବ । ଗୁଦ୍ରୀ ସାହେବ ନିଶ୍ଚିତ ଭାବରେ ତାଙ୍କର ଘର ପାଖରେ ଥିବା ଛୋଟ ମସଜିଦରେ ସନ୍ଧ୍ୟାର ନମାଜପାଇଁ ନିମନ୍ତ୍ରଣ କରିବେ । ତାଙ୍କୁ ଭେଟିଲେ ସଲାମ କରିବ ଓ ତାଙ୍କର ହସ୍ତଚୁମ୍ବନ କରିବାକୁ ଭୁଲିବ ନାହିଁ ।''

ଆମେ ଶିଡ଼ିରୁ ଓହ୍ଲାଇ ଗୋଟାଏ ହଲ୍ ପାରିହେଲୁ । ଧଳା ଟୋପି ପିନ୍ଧିଥିବା ଜଣେ ଯୁବକ ଦ୍ୱାର ନିକଟରେ ଆମକୁ ଅଭିବାଦନ କଲେ । ବାବାଜୀ କିଛି କହିବା ପୂର୍ବରୁ ଶୁଭ୍ର ଶ୍ମଶ୍ରୁ ମଣ୍ଡିତ ବଳୀରେଖାଙ୍କିତ ମୁଖମଣ୍ଡଳ ଥିବା ଜଣେ ବୃଦ୍ଧ ଦ୍ୱାର ବାହାରକୁ ଆସିଲେ । ବାବାଜୀଙ୍କୁ ଦେଖି ତାଙ୍କର ମୁଖମଣ୍ଡଳ ଆନନ୍ଦରେ ଉଦ୍‌ଭାସିତ ହେଲା । ସେ କହିବାକୁ ଗଲେ ଦୌଡ଼ିକରି ବାବାଜୀଙ୍କ ପାଖକୁ ଆସିଲେ, ତାଙ୍କୁ ଆଲିଙ୍ଗନ କଲେ ଓ ତାଙ୍କର ହସ୍ତଚୁମ୍ବନ କଲେ । ଲୁହଭର୍ତ୍ତି ଆଖିରେ ସେ ବାବାଜୀଙ୍କର କାନ୍ଧକୁ ଧରି ସ୍ନେହରେ ତାଙ୍କୁ ଚାହିଁ, ଉର୍ଦ୍ଦୁରେ କହିଲେ, ''ବାବାଜୀ, ହଜାର ହଜାର ସଲାମ । ମୋ ପାଇଁ କେଡ଼େ ଗର୍ବର କଥା ଯେ, ଆପଣ ଆସିଲେ, ଆଉ ଏହି ସୌଭାଗ୍ୟଶାଳୀ ନବଯୁବକଟି କିଏ ?''

ବାବାଜୀ ମୋର ଅସଲ ନାଁ କହି ପରିଚୟ କରାଇଲେ । ''ଆହା ! ଆପଣ କ'ଣ ଆମ ସହିତ ନମାଜ କରିବେ ନାହିଁ ? ପୁଣି ଆମେ ଦରଗାହକୁ ଯାଇ କବ୍‌ବାଲୀର ଆନନ୍ଦ ଉପଭୋଗ କରିବା । ତା'ପରେ କିଛି ଉତ୍ତମ ବିରିୟାନୀ, ନା ଆପଣ ନିଜର ଘାସପତ୍ର ଖାଇବେ ? କିଛି କଥା ନାହିଁ, ଚାଲନ୍ତୁ ନମାଜକୁ ଚାଲନ୍ତୁ ।''

ପାରମ୍ପରିକ ରୂପରେ ହାତମୁହଁ ଧୋଇ ଆମେ ନମାଜକୁ ଗଲୁ । କିଛି ଲୋକ ଏକାଠି ହୋଇଥିଲେ । ସୈୟଦ ଗୁଦ୍ରୀ ଶାହଙ୍କ ନେତୃତ୍ୱରେ ନମାଜ କରିବା ପରେ, ଆମେ

କିଛି ସମୟ ମୌନ ହୋଇ ଧ୍ୟାନରେ ବସିଲୁ । ଏହାପରେ ଶ୍ରୀ ସୈୟଦ ଆମକୁ ଦରଗାହକୁ ନେଇଗଲେ । ଯେପରି ଭାବରେ ରାସ୍ତାରେ ଓ ଦରଗାହର ପ୍ରାଙ୍ଗଣରେ ଲୋକମାନେ ତାଙ୍କୁ ସଲାମ କରୁଥିଲେ, ମୋର ଅନୁମାନ ହେଲା ଯେ ସେହି ଅଞ୍ଚଳରେ ଲୋକମାନେ ତାଙ୍କୁ ବହୁତ ସମ୍ମାନ କରୁଥିଲେ ।

କବ୍‌ବାଲ କବର ବାହାରେ ହାରମୋନିୟମ ଓ ତବଲା ଧରି ବସିଥିଲେ । ସେ ଗଭୀର ଭାବନା ସହିତ ମୁକ୍ତ କଣ୍ଠରେ ଗାଇଲେ । ମୌଳିକ ଭାବରେ ସେଗୁଡ଼ିକ ଥିଲା ପ୍ରେମ-ଗୀତ, ପ୍ରେମିକାପାଇଁ ପ୍ରେମିକର ଗଭୀର ପ୍ରେମର ଅଭିବ୍ୟକ୍ତି, ତାହା ସହିତ ମିଳିତ ହେବାର ବ୍ୟାକୁଳତା, ପ୍ରେମିକାକୁ ଓଢ଼ଣୀ ଉଠାଇବାକୁ ଅନୁରୋଧ-ଉପରୋଧ, ଯେମିତି ପ୍ରେମିକ କ୍ଷଣକପାଇଁ ହେଲେ ତା'ର ସୁନ୍ଦର ଚେହେରା ଦେଖିପାରିବ । ସୁନ୍ଦର ଗୀତଗୁଡ଼ିକ ମୋର ହୃଦୟସ୍ପର୍ଶ କଲା ।

ମହଫିଲ ପରେ ଗୁଦ୍ରୀ ସାହେବ ଆମକୁ ତାଙ୍କ ଘରକୁ ନେଇଗଲେ । ଆମକୁ ଏକ କୋଠରି ଦିଆଗଲା । ''ରାତିରେ ନମାଜ ପରେ ଆପଣମାନେ ଆମ ସହିତ ଭୋଜନ କରିବାକୁ ଆସିବେ'', ସେ କହିଲେ ଓ ଚାଲିଗଲେ ।

ବାବାଜୀ କହିଲେ, ''ତୁମର ଏଠାକୁ ଆସିବାର ଗୋଟାଏ ଉଦ୍ଦେଶ୍ୟ ଅଛି । ମୁଁ ଶାହ ସାହେବଙ୍କୁ କହିଦେଇଛି, କିଛିଦିନ ତୁମେ ଏଠାରେ ତାଙ୍କର ଛାତ୍ର ହୋଇ ରହିବ । ପାଖାପାଖି ତିନି ସପ୍ତାହ । ତୁମକୁ ଅଳ୍ପସମୟ ମଧ୍ୟରେ ସୂଫୀବାଦର ସାରକଥାର ଶିକ୍ଷା ଦିଆଯିବ । ସେ ତୁମକୁ ସୂଫୀବାଦର ଦୀକ୍ଷା ମଧ୍ୟ ଦେବେ । ତା'ପରେ ତୁମେ ଘରକୁ ଯାଇପାରିବ ଏବଂ ମୋର ପରବର୍ତ୍ତୀ ଇଙ୍ଗିତକୁ ଅପେକ୍ଷା କରିବ । କାଲି ମୋତେ ମହାନ୍ ସନ୍ଥ ଜ୍ଞାନେଶ୍ୱରଙ୍କ (ଯାହାଙ୍କର ସମାଧି ପୁନା ପାଖରେ ଆଳନ୍ଦୀରେ ରହିଛି) ପରମ୍ପରାର ଏକନାଥ ଯୋଗୀଙ୍କୁ ସାକ୍ଷାତ କରିବାକୁ ମହାରାଷ୍ଟ୍ର ଯିବାର ଅଛି । ମୁଁ ତୁମକୁ ସବୁବେଳେ ଚାହିଁଛି । ସବୁ ଠିକ୍‌ଠାକ୍ ଅଛି; କିନ୍ତୁ ମୋର ଉପଦେଶ ହେଉଛି ତୁମେ ସେହିସବୁ କଳିତକରାଳରେ ପଶ ନାହିଁ, ନୂଆ ସାଙ୍ଗମାନଙ୍କ ସହାୟତାପାଇଁ ମଧ୍ୟ ନୁହେଁ ।''

ରାତିର ନମାଜ ପରେ ଶାହ ସାହେବ ନିଜେ ଆମକୁ ଖାଇବାପାଇଁ ନିମନ୍ତ୍ରଣ ଦେବାକୁ ଆସିଲେ । ସେଠାରେ ତାଙ୍କର ଛ'ସାତଜଣ ଶିଷ୍ୟ ଥିଲେ । ଆମେମାନେ ଗଦି ଉପରେ ଚକାପକାଇ ବସି ଶଙ୍ଖ ପ୍ଲେଟରେ ଖାଇଲୁ । ଦି'ଜଣ ଶିଷ୍ୟ ଖାଦ୍ୟ ପରଷିଲେ । ବାବାଜୀଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ଶାକାହାରୀ ଖାଦ୍ୟ ରନ୍ଧା ଯାଇଥିଲା । ଶାହ କହିଲେ, ''ନବଯୁବକ, ଯଦି ତୁମେ ଶାକାହାରୀ, ତେବେ ତାହା ନେଇପାରିବ ।'' ବାବାଜୀ ମୋତେ ଚକିତ କରିଦେଇ କହିଲେ, ''ଆଜି ଆମେ ମଟନ ବିରିୟାନୀ ଓ କବାବ ଖାଇବୁ ।'' ସେ

ମୋ ଆଡ଼କୁ ଚାହିଁ ଆଖି ମିଟିକା ମାରିଲେ । "ଏହି ଯୁବକକୁ ବିରିୟାନୀ ଭଲ ଲାଗେ; କିନ୍ତୁ ସେ ଭାବେ ପୃଥିବୀର ସର୍ବଶ୍ରେଷ୍ଠ ବିରିୟାନୀ ତା'ର ମା' ରାନ୍ଧନ୍ତି ।"

ସମସ୍ତେ ହସି ଉଠିଲେ । ମୌନ-ପ୍ରାର୍ଥନା ପରେ ଆମେମାନେ ବିରିୟାନୀ ଉପଭୋଗ କଲୁ । ମୋ ଜୀବନରେ ଯେତେ ଭଲଭଲ ବିରିୟାନୀ ଖାଇଛି, ତାହା ସେମାନଙ୍କ ମଧ୍ୟରୁ ଅନ୍ୟତମ ଥିଲା । ଖାଇବା ପରେ ଶାହ ଏକାଠି ହୋଇଥିବା ଲୋକମାନଙ୍କୁ କହିଲେ ଯେ, ମୁଁ ତିନି ସପ୍ତାହପାଇଁ ତାଙ୍କର 'ହଲ୍କା' (ସମ୍ପ୍ରଦାୟ)ରେ ସାମିଲ ହେବି । ଲୋକମାନେ ଆଲିଙ୍ଗନ କରି ଓ ଆଲ୍ଲାହ୍‌ଙ୍କୁ ପ୍ରଶଂସା କରି ମୋତେ ସ୍ୱାଗତ କଲେ ।

ପରଦିନ ସକାଳେ ବାବାଜୀ ମୋତେ ଶାହ ସାହେବଙ୍କ ପାଖରେ ଛାଡ଼ି ଚାଲିଗଲେ । ତାଙ୍କୁ ବିଦାୟ ଦେବାବେଳେ ମୋତେ ଖୁବ୍ ଦୁଃଖ ଲାଗିଲା ନାହିଁ । ମୁଁ ସବୁ ପରିସ୍ଥିତିରେ ନିରୁଦ୍‌ବିଗ୍ନ ରହିବାର କଳା ଶିଖିଥିଲି । ଆସନ୍ତା ତିନି ସପ୍ତାହପାଇଁ ମୁଁ ଶାହ ସାହେବଙ୍କର ଶିଷ୍ୟ ଥିଲି ।

× × ×

ପ୍ରଥମେ କିଛି ଦିନ ମୋତେ ସୂଫୀବାଦର ଦର୍ଶନ ଏବଂ ସିଦ୍ଧାନ୍ତ ପଢ଼ାଗଲା ଏବଂ ସୂଫୀମାନଙ୍କର ବିଭିନ୍ନ ସିଦ୍ଧାନ୍ତଗୁଡ଼ିକ ବିଷୟରେ କୁହାଗଲା । ବଳକା ସମୟରେ ମୋତେ ସୂଫୀମାନଙ୍କଦ୍ୱାରା ପ୍ରଯୁକ୍ତ ପ୍ରଣାଳୀ ଶିଖାଗଲା । ମୁଁ ଜାଣିଲି ଯେ ଇସଲାମର ସଂସ୍ଥାପକ ଅନ୍ୟ ସବୁ କଥା ସହିତ ଏକଥା ବି କହିଥିଲେ, "ମନ ଅରଫା ନଫ୍‌ଶୁ, ଫ ଖଦ ଅରଫା ରବ୍‌ବୁ", ଅର୍ଥାତ୍ ଯେ ନିଜକୁ ଜାଣେ, ସେ ଭଗବାନ୍‌ଙ୍କୁ ମଧ୍ୟ ଜାଣେ । ମୁଁ ଜାଣିଲି ଯେ 'ଖଲ୍‌ବ' ଅର୍ଥାତ୍ ଆଧ୍ୟାତ୍ମିକ ହୃଦୟର ମାନେ କ'ଣ ଓ ତାହାକୁ ନିଜ ମଧ୍ୟରେ କିପରି ଜାଗୃତ କରିହେବ । ମୋତେ ଜଲାଲୁଦ୍ଦିନ ରମୀଙ୍କଦ୍ୱାରା ସ୍ଥାପିତ ମେଲଭାଭୀର ଗୋଲ ଗୋଲ ଚକ୍କର କାଟି ନାଚୁଥିବା ଦରବେଶମାନଙ୍କ ବିଷୟରେ କୁହାଗଲା ଏବଂ ସେମାନେ କିପରି ଓ କାହିଁକି ନଟୁ ପରି ଚକ୍କର କାଟନ୍ତି ସେକଥା ମଧ୍ୟ କୁହାଗଲା । ରମୀଙ୍କର ଶାୟରୀର ବହି 'ମସନବୀ'ର ସଂକ୍ଷିପ୍ତ ପରିଚୟ ଦିଆଗଲା । ତାଙ୍କର ଗଦ୍ୟ ପୁସ୍ତକ 'ଫିହୀ ମା' ଫିହୀ'ର ମଧ୍ୟ ସଂକ୍ଷିପ୍ତ ପରିଚୟ ଦିଆଗଲା । 'ଫିହି ମା ଫିହି'ର ମୋଟାମୋଟି ଅର୍ଥ ହେଲା, 'ଏହା ଅଛି ଏବଂ ନାହିଁ ମଧ୍ୟ ।'

ମୁଁ ଅବ୍‌ଦୁଲ ଖାଦିର ଜିଲାନୀଙ୍କର (କାଦ୍ରିୟା ସମ୍ପ୍ରଦାୟର ସ୍ଥାପକ) ବହିଗୁଡ଼ିକ ବିଷୟରେ, ଉମର ଖୈୟାମଙ୍କର 'ରବାଇୟାତ'ର ରହସ୍ୟାତ୍ମକ ଅର୍ଥ ବିଷୟରେ ଜାଣିଲି । ମୁଁ ଚିସ୍ତୀ କବ୍‌ବାଲୀ ଗାୟକମାନଙ୍କର ଗୀତ ଶୁଣିଲି ଏବଂ ଅଳ୍ପ କିଛି ଶିଖିଲି ମଧ୍ୟ । ନକ୍‌ଶବନ୍ଦୀ, ରିଫାଇ ଏବଂ ସୁହରାବର୍ଦୀ ସମ୍ପ୍ରଦାୟର ସୂଫୀ ଗୁରୁମାନଙ୍କର ବହିଗୁଡ଼ିକ ଏବଂ ମୁଲ୍ଲା

ନସରଦ୍ଦିନଙ୍କର କାହାଣୀଗୁଡ଼ିକ ମୋ ସମ୍ମୁଖରେ ଏକ ଅପୂର୍ବ ପରିସର ଉନ୍ମୁକ୍ତ କରିଦେଲା । ଇସ୍‌ଲାମର ଗଠନଶୈଳୀରେ ସେସବୁ ରହିଛି ବୋଲି ମୁଁ କଳ୍ପନା ମଧ୍ୟ କରି ନ ଥିଲି; କିନ୍ତୁ ମୋର ପସନ୍ଦର ବହି ଥିଲା ଫରୀଦୁଦ୍ଦିନ ଅତ୍ତାରଙ୍କର 'ମନ୍ତୀକ-ଉତ୍-ତୈର' (ପକ୍ଷୀମାନଙ୍କର ବୈଠକ) ।

ମୋର ଅଧ୍ୟୟନ ବେଶ କଠିନ ଥିଲା । ଚିନ୍ତନ-ମନନ ଓ ଦିନସାରା ଉପବାସ, ଯେତେବେଳ ପର୍ଯ୍ୟନ୍ତ ମୋର 'ନେଫ୍ସ' (ଆତ୍ମ ନିୟନ୍ତ୍ରଣ)କୁ କଟାକଟି କରି ମୋ ସାମ୍ନାରେ ନଗ୍ନ କରି ରଖି ଦିଆ ନ ଗଲା, ସେପର୍ଯ୍ୟନ୍ତ ଚାଲୁ ରହିଲା । ମୋର ପ୍ରଶିକ୍ଷଣର ଅନ୍ତରେ ଶାହ ସାହେବ କିଛି ଅନ୍ୟ ପୁସ୍ତକର ତାଲିକା ମୋତେ ପଢ଼ିବାପାଇଁ ଦେଲେ । ସେଥିରେ ଅଲୀ ବିନ ଉସ୍ମାନ ଅଲ ହୁଜବିରୀଙ୍କର କସ୍ଫ-ଉଲ୍-ମହଜୁବ (ପରଦାନସିନର ପର୍ଦା ଉଠାଇବା) ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ସେ କହିଲେ, ''ତୁମର ବାବା ଜଣେ ମହାନ୍ ଆତ୍ମା । ସେ ହେଉଛନ୍ତି ଜଣେ ଔଲିଆ, ଜଣେ ପୀର । ଦୈବୀକୃପାରୁ (ଅଲ୍ଲାହ କେ ଫଜଲସେ) ତୁମେ ତାଙ୍କୁ ପାଇଯାଇଛ । ତୁମର ଆଉ କିଛିର ଆବଶ୍ୟକତା ନାହିଁ । ତୁମ ଯାତ୍ରାର ଅଧିକାଂଶ ଅଂଶ ଶେଷ ହୋଇଗଲାଣି । ତୁମେ ତୁମ ରାସ୍ତାରେ ଯାଅ, ଆଲ୍ଲାହ ତୁମ ସହିତ ରହିଛନ୍ତି ।''

ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧାର ସହିତ ପ୍ରଣାମ କରି ଏବଂ ତାଙ୍କୁ ଆଲିଙ୍ଗନ କରି ମୁଁ ରେଳଷ୍ଟେସନକୁ ଗଲି ଏବଂ କିଛିଦିନ ପରେ ନିଜର ଘରେ ପହଞ୍ଚିଗଲି ।



# 37. ରାମକୃଷ୍ଣ ମିଶନ

ଆଜମିରରୁ ଫେରିବା ପରବର୍ଷ ମୁଁ ଫାର୍ମାସୀ ଛାତ୍ର ଭାବରେ ନାଁ ଲେଖାଇଲି । ମୋର ମା'ବାପା ଭାବିଲେ ଯେ ଯଦି (ତାଙ୍କ ଅନୁଯାୟୀ) କୌଣସି ଉପଯୋଗୀ କାର୍ଯ୍ୟରେ ବ୍ୟସ୍ତ ରଖାଯିବ ତେବେ ମୋର ବୁଲା ପ୍ରକୃତିରେ ଅଙ୍କୁଶ ଲାଗିଯିବ । ମୋର ଜଣେ କକାପୁଅ ଭାଇଙ୍କର ପତ୍ନୀ ଉତ୍ତର କେରଳର କନ୍ନୁର ସହରରେ ଡାକ୍ତର ଥିଲେ । ତାଙ୍କର ପରାମର୍ଶ ଥିଲା ଯେ ମୁଁ କାଲିକଟର ମେଡ଼ିକାଲ କଲେଜରେ ଫାର୍ମାସୀର ଡିପ୍ଲୋମାପାଇଁ ନାଁ ଲେଖାଇଲେ ଭଲ ହେବ । ସେ ଜଣେ ଉତ୍ତମ ବନ୍ଧୁ ଥିଲେ ଓ ଅଛନ୍ତି । ମୁଁ ତାଙ୍କର ପରାମର୍ଶ ମାନିନେଲି, କାରଣ ମୋର ମା'ବାପା ମଧ୍ୟ ଏଥିପାଇଁ ଭାରି ଇଚ୍ଛା କରୁଥିଲେ । ମୋର ବାପା ମାଡ୍ରାସରେ ଔଷଧ ପ୍ରସ୍ତୁତ କରିବା କାମ ଆରମ୍ଭ କରିବାକୁ ଚାହୁଁଥିଲେ ଏବଂ ସେ ଭାବୁଥିଲେ ଯେ ମୋର ଏହି ଡିପ୍ଲୋମା ସେଥିରେ କାମଦେବ ।

ମୋ କଥା କହିବାକୁ ଗଲେ, ମୁଁ ପାଠ୍ୟକ୍ରମରେ ଖୁସି ଥିଲି । ସେଥିରେ ମୋତେ ଶରୀର-ସଂରଚନା ଏବଂ ଶରୀର ବିଜ୍ଞାନର ଅଧ୍ୟୟନ କରିବାର ଥିଲା, ଶବ ବ୍ୟବଚ୍ଛେଦ କରି ଅଭ୍ୟନ୍ତରର ଅଙ୍ଗପ୍ରତ୍ୟଙ୍ଗର ନିରୀକ୍ଷଣ କରିବା ଥିଲା ଏବଂ ଡାକ୍ତରଖାନାର ଶବ ଗୃହକୁ ଯାତାୟାତ କରିବାର ମଧ୍ୟ ଥିଲା । ଜୈବ ରସାୟନଶାସ୍ତ୍ର ଏବଂ ଫାର୍ମାକୋଲଜି ମଧ୍ୟ ପାଠ୍ୟକ୍ରମରେ ଥିଲା । ପ୍ରଥମ ବର୍ଷ ମୋର ପରୀକ୍ଷା ଫଳ ଭଲ ହେଲା । ଦ୍ୱିତୀୟ ବର୍ଷର ଦ୍ୱିତୀୟାର୍ଦ୍ଧରେ ମୋର ଅଶାନ୍ତ ଓ ବୁଲା ପ୍ରକୃତି (ଯାହା ମଝିରେ ମଝିରେ ମୋତେ ଆକର୍ଷଣ କରୁଥିଲା), ମୋ ଉପରେ କବ୍ଜା କରିନେଲା ଓ ଚୁପ୍‌ଚାପ୍ ବାହାରିଯିବାର ଯୋଜନା କରିବାରେ ଲାଗିଲି । ଦିନେ ରାତିରେ ମୁଁ ସ୍ୱପ୍ନରେ ବାବାଜୀଙ୍କୁ ଗଙ୍ଗାକୂଳରେ ରାମକୃଷ୍ଣ ପରମହଂସଙ୍କ ସହିତ ବାର୍ତ୍ତାଳାପ କରିବାର ଦେଖିଲି । ଏହାକୁ ଏକ ଇଙ୍ଗିତ ବୋଲି ଭାବି ମୁଁ ଦିନେ ସକାଳେ କାହାକୁ କିଛି ନ କହି କାଲିକଟ୍ ଛାଡ଼ିଦେଲି ।

କୌଣସି ଅଜ୍ଞାତ କାରଣବଶତଃ ଚେନ୍ନାଇ ପହଞ୍ଚିବା ପରେ ମୁଁ ବମ୍ବେପାଇଁ ରେଳଗାଡ଼ିରେ ଚଢ଼ିବସିଲି; କିନ୍ତୁ ସେତିକିବେଳେ ମୋତେ ଜଣାପଡ଼ିଲା ଯେ ମୋ ପାଖରେ ବମ୍ବେରୁ କଲିକତା, (ଯେଉଁଠାରେ ରାମକୃଷ୍ଣ ମିଶନର ମୁଖ୍ୟାଳୟ ରହିଛି) ଯିବାପାଇଁ ପର୍ଯ୍ୟାପ୍ତ

ପଇସା ନାହିଁ । ଜଣେ ସହଯାତ୍ରୀ କହିଲେ, ବମ୍ବେର ଖାରଠାରେ ରାମକୃଷ୍ଣ ମିଶନର ଏକ ସୁନ୍ଦର କେନ୍ଦ୍ର ଅଛି । ସେ ଖାରରେ ରହୁଥିଲେ ଓ ମୁଁ ଚାହିଁଲେ ସେ ଖୁସିରେ ମୋତେ ସେଠାରେ ପହଞ୍ଚାଇ ଦେବେ । ମୁଁ ସମ୍ମତି ଜଣାଇଲି ଓ ଅପରାହ୍ଣ ସୁଦ୍ଧା ମୁଁ ରାମକୃଷ୍ଣ ଆଶ୍ରମରେ ଥିଲି ।

ତାହା ବାସ୍ତବରେ ବମ୍ବେର ହୋ-ହଲ୍ଲା ମଧ୍ୟରେ ଶାନ୍ତିର ଏକ ମରୁଦ୍ୟାନ ଥିଲା । ପ୍ରଥମେ ମୁଁ ଶ୍ରୀ ରାମକୃଷ୍ଣଙ୍କର ଏକ ଉତ୍କୃଷ୍ଟ ମନ୍ଦିରକୁ ଗଲି ଓ ସେଠାରେ କିଛି ସମୟ ଧ୍ୟାନରେ ବସିଲି । ମୋର ଅନୁରୋଧକ୍ରମେ ମୋତେ କେନ୍ଦ୍ରର ଅଧ୍ୟକ୍ଷ ସ୍ୱାମୀ ହିରଣ୍ମୟାନନ୍ଦଙ୍କ ସହିତ ସାକ୍ଷାତ କରିବାର ସମୟ ଦିଆଗଲା । ସେ ରାମକୃଷ୍ଣଙ୍କର ପ୍ରତ୍ୟକ୍ଷ ଶିଷ୍ୟ ମହାପୁରୁଷ ମହାରାଜଙ୍କର ଶିଷ୍ୟ ଥିଲେ । ସେ ମୋ କଥା ଶୁଣିଲେ ଓ ମୋତେ ବ୍ରହ୍ମଚାରୀ ଭାବରେ ନେବାପାଇଁ ରାଜି ହୋଇଗଲେ । ତାଙ୍କର ମତ ଥିଲା ଯେ, କେତେକ କାରଣରୁ ମୋର ମୁସଲମାନୀ ନାଁକୁ ଗୁପ୍ତ ରଖିବାକୁ ପଡ଼ିବ । ସେ ମୋର ନାଁ ଶିବପ୍ରସାଦ ରଖିଦେଲେ । ସେହି ଦିନଠାରୁ ମୁଁ ଦେଢ଼ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚାରୀ ଶିବପ୍ରସାଦ ହୋଇ ରହିଲି ।

ଜଗତ ପ୍ରସିଦ୍ଧ ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା ସ୍ଥାପିତ ରାମକୃଷ୍ଣ ମିଶନଙ୍କର ବିଶ୍ୱାସ ଯେ ମାନବତାର ସେବା ହେଉଛି ଭଗବତ୍ ସେବାର ସବୁଠାରୁ ଉତ୍ତମ ବିଧି । ଏହା କେତେକ ଅନ୍ୟ ଆଶ୍ରମମାନଙ୍କର ବିପରୀତ ଥିଲା । ସେସବୁ ସ୍ଥାନରେ ମୁଁ ଦେଖିଥିଲି, ଆଶ୍ରମବାସୀ ଅଧ୍ୟୟନ କରନ୍ତି, ଭୋଜନ କରନ୍ତି ଓ ଶୟନ କରନ୍ତି । କୌଣସି ସାମାଜିକ କ୍ରିୟାକଳାପରେ ଭାଗ ନିଅନ୍ତି ନାହିଁ; କିନ୍ତୁ ରାମକୃଷ୍ଣ-ଆଶ୍ରମବାସୀମାନଙ୍କୁ ସଦାସର୍ବଦା ସାମାଜିକ ସେବା କାର୍ଯ୍ୟରେ ବ୍ୟସ୍ତ ରଖାଯାଏ । ଡାକ୍ତରଖାନା, ଅନାଥାଶ୍ରମ, ସ୍କୁଲ, କଲେଜ ଏବଂ ବିରାଟ ପ୍ରକାଶନ ବିଭାଗ ମୁଖ୍ୟ ରୂପରେ ସନ୍ନ୍ୟାସୀ ଓ ନୂତନ ବ୍ରହ୍ମଚାରୀମାନଙ୍କଦ୍ୱାରା ହିଁ ଚାଳିତ ହୁଏ । ଏହି କାର୍ଯ୍ୟକଳାପ ସେମାନଙ୍କୁ ଆଳସ୍ୟପରାୟଣ ହେବାରୁ ଓ ଆତ୍ମସନ୍ତୁଷ୍ଟିରୁ ମଧ୍ୟ ରକ୍ଷା କରେ ।

ଯେତେବେଳେ ପଚରାଗଲା ଯେ, ଶିକ୍ଷିତ ହୋଇଥିବାରୁ ମୁଁ କେଉଁ କାମ କରିବାକୁ ପସନ୍ଦ କରିବି, ମୁଁ ମନ୍ଦିରର କାମ କରିବାକୁ ଇଚ୍ଛା ବ୍ୟକ୍ତ କଲି, ଅର୍ଥାତ୍ ମନ୍ଦିରକୁ ସଫାସୁତୁରା ରଖିବି ଓ ଦେଖାଶୁଣା କରିବି । ପରମ୍ପରାବାଦୀ ଓ ଉଦାସୀନ ସନ୍ନ୍ୟାସୀ ପୂଜାରୀ ବଟୁକ-ମହାରାଜଙ୍କ ସହିତ କଥାବାର୍ତ୍ତା ହେବା ପରେ ମୋତେ ଏହି କାମ ଦେଇ ଦିଆଗଲା । ସେଠାରୁ କ୍ରମଶଃ ପଦୋନ୍ନତି ପାଇ ମୁଁ ମନ୍ଦିରର ଅଭ୍ୟନ୍ତରରେ କାମ କରିବାକୁ ଲାଗିଲି, ଫଳ ଓ ପରିବାପତ୍ର କାଟିବା, ଅର୍ପଣପାଇଁ ଫୁଲ ବାଛିବା ଏବଂ ଗର୍ଭ-ଗୃହର ସଫାସୁତୁରା କରିବା ଇତ୍ୟାଦି କାମ କରିବାର ଅନୁମତି ମିଳିଗଲା । ପୁଣି ଶ୍ରୀ ରାମକୃଷ୍ଣଙ୍କର ଶଙ୍ଖମଲମଲ

ପ୍ରତିମାର ଯତ୍ନ କରିବା ମଧ୍ୟ ମୋ କାମ ଥିଲା । ଲାଗୁଥାଏ ଯେପରି ସେ ସେଠାରେ ଜୀବନ୍ତ ବାସ କରୁଛନ୍ତି !

ଖାଲି ସମୟରେ ମୁଁ ବେଦଗୁଡ଼ିକ ପଢ଼ିଲି ଏବଂ ମହାନ ସ୍ୱାମୀ ଯତୀଶ୍ୱରାନନ୍ଦଙ୍କର ଶିଷ୍ୟ ଭିକ୍ଷୁ ସ୍ୱାମୀ ଗୌତମାନନ୍ଦଙ୍କଠାରୁ ଗୀତ ଶିଖିଲି । ଗୌତମାନନ୍ଦ ପରବର୍ତ୍ତୀ ସମୟରେ ମିଶନର ସବୁଠାରୁ ପୁରୁଣା କେନ୍ଦ୍ରମାନଙ୍କ ମଧ୍ୟରୁ ଅନ୍ୟତମ ମାଡ୍ରାସର ରାମକୃଷ୍ଣ ମଠର ଅଧ୍ୟକ୍ଷ ହେଲେ । ତାହାର ସ୍ଥାପନାରେ ସ୍ୱୟଂ ସ୍ୱାମୀ ବିବେକାନନ୍ଦଙ୍କର ହାତ ଥିଲା । ଶ୍ରୀ ରାମକୃଷ୍ଣଙ୍କର ପ୍ରତ୍ୟକ୍ଷ ଶିଷ୍ୟ ସ୍ୱାମୀ ରାମକୃଷ୍ଣାନନ୍ଦ ମାଡ୍ରାସ କେନ୍ଦ୍ରର ପ୍ରଥମ ଅଧ୍ୟକ୍ଷ ଥିଲେ ।

ମୁଁ ସେହି ଦେଢ଼ବର୍ଷ ଭିତରେ ବହୁତ କିଛି ଶିଖିଲି । ମୁଁ ସେହି ଗୁଣଗୁଡ଼ିକ ଆପଣାର କରିନେଲି, ଯେଉଁଗୁଡ଼ିକ ମୋର ଜୀବନର ଯାତ୍ରାରେ ବହୁତ ସହାୟକ ହେଲେ । ତାଙ୍କର ପୁସ୍ତକାଳୟରେ ବହୁତ ବହି ଥିଲା, ମୁଁ ଶ୍ରୀ ରାମକୃଷ୍ଣ ଓ ତାଙ୍କର ଶିଷ୍ୟମାନଙ୍କ ବିଷୟରେ ଥିବା ପ୍ରାୟ ସବୁ ବହି ପଢ଼ି ପକାଇଲି । 'ଶ୍ରୀମ'ଙ୍କ ଦ୍ୱାରା ଲିଖିତ 'ଗୋସ୍‌ପେଲ ଅଫ୍ ଶ୍ରୀରାମକୃଷ୍ଣ' (ରାମକୃଷ୍ଣ କଥାମୃତ), ସ୍ୱାମୀ ସାରଦାନନ୍ଦଙ୍କ ଦ୍ୱାରା ଲିଖିତ 'ରାମକୃଷ୍ଣ ଦି ଗ୍ରେଟ ମାଷ୍ଟର' (ମହାନ ଗୁରୁ ରାମକୃଷ୍ଣ), ଦି କଂପ୍ଲିଟ୍ ଓ୍ୱର୍କ୍ସ ଅଫ୍ ସ୍ୱାମୀ ବିବେକାନନ୍ଦ (ସ୍ୱାମୀ ବିବେକାନନ୍ଦଙ୍କର ସମଗ୍ର ସାହିତ୍ୟ) ଏବଂ ରାମକୃଷ୍ଣଦେବଙ୍କର କେତେକ ପ୍ରତ୍ୟକ୍ଷ ଶିଷ୍ୟଙ୍କର ଜୀବନ-ଚରିତ ଆଦି ମୋର ପ୍ରିୟ ପୁସ୍ତକ ଥିଲା ।

ଏହି ସମୟ ମଧ୍ୟରେ ମୁଁ ରାମକୃଷ୍ଣ ମିଶନର କେତେଜଣ ଆଦର୍ଶ ସ୍ୱରୂପ ସନ୍ନ୍ୟାସୀମାନଙ୍କୁ ଭେଟିବାର ସୁଯୋଗ ପାଇଲି । ସେମାନେ ଥିଲେ ରାମକୃଷ୍ଣ ମିଶନର ଅଧ୍ୟକ୍ଷ ସ୍ୱାମୀ ବୀରେଶ୍ୱରାନନ୍ଦ, ଯେ ସାରଦା ଦେବୀଙ୍କର ପ୍ରତ୍ୟକ୍ଷ ଶିଷ୍ୟ ଥିଲେ, ପ୍ରସିଦ୍ଧ ସ୍ୱାମୀ ରଙ୍ଗନାଥାନନ୍ଦ, ଯାହାଙ୍କର ଚେଷ୍ଟାରେ କଲିକତାରେ 'ରାମକୃଷ୍ଣ ଇନ୍‌ଷ୍ଟିଚ୍ୟୁଟ ଅଫ୍ କଲ୍‌ଚର୍' ସ୍ଥାପିତ ହୋଇଥିଲା ଏବଂ ଆହୁରି ଅନେକ । ଯେତେବେଳେ ସେ ବର୍ଷ ଦୁର୍ଗାପୂଜା ପାଳନ ହେଲା, ସେତେବେଳେ ମୋତେ ଖାର କେନ୍ଦ୍ରକୁ ଆସିଥିବା ଅନେକ ବରିଷ୍ଠ ସନ୍ନ୍ୟାସୀଙ୍କୁ ଭେଟିବାର ସୁଯୋଗ ମିଳିଲା । ସେମାନଙ୍କ ମଧ୍ୟରେ କେତେଜଣ ତନ୍ତ୍ରଶାସ୍ତ୍ରରେ ବିଶେଷଜ୍ଞ ଥିଲେ ଏବଂ କେତେଜଣ ଏହା ସମ୍ବନ୍ଧିତ ଆଧ୍ୟାତ୍ମିକ ସ୍ତରର ଉନ୍ନତ ଅବସ୍ଥା ପ୍ରାପ୍ତ କରି ସାରିଥିଲେ ।

ଯଦି ମୁଁ ସନ୍ନ୍ୟାସୀ ହେବାକୁ ଚାହିଁଥାଆନ୍ତି, ତେବେ ମୋ ପାଇଁ ରାମକୃଷ୍ଣ ମଠଠାରୁ ଉତ୍ତମ କୌଣସି ସ୍ଥାନ ନ ଥିଲା; କିନ୍ତୁ ମୋ ଭାଗ୍ୟରେ ଗୃହସ୍ଥ ହେବା ଲେଖା ଥିଲା । ଯାହା ବି ହେଉ, ମୋ ପାଇଁ ବାବାଜୀଙ୍କର ଯୋଜନା ଅନ୍ୟ ପ୍ରକାରର ଥିଲା । ଦେଢ଼ବର୍ଷ ପରେ

ମୁଁ ଚୁପ୍‌ଚାପ୍ ରାମକୃଷ୍ଣ ଆଶ୍ରମ ଛାଡ଼ିଦେଲି ଏବଂ ପୁଣିଥରେ ଘୂରିବୁଲିବାପାଇଁ ସ୍ୱାଧୀନ ହୋଇଗଲି ।

ଶ୍ରୀ ରାମକୃଷ୍ଣ ଓ ବିବେକାନନ୍ଦଙ୍କ ବିଷୟରେ ଏତେଗୁଡ଼ାଏ ବହି ପଢ଼ିବା ପରେ, ଦି'ଟି ସ୍ଥାନକୁ ଯିବାକୁ ମୋର ପ୍ରବଳ ଇଚ୍ଛା ଥିଲା – କଲିକତାର ହୁଗୁଳି ନଦୀ ତୀରରେ ଥିବା କାଳୀ ମନ୍ଦିର, ଯେଉଁଠାରେ ଶ୍ରୀ ରାମକୃଷ୍ଣ ନିଜ ଜୀବନର ଅଧିକାଂଶ ସମୟ ବିତାଇଥିଲେ ଏବଂ ନଦୀର ଅପର ପାର୍ଶ୍ୱରେ ଥିବା ବେଲୁଡ଼ ମଠ, ଯାହା ରାମକୃଷ୍ଣ ମିଶନର ମୁଖ୍ୟାଳୟ ଥିଲା ।

ମୁଁ ବାବାଜୀଙ୍କର ଇଙ୍ଗିତର ଅପେକ୍ଷା କଲି; କିନ୍ତୁ ଯେତେବେଳେ କିଛି ଇଙ୍ଗିତ ମିଳିଲା ନାହିଁ, ମୁଁ ବମ୍ବେ ରେଳଷ୍ଟେସନ ଗଲି ଓ କଲିକତା ଯିବାକୁ ଟିକେଟ କାଟିଲି । ମୋ ପାଖରେ କଲିକତା ଯିବାପାଇଁ ଟିକେଟ୍‌ର ପଇସା ଥିଲା, ତେଣୁ ହାଓଡ଼ା ଷ୍ଟେସନରୁ ଦକ୍ଷିଣେଶ୍ୱର ପର୍ଯ୍ୟନ୍ତ ମୋତେ ଚାଲିଚାଲି ଯିବାକୁ ପଡ଼ିଲା । ଖାରର ରାମକୃଷ୍ଣ ମିଶନରେ ମୁଁ ଉତ୍ତମ ଓ ଠିକ୍ ସମୟରେ ମିଳିଯାଉଥିବା ଭୋଜନରେ ଅଭ୍ୟସ୍ତ ହୋଇଯାଇଥିବା ହେତୁ, ଦକ୍ଷିଣେଶ୍ୱରରେ ପହଞ୍ଚିବା ବେଳକୁ ମୁଁ ଭାରି ଭୋକିଲା ଥିଲି ଓ ଥକି ଯାଇଥିଲି । କଳ୍ପନା କରନ୍ତୁ, ମୁଁ କେତେ ଖୁସି ହୋଇଯାଇଥିବି ଓ ଉତ୍ତେଜିତ ହୋଇଥିବି, ଯେତେବେଳେ ମୁଁ ମୁଖ୍ୟ ଦ୍ୱାରରେ ମୋର ଜଣାଶୁଣା ଚେହେରାର ବ୍ୟକ୍ତିଙ୍କୁ ଦେଖିଥିବି – ମୋର ପ୍ରିୟ ବାବାଜୀ ! କ୍ଳାନ୍ତି ଓ କ୍ଷୁଧା ଭୁଲିଯାଇ ମୁଁ ତାଙ୍କର ପଦସ୍ପର୍ଶ କରିବାକୁ ଦୌଡ଼ିଲି । ସେ ମୋତେ ଉଷ୍ମ ଆଲିଙ୍ଗନ କଲେ ଓ କହିଲେ, ''ପ୍ରଥମେ ଭୋକିଲା ବ୍ରହ୍ମଚାରୀଙ୍କପାଇଁ ଭୋଜନ ?''

ଲୁଚି, ଆଳୁ ଚଚ୍ଚଡ଼ି ଓ ସନ୍ଦେସର ସ୍ୱାଦିଷ୍ଟ ଭୋଜନ ପରେ ଆମେ ମନ୍ଦିରର ପ୍ରାଙ୍ଗଣରେ ପଶିଲୁ । ଶହେ ପଚାଶ ବର୍ଷ ପୂର୍ବେ ରାଣୀ ରାସମଣିଙ୍କ ଦ୍ୱାରା ନିର୍ମିତ ଏହି ପ୍ରାଙ୍ଗଣରେ ଗୋପାଳକୃଷ୍ଣଙ୍କର ଏକ ଛୋଟକାଟିଆ ମନ୍ଦିର ରହିଛି ଏବଂ ରହିଛି ଭଦ୍ରକାଳୀଙ୍କର ମୁଖ୍ୟ ମନ୍ଦିର । ଭଦ୍ରକାଳୀ ଉଗ୍ର, କୁପିତ ସ୍ତ୍ରୀ–ଦେବୀ ଏବଂ ଶୁଦ୍ଧ ଶକ୍ତିର ବିସ୍ଫୋଟକ ଏବଂ ଚପଳ ରୂପର ପ୍ରତୀକ । ଯେପରି ଆପଣ ପ୍ରବେଶ କରିବେ, ଡାହାଣପଟେ ରହିଛି ବାରଟି ଲିଙ୍ଗ, ଯେଉଁମାନେ ହେଉଛନ୍ତି ବାରଟି ପବିତ୍ର ଜ୍ୟୋତିର୍ଲିଙ୍ଗଙ୍କର ପ୍ରତୀକ । କାଳୀଙ୍କୁ ଶିବଙ୍କର ଅର୍ଦ୍ଧାଙ୍ଗିନୀ ବୋଲି ମାନ୍ୟତା ଦିଆଯାଏ ।

ଯେମିତି ମୁଁ ଫାଟକ ଭିତରକୁ ପଶିଲି, ମୋର ବାଳ ଠିଆ ଠିଆ ହୋଇଗଲା ଓ ମୋର ମନରେ ଏକ ବିଶେଷ ପରିବର୍ତ୍ତନ ଅନୁଭବ କଲି । ବାବାଜୀଙ୍କ ଚେହେରା ଅସମ୍ଭବ ଭାବରେ ଗମ୍ଭୀର ଥିଲା ଓ ସେ କାଳୀଙ୍କର ମନ୍ଦିର ଆଡ଼କୁ ଚାହିଁ ରହିଥିଲେ । ସେଇଟା

ସପ୍ତାହର ମଧ୍ୟବର୍ତ୍ତୀ ସମୟ ଥିଲା, ତେଣୁ ଦର୍ଶନାର୍ଥୀମାନଙ୍କର ଧାଡ଼ି ଅଧିକ ଲମ୍ବା ନ ଥିଲା । କିଛି ମିନିଟ୍ ମଧ୍ୟରେ ଆମେ ପାହାଚ ଟପି ଉଗ୍ରଦେବୀଙ୍କର ସାମ୍ନାରେ ପହଞ୍ଚିଗଲୁ, ଯାହାଙ୍କୁ ବ୍ରହ୍ମାଣ୍ଡର ଜନନୀ ବୋଲି କୁହାଯାଏ ।

ଦକ୍ଷିଣେଶ୍ୱରର ଭଦ୍ରକାଳୀଙ୍କ ମୂର୍ତ୍ତି ହେଉଛନ୍ତି ତନ୍ତ୍ରଶାସ୍ତ୍ରରେ 'ଦଶ ମହାବିଦ୍ୟା' କୁହାଯାଉଥିବା ଦଶଟି ମହାଶକ୍ତି ମଧ୍ୟରେ ସବୁଠାରୁ କ୍ରୁଦ୍ଧ ପକ୍ଷ । ସେ ରଙ୍ଗରେ କଳା ଏବଂ ତାଙ୍କର ଆଖି ଦୁଇଟି ଅତ୍ୟନ୍ତ ହିଂସ୍ର ଏବଂ କ୍ରୁଦ୍ଧ ଦେଖାଯାଏ । ତାଙ୍କର ଜିଭ ବାହାରେ ଝୁଲିଥାଏ ଯେଉଁଥିରୁ ରକ୍ତ ଟପ୍‌ଟପ୍ ହୋଇ ଝରୁଥାଏ, ତାଙ୍କର ଘନ କେଶ ପବନରେ ବିସ୍ତୃତ ହୋଇ ଉଡୁଥାଏ । ସେ ହେଉଛନ୍ତି ନଗ୍ନ, ମଣିଷ ମୁଣ୍ଡର ମାଳ ଏବଂ ମଣିଷର କଟା ହୋଇଥିବା ହାତରେ ମେଖଳା ହେଉଛି ତାଙ୍କର ପରିଧାନ । ତାଙ୍କର ଚାରୋଟି ହାତ ରହିଛି । ଗୋଟିଏ ହସ୍ତ ନିମ୍ନକୁ ଏବଂ ଆଉ ଗୋଟିଏ ହସ୍ତ ଆଶୀର୍ବାଦର ମୁଦ୍ରାରେ ଉପରକୁ ରହିଛି । ତୃତୀୟ ହସ୍ତରେ ରକ୍ତରଞ୍ଜିତ ଖଡ୍ଗ ଏବଂ ଚତୁର୍ଥରେ ଟପ୍‌ଟପ୍ ହୋଇ ରକ୍ତ ଝରୁଥିବା ସଦ୍ୟ କଟାହୋଇଥିବା ମଣିଷର ମୁଣ୍ଡ । ସେ ଅତିରିକ୍ତ ଆନନ୍ଦୋଚ୍ଛ୍ୱାସରେ ନାଚୁଛନ୍ତି ଯାହାକୁ ଉନ୍ମାଦନାର ଆଖ୍ୟା ଦିଆଯାଇପାରେ । ଗୋଟିଏ ପାଦ ଶିବଙ୍କର ଛାତି ଉପରେ, ଯେ ନିଷ୍କ୍ରିୟ ହୋଇ ପଡ଼ିଛନ୍ତି ଏବଂ ଦ୍ୱିତୀୟଟି ନୃତ୍ୟର ମୁଦ୍ରାରେ ଉପରକୁ ଉଠି ରହିଛି । ସବୁକିଛି ମିଶି ଏକ ଭୟଙ୍କର ଦୃଶ୍ୟ ।

ଯେମିତି ମୋର ଆଖି ମୂର୍ତ୍ତିଙ୍କ ଉପରେ ପଡ଼ିଲା – ଗୋଟାଏ ଅସାଧାରଣ ଘଟଣା ଘଟିଗଲା । ମେରୁଦଣ୍ଡର ନିମ୍ନାଂଶରେ ଯେଉଁ ଅଗ୍ନିମୟୀ ଶକ୍ତି ନିଷ୍କ୍ରିୟ ହୋଇ ରହିଥାଏ ଏବଂ ଯାହାକୁ ଜାଗ୍ରତ କରି ଧୀରେ ଧୀରେ ମସ୍ତିଷ୍କ ଉପରକୁ ଆରୋହଣ କରାଇବାର ପ୍ରଣାଳୀ ବାବାଜୀ ମୋତେ ଶିକ୍ଷା ଦେଇଥିଲେ, ନିଜେ ନିଜେ ତାହା କୁଣ୍ଡଳୀ ତ୍ୟାଗ କରି କ୍ରିୟାନ୍ୱିତ ହୋଇଗଲା । ଯେମିତି ସେହି ଅଗ୍ନି ମେରୁଦଣ୍ଡ ମଧ୍ୟ ଦେଇ ଊର୍ଦ୍ଧ୍ୱଗାମୀ ହେବାକୁ ଲାଗିଲା, ମୁଁ ତୀବ୍ର କମ୍ପନ ଅନୁଭବ କଲି । ମସ୍ତିଷ୍କର ଶିଖରରେ ପହଞ୍ଚି ତାହା ଇନ୍ଦ୍ରଧନୁର ବିଭିନ୍ନ ରଙ୍ଗରେ ବିସ୍ଫାରିତ ହେଲା । ମୁଁ ଅନୁଚ୍ଚ ଆର୍ତ୍ତନାଦ କରି ପଡ଼ିଗଲି ।

ଯେତେବେଳେ ଉଠିଲି, ଦେଖିଲି ମୁଁ ନାଟମନ୍ଦିରରେ ବାବାଜୀଙ୍କ କୋଳରେ ମୁଣ୍ଡ ରଖି ଶୋଇଛି । ସେ ମୋର ମୁଣ୍ଡକୁ ଆଉଁଶୁଥିଲେ ଓ କହୁଥିଲେ, "ଏହା ତୁମପାଇଁ ବହୁତ ବେଶି ହୋଇଗଲା, ନୁହେଁ ? ଶରୀର ଆବେଗକୁ ଧାରଣ କରିପାରିଲା ନାହିଁ । ଭାଗ୍ୟକୁ ମୁଁ ସାଙ୍ଗରେ ଥିଲି, ନଚେତ୍ ତୁମେ ହୁଏତ ପାଗଳ ହୋଇଯାଇଥାଆନ୍ତ ।"

ମୁଁ ଦୁର୍ବଳ ସ୍ୱରରେ କହିଲି, "ମୋର ସାରା ଦେହ ଆନନ୍ଦାବେଗରେ କମ୍ପିତ ହେଉଛି । ଏପରି ମୁଁ ପୂର୍ବରୁ କେବେ ଅନୁଭବ କରି ନାହିଁ ।"

''ତୁମେ ଠିକ୍ ଅଛ, ଏବେ ଠିଆ ହୋଇଯାଅ । ଚାଲ ମୁଁ ତୁମକୁ ପ୍ରାଙ୍ଗଣ ଦେଖାଇବି'', ଅଳ୍ପ ସମୟ ପରେ ଆମେ ପ୍ରାଙ୍ଗଣରେ ବୁଲୁଥାଉ । ମୋର ଆନନ୍ଦାବେଗ କିଛି କମିଯାଇଥାଏ, ତେବେ ମଧ୍ୟ ମୁଁ ଜଣେ ନିଶାଗ୍ରସ୍ତ ଲୋକ ପରି ଚାଲୁଥାଏ । ଆମେ ପ୍ରସିଦ୍ଧ ଗୋପାଳକୃଷ୍ଣଙ୍କ ମନ୍ଦିରକୁ ଗଲୁ । ସେଠାରେ ଗୋପାଳକୃଷ୍ଣଙ୍କର ଏକ କ୍ଷୁଦ୍ର ମୂର୍ତ୍ତି ରହିଛି । ଥରେ ସ୍ନାନ କରାଉଥିବା ସମୟରେ ମୂର୍ତ୍ତି ପୂଜାରୀଙ୍କ ହାତରୁ ପଡ଼ିଗଲେ ଓ ତାଙ୍କର ଏକ ଗୋଡ଼ ଭାଙ୍ଗିଗଲା । ଭଙ୍ଗ ପ୍ରତିମାନଙ୍କର ପୂଜା ହୋଇପାରିବ କି ନାହିଁ ବୁଝିବାପାଇଁ ଶାସ୍ତ୍ର-ବିଶେଷଜ୍ଞମାନଙ୍କୁ ଡକାହେଲା । ସେମାନେ ସର୍ବସମ୍ମତ ନିର୍ଣ୍ଣୟ ଦେଲେ ଯେ, ଭଙ୍ଗ ପ୍ରତିମା ପୂଜା କରିବା ହେଉଛି ଅଶୁଭ ।

ମନ୍ଦିର-ନିର୍ମାତ୍ରୀ ରାଣୀ ରାସମଣି ଭାବିଲେ ଯେ କାଳୀ ମନ୍ଦିରର ସନ୍ଥ ପ୍ରକୃତିର ଯୁବକ ପୂଜାରୀ ଗଦାଧର ଚଟ୍ଟୋପାଧ୍ୟାୟଙ୍କର (ତାଙ୍କର ଭକ୍ତମାନେ ପରବର୍ତ୍ତୀ ସମୟରେ ତାଙ୍କୁ ରାମକୃଷ୍ଣ ପରମହଂସ ନାମ ଦେଲେ) ମଧ୍ୟ ମତାମତ ନେବା ଉଚିତ । ରାଣୀ ତାଙ୍କୁ ଦୈବ-ପ୍ରେରିତ ବୋଲି ଭାବୁଥିଲେ । ଯୁବକ ରାମକୃଷ୍ଣ କେବଳ ଏତିକି କହିଲେ, ''ମୁଁ ଏଠାରେ ଉପସ୍ଥିତ ପଣ୍ଡିତମାନଙ୍କ ପରି ବିଦ୍ୱାନ ନୁହେଁ; କିନ୍ତୁ ମୁଁ ଗୋଟିଏ ପ୍ରଶ୍ନ କରୁଛି, ରାଣୀଙ୍କର ଜାମାତା ଯଦି ପଡ଼ିଯାଆନ୍ତି ଓ ତାଙ୍କର ଗୋଡ଼ ଭାଙ୍ଗିଯାଏ, ତେବେ ସେ କ'ଣ ତାଙ୍କୁ ଗଙ୍ଗାରେ ଫିଙ୍ଗିଦେଇ ନୂଆ ଜାମାତା ନେଇଆସିବେ ? ମୂର୍ତ୍ତିଙ୍କର ଭଙ୍ଗାଗୋଡ଼ର ପ୍ରଶ୍ନ ଯଦି ଉଠୁଛି, ତେବେ ମୁଁ ତାହାକୁ ଏପରି ଭାବରେ ଯୋଡ଼ିଦେବି ଯେ ଫାଟର ଚିହ୍ନ ଖୋଜିପାଇବା କଷ୍ଟ ହେବ; କିନ୍ତୁ ନିର୍ଣ୍ଣୟ ଆପଣମାନଙ୍କ ହାତରେ ।''

ରାମକୃଷ୍ଣ ଯୋଡ଼ିଦେଇଥିବା ମୂର୍ତ୍ତିର ପୁଣି ସ୍ଥାପନା କରାଗଲା ଏବଂ ଆଜି ପର୍ଯ୍ୟନ୍ତ ସେ ପୂଜା ପାଉଛନ୍ତି ।

× × ×

ଆମେ ଦ୍ୱାଦଶ ଲିଙ୍ଗଙ୍କର ପ୍ରଦକ୍ଷିଣ କଲୁ । ସେମାନେ ପରମତତ୍ତ୍ୱ ସଦାଶିବଙ୍କର ପ୍ରତୀକ । ସଦାଶିବର ଅର୍ଥ ହେଲା, ସଦୈବ ଶୁଭ । ତା'ପରେ ଆମେ ପ୍ରାଙ୍ଗଣ ଛାଡ଼ି ନଦୀ ପାଖରେ ଥିବା ରାମକୃଷ୍ଣଙ୍କର ଛୋଟ କୋଠରିକୁ ଗଲୁ । ସେଠାରେ ସେ ଜୀବନର ମୁଖ୍ୟାଂଶ ବିତାଇଥିଲେ । ସେହିଠାରେ ସ୍ୱାମୀ ବିବେକାନନ୍ଦଙ୍କ (ଯାହାଙ୍କର ଅସଲ ନାଁ ନରେନ୍ଦ୍ରନାଥ ଦତ୍ତ ଥିଲା) ସହିତ ରାମକୃଷ୍ଣ ମିଶନର ସବୁ ଧୁରନ୍ଧରମାନେ ଓ ଅନ୍ୟ ଅନେକ ସାଧକ ଏବଂ ଭୈରବୀ ବ୍ରାହ୍ମଣୀ, ଗୋପାଳମା, ତୋତାପୁରୀ ଆଦି ଅନେକ ଆଧ୍ୟାତ୍ମିକ ଗୁରୁ ରାମକୃଷ୍ଣଙ୍କ ସହିତ ବେଶ ସମୟ ବିତାଇଥିଲେ ।

ମୋ ଦେହରେ ପୁଣି କମ୍ପନ ହେବା ଆରମ୍ଭ ହେଲା ଓ ଆଖିରୁ ଲୁହର ଧାର ଗଡ଼ିଚାଲିଲା ।

ଯେତେବେଳେ ମୁଁ ବାବାଜୀଙ୍କ ସହିତ ଶ୍ରୀ ରାମକୃଷ୍ଣଙ୍କର ଶଯ୍ୟା ନିକଟରେ ବସିଲି, ଯେଉଁଠାରେ ସେ ଶୋଉଥିଲେ, ବନ୍ଦ ଆଖିରେ ମୁଁ ଭିଡିଓ ପରି କଳ୍ପ-ଦୃଶ୍ୟ (Vision)ରେ ଗୁରୁ (ଶ୍ରୀ ରାମକୃଷ୍ଣ) ଏବଂ ତାଙ୍କର ଶିଷ୍ୟମାନଙ୍କୁ ହସଖୁସି ହେଉଥିବାର ଓ ସନ୍ଦେସ ଖାଉଥିବାର ଦେଖିଲି । ଦୀର୍ଘ ସମୟ ପରେ ମୁଁ ବାବାଜୀଙ୍କ ସ୍ୱର ଶୁଣିଲି, ‘‘ଏଥର ଆମେ ଯିବା ।’’ ଆମେ ବାହାରେ ସେହି ବାରଣ୍ଡା ନିକଟରେ ଠିଆହେଲୁ, ଯେଉଁଠାରେ ରାମକୃଷ୍ଣ ଏକ ବେଶ୍ୟାର ପାଦତଳେ ଦଣ୍ଡବତ କଲାବେଳେ କହିଥିଲେ, ‘‘ଓ ମା’ କାଳୀ, ତୁମେ କେଡ଼େ ସୁନ୍ଦର, ଆଉ କେତେ ପ୍ରକାରର ରୂପରେ ପ୍ରକଟ ହୁଅ !’’

ତା’ପରେ ଆମେ ରାମକୃଷ୍ଣଙ୍କ ପତ୍ନୀ ପୁଣ୍ୟାତ୍ମା ମା’ ଶାରଦାଙ୍କର ନିବାସ ନହବତଖାନାକୁ ଗଲୁ । ସେଠାରେ ସେ ନିଜର ସନ୍ଥ ସ୍ୱାମୀଙ୍କପାଇଁ ଖାଦ୍ୟ ପ୍ରସ୍ତୁତ କରୁଥିଲେ କାରଣ ନିଜ ତରଫରୁ ରାମକୃଷ୍ଣଙ୍କର ନିଜ ଶାରୀରିକ ଆବଶ୍ୟକତାଗୁଡ଼ିକ ପାଇଁ କୌଣସି ନଜର ନ ଥିଲା । ନହବତରୁ ଆମେ ଗଙ୍ଗା (ହୁଗଳୀ) ନଦୀକୂଳକୁ ଗଲୁ । ସେଠାରେ ବାବାଜୀ ମୋତେ ପଞ୍ଚବଟୀ ତୋଟା ଦେଖାଇଲେ ଯେଉଁଠାରେ ରାମକୃଷ୍ଣ ଭୈରବୀ ବ୍ରାହ୍ମଣୀଙ୍କର ନିର୍ଦ୍ଦେଶରେ ତାନ୍ତ୍ରିକ ଅନୁଷ୍ଠାନଗୁଡ଼ିକର ଉଗ୍ର ଅଭ୍ୟାସ କରିଥିଲେ । ବ୍ରାହ୍ମଣୀ ସେହି ସ୍ତ୍ରୀ-ଗୁରୁ ଥିଲେ ଯେ, ରାମକୃଷ୍ଣଙ୍କୁ କୁଣ୍ଡଳିନୀର ରହସ୍ୟରେ ଦୀକ୍ଷିତ କରାଇଥିଲେ । ବାବାଜୀ କହିଲେ, ସେ ଭୈରବୀ ବ୍ରାହ୍ମଣୀଙ୍କୁ ତନ୍ତ୍ରସାଧନା ସମୟରେ ସମାଧିସ୍ଥ ରାମକୃଷ୍ଣଙ୍କୁ କିଛି ଖାଇନେବାପାଇଁ ଫୁସୁଲେଇବାର ଦେଖିଥିଲେ । କିଛି ବର୍ଷ ପୂର୍ବରୁ ହୋଇଥିଲେ ମୁଁ ତାଙ୍କୁ ପଚାରିଥାଆନ୍ତି ଯେ, ସେ ନିଜେ ତିରିଶବର୍ଷରୁ ଅଧିକ ବୟସର ଦିଶୁ ନ ଥିବା ବେଳେ, ସେ କିପରି ଏସବୁ ଜିନିଷ ଦେଖିଥିଲେ । କିନ୍ତୁ ତାଙ୍କୁ ମୁଁ ସମୟ ଓ ସ୍ଥାନ-ବିଷୟକ ପାରମ୍ପରିକ ପ୍ରଶ୍ନ ନ ପଚାରିବା ଶିଖିଯାଇଥିଲି ।

ସେ କହିଲେ, ଭୈରବୀ ବ୍ରାହ୍ମଣୀ ବନାରସର ଉଲଗ୍ନ ତୈଲଙ୍ଗ ସ୍ୱାମୀଙ୍କର ଶିଷ୍ୟା ଥିଲେ ଏବ ଅତ୍ୟନ୍ତ ଉନ୍ନତ ଯୋଗିନୀ ଥିଲେ । ସେ ବିଶ୍ୱାସ କରୁଥିଲେ ଯେ ରାମକୃଷ୍ଣ କୌଣସି ସାଧାରଣ ସାଧକ ନ ଥିଲେ । ସେ ଥିଲେ ଅବତାର । ତା’ପରେ ଗୋଟିଏ ରୁଚିକର କାହାଣୀ ଶୁଣାଇଲେ –

ଭୈରବୀ ବ୍ରାହ୍ମଣୀ ଶ୍ରୀ ରାମକୃଷ୍ଣଙ୍କୁ ସର୍ବ ସମକ୍ଷରେ ଅବତାର ଭାବରେ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । ସେଥିପାଇଁ ସେ ନିଜର ଏହି ସିଦ୍ଧାନ୍ତର ବିଚାର କରିବାପାଇଁ ଅନେକ ଧାର୍ମିକ ପଣ୍ଡିତ ଓ ପଣ୍ଡିତମାନଙ୍କୁ ଦକ୍ଷିଣେଶ୍ୱରକୁ ନିମନ୍ତ୍ରଣ କଲେ । ବିଦ୍ୱାନ୍‌ମାନେ

ବହୁମତ ହୋଇ ମାନିଲେ ଯେ କାଳୀ ମନ୍ଦିର ଯୁବକ ପୂଜାରୀଙ୍କର କିଛି ଅସାଧାରଣ ଗୁଣ ଏବଂ ଲକ୍ଷଣ ରହିଛି । ସେହି ଦୃଷ୍ଟିରୁ ତାଙ୍କୁ ଅବତାର ଘୋଷିତ କରାଯାଇପାରେ । ଶେଷରେ ସେମାନେ ଠିକଣା କଲେ ଯେ ସ୍ୱୟଂ ଯୁବକ ପୂଜାରୀଙ୍କୁ ପଚରାଯାଉ ତାଙ୍କର କ'ଣ ମତ ।

ଏହାର କିଛିଦିନ ପୂର୍ବରୁ ସମାଧିସ୍ଥ ଥିବାପରି ଅବସ୍ଥାରେ ରାମକୃଷ୍ଣ ମନ୍ଦିର ନିକଟରେ ପଡ଼ିଯାଇଥିଲେ ଓ ତାଙ୍କର ହାତ ଭାଙ୍ଗି ଯାଇଥିଲା । ସେହି ସଭାରେ ହାତରେ ପଟି ବାନ୍ଧି ରାମକୃଷ୍ଣ ଉପସ୍ଥିତ ହେଲେ । ଯେତେବେଳେ ତାଙ୍କର ମତାମତ ପଚରାଗଲା, ସେ ହସି ହସି କହିଲେ, ''ମୁଁ ଜାଣେ ନାହିଁ ଶାସ୍ତ୍ରଗୁଡ଼ିକ କ'ଣ କହୁଛନ୍ତି କିମ୍ବା ଆପଣମାନେ କ'ଣ ଭାବୁଛନ୍ତି । କିନ୍ତୁ ଯଦି ମୋତେ ଆପଣମାନେ ଅବତାର ବୋଲି ମାନୁଛନ୍ତି, ତେବେ ମୁଁ କହିବି ଯେ ଏହା ପଟିବନ୍ଧା ହୋଇଥିବା ଓ ଭଙ୍ଗା ହାତଥିବା ପ୍ରଥମ ଅବତାର ହେବ ।'' ତାହା ସତ୍ତ୍ୱେ ବ୍ରାହ୍ମଣୀ ନିଃସନ୍ଦେହ ଥିଲେ ଯେ ଶ୍ରୀ ରାମକୃଷ୍ଣ ଜଣେ ବିଶିଷ୍ଟ ସ୍ୱର୍ଗୀୟ ଅବତାର ଥିଲେ ।

''ଆପଣ କ'ଣ ଭାବନ୍ତି ?'' ମୁଁ ବାବାଜୀଙ୍କୁ ପଚାରିଲି ।

''ପୂରାପୂରି ଭାବରେ ସେ ଅବତାର ଥିଲେ,'' ବାବାଜୀ କହିଲେ ।

ଦକ୍ଷିଣେଶ୍ୱରରେ ଆମେ ଗଙ୍ଗା ପାର ହୋଇ ବେଲୁଡ୍ ମଠ ଯିବାପାଇଁ ନୌକା ନେଲୁ । ଘନ ବୃକ୍ଷବେଷ୍ଟିତ ବେଲୁଡ୍ ମଠର ପ୍ରାଙ୍ଗଣ ବେଶ କେତେ ଏକରରେ ବିସ୍ତୃତ । କୌଣସି ଏକ ସମୟରେ ଏଠାରେ ଦୁଇଶହ ସନ୍ନ୍ୟାସୀ ଓ ନୂତନ ବ୍ରହ୍ମଚାରୀ ରହୁଥିଲେ । ଏହା କେତେଗୁଡ଼ିଏ ଭାଗରେ ବିଭକ୍ତ । କିନ୍ତୁ ସବୁଠାରୁ ମନୋମୁଗ୍ଧକର ପ୍ରାସାଦ ଥିଲା ଶ୍ରୀରାମକୃଷ୍ଣଙ୍କୁ ସମର୍ପିତ ମନ୍ଦିର । ଏହା ମାଟିଆ ରଙ୍ଗର ମାର୍ବଲ ପଥରରେ ତିଆରି । ଉତ୍କୃଷ୍ଟ ଗମ୍ବୁଜ ଓ ଶଙ୍ଖ ମଲମଲର ଚଟାଣ ସହିତ ଏହା ବାସ୍ତୁକଳାର ଶ୍ରେଷ୍ଠତାର ଏକ ସୁନ୍ଦର ନମୁନା ।

ଗର୍ଭଗୃହରେ ଦେବତାଙ୍କ ସ୍ଥାନରେ ଚକା ପକାଇ ବସିଥିବା ଶ୍ରୀ ରାମକୃଷ୍ଣଙ୍କର ଶ୍ୱେତ ଶଂଖମର୍ମରର ମୂର୍ତ୍ତି ରହିଛି । ଯେଉଁ ବେଦୀ ଉପରେ ମୂର୍ତ୍ତି ସ୍ଥାପିତ ହୋଇଛି, ତା'ତଳେ ଶ୍ରୀରାମକୃଷ୍ଣଙ୍କର ଅସ୍ଥି-ବିଭୂତିର ଅବଶେଷ ରଖାଯାଇଛି । ଏହାକୁ ସ୍ୱାମୀ ବିବେକାନନ୍ଦ ସ୍ୱୟଂ ନିଜର ମସ୍ତକରେ ଧାରଣ କରି ଆଣି ସ୍ଥାପିତ କରିଥିଲେ । ତା'ପରେ ନଦୀକୂଳରେ ତିଆରି ହୋଇଥିବା ଛୋଟ ଛୋଟ ସ୍ଥାନକୁ ଗଲୁ ଯେଉଁଠାରେ ସ୍ୱାମୀ ବିବେକାନନ୍ଦଙ୍କ ସହିତ ଶ୍ରୀରାମକୃଷ୍ଣଙ୍କର କେତେଜଣ ଶିଷ୍ୟ ଓ ପୁଣ୍ୟମୟୀ ମା' ଶାରଦା ଦେବୀଙ୍କର ଅବଶେଷ ସ୍ଥାପିତ କରାଯାଇଛି ।

ଏହାପରେ ବାବାଜୀ ମୋତେ ଭୋଜନକକ୍ଷ ନିକଟସ୍ଥ ଏକ କୋଠାର ଦୋ'ତାଲାକୁ ନେଇଗଲେ । ତାହାର ବାରଣ୍ଡା ଗଙ୍ଗା ପଟକୁ ଥିଲା । ବାରଣ୍ଡାରୁ ଖୋଲାଥିବା ଝରକା ବାଟଦେଇ ମୁଁ ଗୋଟିଏ ସୁନ୍ଦର ସୁସଜ୍ଜିତ ଶୟନ କକ୍ଷ ଦେଖିଲି । ସେଠାରେ ଗୋଟିଏ ବଡ଼ ଶିଶୁକାଠର ପଲଙ୍କ, ଏକ ଉତ୍ତମ ଡିମ୍ବାକୃତି କାଚ ଥିବା ଡ୍ରେସିଂ ଟେବୁଲ, ପୁରୁଣାକାଳର ସୋଫା, ଲେଖିବାପାଇଁ ମେଜ (ଯାହାର ଉପରକୁ ଟେକି ହୋଇପାରିବା ସଟର୍ ଥିଲା) ଓ ଏକ ଗଦିଯୁକ୍ତ ଚଉକି ଥିଲା । ଚଟାଣରେ ପଡ଼ିଥିଲା ତୁରସ୍କ ଦେଶର ଗାଲିଚା ।

ମୁଁ ଦେଖିବାକୁ ଚାହୁଁଥିଲି ଯେ କବାଟ କେଉଁଠାରେ ଅଛି । କବାଟ ବାଁପଟେ ଥିଲା କିନ୍ତୁ ତାଲା ପଡ଼ିଥିଲା । ତା'ଉପରେ ଗୋଟାଏ ପଟା ଲାଗିଥିଲା, ଯେଉଁଠାରେ ଲେଖାଯାଇଥିଲା- 'ସ୍ୱାମୀ ବିବେକାନନ୍ଦଙ୍କ ଶୋଇବା ଘର ।' ଯେଉଁ ବାଦ୍ୟ ଯନ୍ତ୍ରଗୁଡ଼ିକୁ ସେ ବଜାଉଥିଲେ, ତାହା କୋଠରିର ଗୋଟିଏ କୋଣରେ ଥିଲା । ଅନ୍ୟ କୋଣରେ ତାଙ୍କର ବୁଲିବାବେଳେ ବ୍ୟବହାର କରୁଥିବା ସ୍ୱତନ୍ତ୍ର ବାଡ଼ି, ଚମତ୍କାର ଜୋତା ଏବଂ ଚମତ୍କାର ବ୍ରିଫ୍‌କେଶ ଥିଲା । ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ ସ୍ୱାମୀ ବିବେକାନନ୍ଦଙ୍କ ପରି ମହାନ୍ ସନ୍ନ୍ୟାସୀ ଏପରି ଜାକଜମକପୂର୍ଣ୍ଣ ପରିବେଶରେ ରହିପାରୁଥିଲେ ।

ବାବାଜୀ ମୌନ ତ୍ୟାଗ କରି କହିଲେ, ''ସ୍ୱାମୀଜୀ ଉଭୟ ଅନ୍ତରରେ ଓ ବାହାରେ ରାଜଯୋଗୀ ଥିଲେ । ସେ ନିଜର ଦୃଷ୍ଟିବଳୟ ମଧ୍ୟରେ ଥିବା ପରିଦୃଶ୍ୟର ସମ୍ରାଟ ଥିଲେ । ମହାନ୍ ଯୋଗୀ କେଉଁଠାରେ ରହନ୍ତି ଓ କିପରି ନିଜର କାର୍ଯ୍ୟ-ବ୍ୟାପାର ଚଳାନ୍ତି, ତାହା ତାଙ୍କର ଜୀବନର ଲକ୍ଷ୍ୟ ଉପରେ ନିର୍ଭର କରେ । ବାହ୍ୟ ବାସ୍ତବରେ ମହତ୍ତ୍ୱପୂର୍ଣ୍ଣ ନୁହେଁ, ମନୋଭାବ ହେଉଛି ମହତ୍ତ୍ୱପୂର୍ଣ୍ଣ । ସ୍ୱାମୀଜୀଙ୍କ ଜୀବନରେ କିଛି କିଛି ଭୌତିକ ଆରାମ ଆସିଲା ଯେତେବେଳେ ସେ ପ୍ରସିଦ୍ଧ ହେଲେ ଏବଂ ବେଲୁଡ଼ ମଠ ତିଆରି ହେଲା । ଯୁବାବସ୍ଥାରେ ସେ ଅକଥନୀୟ କଷ୍ଟ ସହ୍ୟ କରିଥିଲେ, ଅନେକ ସମୟରେ ଠିକ୍ ଭାବରେ ଖାଇବାକୁ ମଧ୍ୟ ପାଇ ନ ଥିଲେ । ପରବର୍ତ୍ତୀ ସମୟରେ ମଧ୍ୟ ସେ ଯେକୌଣସି ମୁହୂର୍ତ୍ତରେ ନିଜର କମଣ୍ଡଳୁ ଉଠାଇ ପୁଣି କିଛି ନ ନେଇ ପରିବ୍ରାଜକ ହୋଇଯିବାକୁ ପ୍ରସ୍ତୁତ ଥିଲେ । ଏହା ତାଙ୍କର ଜୀବନର ଅନେକ ଘଟଣାରୁ ଜଣାଯାଏ ।

''ମନେରଖ, ଜନକ ବିଦେହର ରାଜା ଥିଲେ, ତାହା ସହିତ ଋଷି ମଧ୍ୟ, ରାଜର୍ଷି । ତୁମେ ମଧ୍ୟ ରାଜଋଷି ହୋଇ ରହିବ ।''

''ମୁଁ ବାବାଜୀ ?'', ମୁଁ ବିରୋଧ କଲି ''ଯଦି ଆପଣ ମୋତେ ଆଜ୍ଞା ଦେଇଥାଆନ୍ତେ, ତେବେ ମୁଁ ନିଶ୍ଚିତ ଭାବରେ ହିମାଳୟରେ ବୁଲିବାକୁ ଅଧିକ ପସନ୍ଦ କରିଥାଆନ୍ତି, କିନ୍ତୁ ମୁଁ ସ୍ୱୀକାର କରୁଛି ଯେ ମୋତେ ଭଲ ଭଲ କାର୍ ଚଳାଇବାକୁ ଭଲ ଲାଗେ ।''

ବାବାଜୀ କହିଲେ, ''ଯଦି ସୀମା ଭିତରେ ରଖାଯିବ, ତେବେ ଏଥିରେ କିଛି କ୍ଷତି ନାହିଁ । ତୁମର ଖୁବ୍ ଜୋର୍‌ରେ ଗାଡ଼ି ଚଳାଇବାର ପ୍ରବୃତ୍ତି ଅଛି, ମନେରଖ ।''

× × ×

ଆମେମାନେ ଭୋଜନକକ୍ଷରେ ତୃପ୍ତିକର ଭୋଜନ କରି ମୁଖ୍ୟଦ୍ୱାରରେ ପହଞ୍ଚିଲୁ । ବାହାରକୁ ଆସିବାପରେ ବାବାଜୀ କିଛି ପଇସା ଦେଲେ ଓ କହିଲେ, ''ଏବେ ଘରକୁ ଯାଅ ଏବଂ ଆଉ ଥରେ ବୁଲିବାର ଇଚ୍ଛା ଜାଗିବାର ଅପେକ୍ଷା କର । ତୁମେ ଏଠାକୁ ପୁଣି ଆସିବ ଓ କିଛି ସମୟ ବିତାଇବ ।''

ଏହାପରେ ବାବାଜୀ ଚାଲିଗଲେ, ତାଙ୍କର ମୋତେ କରିଥିବା ପୂର୍ବୋକ୍ତ ଭବିଷ୍ୟତବାଣୀ କିଛି ବର୍ଷପରେ ସତ୍ୟ ପ୍ରମାଣିତ ହେଲା ।

ଫେରିବାବେଳେ ମୁଁ ଭୁବନେଶ୍ୱର ଓ ପୁରୀ ଗଲି । ଜଗନ୍ନାଥଙ୍କ ମନ୍ଦିରରେ ମୁଁ ଆଧ୍ୟାତ୍ମିକ–ଭାବନାରେ ବିହ୍ୱଳ ହୋଇଗଲି । ମୋର ହୃଦୟ ଆନନ୍ଦରେ ଭରିଗଲା ଓ ପ୍ରାଙ୍ଗଣରେ ଚଟାଣରେ ବସି ରହିଥିବା ସମୟରେ ମୁଁ ମନଶ୍ଚକ୍ଷୁରେ ଚୈତନ୍ୟ ମହାପ୍ରଭୁଙ୍କ ଜୀବନର ଚିତ୍ର ପରେ ଚିତ୍ର ଦେଖିଲି– ଦି'ଜଣ ତେଜସ୍ୱୀ ଯୁବକ, ନିତାଇ ଓ ଗୌରାଙ୍ଗ ମୃଦଙ୍ଗ ଏବଂ ମନ୍ଦିରାର ସ୍ୱରରେ ଆନନ୍ଦବିଭୋର ହୋଇ ଜଗନ୍ନାଥଙ୍କ ସମ୍ମୁଖରେ ନାଚୁଥିଲେ ।

ମୁଁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପୀଠକୁ ମଧ୍ୟ ଗଲି ଏବଂ ସମୁଦ୍ର ପାଖରେ ଥିବା ସେହି କ୍ଷୁଦ୍ର ସ୍ଥାନକୁ ଗଲି, ଯେଉଁଠାରେ ଚୈତନ୍ୟଙ୍କର ଘନିଷ୍ଠ ବନ୍ଧୁ ଏବଂ ଶିଷ୍ୟ ହରିଦାସ ରହୁଥିଲେ । ହରିଦାସ ମୁସଲମାନ ହୋଇ ଜନ୍ମିଥିଲେ ଏବଂ ତାଙ୍କୁ ଜଗନ୍ନାଥ ମନ୍ଦିର ଭିତରକୁ ଯିବାକୁ ଦିଆଯାଇ ନ ଥିଲା । ତେଣୁ ଚୈତନ୍ୟ ମହାପ୍ରଭୁ ନିୟମ କରିଥିଲେ ଯେ, ପ୍ରତିଥର ସେ ମନ୍ଦିରରୁ ବାହାରକୁ ଆସିବା ମାତ୍ରେ ସିଧା ହରିଦାସ ପ୍ରଭୁଙ୍କ ଘରକୁ ଯିବେ । କୁହାଯାଏ ଯେ, ହରିଦାସ ପ୍ରଭୁ ଚୈତନ୍ୟ ମହାପ୍ରଭୁଙ୍କର ଚରଣ ଦୁଇଟିକୁ ବକ୍ଷରେ ଧାରଣ କରି, 'ହରି, ହରି' କହୁ କହୁ ପ୍ରାଣତ୍ୟାଗ କରିଥିଲେ ।



# ୩୪. ଶ୍ରୀ ଦେବୀ ଓ ନୀମ କରୋଲୀ ବାବା

ଘରକୁ ଫେରିବାର ଆଠ ମାସ ପରେ ମୁଁ ପୁଣି ରାସ୍ତାରେ ଥିଲି । ଏଥର ମୁଁ ଦିଲ୍ଲୀ ଗଲି ଓ ନିଜର ଭଲ ସାଙ୍ଗ ବାଲଚନ୍ଦ୍ର ନାୟାରଙ୍କ ସହିତ କାମ କଲି । ତାଙ୍କୁ ମୁଁ ଏକ ରେଳଗାଡ଼ିରେ ଭେଟିଥିଲି ଓ ଭଲ ବନ୍ଧୁତା ହୋଇଯାଇଥିଲା । ସେ ବୟସରେ ମୋ'ଠାରୁ ଯଥେଷ୍ଟ ବଡ଼ ଥିଲେ ଓ ଆଧ୍ୟାତ୍ମିକ ଏବଂ ସାଂସ୍କୃତିକ ପତ୍ରିକା 'ଏସ୍‌କର୍ଟ୍'ର ସମ୍ପାଦନା-ପ୍ରକାଶନ କରୁଥିଲେ । ମୁଁ ତାଙ୍କଠାରୁ ମୋଟାମୋଟି ଭାବରେ ସମ୍ପାଦନା ବିଷୟରେ କିଛି ଶିଖିଲି ଏବଂ ପତ୍ରିକାପାଇଁ ରେଖାଚିତ୍ର ମଧ୍ୟ ଆଙ୍କିଲି । ବାଲଚନ୍ଦ୍ର ନାୟାର ଯାହାଙ୍କୁ ମୁଁ 'ଚେଟନ' ଅର୍ଥାତ୍ ବଡ଼ଭାଇ ବୋଲି ଡାକୁଥିଲି, ଏବେ କେରଳର ଶାନ୍ତ ସମୁଦ୍ରତଟୀୟ କ୍ଷୁଦ୍ର ସହର କଂଜନଗାଡ଼ରେ ରହନ୍ତି ଏବଂ ଆଧ୍ୟାତ୍ମିକ ବିଷୟଗୁଡ଼ିକ ଉପରେ ଭଲ ଭଲ ପୁସ୍ତକର ପ୍ରକାଶନ କରନ୍ତି । ସେ ଲେଖକୀୟ ନାମ 'ଶ୍ରୀକାନ୍ତ' ବ୍ୟବହାର କରି ଲେଖନ୍ତି ।

କିଛିଦିନ ପରେ ମୁଁ ସେହି କାମ ଛାଡ଼ି ହିମାଳୟକୁ ଚାଲିଗଲି । ଏଥର ମୁଁ ଅଲଗା ଦିଗରେ ଗଲି । ହଲ୍‌ଦ୍ୱାନୀ ଦେଇ ମୁଁ ହେରାଖଣ୍ଡ ବାବାଙ୍କର ଗୁମ୍ଫାକୁ ଗଲି । ସେ ଥିଲେ ଏକ ମହାନ ସିଦ୍ଧପୁରୁଷ । ବହୁବର୍ଷ ପୂର୍ବରୁ ତାଙ୍କର ଦେହାନ୍ତ ହୋଇଯାଇଥିଲା । ତାଙ୍କୁ ଶ୍ରୀଗୁରୁ ବାବାଜୀଙ୍କର ଶିଷ୍ୟ ବୋଲି କୁହାଯାଏ । ସେଠାରୁ ମୁଁ ରାନୀଖେତ, ଦ୍ୱାରାହାଟ ଓ କୁକୁରଚିନା ଗଲି । ମୋର ଇଚ୍ଛା ଥିଲା, ଯେଉଁ ଗୁମ୍ଫାରେ ମହାନ୍ ଯୋଗୀ ଶ୍ରୀ ଶ୍ୟାମାଚରଣ ଲାହିଡ଼ୀ ଶ୍ରୀ ଗୁରୁ ବାବାଜୀଙ୍କୁ ଭେଟିଥିଲେ ଓ ତାଙ୍କଦ୍ୱାରା ଦୀକ୍ଷିତ ହୋଇଥିଲେ, ସେହି ଗୁମ୍ଫାକୁ ଦେଖିବି ।

ପାଣ୍ଡୁଖାଲି (ଯେଉଁଠାରେ ସ୍ଥାନୀୟ ଲୋକଙ୍କର କଥା ଅନୁସାରେ ବନବାସ ସମୟରେ ପାଣ୍ଡବମାନେ ରହୁଥିଲେ) ଦେଇ ମୁଁ ଏକ ପଥୁରିଆ ପାହାଡ଼ରୁ ଓହ୍ଲାଇ ଗୁମ୍ଫାରେ ପହଞ୍ଚିଗଲି । ସେଠାରେ କେହି ନ ଥିଲେ । ଗୁମ୍ଫା ଭିତରେ ପୂରା ଶାନ୍ତି ଓ ଶୁଚି ବାତାବରଣ ଥିଲା । ଗୁମ୍ଫାରେ ବସି କ୍ରିୟା କରିବା ମାତ୍ରେ ମୁଁ ଅନାୟାସରେ ଚେତନାର ପରିବର୍ତ୍ତିତ ସ୍ଥିତିରେ ପହଞ୍ଚିଗଲି । ମୁଁ ନିଜର ହୃଦୟଚକ୍ରରେ ଶ୍ରୀ ଗୁରୁବାବାଜୀଙ୍କର ପ୍ରତ୍ୟକ୍ଷ ଉପସ୍ଥିତି ଅନୁଭବ

କରୁଥାଏ । ସମାଧିରୁ ବାହାରିଆସିବା ପରେ ମୁଁ ସୁଡ଼ଙ୍ଗର ଜାଲ ଦେଖିବାକୁ ଠିକଣା କଲି । ତାହା ଭିତରକୁ ଯିବାପାଇଁ ଗୁମ୍ଫାର ପଛପଟରୁ ଡାହାଣପଟକୁ ଏକମାତ୍ର ପ୍ରବେଶ ଦ୍ୱାର ଥିଲା ।

ମୋତେ ଦୁଃଖ ଲାଗୁଥିଲା, କାରଣ ମୁଁ ଭାବିଥିଲି ବାବାଜୀଙ୍କୁ ଏଠାରେ ନିଶ୍ଚୟ ଭେଟିବି, କିନ୍ତୁ ସେ କେଉଁଠାରେ ଦିଶୁ ନ ଥାନ୍ତି । ମୁଁ ସୁଡ଼ଙ୍ଗ ଭିତରକୁ ପଶିଗଲି ଓ ଅନ୍ଧାର ହୋଇଥିଲେ ମଧ୍ୟ ଆଗକୁ ଚାଲିଲି । ଠିକ୍ ସେତିକିବେଳେ ମୋତେ ସେପଟରୁ ଏକ ଧିମା ଆଲୁଅ ଦିଶିଲା । ଉତ୍ସାହିତ ହୋଇ ମୁଁ ଆଗକୁ ଚାଲିଲି । ଦେଖିଲି, ସୁଡ଼ଙ୍ଗର ଶେଷରେ ଅନ୍ୟ ଏକ ବଡ଼ ଗୁମ୍ଫା ରହିଛି । ତାହାର ପ୍ରବେଶପଥ ପୂର୍ବପଟକୁ ଥିଲା ।

ଏକ ଧୁନି ପ୍ରଜ୍ୱଳିତ ଥିଲା । ମୋର ହୃଦୟ ଖୁସିରେ ନାଚିଉଠିଲା । ସେଠାରେ ବାବାଜୀ ପଦ୍ମାସନରେ ବସିଥିଲେ । ଏକାବେଳକେ ସିଧା, ଅଗ୍ନିକୁ ମନୋଯୋଗ ସହିତ ନିରୀକ୍ଷଣ କରି । ମୋ ପଟକୁ ନ ବୁଲି କହିଲେ, ''ଆସନ୍ତୁ, ଆସନ୍ତୁ ମଧୁଜୀ, ବହୁତ ସମୟ ହୋଇଗଲା, ନୁହେଁ ?'' ମୁଁ ତାଙ୍କର ଚରଣରେ ଦଣ୍ଡବତ କଲି ଓ ଡେରି ରାତିଯାଏଁ ଆମେ କଥାବାର୍ତ୍ତା କଲୁ । ସବୁଥର ପରି କୃପା କରି ସେ ମୋ ପାଇଁ ଖାଇବାର ବନ୍ଦୋବସ୍ତ କରିଥିଲେ– ରୁଟି, ଡାଲି ଏବଂ ତରକାରି । ଦୀର୍ଘସମୟ ଧରି ଧ୍ୟାନ ଓ ଖାଇବା ପରେ ସେ ମୋତେ ଶୋଇଯିବାକୁ କହିଲେ ।

''ଏହି ସ୍ଥାନ, ପଞ୍ଚକୁଲି ହେଉଛି ବହୁ ମହାନ ଯୋଗୀଙ୍କର ଅନ୍ତିମ ବିଶ୍ରାମସ୍ଥଳ ।'' ବାବାଜୀ କହିଲେ, ''ତୁମେ ପାହାଡ଼ଗୁଡ଼ିକରେ ଅନେକ ସମାଧି ଦେଖିପାରିବ । ଦିନେ ଏହା ଶ୍ରୀଗୁରୁଙ୍କର ଓ ମୋର ପ୍ରିୟ ସ୍ଥାନ ଥିଲା । ଆଜିକାଲି ଆମେ ଏଠାକୁ ବେଶି ଆସୁ ନାହୁଁ ।''

ମୁଁ ନିଜର ସ୍ଲିପିଙ୍ଗ୍ ବ୍ୟାଗ୍ ଖୋଲିଲି (ଯାହାକୁ ଦେଖି ବାବାଜୀ ମୃଦୁ ହସିଲେ) ଏବଂ ଶୋଇଗଲି । ମୁଁ ଜାଗରଣ ଓ ଶୟନର ଏକ ଅପୂର୍ବ ଅବସ୍ଥାରେ ଥିଲି, ଯେତେବେଳେ ଗୁମ୍ଫାରେ ଗୋଟିଏ ମଧୁର ବାସ୍ନା ଅନୁଭବ କଲି । ମୁଁ ଉଠିକରି ବସିଲି ନାହିଁ କିନ୍ତୁ ସାବଧାନ ହୋଇଗଲି ।

ଶୁଭ୍ର ପାରଦର୍ଶୀ ପରିଧାନରେ ଆବୃତ ଏକ ଦୀପ୍ତ ମାନବୀୟ ଆକୃତି ଗୁମ୍ଫା ଭିତରକୁ ଭାସିଆସିଲେ । ଯେମିତି ସେ ବାହାରୁ ଆସି ଧୁନି ସମ୍ମୁଖରେ ଠିଆହେଲେ, ଦେଖିଲି ଯେ ସେ ଏକ ସ୍ତ୍ରୀ–ଆକୃତି ଥିଲେ । ସେ ଥିଲେ ଭାରି ସୁନ୍ଦର ଓ ତାଙ୍କର ଘନ କଳା ଲମ୍ବା ବାଳ ଥିଲା । ବାବାଜୀ ଉଠି ଠିଆ ହୋଇଗଲେ ଏବଂ ତାଙ୍କର ଚରଣତଳେ ଦଣ୍ଡବତ କଲେ । ମୁଁ ବି ସ୍ଲିପିଂ ବ୍ୟାଗରୁ ବାହାରି ଆସି ଦଣ୍ଡବତ କଲି । ''ଆଚ୍ଛା, ଏହି ହେଉଛି ସେହି ଯୁବା–

ଆତ୍ମା ଯେ ମୋତେ ବହୁକାଳ ପୂର୍ବରୁ ଜାଣିଥିଲା ?'' ସେ ମଧୁର ସଙ୍ଗୀତର ସ୍ୱରରେ କହିଲେ, ''ପାଖକୁ ଆସ ପ୍ରିୟ ପୁତ୍ର ।''

ମୁଁ ତାଙ୍କ ପାଖକୁ ଗଲି । ସେ ମୋର ମୁଣ୍ଡକୁ ସାଉଁଳେଇଦେଲେ, ମୋର ଗାଲକୁ ଥାପୁଡ଼େଇଲେ ଏବଂ ନିଜର ବକ୍ଷରେ ମୋତେ ଧାରଣ କଲେ । ମଧୁର ସୁଗନ୍ଧ ମୋର ଆତ୍ମାକୁ ସମ୍ପୂର୍ଣ୍ଣ ଭାବରେ ପରିସିକ୍ତ କରିଦେଲା ଓ ମୋର ଶରୀରର ପ୍ରତିଟି କୋଷ କମ୍ପିତ ହେଲା । ମୋତେ ଏପରି ଲାଗିଲା, ଯେପରି ମୁଁ ବହୁ ପୂର୍ବରୁ ହଜିଯାଇଥିବା ଏକ ଶିଶୁ, ଯେ ତା'ର ମା'କୁ ପାଇଯାଇଛି । ''ଶ୍ରୀଗୁରୁ କହିଲେ ଯେ, ତୁମେ ଏହିଠାରେ ଅଛ'' । ସେ ବାବାଜୀଙ୍କୁ କହିଲେ, ''ଭାବିଲି, ବାଳକକୁ ଟିକିଏ ଦେଖିନିଏ । ଏବେ ମୋତେ ଯିବାକୁ ପଡ଼ିବ ।'' ସେ ଯେପରି ଭାବରେ ଭାସି ଭାସି ଆସିଥିଲେ, ସେହିପରି ଭାବରେ ଚାଲିଗଲେ । ଆମେ ଦି' ଜଣ ତାଙ୍କୁ ଦଣ୍ଡବତ କଲୁ ।

''ଏହା ବାସ୍ତବରେ ଏକ ଅତ୍ୟନ୍ତ ବିରଳ ଘଟଣା'', ବାବାଜୀ କହିଲେ, ''ସେ ଶ୍ରୀଦେବୀ ଥିଲେ, ଶ୍ରୀଗୁରୁ ବାବାଜୀଙ୍କର ଭଉଣୀ; ଏକ ଅତି ଉଚ୍ଚସ୍ତରର ଆତ୍ମା । ସେ ସାଧାରଣତଃ ଏକାନ୍ତ ପସନ୍ଦ କରନ୍ତି । ତୁମେ ଭାଗ୍ୟବାନ ।''

''ସବୁ ହେଉଛି ଆପଣଙ୍କର ଆଶୀର୍ବାଦ, ବାବାଜୀ'', ମୁଁ କହିଲି । ଯଦି ଘରେ ମୁଁ ଏସବୁ କଥା କହିବି ତେବେ କେହି କ'ଣ ଏକଥା ବିଶ୍ୱାସ କରିବେ ? ଏହି କଥା ଭାବୁ ଭାବୁ ମୁଁ ଶୋଇପଡ଼ିଲି ।

× × ×

ପରଦିନ ଆମେ ଗୁମ୍ଫା ଛାଡ଼ି ଦ୍ୱାରାହାଟକୁ ଆସିଗଲୁ । ଯିବା ପୂର୍ବରୁ ବାବାଜୀ ପରାମର୍ଶ ଦେଲେ ଯେ, ମୋର ସ୍ୱାମୀ ବିବେକାନନ୍ଦଙ୍କଦ୍ୱାରା ସ୍ଥାପିତ, ପିଥୌରାଗଡ଼ ଜିଲ୍ଲାର ମାୟାବତୀସ୍ଥିତ ଅଦ୍ୱୈତ ଆଶ୍ରମକୁ ଯିବା ଉଚିତ । ତା'ପରେ ମିହିରଟୋଲାର ଉତ୍ତର ବୃନ୍ଦାବନ ଆଶ୍ରମକୁ ଯାଇ, ସେଠାର ମୁଖ୍ୟ ମାଧବ ଆଶିଷଙ୍କୁ ମଧ୍ୟ ଦେଖା କରିବା ଉଚିତ । ମୋତେ ରାନୀଖେତ ଓ ଆଲମୋଡ଼ା ମଧ୍ୟରେ ଥିବା କୈଞ୍ଚି ଆଶ୍ରମକୁ ଯାଇ ଅବଧୂତ ମହାରାଜ ନୀମ କରୋଲୀ ବାବାଙ୍କୁ ସାକ୍ଷାତ କରିବାକୁ ମଧ୍ୟ କୁହାଗଲା; କଲିକତାର ବେଲୁଡ଼ ମଠକୁ ଯିବା ପୂର୍ବରୁ କିଛିଦିନ ବନାରସ ଯାଇ ମୋର 'ରାମକୃଷ୍ଣ ସେବାଶ୍ରମ'ରେ ରହିବାର ଥିଲା ।

ମୁଁ ଦ୍ୱାରାହାଟରୁ ଲୋହାଘାଟ ଯିବାପାଇଁ ବସ୍ ଧରିଲି ଓ ତା'ପରେ ଅନୁରୋଧ କରି ମାୟାବତୀ ଯାଉଥିବା ଗୋଟାଏ ଜିପ୍‌ରେ ଚଢ଼ିଲି । ମାୟାବତୀରେ ମୁଁ ସ୍ୱାମୀଜୀଙ୍କୁ

ଭେଟିଲି, ଯାହାଙ୍କର ନାଁ ମୁଁ ଏବେ ଭୁଲିଗଲିଣି । ସେ 'ପ୍ରବୁଦ୍ଧ ଭାରତ' ପତ୍ରିକାର ସମ୍ପାଦକ ମଧ୍ୟ ଥିଲେ । ସ୍ୱାମୀଜୀ ମୋତେ କହିଲେ, ସାଧାରଣତଃ ପୂର୍ବରୁ ସୂଚନା ଦେଇ ନ ଥିଲେ କୌଣସି ଆଶ୍ରମରେ ରହିବାର ଅନୁମତି ନାହିଁ; କିନ୍ତୁ ବିଶେଷ ଅନୁଗ୍ରହ ପୂର୍ବକ ସେ ମୋତେ ଦୁଇଦିନ ସେଠାରେ ରହିବାକୁ ଦେଲେ ।

ମୁଁ ହିମାଳୟରେ ଯେତେଗୁଡ଼ିଏ ଆଶ୍ରମରେ ରହିଛି ସେଇଟି ସବୁଠାରୁ ସୁନ୍ଦର ଆଶ୍ରମମାନଙ୍କ ମଧ୍ୟରୁ ଅନ୍ୟତମ ଥିଲା । ଅଦ୍ୱୈତ ଆଶ୍ରମ ବିବେକାନନ୍ଦ ସେହିମାନଙ୍କ ପାଇଁ ସ୍ଥାପନ କରିଥିଲେ, ଯେଉଁମାନେ ମୂର୍ତ୍ତିପୂଜାକୁ ପସନ୍ଦ କରୁ ନ ଥିଲେ ଓ ବେଦାନ୍ତ ଅନୁଯାୟୀ ଜୀବନ ବିତାଇବା ଚାହୁଁଥିଲେ । ଏଠାରେ ଶ୍ରୀରାମକୃଷ୍ଣଙ୍କୁ ସମର୍ପିତ କୌଣସି ମନ୍ଦିର ନାହିଁ । ଅତଏବ କୌଣସି ଦୈନିକ ସେବା ଓ ପୂଜା ମଧ୍ୟ ନାହିଁ । ମୁଁ ସ୍ୱାମୀଜୀଙ୍କ ଦ୍ୱାରା ବ୍ୟବହୃତ ହେଉଥିବା କୋଠରିଟିକୁ ଦେଖି ଭାରି ଖୁସି ହେଲି ।

ସେଠାରେ ମୁଁ ସ୍ୱାମୀ ଦେବାତ୍ମାନନ୍ଦଙ୍କୁ ଭେଟିଲି, ଯେ ଜଣେ ଇରାକୀୟ ଡାକ୍ତର ଥିଲେ ଏବଂ ସବୁ ତ୍ୟାଗକରି ରାମକୃଷ୍ଣ ସଂପ୍ରଦାୟର ସନ୍ନ୍ୟାସୀ ହୋଇଯାଇଥିଲେ । ଆମେମାନେ ଉତ୍ତମ ବନ୍ଧୁ ହୋଇଗଲୁ । ମୁଁ ଯେତେବେଳେ କହିଲି ଯେ, ମୁଁ ବନାରସ ଯାଉଛି, ସେ ରାମକୃଷ୍ଣ ସେବାଶ୍ରମର ମୁଖ୍ୟଙ୍କ ନାଁରେ ଗୋଟିଏ ଚିଠି ଦେଲେ ଏବଂ କହିଲେ ଯେ କିଛିଦିନ ପରେ ସେ ମଧ୍ୟ ସେଠାରେ ପହଞ୍ଚିବେ ।

ମାୟାବତୀରୁ ମୁଁ ମିହିରଟୋଲାରେ ଥିବା ଶ୍ରୀକୃଷ୍ଣପ୍ରେମଙ୍କର 'ଉତ୍ତର ବୃନ୍ଦାବନ ଆଶ୍ରମ'କୁ ଗଲି । ଶ୍ରୀକୃଷ୍ଣପ୍ରେମ ଅନ୍ତରଙ୍ଗ ଲୋକମାନଙ୍କପାଇଁ 'ଗୋପାଳଦା' ଥିଲେ । ଗୋପାଳଦା 1965 ରେ ଚାଲିଗଲେ । ମୋତେ ତାଙ୍କର ଶିଷ୍ୟ ଓ ଉତ୍ତରାଧିକାରୀ ମାଧବ ଆଶିଷଙ୍କୁ ସାକ୍ଷାତ କରିବାର ଥିଲା ।

× × ×

ଆଲମୋଡ଼ାରୁ ପଇଁତିରିଶ କିଲୋମିଟର ଦୂରରେ ଥିବା ମିହିରଟୋଲା ଆଶ୍ରମରେ ଗୋଟିଏ ଛୋଟ ସୁନ୍ଦର କୃଷ୍ଣମନ୍ଦିର ରହିଛି । ଜଣେ ସନ୍ଥ ଭଳି ବଙ୍ଗାଳୀ ମହିଳା ଯଶୋଦାମାଈ ଏହାର ସ୍ଥାପନା କରିଥିଲେ । ସେ କଲିକତା ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ଜଷ୍ଟିସ୍ ଚକ୍ରବର୍ତ୍ତୀଙ୍କର କନ୍ୟା ଥିଲେ । ତାଙ୍କର ବିଶେଷତ୍ୱ ଥିଲା ଯେ କୁମାରୀ ପୂଜା ଅନ୍ତର୍ଗତ, ଦେବୀ ମା'ଙ୍କର ପ୍ରତୀକ ରୂପରେ ସ୍ୱୟଂ ସ୍ୱାମୀ ବିବେକାନନ୍ଦ ତାଙ୍କୁ ପୂଜା କରିଥିଲେ । ସେତେବେଳେ ତାଙ୍କୁ ମାତ୍ର ସାତବର୍ଷ ହୋଇଥିଲା । ଜଷ୍ଟିସ୍ ଚକ୍ରବର୍ତ୍ତୀ ଥିଓସଫିକାଲ ସୋସାଇଟିର ଆନି ବେସାନ୍ତଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ ଏବଂ ନିଜେ ଥିଓସଫିଷ୍ଟ ହୋଇଥିବାରୁ

କାଳଜୟୀ ହିମାଳୟସ୍ଥ ଗୁରୁମାନଙ୍କର ସ୍ଥିତି ବିଷୟରେ ବିଶ୍ୱାସ କରୁଥିଲେ । କିନ୍ତୁ ଯଶୋଦାମାଈ ପରମ୍ପରାବାଦୀ ବୈଷ୍ଣବ ସାଧିକା ଥିଲେ ଓ ତାଙ୍କ ପାଇଁ ସବୁକିଛି ଥିଲେ ଭଗବାନ କୃଷ୍ଣ । ସଂସାର ତ୍ୟାଗ କରିବା ପୂର୍ବରୁ କୃଷ୍ଣପ୍ରେମଙ୍କ ନାଁ ରୋନାଲ୍ଡ ନିକ୍ସନ ଥିଲା । ସେ ଇଂରେଜ ଥିଲେ ଓ ଜଣେ ପ୍ରତିଭାବାନ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ସ୍ନାତକ । ସେ ଲକ୍ଷ୍ନୌ ଓ ବନାରସର ବିଶ୍ୱବିଦ୍ୟାଳୟଗୁଡ଼ିକରେ ଇଂରେଜୀ ସାହିତ୍ୟ ପଢ଼ାଉଥିଲେ, ସଂସ୍କୃତ ଓ ପାଲିରେ ବିଦ୍ୱାନ ଥିଲେ, ଖୁବ୍ ଭଲ ବଙ୍ଗଳା ଓ ହିନ୍ଦୀ ମଧ୍ୟ ଜାଣିଥିଲେ । ସେସବୁ କଥା ମୁଁ ମାଧବ ଆଶିଷଙ୍କ ଠାରୁ ଜାଣିଲି ଯେ ନିଜେ ଜଣେ ଇଂରେଜ ଥିଲେ ।

ଚୀର-ବୃକ୍ଷ ଭର୍ତ୍ତି ପାହାଡ଼ ଓ ଗଭୀର ଖାଦଗୁଡ଼ିକଦ୍ୱାରା ପରିବୃତ ଆଶ୍ରମ ଏକ ନିର୍ଜନ ସ୍ଥାନରେ ଥିଲା । ମୋତେ ଲାଗିଲା ମୁଁ ଯେମିତି ଏକ ଯାଦୁକରୀ ଉଦ୍ୟାନକୁ ଆସିଯାଇଛି । ସବୁ ସ୍ଥାନରେ ରଙ୍ଗିନ ଫୁଲ, ପ୍ରଚୁର ସବୁଜିମା ସହିତ ସବୁଠାରୁ ଉତ୍ତମ ଥିଲା ସେଠାରେ ବିରାଜିତ ଶାନ୍ତି । ସବୁଜିମା ମଧ୍ୟରେ ମନ୍ଦିରର ବାଦାମୀ ରଙ୍ଗର ଗମ୍ବୁଜ ଦେଖିପାରିଲି । ଶିଡ଼ି ପାହାଚ ଚଢ଼ି, ଜୋତା ଓହ୍ଲାଇ ମୁଁ ମନ୍ଦିର ଭିତରକୁ ପଶିଗଲି । ସେଇଟି ରାଧା ଓ କୃଷ୍ଣଙ୍କର ମୂର୍ତ୍ତି ଥିବା ଏକ ପରମ୍ପରାଗତ ବୈଷ୍ଣବ ଆଶ୍ରମ । ସେଠାରେ ସବୁ କାମ ବୈଷ୍ଣବ ରୀତିରେ ହେଉଥିଲା । ସବୁ ଅନୁଷ୍ଠାନ, ଯେପରି ମଝିରେ ମଝିରେ ଦୀପ ଜଳାଇ ଆରତି, ଘଣ୍ଟି ବଜାଇବା, ଶଙ୍ଖ ବଜାଇବା ଇତ୍ୟାଦି ବିଧିପୂର୍ବକ କରାଯାଉଥିଲା । ଦ୍ୱିପ୍ରହରର ଭୋଗ ଅର୍ଥାତ୍ ଶଙ୍ଖ ବଜାଇ ଭୋଜନ ଅର୍ପଣ ମଧ୍ୟ କରାଯାଉଥିଲା । ବାସ୍ତବରେ ସାରା ଆଶ୍ରମର କେନ୍ଦ୍ରବିନ୍ଦୁ ଥିଲା ମନ୍ଦିର । ସେଠାରେ ଗୌଡ଼ୀୟ ବୈଷ୍ଣବ ସଂପ୍ରଦାୟଙ୍କ ପରି ରାଧା ଓ ରାସବିହାରୀ କୃଷ୍ଣଙ୍କର ମୂର୍ତ୍ତିକୁ ଜୀବିତ ସତ୍ତା ବୋଲି ମନେକରାଯାଉଥିଲା । ଜୀବିତ ବ୍ୟକ୍ତିମାନଙ୍କ ପରି ତାଙ୍କୁ ଶୁଆଇ ଦିଆଯାଉଥିଲା ଓ ଉଠାଇ ଦିଆଯାଉଥିଲା ଇତ୍ୟାଦି ।

ସନ୍ଧ୍ୟା ଆରତିର ସମୟ ଥିଲା । ମୁଁ ମନ୍ଦିର ଭିତରେ ଠିଆ ହୋଇଥିଲି । ଦେଖିଲି ପରମ୍ପରାଗତ ବୈଷ୍ଣବ ବସ୍ତ୍ର ପିନ୍ଧି ଜଣେ ପାଶ୍ଚାତ୍ୟ ଜଗତର ବ୍ୟକ୍ତି (ତାଙ୍କର ମଥାରେ ବୈଷ୍ଣବ ତିଳକ, ଶିଖା, ପରିଧାନରେ ଗେରୁଆ ଧୋତି) ଭିତରକୁ ଆସିଲେ । ସେ ମୋ ଆଡ଼କୁ କେବଳ ଚାହିଁ ସିଧା ଗର୍ଭଗୃହକୁ ପଶିଗଲେ । ସେହି ବ୍ୟକ୍ତି ଜଣକ ବିସ୍ତାରିତ ଭାବରେ ପୂଜା କଲେ, କୌଣସି ସାମାନ୍ୟ ତ୍ରୁଟି ମଧ୍ୟ ହେଲା ନାହିଁ । ମନ୍ଦିରରେ ମୋତେ ମିଶାଇ ଦୁଇ ତିନିଜଣ ମାତ୍ର ଲୋକ ଥିଲେ । ପୂଜା ସମାପ୍ତ କରି ସେ ମୋ ପାଖକୁ ଆସିଲେ । ମୁଁ ପ୍ରଣାମ କରି ତାଙ୍କର ପାଦସ୍ପର୍ଶ କଲି । "ମାଧବ ଆଶିଷ", ସେ ଶୁଦ୍ଧ ଇଂରେଜୀ ଶୈଳୀରେ

କହିଲେ, ‘‘କୃଷ୍ଣପ୍ରେମ ଓ ଯଶୋଦା ମାଈଙ୍କର ଏକ କ୍ଷୁଦ୍ରାଦପି କ୍ଷୁଦ୍ର ଶିଷ୍ୟ । ତୁମେ କ’ଣ ଏବେ ଆସିଲ ?’’

‘‘ଜୀ ମହାରାଜ’’, ମୁଁ କହିଲି, ‘‘ମୁଁ ହିମାଳୟ ଯାତ୍ରା କରୁଛି । ମୋର ଗୁରୁ ମୋତେ ଏହି ଆଶ୍ରମକୁ ଆସିବାକୁ କହିଲେ । ମୁଁ କ’ଣ ଦିନକ ପାଇଁ ଏଠାରେ ରହିପାରିବି ?’’

‘‘ଏହାକୁ ନିଜର ଘର ବୋଲି ଭାବ, ଯୁବକ ବନ୍ଧୁ’’, ସେ କହିଲେ, ‘‘ମୁଁ ତୁମକୁ ଗୋଟିଏ କୋଠରି ଦେଖାଇ ଦେଉଛି । ସୌଭାଗ୍ୟବଶତଃ ଏଠାକୁ କେବଳ ଅଳ୍ପ କେତେଜଣ ଆସିଛନ୍ତି ।’’

ରାତିରେ ଉତ୍କୃଷ୍ଟ ଶାକାହାରୀ ଭୋଜନ ପରେ ମାଧବ ଆଶିଷ କଥାବାର୍ତ୍ତା କରିବାପାଇଁ ମୋତେ ତାଙ୍କର କୋଠରିକୁ ଡାକିଲେ । ‘‘କ୍ଷମା କରିବ, ମୋର ତମ୍ବାକୁ ଟାଣିବାର ଅଭ୍ୟାସ ଅଛି’’, ସେ କହିଲେ ଓ ନିଜର ପାଇପ ଜଳାଇଲେ । କୋଠରି ଉତ୍କୃଷ୍ଟ ତମ୍ବାକୁର ସୁଗନ୍ଧରେ ଭରିଗଲା । ଆମେ ଡେରି ରାତିଯାଏଁ କଥାବାର୍ତ୍ତା ହେଲୁ । ‘‘ଠିକ୍ କଥା’’, ସେ କହିଲେ । ‘‘ସମସ୍ତଙ୍କର ନିଜ ନିଜର ରାସ୍ତା ରହିଛି ଏବଂ ଯେପରି ମୁଁ କହିଛି ଆମେ ସବୁ ହେଲୁ ପରମ୍ପରାବାଦୀ ବୈଷ୍ଣବ । ନିଜର ବାବାଙ୍କର ଆଜ୍ଞାର ପାଳନ କର । ହୁଏତ ତାହା ହିଁ ତୁମପାଇଁ ଠିକ୍ ହେବ, ମୁଁ ତୁମର ଆଖିରେ କିଛି ଅସାମାନ୍ୟତା ଦେଖିପାରୁଛି । ତୁମର ବାବାଜୀ କ’ଣ କେବେ ତୁମକୁ ବୈଷ୍ଣବ ମନ୍ତ୍ର ଦେଇଥିଲେ ?’’

‘‘ହଁ’’, ମୁଁ କହିଲି, ‘‘ଠୋକର କ୍ରିୟାରେ ଆମକୁ ‘ଓଁ ନମୋ ବାସୁଦେବାୟ’ ମନ୍ତ୍ରର ଜପ କରିବାକୁ ପଡ଼େ ।’’

‘‘ହରି, ହରି’’, ସେ ଭାବବିହ୍ୱଳ ହୋଇ କହିଲେ, ‘‘ଜୟ ଶ୍ରୀକୃଷ୍ଣ । ଆମ ପାଖରେ ହିମାଳୟରେ ରହୁଥିବା ମହାନ୍ ଗୁରୁମାନଙ୍କର ଅସ୍ତିତ୍ୱ ସ୍ୱୀକାର କରିବାର ଆଧାର ରହିଛି । ବୋଧହୁଏ ଆମର ତୁମ ସହିତ କିଛି ସମ୍ବନ୍ଧ ରହିଛି । ବେଶ୍ ଡେରି ହୋଇଗଲାଣି, ଏବେ ତୁମେ ଯାଅ ।’’ ଏହିପରି ଭାବରେ ଆମର ସାକ୍ଷାତ୍କାର ସମାପ୍ତ ହେଲା । ବହୁବର୍ଷ ପରେ ମୋତେ କାଶ୍ମୀରର ଡକ୍ଟର କରଣ ସିଂହଙ୍କଠାରୁ ଖବର ମିଳିଲା ଯେ, ଆଶିଷଦା’ (ସେ ମାଧବ ଆଶିଷଙ୍କୁ ସେହି ନାମରେ ଡାକୁଥିଲେ) ଦୀର୍ଘଦିନ ଧରି ଅସୁସ୍ଥ ରହିବା ପରେ ଚାଲିଯାଇଛନ୍ତି । କ୍ୟାନ୍‌ସର୍ ସେହି ସନ୍ଥଙ୍କୁ ମଧ୍ୟ ଛାଡ଼ିଲା ନାହିଁ । ମୁଁ ଗୋପାଳଦା’ଙ୍କ ଦ୍ୱାରା ଲିଖିତ ଦୁଇଟି ଉତ୍ତମ ପୁସ୍ତକ ପଢ଼ିଲି– ‘ଦି ଯୋଗ ଅଫ୍ ଭଗବଦ୍‌ଗୀତା’ (ଭଗବଦ୍‌ଗୀତାର ଯୋଗ) ତଥା ‘ଯୋଗ ଅଫ୍ କଠୋପନିଷଦ’ (କଠୋପନିଷଦର ଯୋଗ) । ଏହି ଦୁଇଟିଯାକ ପୁସ୍ତକ ଗଭୀର ଭାବରେ ସାଧନାମଗ୍ନ ବ୍ୟକ୍ତିମାନଙ୍କପାଇଁ ଅନ୍ତର୍ଦୃଷ୍ଟିପୂର୍ଣ୍ଣ ଓ ଉପଯୋଗୀ ।

ପରଦିନ ମୁଁ ଶ୍ରୀ ମାଧବ ଆଶିଷଙ୍କଠାରୁ ବିଦାୟ ନେଇ ମହାନ୍ ନୀମ କରୋଲୀ ବାବାଙ୍କ ଦର୍ଶନପାଇଁ କୈଞ୍ଚି ଉଦ୍ଦେଶ୍ୟରେ ଯାତ୍ରା କଲି ।

× × ×

ମୋର ଭାଗ୍ୟ ଭଲ ଥିଲା । ମୁଁ କୈଞ୍ଚିରେ ପହଞ୍ଚି ଶୁଣିଲି ଯେ, ନୀମ କରୋଲୀ ବାବା ସେଠାକୁ ଆସିଛନ୍ତି ଓ କିଛିଦିନ ସେଠାରେ ରହିବେ । ପ୍ରାୟ ନୀମ କରୋଲୀ ବାବା ଯେଉଁଠାରେ ରହନ୍ତି, ସେଠାରେ ହନୁମାନଜୀଙ୍କର ଏକ ବିରାଟ ମୂର୍ତ୍ତି ଥାଏ ଓ ପାଖରେ ଦେବୀ ମା'ଙ୍କର ମନ୍ଦିର ଥାଏ । କୈଞ୍ଚିର ଆଶ୍ରମରେ ମଧ୍ୟ ସେହିପରି ସବୁ ଥିଲା ।

ବାବା ଦର୍ଶନ ଦେଉଥାଆନ୍ତି । ସେ ଗୋଟିଏ ବେଦି ପରି ବାରଣ୍ଡାରେ ବସିଥାଆନ୍ତି ଏବଂ ପ୍ରାୟ ଶହେଜଣ ଲୋକ ଶୃଙ୍ଖଳିତ ଭାବରେ ତଳେ ସତରଞ୍ଜି ଉପରେ ବସିଥାଆନ୍ତି । ଦେଖିଲି, ପ୍ରଥମ ଧାଡ଼ିରେ ବେଶିଭାଗ ବିଦେଶୀ ଲୋକ ଥିଲେ । ଦେଖିବାକୁ ନୀମ କରୋଲୀ ବାବା ଜଣେ ପାଗଳ ସାଧୁର ପ୍ରକୃତ ପ୍ରତିଛବି ଥିଲେ । ସେ ବେଶ୍ ମୋଟାସୋଟା ଥିଲେ । ଧଳା ବାଳ ଥିବା ଜଣେ ଡେଙ୍ଗା ମଣିଷ । ମାଂସଳ ଗାଲରେ ୱାଲରସ ପରି ଶୁଭ୍ର ନିଶ ଥିଲା । ତାଙ୍କର ଛାତି ନଗ୍ନ ଥିଲା । ତାଙ୍କର ମୋଟା ପେଟ ଚାରିପଟେ ଲାଲ, ଧଳା ଏବଂ କଳା ଛକି ଥିବା କମ୍ବଳଟିଏ ଗୁଡ଼ା ହୋଇଥିଲା । ପରେ ଶୁଣିଲି, ଖରା ହେଉ ବର୍ଷା ହେଉ ଏହା ହିଁ ଥିଲା ତାଙ୍କର ନିତ୍ୟନୈମିତ୍ତିକ ପରିଧାନ ।

ସେ ସଶବ୍ଦ ହସୁଥିଲେ । ହାତରେ ବିଭିନ୍ନ ପ୍ରକାରର ଇଙ୍ଗିତ କରୁଥିଲେ ଏବଂ ବେଳେବେଳେ ଦେହକୁ ଏପରି ଝୁଲାଉଥିଲେ, ଜଣାପଡୁଥିଲା ଯେମିତି କୌଣସି ଗୁପ୍ତ ଆନନ୍ଦରେ ବିଭୋର ହେଉଛନ୍ତି । ସାଧାରଣତଃ ପ୍ରଶ୍ନର ଉତ୍ତର କିଛି ଭଙ୍ଗା ଭଙ୍ଗା ବାକ୍ୟରେ ଦେଉଥିଲେ । ବେଶି ସମୟ ଉଚ୍ଚସ୍ୱରରେ 'ରାମ୍' ! 'ରାମ୍' ! କହୁଥିଲେ । କେହି ଯାଇ ତାଙ୍କ ସାମ୍ନାରେ ନଇଁପଡ଼ିଲେ ସେ ତାଙ୍କର ପିଠି ଜୋର୍‌ରେ ଥାପୁଡ଼େଇ ହିନ୍ଦୀରେ କହିଲେ, ''ତୁମେ ତାଙ୍କୁ ଏଠାରେ କ'ଣ ଖୋଜୁଛ ? ସେ ତ ସବୁଠାରେ ଅଛନ୍ତି । କୁହ ରାମ-ରାମ'', ପୁଣି ଇଂରେଜୀରେ କହିଲେ, ''ବେରୀ ଗୁଡ୍, ରାମ ରାମ ।''

ଏହି ଦୃଶ୍ୟକୁ ଦୂରରୁ ଦେଖି ମୁଁ ଭାବୁଥିଲି, ସେ କ'ଣ ମୋ ପରି ନଗଣ୍ୟ ବ୍ୟକ୍ତିର ଆସିବା ଦେଖିପାରିବେ ? ମୋର ଭ୍ରମ ଧାରଣା ଥିଲା । ଅଚାନକ ସେ ମୁଣ୍ଡ ଉଠେଇ ମୋତେ ଦେଖିଲେ, ତାଙ୍କର ଆଖି ବିସ୍ତାରିତ ହେଲା । ମୁଁ ବିଜୁଳିର ତରଙ୍ଗ ମୋର ମେରୁମୂଳରୁ ମସ୍ତିଷ୍କ ଦିଗରେ ଯାଉଥିବାର ଅନୁଭବ କଲି । ''ବାବାଜୀ କା ବଚ୍ଚା'', ସେ ପାଟିକଲେ, ''ଇଧର ଆଓ, ତୁମ୍, ତୁମ୍'', ଏବେ ସେ ମୋ ଆଡ଼କୁ ଇଙ୍ଗିତ କରୁଥିଲେ । କିଏ ଜଣେ ଧୀର ସ୍ୱରରେ ମୋତେ କହିଲା, ''ଯା, ଯା, ତୁମକୁ ଡାକୁଛନ୍ତି ।''

ମୁଁ ଆଗକୁ ବଢ଼ିଲି, ''ଉପରକୁ ଆସ'', ସେ ଆଜ୍ଞା ଦେଲେ । ମୁଁ ପାହାଚ ଟପି ତାଙ୍କ ପାଖରେ ଠିଆ ହୋଇଗଲି । ମୋତେ ଧୂପ ବାସ୍ନାର ଅନୁଭବ ହେଲା । ସେ ହାତ ବଢ଼ାଇ ମୋତେ ଭିଡ଼ିଲେ, ମୁଁ ଯାଇ ତାଙ୍କର କୋଳରେ ପଡ଼ିଗଲି । ''ଠିକ୍, ଠିକ୍'' ସେ କହିଲେ ଓ ନିଜ କମ୍ବଳରୁ ଗୋଟାଏ ପଚା ସେଓ ବାହାର କଲେ । ତାକୁ ମୋ ହାତରେ ରଖି କହିଲେ, ''ଖାଅ'' । ତାଙ୍କ କୋଳରେ ବସି ମୁଁ ଭାବିଲି, ସେଓକୁ କ'ଣ କରିବି ! ସେଇଟା ପଚା ଓ ଅପରିଷ୍କାର ଥିଲା । କିନ୍ତୁ ସେତିକିବେଳେ ମୁଁ ହଠାତ୍ ଜାଣିପାରିଲି ଯେ, ମୋର ଆଉ କିଛି ଉପାୟ ନାହିଁ । ମୁଁ ଖାଇବା ଆରମ୍ଭ କଲି ଓ ଶୀଘ୍ର ତାକୁ ଶେଷ କରିଦେଲି । ବିଚିତ୍ର କଥା ଯେ, ତାହାର ସ୍ୱାଦ ଗୋଟାଏ ପଚା ସେଓ ପରି ନ ଥିଲା ।

''ବାବାଜୀଙ୍କୁ ମୋର ଅଭିବାଦନ, ମୋର ତାଙ୍କୁ 'ରାମ ରାମ' ବୋଲି କହିଦେବ'', ସେ କହିଲେ, ''ଏବେ ତୁମେ ଯାଇପାର ।'' ସେ ମୋତେ କୋଳରୁ ଠେଲିଦେଲେ ଓ ମୋ ପଛପଟେ ଗୋଟାଏ ଥାପଡ଼ ମାରିଲେ । ମୁଁ ଦଣ୍ଡବତ କରି ନିଜ ଜାଗାରେ ଯାଇ ବସିଗଲି । କେଉଁଠି ଗୋଟାଏ ପଛପଟେ ଥିବା ଧାଡ଼ିରେ ।

ସେ ରାତିରେ ମୁଁ ଆଶ୍ରମରେ ରହିଲି । କିଏ ଜଣେ ଦୟାଳୁ ଲୋକ ମୋ ପାଇଁ ଖାଇବା ଓ ରହିବାର ବନ୍ଦୋବସ୍ତ କରିଦେଲେ । କିନ୍ତୁ ମୁଁ ରାତିସାରା ଶୋଇପାରିଲି ନାହିଁ । ଗଭୀର ଭାବରେ ଧ୍ୟାନମଗ୍ନ ଥାଏ । ସକାଳେ ଦୂରରୁ ନୀମ କରୋଲୀ ବାବାଙ୍କୁ ପ୍ରଣାମ କରି ମୁଁ ଆଶ୍ରମ ଛାଡ଼ିଦେଲି । ସେହି ଆନନ୍ଦଦାୟୀ ଧ୍ୟାନମଗ୍ନତା ଲାଗିରହିଥାଏ ।

ପୂର୍ବ ରାତିରେ ମୁଁ ଖାଇବା ପୂର୍ବରୁ ନୀମ କରୋଲୀ ବାବାଙ୍କ ବିଷୟରେ କିଛି ଆଶ୍ଚର୍ଯ୍ୟଜନକ କାହାଣୀ ଶୁଣିଥିଲି, କିନ୍ତୁ ମୋତେ ସବୁଠାରୁ ବେଶି ପ୍ରଭାବିତ ଓ ଚକିତ କରିଥିବା କାହାଣୀ ହେଉଛି ଏଲ୍.ଏସ୍.ଡି. କାହାଣୀ ।

ସେତେବେଳେ ହିପ୍ପୀମାନଙ୍କର ସମୟ । ରିଚାର୍ଡ଼ ଏଲ୍‌ପର୍ଟଙ୍କ ପ୍ରଭାବ ହେତୁ (ଯେ ନିଜର ନାମ ବଦଳାଇ ପରବର୍ତ୍ତୀ ସମୟରେ ରାମଦାସ କରିଦେଇଥିଲେ) ସେମାନଙ୍କ ଭିତରୁ ଅନେକେ ନୀମ କରୋଲୀ ବାବାଙ୍କ ପ୍ରତି ଆକର୍ଷିତ ହୋଇଥିଲେ । ଶୁଣାଯାଏ ଯେ, ଦିନେ ବାବା ତାଙ୍କ ଭିତରୁ ଜଣକୁ ନିଜର ପକେଟରେ ଗୋଟିଏ ଛୋଟ ବୋତଲ ଲୁଚାଇ ରଖୁଥିବାର ଦେଖିଲେ । ''କ'ଣ ସେଇଟା ?'' ସେ ପଚାରିଲେ ।

''ବୋତଲ'', ହିପ୍ପୀ କହିଲା ।

''ସେଥିରେ କ'ଣ ଅଛି ?''

"ଔଷଧ ।"

"କେଉଁ ଔଷଧ ?"

"ଏଲ୍.ଏସ୍.ଡି., ବାବା ।"

"ମୋତେ ଦିଅ ।"

"କିନ୍ତୁ ବାବା, ଏହା କଡ଼ା ଔଷଧ ।"

"ଇଆଡ଼େ ଦିଅ, ଜଲ୍‌ଦି ।"

ଭୟ ଓ ଆଶଙ୍କାରେ କମ୍ପି କମ୍ପି ହିପ୍ପୀ ବୋତଲ ବାବାଙ୍କୁ ଦେଇଦେଲା । ବାବା ବୋତଲ ଖୋଲି ବୋତଲରେ ଥିବା ପ୍ରାୟ ଦଶଟାଖଣ୍ଡେ ବଟିକା ଥରକରେ ପାଟିରେ ପକାଇଦେଲେ । ସେଠାରେ ଉପସ୍ଥିତ ଥିବା ପାଶ୍ଚାତ୍ୟ ଦେଶର ଲୋକମାନେ ଅତ୍ୟଧିକ ଔଷଧର ସେବନର ପରିଣାମ ବିଷୟରେ ଜାଣିଥିଲେ । ସେମାନେ ଅସହାୟ ଭାବରେ ଆଁ କରି ବାବାଜୀଙ୍କୁ ଚାହିଁ ରହିଥାଆନ୍ତି ।

ମିନିଟିଏ ଦି' ମିନିଟ୍ ପରେ ବାବା ଅଜବ ବ୍ୟବହାର କରିବା ଆରମ୍ଭ କଲେ । ସେ ଗର୍ଜିଲେ, ଚିତ୍କାର କଲେ, ନିଜର ଆଖିକୁ ଘୂରାଇଲେ, ଜିଭ ବାହାର କଲେ ଓ ଶରୀରକୁ ଚକ୍ରୀ ପରି ଘୂରାଇଲେ । ହିପ୍ପୀମାନେ ଭାବିଲେ ଯେ, ଏଲ୍.ଏସ୍.ଡି.ର ପ୍ରଭାବ ଆରମ୍ଭ ହୋଇଯାଇଛି ଏବଂ ଖରାପରୁ ଖରାପ ପରିଣାମର ଆଶଙ୍କା କଲେ । କିନ୍ତୁ ତାହା ନ ହୋଇ ବାବାଙ୍କର ଅଜବ ବ୍ୟବହାର ଯେପରି ହଠାତ୍ ଆରମ୍ଭ ହୋଇଥିଲା, ସେହିପରି ଭାବରେ ହଠାତ୍ ବନ୍ଦ ହୋଇଗଲା । ସେ ଉଚ୍ଚସ୍ୱରରେ ହସିଲେ ଓ କହିଲେ, "କିଛି ହୋଇ ନାହିଁ । ନୋ ଏଲ୍.ଏସ୍.ଡି. । କୁହ ରାମରାମ୍ । କୁହ ରାମ୍‌ରାମ୍ ।"

ବିଦେଶୀମାନଙ୍କପାଇଁ ଏହି ଘଟଣା ଅବିଶ୍ୱାସ୍ୟ ଥିଲା – ପଦାର୍ଥ ଉପରେ ମସ୍ତିଷ୍କର ପ୍ରଭୁତ୍ୱର ଏକ ପ୍ରକୃତ ଉଦାହରଣ । ଏକ ଚମତ୍କାର ।



#  ବନାରସର ଅଘୋରୀ

ଆଲମୋଡ଼ାରୁ ମୁଁ ଦିଲ୍ଲୀ ଗଲି ଓ ସେଠାରୁ ବନାରସ । ମୁଁ ସିଧା ରାମକୃଷ୍ଣ ମିଶନର ସେବା ଆଶ୍ରମକୁ ଗଲି । ନିଜର କହିଥିବା ଅନୁସାରେ ସ୍ୱାମୀ ଦେବାତ୍ମାନନ୍ଦ (ଇରାକୀ ଡାକ୍ତର) ସେଠାକୁ ଆସିଥିଲେ । ସେ ସେଠାର ବରିଷ୍ଠ ସ୍ୱାମୀଙ୍କ ସହିତ ମୋର ପରିଚୟ କରାଇଲେ । ସେହି ସ୍ୱାମୀ ଜଣକ ନିଜେ ହିଁ ଜଣେ ଡାକ୍ତର ଥିଲେ । ସେ ବଡ଼ ଦୟାଳୁ ଲୋକ ଥିଲେ । ଦୁଇଜଣଯାକ ଡାକ୍ତରଙ୍କର ମତ ଥିଲା ଯେ, ବେଲୁଡ଼ ମଠରେ କାମ କରୁଥିବା ରାମକୃଷ୍ଣ ମିଶନର ଜେନେରାଲ ସେକ୍ରେଟାରୀମାନଙ୍କ ମଧ୍ୟରୁ ଜଣେ, ଯାହାଙ୍କ ନାମ ସ୍ୱାମୀ ହିରଣ୍ମୟାନନ୍ଦ ଥିଲା, ତାଙ୍କୁ ମୁଁ ଚିଠି ଲେଖି ବେଲୁଡ଼ ମଠରେ ଜଣେ ନୂଆ ବ୍ରହ୍ମଚାରୀ ଭାବରେ ଯୋଗ ଦେବାର ଅନୁମତି ନେବା ଉଚିତ । ସେପର୍ଯ୍ୟନ୍ତ ମୁଁ ରାମକୃଷ୍ଣ ସେବାଶ୍ରମରେ ରହିପାରିବି ।

ତା'ପରେ ମୁଁ ସ୍ୱାମୀ ହିରଣ୍ମୟନନ୍ଦଙ୍କୁ ଚିଠି ଲେଖିଲି ଓ ଉତ୍ତରକୁ ଅପେକ୍ଷା କରି ବନାରସରେ ପ୍ରାୟ ମାସେ ରହିଲି । ଏହା ପ୍ରାଚୀନ ସହର ବନାରସ ବୁଲି ଦେଖିବାର ମୋ ପାଇଁ ଏକ ସୁବର୍ଣ୍ଣ ସୁଯୋଗ ଥିଲା ।

କାଶୀ ଅର୍ଥାତ୍ ପ୍ରକାଶ ନାମରେ ଜଣାଯାଉଥିବା ଏହି ନଗରୀ ପ୍ରାଚୀନ କାଳରୁ ହିଁ ଜ୍ଞାନ, ସଂସ୍କୃତି ଏବଂ ପୁରାତନ ଧାର୍ମିକ ବିଚାର ଓ ପରମ୍ପରାଗୁଡ଼ିକର କେନ୍ଦ୍ର ହୋଇ ରହିଛି । ଫାହିୟାନ କହନ୍ତି ଯେ ପଞ୍ଚମ ଶତାବ୍ଦୀରେ ସେ କିପରି ହେଙ୍ଗ (ଗଙ୍ଗା) ନଦୀର ଅନୁଗମନ କରି କାଶୀ ରାଜ୍ୟର ବନାରସରେ ପହଞ୍ଚିଥିଲେ । ସପ୍ତମ ଶତାବ୍ଦୀରେ ହୁଏନ୍ ସାଂ ଏହାକୁ ବାରାଣସୀ ବୋଲି ଉଲ୍ଲେଖ କରିଛନ୍ତି । ଶୁଣାଯାଏ, କିଛି ମୁସଲମାନ ଶାସକ ଏହାକୁ ମୁହମ୍ମଦାବାଦ ନାମରେ ନାମିତ କରିବାର ଚେଷ୍ଟା କରିଥିଲେ, କିନ୍ତୁ କାଶୀ କାଶୀ ହୋଇ ରହିଲା କିମ୍ବା ବାରାଣସୀ । ପୁରାଣ ମଧ୍ୟ ଏହାକୁ ପବିତ୍ର ନଗର, ଅବିମୁକ୍ତ କ୍ଷେତ୍ର, ମହାଶ୍ମଶାନ ତଥା ଆନନ୍ଦବନମ କହନ୍ତି । କିନ୍ତୁ ଅଧିକାଂଶ ହିନ୍ଦୁଙ୍କପାଇଁ କାଶୀ ହିଁ ଏହାର ସବୁଠାରୁ ଲୋକପ୍ରିୟ ନାମ ଥିଲା ଓ ଅଛି ।

ଶ୍ରଦ୍ଧାଳୁମାନଙ୍କର ଭିଡ଼, ଦୁର୍ଗନ୍ଧଯୁକ୍ତ ଗଳି, ବଡ଼ ବଡ଼ ଶିଙ୍ଗ ଥିବା ଓ ଖୋଲାରେ ବୁଲୁଥିବା ଷଣ୍ଢ, ଧୂର୍ତ୍ତ ମାଙ୍କଡ଼, ଧୂଳି, ମାଛି ଏବଂ ଲୋଭୀ ପଣ୍ଡାମାନଙ୍କ ସତ୍ତ୍ୱେ ମୋତେ ବାରାଣସୀରେ ଏକ ବିଶେଷ ପ୍ରକାରର ଶାନ୍ତି ମିଳିଲା ।

ମୁଁ ପ୍ରତିଦିନ ଦଶାଶ୍ୱମେଧ ଘାଟକୁ ଯିବାର ଅଭ୍ୟାସ କରିଦେଲି । ତାହା ଆଶ୍ରମର ନିକଟରେ ହିଁ ଥିଲା । ସେଥିପାଇଁ ମୋତେ ଅସ୍ତବ୍ୟସ୍ତ ହୋଇ ଚାଲୁଥିବା ସାଇକେଲ ରିକ୍ସା, ଗେରୁଆ ପିନ୍ଧିଥିବା ସନ୍ନ୍ୟାସୀ, ଲଙ୍ଗଳା ନାଗା ଏବଂ ଭିକାରି ଇତ୍ୟାଦିଙ୍କ ମଧ୍ୟଦେଇ କୌଣସିମତେ ଗଳିପଶି ଯିବାକୁ ପଡୁଥିଲା । ଘାଟରେ ସାଧୁମାନଙ୍କର ଅଗଣିତ ଆଖଡ଼ା ବା ମଠ ଥିଲା । ହିପ୍ପୀ ଓ ବିଦେଶୀ ନିଶାଗ୍ରସ୍ତମାନେ ସାଧୁମାନଙ୍କ ସହିତ ମିଳାମିଶା କରୁଥିଲେ । ଶ୍ରୀଯୋଗୀରାଜ ଶ୍ରୀ 108 ଭଗବାନ୍ ଦାସଜୀଙ୍କ ଆଖଡ଼ା 'ଖକ ଚଙ୍କା'ରେ ରାମାଓ୍ୱତ ସାଧୁମାନେ ଚରସ ଓ ଗଞ୍ଜେଇ ଟାଣୁଥିଲେ । ମୁଁ ମଣିକର୍ଣ୍ଣିକା ଓ ହରିଶ୍ଚନ୍ଦ୍ର ଘାଟକୁ ମଧ୍ୟ ଗଲି । ସେଠାରେ ପ୍ରତିଦିନ ଅନେକ ଶବଦାହ କରାଯାଉଥିଲା ।

ଯଦିଓ ଏଠାରେ ବେଶିଭାଗ ଶଙ୍କର (ଆଦି ଶଙ୍କରାଚାର୍ଯ୍ୟ) ସଂପ୍ରଦାୟର ଦଶନାମୀ ସନ୍ନ୍ୟାସୀ ଦେଖାଯାଆନ୍ତି, ବାରାଣସୀରେ ବୈଷ୍ଣବ ସଂପ୍ରଦାୟର କେନ୍ଦ୍ର ମଧ୍ୟ ଅଛି । ମୁଁ ଅଧିକରୁ ଅଧିକ କେନ୍ଦ୍ରକୁ ଯିବାର ଚେଷ୍ଟାକଲି – ବୌଦ୍ଧ, ଜୈନ, ଶିଖ, ନିର୍ମଳ, ଉଦାସୀ, କବୀରପନ୍ଥୀ, ନାନକପନ୍ଥୀ, ରାମାନନ୍ଦୀ, ରାମାନୁଜୀ, ବଲ୍ଲଭ, ମାଧବ, ନିମ୍ବାର୍କ, ଗୌଡ଼ୀୟ, ବୀର ଶୈବ ଏବଂ ବାବାଜୀଙ୍କର ପନ୍ଥର ନାଥ କିମ୍ବା ଗୋରଖପନ୍ଥୀ ।

ମୁଁ ବହୁ ବିଦ୍ୱାନ ଓ ମହାତ୍ମାଙ୍କୁ ଭେଟିଲି । ସେମାନଙ୍କ ଭିତରୁ ଜଣେ ଥିଲେ ପ୍ରସିଦ୍ଧ ଦଣ୍ଡୀ ସନ୍ନ୍ୟାସୀ ଏବଂ ବିଦ୍ୱାନ ସ୍ୱାମୀ କରପତ୍ରୀଜୀ । ସେ ମୋତେ ବୁଝାଇଲେ ଯେ କାଶୀର ଅର୍ଥ ହେଉଛି ପ୍ରକାଶ ଏବଂ କାଶୀବାସର ପୂରା ଲାଭ ମିଳିବ ଯେତେବେଳେ ଏଠାରେ ରହିଥିବା ସମୟରେ ବ୍ରହ୍ମପ୍ରକାଶ ଲାଭ ହେବ । ମୁଁ ଏହି ବିଦ୍ୱାନ ଓ ସନ୍ଥପୁରୁଷଙ୍କ ସହିତ ବହୁ ବେଦାନ୍ତଚର୍ଚ୍ଚା କଲି ଏବଂ ବେଦାନ୍ତଦର୍ଶନର କେତେଗୁଡ଼ିଏ ନୂଆ ଦୃଷ୍ଟିକୋଣ ବିଷୟରେ ବୁଝିଲି ।

ସ୍ୱାମୀ ହିରଣ୍ମୟାନନ୍ଦଙ୍କଠାରୁ ଉତ୍ତର ପାଇବାର ତିନିଦିନ ପୂର୍ବରୁ, ଦିନେ ସନ୍ଧ୍ୟାରେ ମୁଁ କାଶୀବିଶ୍ୱନାଥଙ୍କର ଲିଙ୍ଗ ଦର୍ଶନ କରିବାର ଯୋଜନା କଲି । ଶିବଲିଙ୍ଗଙ୍କର ଦର୍ଶନ କରିବା ପରେ ଓ ତାଙ୍କୁ ସ୍ପର୍ଶ କରିବାପରେ ମୁଁ ମଣିକର୍ଣ୍ଣିକା ଘାଟକୁ ଚାଲିଆସିଲି । ବହୁତ ଶବ ଜଳାଯାଉଥିଲା । ମୁଁ ପାହାଚ ଓହ୍ଲାଇ ଏକ ନିର୍ଜନ ସ୍ଥାନ ବାଛିନେଇ ଗଙ୍ଗା ଆଡ଼କୁ ମୁହଁକରି ବସିଗଲି । ସେଠାରେ ବସି ବସି ମନରେ ବାବାଜୀଙ୍କ ବିଷୟ ଚିନ୍ତା କରିବାକୁ ଲାଗିଲି । ସେ ବର୍ତ୍ତମାନ କେଉଁଠି ଥିବେ ? କ'ଣ ହିମାଳୟରେ ଭ୍ରମଣ କରୁଥିବେ ?

କେତେ ଭଲ ହୋଇଥାଆନ୍ତା ଯଦି ସେ ମୋ ପାଖରେ ବସିଥା'ନ୍ତେ ! ଥରେ ବାବାଜୀ କହୁଥିଲେ ଯେ, ସେ ବନାରସରେ ବହୁ ବର୍ଷ ବାସ କରିଥିଲେ । ସଂଯୋଗବଶତଃ ସେ କ'ଣ ଏବେ ବନାରସରେ ଥିବେ ? ଏଇଟା ଅବଶ୍ୟ ସତ ଯେ, ସେ ଯଦି ଏଠାରେ ଥାଆନ୍ତେ, ମୋତେ ଲୁଚିରହି ନ ଥାନ୍ତେ ।

ସୂର୍ଯ୍ୟ ଅସ୍ତ ଯାଉଥିଲେ ଏବଂ ମନ୍ଦିରଗୁଡ଼ିକରେ ଘଣ୍ଟି ଓ ଶଙ୍ଖ ବାଜୁଥିଲା । କିଛି ଘାଟରେ ପବିତ୍ର ଗଙ୍ଗାନଦୀର ଆରତି କରାଯାଉଥିଲା ।

''ମଧୁ !''

ମୁଁ ଜଣାଶୁଣା ସ୍ୱର ଶୁଣି ଚମକି ପଡ଼ିଲି । ବାବାଜୀଙ୍କ ବ୍ୟତୀତ ଅନ୍ୟ କେହି ଏତେ ମଧୁରତାର ସହିତ 'ମଧୁ' ଡାକିପାରିବେ ନାହିଁ । ସେ ମୋଠାରୁ ତିନି ପାହୁଣ୍ଡ ଦୂରରେ ଠିଆ ହୋଇଥିଲେ । ''ବାବାଜୀ'', ମୁଁ ଖୁସିରେ ଉଛୁଳି ପଡ଼ିଲି ଏବଂ ତାଙ୍କର ପାଦସ୍ପର୍ଶ କଲି ।

''ତେବେ ବ୍ରହ୍ମଚାରୀ ମହାରାଜ କେମିତି ଅଛନ୍ତି ?'' ସେ ମୃଦୁ ହସି କହିଲେ ଓ ନିଜର ହାତ ମୋ କାନ୍ଧରେ ରଖିଲେ ।

''ପୂରା ଠିକ୍‌ଠାକ୍ ବାବାଜୀ'' । ମୁଁ କହିଲି, ''କେବଳ ଏତିକି ଯେ, ମୁଁ ଆପଣଙ୍କର ଅଭାବ ଅନୁଭବ କରୁଥିଲି ।''

''ଠିକ୍ ଅଛି, ଏବେ ମୁଁ ଘଣ୍ଟାଏ ଦି' ଘଣ୍ଟାପାଇଁ ତୁମ ସହିତ ଅଛି । ଏହି ବିପର୍ଯ୍ୟୟର ଅଦ୍ଭୁତ ନଗରୀ କାଶୀ, ପ୍ରକାଶର ନଗରୀ ଏମିତି ଅନେକ ଉନ୍ନତ ଆତ୍ମାଙ୍କର ହେଉଛି ନିବାସ ସ୍ଥାନ, ଯେଉଁମାନେ ପ୍ରାୟ ଲୁକ୍କାୟିତ ଭାବରେ ରହିଥାଆନ୍ତି । ଏକ ବିଶେଷ ଉଦ୍ଦେଶ୍ୟ ପାଇଁ ତୈଲଙ୍ଗ ସ୍ୱାମୀ ଓ ଶ୍ୟାମାଚରଣ ଲାହିଡ଼ୀ ପ୍ରସିଦ୍ଧ ହୋଇଗଲେ । କିନ୍ତୁ ପ୍ରାୟ ଏପରି ଲୋକ ଅଜ୍ଞାତ ହୋଇ ରହନ୍ତି । ସେହି ଅଜ୍ଞାତ ଆତ୍ମାମାନେ ବହୁପରିଚିତ ମହାତ୍ମାମାନଙ୍କଠାରୁ ମଧ୍ୟ ଅଧିକ ମହାନ୍ ଅଟନ୍ତି ।

''ମୁଁ ସେହି ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣଙ୍କ ସହିତ ତୁମର ସାକ୍ଷାତ କରାଇବାକୁ ଚାହୁଁଛି । ସେ ମଣିକର୍ଣ୍ଣିକା ଶ୍ମଶାନ ଘାଟରେ ରହନ୍ତି । ସେ ହେଉଛନ୍ତି ଜଣେ ଅଘୋରୀ । ସାଧାରଣ ଜନତା ତାଙ୍କ ପ୍ରତି ବିତୃଷ୍ଣ, କାରଣ ସେମାନଙ୍କର ବିଶ୍ୱାସ ଯେ ସେ ଅଧାପୋଡ଼ା ଶବଗୁଡ଼ିକର ମାଂସ ଖାଆନ୍ତି । ଏମିତିରେ ବି ସେ ପାଗଳ ପରି ବ୍ୟବହାର କରନ୍ତି । କେବେ ସ୍ନାନ କରନ୍ତି ନାହିଁ । ତାଙ୍କର ନଗ୍ନ ଶରୀର ଧୂଳି ମଳିନ ହୋଇ ରହିଥାଏ । ସେ ଶ୍ମଶାନର ଏକ ଭଙ୍ଗାରୁଜା ଚାଳିଆରେ ରହନ୍ତି ଯେଉଁଠାରେ ମଣିଷ ଓ ଜନ୍ତୁମାନଙ୍କ ହାଡ଼ ଗଦା ହୋଇଥାଏ । କିନ୍ତୁ ଜାଣିରଖ, ଏଗୁଡ଼ାକ ହେଲା ପର୍ଦ୍ଦା, ପ୍ରଭାବକାରୀ ଛଦ୍ମବେଶ ।

ଏହାଦ୍ୱାରା କେହି ତାଙ୍କୁ ବିରକ୍ତ କରିବେ ନାହିଁ ଏବଂ ସେ ଆଧ୍ୟାତ୍ମିକ ଏକାନ୍ତବାସର ପୂରା ଆନନ୍ଦ ଲାଭ କରି ଅଳ୍ପ କେତେକ ଯୋଗ୍ୟ ଲୋକଙ୍କୁ ତାହାର କିଛି ଅଂଶ ଦାନ କରିପାରିବେ । ଚାଲ ଯିବା ।''

ଅର୍ଦ୍ଧ ଅନ୍ଧକାର ମଧ୍ୟରେ ଆମେ ଶ୍ମଶାନ ପାର ହୋଇ ମଣିକର୍ଣ୍ଣିକା ଘାଟର ଏକ ନିର୍ଜନ ସ୍ଥାନରେ ପହଞ୍ଚିଗଲୁ । ଟିଣର ଛାତ ଥିବା ଏକ ଛୋଟ ଚାଳିଆ ଆଡୁ ହିନ୍ଦୀରେ ବଛା ବଛା ଗାଳିର ଶବ୍ଦ ଆସୁଥାଏ । ପାଖରେ ପହଞ୍ଚିବା ପରେ ଆମେ ଲଙ୍ଗଳା, ଦାଢ଼ି ରଖିଥିବା, ଜଟାଗୁଡ଼ାକୁ ସାପ ପରି ଗୁଡ଼ାଇଥିବା ଜଣେ ମୋଟା ଲୋକଙ୍କୁ ଦେଖିଲୁ । ସେ ଗୋଟାଏ କୋଣରେ ବସିଥିଲେ ଓ ଜଣେ ସ୍ତ୍ରୀ ଏବଂ ପୁରୁଷ ତାଙ୍କ ସମ୍ମୁଖରେ ଠିଆ ହୋଇଥିଲେ । ଚାଳିଆ ଭିତରେ ଜଳୁଥିବା କିରାସିନି ତେଲର ଡିବିରିର ଆଲୁଅରେ ମୁଁ ଏଣେତେଣେ ପଡ଼ିଥିବା ହାଡ଼ଗୁଡ଼ିକୁ ଦେଖିପାରିଲି । ବାବାଜୀ ମୋତେ ଆଗକୁ ଯିବାକୁ ଦେଲେ ନାହିଁ । ''ରହ'', ସେ ଧୀରେ କହିଲେ, ''ସେ ଯାହା କରୁଛନ୍ତି, ତାଙ୍କୁ କରିଦେବାକୁ ଦିଅ ।''

ଅଘୋରୀ ପ୍ରାଣପଣେ ଚିତ୍କାର କରୁଥାଆନ୍ତି, ''ତୁମେ ଭାବୁଛ ମୋତେ ବୋକା ବନାଇବ, ଧୋକ୍କାବାଜ୍, ତୁମେ କରଜ ଦେବା ଧନ୍ଦା କରୁଛ ଓ ତା' ଉପରେ ଏତେ ସୁଧ ଖାଉଛ ! ରକ୍ତଶୋଷା, କେତେ ଲୋକଙ୍କୁ ତୁମେ ଠକାଠକି କରି ତାଙ୍କର ଛୋଟକାଟିଆ ଜମିଜାଗାରୁ ବେଦଖଲ କରିଛ, କାରଣ ସେମାନେ ତୁମର ଚଢ଼ାଦରର ସୁଧ ସହିତ ଋଣ ସୁଝିପାରି ନାହାନ୍ତି ବୋଲି ? ସେମାନେ ଅନନ୍ୟୋପାୟ ହୋଇ ଆତ୍ମହତ୍ୟା କରିଛନ୍ତି, କାରଣ ସେମାନଙ୍କର ସର୍ବସ୍ୱ ଚାଲିଯାଇଛି । ବଦମାସ୍, ସେଥିରେ ପୁଣି ମୋ ପାଇଁ ମିଠେଇ ଆଣିଛ ? ଏଥିରେ କ'ଣ ତୁମର ପାପକ୍ଷାଳନ ହେବ ? ଜାରଜ ସନ୍ତାନ ! ବାହାରିଯା, ତୁମର ମିଠେଇ ଦରକାର ନାହିଁ । ସେଗୁଡ଼ା ମୋ ପାଇଁ ବିଷ ସମାନ । ତୁମକୁ ମୁଁ ଧକ୍କା ମାରି ବାହାର କରିବା ପୂର୍ବରୁ ବାହାରିଯା ଏଠୁ !''

ସାହୁକାର, ଯେ ରେଶମୀ କମିଜ ପିନ୍ଧିଥିଲା, କ'ଣ ଗୋଟାଏ ଗୁଣୁଗୁଣୁ ହେଲା, ଯାହାକୁ ମୁଁ ଠିକ୍‌ଭାବରେ ଶୁଣିପାରିଲି ନାହିଁ । କିନ୍ତୁ ପ୍ରତ୍ୟୁତ୍ତରରେ ଅଘୋରୀ ତା' ଆଡ଼କୁ ମିଠେଇଡବା ଫିଙ୍ଗିଲେ । ଗୋଟାଏ ଡବା ମୋ ଆଡ଼କୁ ଆସି ପ୍ରାୟ ମୋ ମୁଣ୍ଡରେ ବାଜି ପଡ଼ିଲା । ରେଶମୀ କମିଜପିନ୍ଧା ଲୋକ ଡରିଯାଇ ପଳେଇଗଲା । ଅଘୋରୀ ତାକୁ ମାରିବାକୁ ବାହାରିଥିଲେ ।

ଏବେ ସ୍ତ୍ରୀଲୋକ ଜଣକ ଏକୁଟିଆ ତାଙ୍କ ସାମ୍ନାରେ ଥିଲେ । ମୁଁ ତାଙ୍କର ସାହସ ଦେଖି ଆଶ୍ଚର୍ଯ୍ୟ ହେଲି । ତାଙ୍କ ସମ୍ମୁଖରେ ଯାହା ଯାହା ଘଟିଗଲା, ତାକୁ ଦେଖି ମଧ୍ୟ ସେ

ସେଠାରେ ଠିଆହୋଇ ରହିଲେ । ଅଘୋରୀ ତାଙ୍କ ଆଡ଼କୁ ବୁଲିପଡ଼ି କହିଲେ, ''ଏ ସ୍ତ୍ରୀଲୋକ, ତୁ ଏଠାକୁ କାହିଁକି ଆସିଛୁ ? ମୁଁ ପାଗଳ, ଦେଖିଲୁ ନାହିଁ ? ତୋତେ ମୁଁ ଆଘାତ କରିବା ପୂର୍ବରୁ ପଳାଇଯା ।''

ସ୍ତ୍ରୀଲୋକ ଜଣକ ନିଜ ଜାଗାରେ ଠିଆହୋଇ ରହିଲେ । ''ମୋତେ ଭୟ ଲାଗୁନି ବାବା'', ସେ କହିଲେ । ''ମୁଁ ଶୁଣିଛି ବଡ଼ ବଡ଼ ସନ୍ଥମାନେ ପାଗଳ ପରି ବ୍ୟବହାର କରନ୍ତି । ମୁଁ ଦୁନିଆର ସବୁ ରଙ୍ଗ ଦେଖିସାରିଛି, ମୁଁ ବିତୃଷ୍ଣାରେ ଭରିଯାଇଛି । ମୁଁ କେବଳ 'ସତ୍ୟ' ଚାହେଁ । ଆପଣ ଯାହା ଚାହିଁବେ, ମୁଁ ତାହା କରିବି । ମୁଁ ନିଜକୁ ସମର୍ପଣ କରୁଛି ।''

ଅଘୋରୀ ହୋ ହୋ ହୋଇ ହସିଉଠିଲେ, ''ହାଃ ! ହାଃ ! କେଡ଼େ ମହାନ ସାଧକ ! ତୁମେ ନିଜର ସାରାଜୀବନ ସିନେମାର କାଳ୍ପନିକ ଦୁନିଆରେ ବିତାଇଛ, ଆଉ ତୁମେ ଭାବିଛ ଯେ ତୁମର ଅଭିନୟ-ପ୍ରତିଭା ଦ୍ୱାରା ସମସ୍ତଙ୍କୁ ଓଲୁ ବନାଇବ ? 'ସମର୍ପଣ' ? ବାଜେକଥା । ତୁମେ ଯାହା ବି କରିପାରିବ ? ଠିକ୍ ଅଛି, ଲୁଗାପଟା ବାହାର କର, ମୁଁ ତୁମର ସ୍ତନ୍ୟପାନ କରିବି ଓ ତୁମ ସ୍ତନକୁ ଲେହନ କରିବି ।'' ସ୍ତ୍ରୀଲୋକ ଜଣକ ଅବାକ୍ ହୋଇ କିଛି ସମୟପାଇଁ ନିରବରେ ଠିଆହୋଇ ରହିଲେ । ତା'ପରେ ଚିତ୍କାର କଲେ, ''କୁତ୍ସିତ ପୁରୁଷ, ରାକ୍ଷସ ! ମୁଁ ଭାବିଥିଲି ତୁ ଜଣେ ସନ୍ଥ ! ତୋର ଜେଲ ଭିତରେ ରହିବା ଉଚିତ ।'' ତା'ପରେ ଉଚ୍ଚସ୍ୱରରେ ଚିତ୍କାର କରି କରି ଚାଳିଆରୁ ବାହାରି ଆସିଲେ ।

ଆମେ କିଛି ସମୟ ଅପେକ୍ଷା କଲୁ । ଅଘୋରୀ ଖୁସିରେ ତାଳିମାରିଲେ, ''ବୋକା । ଭଗବାନ ! କେଜାଣି କେଉଁଠୁ ଆସିଯାଆନ୍ତି, ବାଜେକଥା କହନ୍ତି । ମୁଁ ସେମାନଙ୍କୁ ତଡ଼ିଦେଲି । ହୋ ! ଯୋଗୀ ମହାରାଜ, ଅନ୍ଧାରରେ ଲୁଚିରହନ୍ତୁ ନାହିଁ, ଆସନ୍ତୁ । କ୍ଷମା କରିବେ, ଅପେକ୍ଷା କରାଇଲି ।''

ଆମେ ଚାଳିଆରେ ପଶିଲୁ । ଅଘୋରୀ ଠିଆହୋଇପଡ଼ି ସ୍ୱାଗତ କଲେ । ''ବସିବା ହୁଅନ୍ତୁ'', ସେ କହିଲେ ଏବଂ ନିଜେ ବସିବା ପୂର୍ବରୁ ଆମର ବସିବା ପର୍ଯ୍ୟନ୍ତ ଅପେକ୍ଷା କଲେ । ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେ, ଚାରିପଟେ ମଇଳା ଏବଂ ଅପରିଷ୍କାର ଜିନିଷ ଭର୍ତ୍ତି ହୋଇଥିବା ସତ୍ତ୍ୱେ କୌଣସି ଦୁର୍ଗନ୍ଧ ନ ଥିଲା । ଓଲଟି ମୋତେ ଗୋଲାପ ଫୁଲର ହାଲ୍କା ସୁଗନ୍ଧର ଅନୁଭବ ହେଲା ।

: ''ଯୋଗୀ ମହାରାଜ, ବହୁତ ଦିନ ହେଲା ଦର୍ଶନ ଦେଇ ନ ଥିଲେ । ଆଶା କରେ ଆପଣଙ୍କୁ ମୋର ନାଟକ ପସନ୍ଦ ହେଲା । ଆଚ୍ଛା ତେବେ ଆପଣ ଏହି ଯୁବକକୁ ଖୋଜି ପାଇଲେ । ଆହା, ମୋତେ ଡରୁଛ ?''

''ନା'', ମୁଁ କହିଲି ।

''ଆପଣଙ୍କୁ ଭେଟିବାପାଇଁ ନେଇଆସିଲି'', ବାବାଜୀ କହିଲେ, ''ଆମ ପାଖରେ ବେଶି ସମୟ ନାହିଁ । ଶ୍ରୀଗୁରୁ ଆମକୁ ଆପଣଙ୍କୁ ସାକ୍ଷାତ କରିବାକୁ କହିଛନ୍ତି । ମୁଁ ଚାହୁଁଛି ଏହି ଯୁବକ ଆପଣଙ୍କର କାୟା ପାଲଟିବା ଦେଖୁ । ଏପର୍ଯ୍ୟନ୍ତ ସେ ଏପରି କୌଣସି ଜିନିଷ ଦେଖି ନାହିଁ ।''

''ଯେମିତି ଆପଣଙ୍କ ଇଚ୍ଛା ଯୋଗୀ ମହାରାଜ, କିନ୍ତୁ ଆପଣ ଏହାଠାରୁ ଅଧିକ ଉତ୍ତମ ଜିନିଷ ଦେଖାଇ ପାରିଥା'ନ୍ତେ । ଛାଡ଼ନ୍ତୁ, ଏବେ ଦେଖନ୍ତୁ ।''

ମୋର ଆଶ୍ଚର୍ଯ୍ୟଚକିତ ଆଖି ସାମ୍ନାରେ ଅଘୋରୀଙ୍କର ଶରୀର ଅଦୃଶ୍ୟ ହୋଇଗଲା ଏବଂ ତାଙ୍କ ଜାଗାରେ ଏକ ଅତ୍ୟନ୍ତ ସୁନ୍ଦର ଯୁବକ ପ୍ରକଟିତ ହେଲା । ତାଙ୍କର ପରିଧାନରେ ଥିଲା ଲାଲ ରଙ୍ଗର ରେଶମୀ ଧୋତି ଓ ଗଳାରେ ଥିଲା ସ୍ଫଟିକର ମାଳା । ମୁଁ ମୋ ଜୀବନରେ ଶ୍ରୀଗୁରୁଙ୍କୁ ଛାଡ଼ି ଏତେ ସୁନ୍ଦର ମଣିଷ କେବେ ଦେଖି ନ ଥିଲି ।

ଯେତେବେଳେ ଆମେ ଯିବାପାଇଁ ଉଠିଲୁ, ବାବାଜୀ କହିଲେ, ''ଏହା ହିଁ ହେଉଛି ତାଙ୍କର ଅସଲ ରୂପ । ଯାହାକୁ ପୂର୍ବରୁ ଦେଖିଥିଲ ତାହା ହେଉଛି ପର୍ଦ୍ଦା, ଛଦ୍ମବେଶ, ଏବେ ଆଶ୍ରମକୁ ଫେରିଯାଅ । ଆଜି ଯାହା ବି ଦେଖିଲ, ତା' ବିଷୟରେ କାହାକୁ ଗୋଟାଏ ଶବ୍ଦ ମଧ୍ୟ କହିବ ନାହିଁ । ଖୁବ୍ ଶୀଘ୍ର ବେଲୁଡ଼ ମଠରୁ ଚିଠି ଆସିଯିବ । ସେଠାରେ ଯାଇ କିଛି ସମୟ ବିତାଅ ।'' ମୁଁ ସେମାନଙ୍କୁ ସାଷ୍ଟାଙ୍ଗ ଦଣ୍ଡବତ କଲି ଓ ମୁଁ ସିଧାହୋଇ ଠିଆହେବା ପୂର୍ବରୁ ସେ ଦୁଇଜଣଯାକ ଚାଲିଯାଇଥିଲେ ।

ମୁଁ ଡେରିରେ ଆଶ୍ରମରେ ପହଞ୍ଚିଲି । ସିଧା ନିଜର କୋଠରିକୁ ଗଲି । କିଛି ସମୟ ଧ୍ୟାନରେ ବସିଲି, ତା'ପରେ ଶୋଇଗଲି ।

× × ×

ସ୍ୱାମୀ ହିରଣ୍ମୟାନନ୍ଦଙ୍କଠାରୁ ଚିଠି ଆସିଲା । ମୋତେ ବେଲୁଡ଼ ଯାଇ ନବବ୍ରହ୍ମଚାରୀମାନଙ୍କପାଇଁ ଥିବା ପ୍ରଶିକ୍ଷଣ କେନ୍ଦ୍ରରେ ଯୋଗ ଦେବାର ଅନୁମତି ଦିଆଯାଇଥିଲା । ମୋତେ ସେଠାରେ ପହଞ୍ଚି ସହାୟକ ମହାସଚିବ ସ୍ୱାମୀ ଆତ୍ମସ୍ଥାନନ୍ଦଙ୍କୁ ନିଜର ଆସିବାର ଖବର ଦେବାର ଥିଲା । ମୁଁ ରେଳଗାଡ଼ିରେ କଲିକତା ଯାଇ ବେଲୁଡ଼ ମଠରେ ପହଞ୍ଚିଗଲି । ମୋର ସାକ୍ଷାତ୍‌କାର ନେବା ପରେ ସହାୟକ ସାମାନ୍ୟ ସଚିବ ପି.ପି.ଟି.ସି.ରେ ମୋତେ ଭର୍ତ୍ତି କରିଦେଲେ । ତାଙ୍କ ସହିତ କଥାବାର୍ତ୍ତା କରି ଜାଣିଲି ଯେ ସେ ଜଣେ ଉତ୍ତମ ବ୍ୟକ୍ତି ଥିଲେ । ବେଲୁଡ଼ ମଠରେ ମୋତେ ରାମକୃଷ୍ଣ ସଂପ୍ରଦାୟର ଅଧ୍ୟକ୍ଷ ଏବଂ ମହାସଚିବଙ୍କ ସହିତ ବରିଷ୍ଠ ସନ୍ନ୍ୟାସୀମାନଙ୍କୁ ଭେଟିବାର ଏବଂ ସେମାନଙ୍କ ଆଶୀର୍ବାଦ ଲାଭ କରିବାର ସୁଯୋଗ ମିଳିଲା ।

ଦି' ମାସ ପରେ ମୋର ପରିଚୟ ଚନ୍ଦନ ମହାରାଜଙ୍କ ସହିତ କରାଇ ଦିଆଗଲା । ସେ ପଡ଼ିଶା ରାଜ୍ୟ ବିହାରର ଦେଓଘରର ବାଳକମାନଙ୍କପାଇଁ ଉଦ୍ଦିଷ୍ଟ ଆବାସିକ ବିଦ୍ୟାଳୟ 'ରାମକୃଷ୍ଣ ବିଦ୍ୟାପୀଠ'ର ପ୍ରାଚାର୍ଯ୍ୟ ଥିଲେ । ତାଙ୍କର ଅନୁରୋଧକ୍ରମେ ମୋର ବଦଳି ବିଦ୍ୟାପୀଠକୁ କରାଇ ଦିଆଗଲା । ବିଦ୍ୟାପୀଠରେ ଜୀବନ ଅଲଗା ପ୍ରକାରର ଥିଲା । ମୁଁ ଉଚ୍ଚଶ୍ରେଣୀର ବିଦ୍ୟାର୍ଥୀମାନଙ୍କୁ ଇଂରେଜୀ ପଢ଼ାଉଥିଲି । ମୋତେ ସିନିୟର ଷ୍ଟୁଡେଣ୍ଟମାନଙ୍କର ହଷ୍ଟେଲ ୱାର୍ଡେନ ଦାୟିତ୍ୱ ଦିଆଗଲା । ଖାଲି ସମୟରେ ମୁଁ ଆଗ୍ରହୀ ଛାତ୍ରମାନଙ୍କୁ କରାଟେ ଏବଂ ଯାଦୁବିଦ୍ୟା ଶିଖାଉଥିଲି । ଗଣ୍ଡଗୋଳିଆ ଉଚ୍ଚଶ୍ରେଣୀର ବାଳକମାନେ ଶୀଘ୍ର ମୋର ଭଲ ଦୋସ୍ତ ହୋଇଗଲେ । ମୋର ନାଁ 'କରାଟେ ମହାରାଜ' ଓ 'ମ୍ୟାଜିକ ମହାରାଜ' ରଖାଗଲା । ମୋତେ କେନ୍ଦ୍ରର ଅଧ୍ୟକ୍ଷଙ୍କ ସହିତ ସାରା ହୁଗଳୀ ଜିଲାର ଯାତ୍ରା କରିବାର ଅବସର ମିଳିଲା । ସେହି ସମୟରେ ମୁଁ ଶ୍ରୀରାମକୃଷ୍ଣ ସମ୍ପର୍କିତ ସ୍ଥାନଗୁଡ଼ିକୁ ଯାଇପାରିଲି । ଉଦାହରଣ ସ୍ୱରୂପ – କାମାରପୁକୁର, ଜୟରାମବାଟୀ ଇତ୍ୟାଦି । ଗ୍ରାମ୍ୟ ବଙ୍ଗଳାଦେଶ ମୋର ମନ ମୋହିନେଲା ।

ଶିବଙ୍କର ପ୍ରସିଦ୍ଧ ବୈଦ୍ୟନାଥ ମନ୍ଦିର, ଯାହାଙ୍କୁ ପ୍ରସିଦ୍ଧ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କ ମଧ୍ୟରୁ ଅନ୍ୟତମ ବୋଲି କୁହାଯାଏ, ତାହା ବିଦ୍ୟାପୀଠରୁ ଦୂରରେ ନ ଥିଲା । ମୁଁ ସେଠାକୁ ଦୁଇଥର ଯାଇଥିଲି । ଆମଷ୍ଟରଡାମ୍‌କୁ ଛାଡ଼ି ବୋଧହୁଏ ଏହା ଏକମାତ୍ର ସ୍ଥାନ, ଯେଉଁଠାରେ ଦୋକାନରେ ଗଞ୍ଜେଇ ବିକ୍ରି ହେବାର ଅନୁମତି ଥିଲା । ଶ୍ରଦ୍ଧାଳୁମାନେ ଶିବଙ୍କୁ ଗଞ୍ଜେଇ ଚଢ଼ାନ୍ତି ଓ ପବିତ୍ର ପ୍ରସାଦକୁ ଘରକୁ ନେଇ ତା'ର ଆନନ୍ଦ ଉପଭୋଗ କରନ୍ତି । ପାଖରେ ହିଁ ସ୍ୱର୍ଗୀୟ ବାଲାନନ୍ଦ ବ୍ରହ୍ମଚାରୀଙ୍କଦ୍ୱାରା ଧ୍ୟାନ କରିବା ଉଦ୍ଦେଶ୍ୟରେ ନିର୍ମିତ ଗୁମ୍ଫାଗୁଡ଼ିକ ଥିଲା । ଶ୍ରୀବାଲାନନ୍ଦ ଶ୍ରୀ ଶ୍ୟାମଚରଣ ଲାହିଡ଼ୀଙ୍କଠାରୁ କ୍ରିୟାଯୋଗର ଦୀକ୍ଷା ନେଇଥିଲେ ।

ମୁଁ ପ୍ରାୟ ବର୍ଷେ ଦେଓଘରରେ ବିତାଇଲି । ପୁଣି ଆସ୍ଥାନ ପରିବର୍ତ୍ତନର ଇଙ୍ଗିତ ମିଳିଲା । ଦିନେ ବାବାଜୀ ସ୍ୱପ୍ନରେ ମୋତେ କହିଲେ, "ସ୍କୁଲଶିକ୍ଷକ ଭୂମିକାରେ ଯଥେଷ୍ଟ ସମୟ ହୋଇଗଲା । ଏଥର ଚାଲ, ବର୍ତ୍ତମାନ ଘରକୁ ଯାଅ ।" ଏହା ପରିଷ୍କାର ଭାବରେ ବାରବାର ତିନିଥର କୁହାଗଲା ।

ପରଦିନ ମୁଁ ଲୁଗାପଟା ବାନ୍ଧି ଦେଓଘର ଛାଡ଼ିଦେଲି । କିଛିଦିନ ପରେ ମୁଁ ଫେରିଆସି ଘରେ ଥିଲି । ସେତେବେଳକୁ ମୋର ବାପା ମା' ଚେନ୍ନାଇରେ ସ୍ଥାୟୀ ହୋଇଯାଇଥିଲେ । ଦିନେ ଦ୍ୱିପ୍ରହର ପରେ ମୁଁ ତାଙ୍କର ଚେନ୍ନାଇସ୍ଥିତ ନୂଆ ଘରେ ଯାଇ ପହଞ୍ଚିଗଲି । ମୋର ଅଚାନକ ଭାବରେ ଅଦୃଶ୍ୟ ହୋଇଯିବା ଓ ପୁଣି ଫେରିଆସିବା ଏମିତି ଗୋଟାଏ ସାଧାରଣ ଘଟଣାରେ ପରିଣତ ହୋଇଯାଇଥିଲା ଯେ, ମୁଁ ଫେରିଆସିବା ପରେ କୌଣସି ବିଶେଷ

ପ୍ରତିକ୍ରିୟା ହେଲା ନାହିଁ । ତେବେ ଏଇଟା ଅବଶ୍ୟ ସତ ଯେ, ମୁଁ ଏପର୍ଯ୍ୟନ୍ତ ବଞ୍ଚିଛି ଦେଖି ବାପାମା' ଆଶ୍ୱସ୍ତ ହେଲେ ।

ଖୁବ୍ ଚଞ୍ଚଳ ମୁଁ ନିତ୍ୟନୈମିତ୍ତିକ କ୍ରିୟାକଳାପରେ ମିଳିମିଶି ଗଲି । ଫାର୍ମାସୀ କାମରେ ବାପାଙ୍କୁ ସାହାଯ୍ୟ କରିବାକୁ ଲାଗିଲି । ସମୟ ପାଇଲେ ରାମକୃଷ୍ଣ ମିଶନ କେନ୍ଦ୍ର ଓ ଆଧ୍ୟାତ୍ମିକ ରୂପରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକୁ ଯାଉଥିଲି । ଆମର ନୂଆଘର ସମୁଦ୍ରକୂଳରୁ ଦୂରରେ ନ ଥିଲା, ତେଣୁ ମୁଁ ପ୍ରାୟ ସେଠାକୁ ଯାଉଥିଲି । ମୁଁ ଜେ. କୃଷ୍ଣମୂର୍ତ୍ତିଙ୍କ ବହି ପଢ଼ିଥିଲି କିନ୍ତୁ ଏବେ ପ୍ରଥମଥରପାଇଁ କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍‌ର ମୁଖ୍ୟାଳୟ ବସନ୍ତବିହାରରେ ତାଙ୍କର ସମ୍ମୁଖରେ ବସି ତାଙ୍କର ବକ୍ତୃତା ଶୁଣିଲି । ମୁଁ ତାଙ୍କର ବ୍ୟକ୍ତିତ୍ୱ ଏବଂ ତାଙ୍କର ଯେଉଁ କଥାଗୁଡ଼ିକ ସିଧା ଓ ସଠିକ ଥିଲା, ତାହାଦ୍ୱାରା ମଧ୍ୟ ପ୍ରଭାବିତ ହେଲି, କିନ୍ତୁ ତାଙ୍କୁ ଭେଟିବାପାଇଁ ମୋର କିଛି ଆଗ୍ରହ ହେଲା ନାହିଁ ।

ସେ ସମୟରେ ସ୍ୱାମୀ ତପସ୍ୟାନନ୍ଦ ଚେନ୍ନାଇର ରାମକୃଷ୍ଣ ମିଶନର ଅଧ୍ୟକ୍ଷ ଥିଲେ । ସେ ତ୍ରିଭେନ୍ଦ୍ରମର ରାମକୃଷ୍ଣ ଆଶ୍ରମରେ ଅଧ୍ୟକ୍ଷ ଥିବା ସମୟରୁ ମୁଁ ତାଙ୍କୁ ଭଲଭାବରେ ଜାଣିଥିଲି । ସେ ରାମକୃଷ୍ଣ ମିଶନ ୱାର୍ଲ୍‌ଡ ୱାଇଡ୍‌ର ଉପାଧ୍ୟକ୍ଷ ମଧ୍ୟ ଥିଲେ । ମୁଁ ଏକଥା ମଧ୍ୟ ଜାଣିଲି ଯେ ମିଶନର ବେଲୁଡ଼ ମଠରେ ରହୁଥିବା ଅଧ୍ୟକ୍ଷଙ୍କ ବ୍ୟତୀତ ସ୍ୱାମୀ ତପସ୍ୟାନନ୍ଦଙ୍କର ନିଜେ ବାଛିଥିବା ଯୋଗ୍ୟ ବ୍ୟକ୍ତିମାନଙ୍କୁ ରାମକୃଷ୍ଣଙ୍କର ମୂଳମନ୍ତ୍ରର ଦୀକ୍ଷା ଦେବାର ଅଧିକାର ଥିଲା । କୌଣସି କାରଣବଶତଃ ମୋର ତାଙ୍କଠାରୁ ଦୀକ୍ଷା ନେବାର ପ୍ରବଳ ଇଚ୍ଛା ହେଲା । ଗୋଟିଏ ରବିବାର ଦିନ ମୁଁ ମଠକୁ ଯାଇ ତାଙ୍କୁ ମୋର ଇଚ୍ଛା ବିଷୟରେ ଜଣାଇଲି । ସାମାନ୍ୟ ଇତସ୍ତତଃ ମଧ୍ୟ ନ କରି ସେ କହିଲେ, ''ପହରଦିନ ଗୁରୁପୂର୍ଣ୍ଣମୀ, ଦୀକ୍ଷା ନେବାପାଇଁ ପ୍ରସ୍ତୁତ ହୋଇ ଆସ । ଆସିବା ପୂର୍ବରୁ ସ୍ନାନ କରିବ ଏବଂ ଗୋଟିଏ ନୂଆ ଧୋତି ଆଣିବ, କିଛି ଫୁଲ ଓ ଶ୍ରୀରାମକୃଷ୍ଣଙ୍କୁ ଦକ୍ଷିଣା ଦେବାପାଇଁ କିଛି ପଇସା ।''

ଏହିପରି ଭାବରେ ଗୁରୁପୂର୍ଣ୍ଣିମା ଦିନ ମୋତେ ଶ୍ରୀରାମକୃଷ୍ଣଙ୍କର ମନ୍ତ୍ରର ଦୀକ୍ଷା ମିଳିଲା । ସ୍ୱାମୀ ତପସ୍ୟାନନ୍ଦଙ୍କ ଚେହେରା ଉଜ୍ଜ୍ୱଳ ହୋଇଉଠିଥାଏ । ସେ ମୋତେ ଦୀକ୍ଷା ଦେବା ସମୟରେ କିଛି ମିନିଟ୍ ପାଇଁ ସମ୍ପୂର୍ଣ୍ଣ ଭିନ୍ନ ଦିଶୁଥାଆନ୍ତି । ମୋର ହୃଦୟ ଖୁସିରେ ଭରିଗଲା, ମୁଁ ସୁସ୍ପଷ୍ଟ ଭାବରେ ନିଜର ହୃଦୟଚକ୍ରରେ ଠାକୁରଙ୍କୁ ବସିଥିବାର ଦେଖିଲି ।

ବାବାଜୀଙ୍କଠାରୁ ଆହୁରି ଗୋଟିଏ ଇଙ୍ଗିତର ଅପେକ୍ଷା କରି, ମୁଁ ମୋର ମା' ବାପାଙ୍କ ସହିତ ଆଠମାସ ବିତାଇଲି ।



#  ଆଲନ୍ଦୀ, ଶିର୍ଡୀ ଏବଂ ରୁଦ୍ଧଦ୍ୱାରର ଅପରପାର୍ଶ୍ୱ

ଡାକରା ଆସିଲା, ଯେତେବେଳେ ଦିନେ ସନ୍ଧ୍ୟାରେ ମୁଁ ଚେନ୍ନାଇରେ ଥିଓସଫିକାଲ ସୋସାଇଟିର ମୁଖ୍ୟାଳୟକୁ ଲାଗିଥିବା ସମୁଦ୍ରକୂଳ (ଏଲିୟଟ ବୀଚ)ରେ ବସି ଚୁପଚାପ ସମୁଦ୍ରର ଲହରୀଗୁଡ଼ିକୁ ଦେଖୁଥିଲି । ବାତାବରଣ ଏତେ ଶାନ୍ତ ଥିଲା ଯେ ଚେନ୍ନାଇର ଉତ୍ତପ୍ତ ଗ୍ରୀଷ୍ମକାଳରେ ମଧ୍ୟ ମୁଁ ଶୋଇଗଲି । ବାବାଜୀଙ୍କର ପରିଚିତ ସ୍ୱର ଶୁଣି ଉଠିପଡ଼ିଲି, "ଆଲନ୍ଦୀରେ ଜ୍ଞାନେଶ୍ୱରଙ୍କର ସମାଧିକୁ ଯାଅ, ତିନି ଦିନ ଭିତରେ ବାହାରିପଡ଼ ।"

ପରଦିନ ମୁଁ ରାମକୃଷ୍ଣ ମିଶନର ପୁସ୍ତକାଳୟରେ ଅଧଘଣ୍ଟାଏ କାଳ ଆଲନ୍ଦୀର ଅବସ୍ଥିତିର ସନ୍ଧାନରେ ବିତାଇଲି । ସନ୍ଥ ଜ୍ଞାନେଶ୍ୱରଙ୍କର ଗୋଟିଏ କ୍ଷୁଦ୍ର ଜୀବନୀର ପୃଷ୍ଠା ଓଲଟାଉ ଓଲଟାଉ ମୁଁ ଜାଣିପାରିଲି ଯେ ଆଲନ୍ଦୀ ପୁନାଠାରୁ ଅଠର କିଲୋମିଟର ଦୂର ଥିଲା । ଦି'ଦିନ ପରେ ମୁଁ ପୁନା ଯାଉଥିବା ରେଳଗାଡ଼ି ଧରିଲି ଓ ସେଠାରୁ ବସ୍ ଧରି ଆଲନ୍ଦୀରେ ପହଞ୍ଚିଗଲି ।

ତାହା ପ୍ରକୃତରେ ଏକ ସୁନ୍ଦର ଓ ଶାନ୍ତ ଗାଆଁ ଥିଲା । ମୁଁ ଜ୍ଞାନେଶ୍ୱରଙ୍କର ସମାଧି ସ୍ଥଳକୁ ଗଲି । ସମାଧିର ଆଖପାଖରେ ଅନେକ ଲୋକ ବସିଥିଲେ । କେତେଜଣ ଜ୍ଞାନେଶ୍ୱରୀ ପଢୁଥିଲେ । ତାହା ହେଉଛି ସନ୍ଥ ଜ୍ଞାନେଶ୍ୱରଙ୍କଦ୍ୱାରା ମରାଠୀରେ ଗୀତାର ଅନୁବାଦ ଓ ବ୍ୟାଖ୍ୟା । କେତେଜଣ ଆଖି ବୁଜି ଧ୍ୟାନରେ ବସିଥିଲେ । ଅଧିକାଂଶ ଲୋକ ଅଧା ବୟସର ଥିଲେ, ବୋଧହୁଏ ମରାଠୀ । ବାବାଜୀ କେଉଁଠାରେ ଦିଶିଲେ ନାହିଁ । ମୁଁ ସମାଧି ପାଖରେ ଏକ ପିପ୍ପଳୀ ବୃକ୍ଷ ତଳେ ବସିଗଲି ଓ ଗଭୀର ଧ୍ୟାନରେ ବୁଡ଼ିଗଲି ।

ମୁଁ ଭାବୁଛି, ଏଠାରେ ସନ୍ଥ ଜ୍ଞାନେଶ୍ୱରଙ୍କ ବିଷୟରେ ଏକ ସଂକ୍ଷିପ୍ତ ଟିପ୍ପଣୀ ଦେବା ଉଚିତ ହେବ ।

ଶୁଣାଯାଏ ଯେ ଜ୍ଞାନେଶ୍ୱରଙ୍କ ପିତା ବିଠଲପନ୍ତ ତାଙ୍କର ପତ୍ନୀ ରୁକ୍ମିଣୀବାଈଙ୍କୁ ନ କହି ସନ୍ନ୍ୟାସୀ ହେବାକୁ ବନାରସ ଚାଲିଗଲେ । କାଶୀରେ ସେ ଶ୍ରୀ ରାମାନନ୍ଦ ସ୍ୱାମୀଙ୍କର ଶିଷ୍ୟ ହୋଇଗଲେ । ଯେବେ ରାମାନନ୍ଦ ସ୍ୱାମୀ ଆଲନ୍ଦୀ ଆସିଲେ ଏବଂ ସଂଯୋଗବଶତଃ

ରୁକ୍ମିଣୀବାଈଙ୍କୁ ଭେଟିଲେ, ସେ ତାଙ୍କୁ ଆଶୀର୍ବାଦ ଦେଲେ – ‘‘ତୁମର ବୈବାହିକ ଜୀବନ ସୁଖମୟ ହେଉ ।’’ କାନ୍ଦି କାନ୍ଦି ରୁକ୍ମିଣୀ ତାଙ୍କୁ କହିଲେ ଯେ, ଏହା ସମ୍ଭବ ନୁହେଁ କାରଣ ତାଙ୍କର ସ୍ୱାମୀ ବନାରସ ଯାଇ ସନ୍ନ୍ୟାସୀ ହୋଇଯାଇଛନ୍ତି । ଯେତେବେଳେ ସେ ଜାଣିଲେ ଯେ ରୁକ୍ମିଣୀଙ୍କର ପତି ଆଉ କେହି ନୁହନ୍ତି, ତାଙ୍କର ଶିଷ୍ୟ ବିଠଲପନ୍ତ, କାଶୀ ଫେରିବା ପରେ ରାମାନନ୍ଦ ସ୍ୱାମୀ ବିଠଲପନ୍ତଙ୍କୁ ଧମକଚମକ ଦେଲେ ଓ ଆଲନ୍ଦୀକୁ ପଠାଇଦେଲେ । ଆଲନ୍ଦୀ ଆସି ବିଠଲପନ୍ତ ପତ୍ନୀଙ୍କ ସହିତ ମିଳିତ ହେଲେ ଓ ପୁଣି ଗୃହସ୍ଥ ହୋଇଗଲେ । ରୁକ୍ମିଣୀ–ବିଠଲଙ୍କର ସନ୍ଥ ପ୍ରକୃତିର ଚାରୋଟି ସନ୍ତାନ ହେଲେ । ଯେମିତି ସାଧାରଣତଃ ହୁଏ, ସ୍ଥାନୀୟ ପରମ୍ପରାବାଦୀ ସମାଜ ତାଙ୍କୁ ବହିଷ୍କାର କରିଦେଲେ । ଏଇଟା ଗୋଟାଏ ସାଧାରଣ ନିୟମ ଥିଲା ଯେ, ଯଦି କୌଣସି ସନ୍ନ୍ୟାସୀ ପୁଣି ଗୃହସ୍ଥର ଜୀବନକୁ ଫେରିଆସେ, ତାକୁ ଅସ୍ପୃଶ୍ୟ ବୋଲି ଧରାଯାଏ । ତେଣୁ ତାଙ୍କୁ ସହର ବାହାରେ ନୀଚ ଜାତିଠାରୁ ମଧ୍ୟ ନୀଚ ଜାତି ବୋଲି ମନେକରାଯାଉଥିବା ଲୋକଙ୍କ ସହିତ ରହିବାକୁ ପଡ଼ିଲା ।

ତାଙ୍କର ପ୍ରଥମ ପୁତ୍ର ଗହିନୀନାଥଙ୍କର ଶିଷ୍ୟ ହୋଇଗଲା ଏବଂ ତାକୁ ନିବୃତ୍ତିନାଥ ନାମ ଦିଆଗଲା । ଦ୍ୱିତୀୟ, ଜ୍ଞାନେଶ୍ୱର ନିଜର ଭାଇଙ୍କର ଶିଷ୍ୟ ହୋଇଗଲା । ପରେ ତାଙ୍କର ମହାନ୍ ଆଧ୍ୟାତ୍ମିକ ଉପଲବ୍ଧି ହେତୁ ତାଙ୍କୁ ତାଙ୍କର ଭାଇଙ୍କଠାରୁ ଉଚ୍ଚତର ବୋଲି ଗଣାଗଲା । ତାଙ୍କର ଭଉଣୀ ମୁକ୍ତାବାଈ ମଧ୍ୟ ଅତି ଉନ୍ନତ ଧରଣର ଯୋଗିନୀ ଥିଲେ । ମହାରାଷ୍ଟ୍ରରେ ଏହି ତିନି ଜଣଙ୍କ ଚମତ୍କାରପୂର୍ଣ୍ଣ ଜୀବନୀ ବିଷୟରେ ଅନେକ କାହାଣୀ ପ୍ରଚଳିତ ରହିଛି । ମଇଁଷି ବେଦ ପାଠ କରିବାର କାହାଣୀଟି ମୋତେ ଭାରି ପସନ୍ଦ । ତାହା ହେଉଛି ଏହି ପ୍ରକାରର –

ସ୍ଥାନୀୟ ପରମ୍ପରାବାଦୀ ପୂଜାରୀମାନେ ବେଦଗୁଡ଼ିକର ଦୀର୍ଘ ସମୟ ଧରି ପାଠ କରିବାର ପ୍ରତିଯୋଗିତା ଘୋଷଣା କଲେ । ଯେ ସର୍ବୋତ୍ତମ ଭାବରେ ପାଠ କରିବ, ତାକୁ ଶ୍ରେଷ୍ଠତାର ଉପାଧି ଦିଆଯିବ । ବହୁ ପଣ୍ଡିତ ଏକତ୍ରିତ ହେଲେ । ଯୁବକ ଜ୍ଞାନେଶ୍ୱର ସେମାନଙ୍କ ମଧ୍ୟରୁ ଜଣେ ଥିଲେ । ପଣ୍ଡିତମାନେ ଅଗ୍ନିଶର୍ମା ହୋଇଗଲେ । ଜାତିରୁ ବହିଷ୍କୃତ, ଜଣେ ପୂର୍ବ ସନ୍ନ୍ୟାସୀଙ୍କ ପୁତ୍ର, କିପରି ପରମ୍ପରାବାଦୀ ବ୍ରାହ୍ମଣମାନଙ୍କର ସଭାରେ ଭାଗ ନେଇପାରିବ ? ସେମାନେ ଜ୍ଞାନେଶ୍ୱରଙ୍କୁ ଗାଳିଗୁଲଜ ଦେଇ ତଡ଼ିଦେଲେ । ବହିଷ୍କୃତ ହୋଇଥିବାରୁ ତାଙ୍କର ବେଦପାଠର ଅଧିକାର ନ ଥିଲା । ତା’ପରେ ସେ ଛୋଟ ପିଲାଟା କ’ଣ ବେଦପାଠ କରିବ ? ସେ କ’ଣ ଜାଣେ, ବେଦ କାହାକୁ କହନ୍ତି ? ସେମାନେ ଥଟ୍ଟାତାମସା କଲେ ।

‘‘ବେଦପାଠ କିଛି ଗୋଟାଏ ବଡ଼ କଥା ନୁହେଁ’’, ଜ୍ଞାନେଶ୍ୱର କହିଲେ, ‘‘ମଇଁଷି ବି ବେଦପାଠ କରିପାରେ ।’’ ଶୁଣାଯାଏ ଯେ, ଏହାପରେ ସେ ପାଖଦେଇ ଯାଉଥିବା

ଏକ ମଇଁଷିକୁ ଡାକିଲେ, ନିଜ ହାତ ତା' ମୁଣ୍ଡରେ ରଖି ତାକୁ ଆଶୀର୍ବାଦ ଦେଲେ ଏବଂ ତାକୁ ବେଦପାଠ କରିବାକୁ ଆଦେଶ ଦେଲେ । ମଇଁଷି ଠିକ୍ ଭାବରେ ବେଦପାଠ କରି ଆଜ୍ଞା ପାଳନ କଲା । ଶୁଣାଯାଏ, ନିଜର କଥାକୁ ପ୍ରମାଣିତ କରିବା ପରେ ସେ ସଭା ଛାଡ଼ି ଚାଲିଯାଇଥିଲେ ।

ଅଳ୍ପ ବର୍ଷ ବୟସରେ ହିଁ ଗୀତାର 'ଜ୍ଞାନେଶ୍ୱରୀ'[୧] ନାମକ ବ୍ୟାଖ୍ୟା ଲେଖିବା ପରେ ଜ୍ଞାନେଶ୍ୱର ଘୋଷଣା କଲେ ଯେ ତାଙ୍କର କାମ ପୂର୍ଣ୍ଣ ହୋଇଯାଇଛି ଏବଂ ତାଙ୍କର ସଂସାର ଛାଡ଼ି ଚାଲିଯିବାର ସମୟ ଆସିଯାଇଛି । ସେ ଗୋଟିଏ ସମାଧି ଖୋଳାଇଲେ ଯେପରିକି ସେ ତାହା ଭିତରେ ବସିପାରିବେ, ସେଥିରେ ବସିଗଲେ ଏବଂ ଅନ୍ତିମକ୍ରିୟା ନାମକ ପ୍ରଣାଳୀର ପ୍ରୟୋଗ କରି ସ୍ଥିର ହୋଇଗଲେ । ତାଙ୍କର ନିର୍ଦ୍ଦେଶ ଅନୁସାରେ ସମାଧିକୁ ପୋତି ଦିଆଗଲା ଓ ତାହା ଉପରେ ଏକ ସମାଧି ସ୍ଥଳ ତିଆରି କରିଦିଆଗଲା । ଏହି ସମାଧିକୁ 'ଜୀବ ସମାଧି' କୁହାଯାଏ । ଲୋକମାନେ କହନ୍ତି, ଜ୍ଞାନେଶ୍ୱର ସୂକ୍ଷ୍ମ ରୂପରେ ଏବେ ମଧ୍ୟ ବିଦ୍ୟମାନ । ଜନତା ତାଙ୍କୁ ଏକ ମହାନ ସନ୍ଥର ମାନ୍ୟତା ଦିଅନ୍ତି । 'ନାଥପନ୍ଥୀ', ଯାହାର ସେ ସଦସ୍ୟ ଥିଲେ, ତାଙ୍କୁ ନିଜ ପରମ୍ପରାର ସର୍ବାଧିକ ପ୍ରସିଦ୍ଧ ଯୋଗୀମାନଙ୍କ ମଧ୍ୟରୁ ଜଣେ ବୋଲି ମାନନ୍ତି ।

ଯେତେବେଳେ ମୁଁ ସେଠାରେ ସମାଧିର ସମ୍ମୁଖରେ ବସିଥିଲି, ମେରୁଦଣ୍ଡର ନିମ୍ନାଂଶରୁ କୁଣ୍ଡଳିନୀ ଶକ୍ତି କୁଣ୍ଡଳୀ ତ୍ୟାଗ କରି ଫୁତ୍କାର କରି ଉପରକୁ ଆରୋହଣ କରିବାକୁ ଲାଗିଲା, ପ୍ରଥମେ ହୃଦୟଚକ୍ର ଏବଂ ପୁଣି ଅନାୟାସରେ ମସ୍ତିଷ୍କରେ ପହଞ୍ଚିଗଲା । ଅତ୍ୟନ୍ତ ଆନନ୍ଦୋଚ୍ଛ୍ୱାସ ଏବଂ ତୀବ୍ର ରୁପେଲି ପ୍ରକାଶ ଦ୍ୱାରା ଓତଃପ୍ରୋତ ହୋଇ ମୁଁ କେତେ ଘଣ୍ଟା ପର୍ଯ୍ୟନ୍ତ ବାହାରର ଦୁନିଆରୁ ବିଚ୍ଛିନ୍ନ ହୋଇ ବସିରହିଲି । ଯେତେବେଳେ ମୁଁ ପ୍ରକୃତିସ୍ଥ ହେଲି, ସେତେବେଳକୁ ବେଶ ଅନ୍ଧାର ହେଇଯାଇଥାଏ । କୌଣସି ପ୍ରକାରେ ମୁଁ ଗୋଟିଏ ଚୌଲ୍‌ଟ୍ରି (Choultry)ରେ ରହିବାର ଜାଗା ପାଇଗଲି, ଯେଉଁଠାରେ ସାଦାସିଧା ଖାଦ୍ୟ ମିଳୁଥିଲା । ମୁଁ ଧ୍ୟାନ-ଆନନ୍ଦରେ ଚାରିଦିନ ବିତାଇଲି । ବାବାଜୀଙ୍କର କୌଣସି ପତ୍ତା ନ ଥିଲା; କିନ୍ତୁ ମୁଁ ସେଠାରେ ଖୁସିରେ ଥିଲି ।

ପଞ୍ଚମ ଦିନ ମୁଁ ଧ୍ୟାନପାଇଁ ସମାଧିକୁ ଗଲି । ଏକ ୱାଲରସ ମାଛ ପରି ଧଳା ନିଶ ଥିବା ଜଣେ ବୃଦ୍ଧଙ୍କ ବ୍ୟତୀତ ସେଠାରେ କେହି ନ ଥିଲେ । ସେ ଜ୍ଞାନେଶ୍ୱରୀ ପଢୁଥିଲେ । ମୁଁ ତାଙ୍କଠାରୁ କିଛି ଦୂରରେ ବସିବାକୁ ଯାଉଛି, ଏହି ସମୟରେ ଦେଖିଲି, ଜଣେ ଲମ୍ବା ବାଳ ରଖିଥିବା କୋଡ଼ିଏ ବର୍ଷରୁ କମ୍ ବୟସର ଯୁବକ ମୋ ଆଡ଼କୁ ଆସୁଛନ୍ତି । ସେ ଧଳା

୧. 'ଜ୍ଞାନେଶ୍ୱରୀ' ମହାରାଷ୍ଟ୍ରରେ ଗୀତାଠାରୁ ମଧ୍ୟ ଅଧିକ ଜନପ୍ରିୟ ।

ଧୋତି ପିନ୍ଧିଥିଲେ । ସେ ହସିଲେ ଓ ମୋତେ ଆଲିଙ୍ଗନ କଲେ । ମୋର ଶରୀର ଓ ମନ ଆନନ୍ଦର ଉଚ୍ଛ୍ୱାସରେ ଭରିଗଲା । ଥରେ ଭାବିଲି ଯେ, ସେ ଜ୍ଞାନେଶ୍ୱର ଥିଲେ । ଧୀର ସ୍ୱରରେ ସେ ହିନ୍ଦୀରେ ମୋତେ କହିଲେ, "ମୋର ଭାଇ ମହେଶ୍ୱରନାଥ ଶିର୍ଡୀରେ ସାଈଁନାଥଙ୍କ 'ଆସ୍ଥାନ'ରେ ତୁମକୁ ଅପେକ୍ଷା କରିଛନ୍ତି । ଆଜି ହିଁ ସେଠାକୁ ଯାଅ ।"

ତା'ପରେ ସେ ସମାଧି ପର୍ଯ୍ୟନ୍ତ ଯାଇ ବଟବୃକ୍ଷର ପଛକୁ ଚାଲିଗଲେ । ମୁଁ ବି ଗଛ ପର୍ଯ୍ୟନ୍ତ ଗଲି, କିନ୍ତୁ ତାଙ୍କୁ ପାଇଲି ନାହିଁ । ସେତେବେଳେ ଯାଇ ମନେହେଲା ଯେ, ଏହା କାଳ୍ପନିକ ଦୃଶ୍ୟ ଥିଲା କାରଣ ଜ୍ଞାନେଶ୍ୱରୀ ପଢୁଥିବା ବୃଦ୍ଧ ସେଠାରେ ଅସାଧାରଣ କିଛି ଦେଖିଥିବା ପରି ଜଣାଗଲା ନାହିଁ । ସେ ସେହିପରି ପଢ଼ି ଚାଲିଥା'ନ୍ତି ।

ମୁଁ ପୁନାରୁ ଶିର୍ଡୀପାଇଁ ବସ ଧରିଲି ଏବଂ ଡେରି ରାତିରେ ସେଠାରେ ପହଞ୍ଚିଗଲି । ସମାଧି ପ୍ରାଙ୍ଗଣର ପ୍ରବେଶଦ୍ୱାରରେ ବାବାଜୀ ଠିଆ ହୋଇଥିଲେ । "ଆସ, ଆସ" ସେ କହିଲେ, "ତେବେ ତୁମେ ଯୁବ-ଯୋଗୀଙ୍କୁ ଭେଟିଲ ? ଏଠି ବର୍ତ୍ତମାନ ସବୁ ବନ୍ଦ, କିନ୍ତୁ ଆମେ ଚାଓ୍ୱଡ଼ି ଯିବା ଯେଉଁଠାରେ ସାଈଁନାଥ ଶୋଉଥିଲେ । ଆମେ ସମାଧି, ଗୁରୁସ୍ଥାନ ଏବଂ ଦ୍ୱାରକାମାଈ (ଯେଉଁଠାରେ ସବୁବେଳେ ଧୁନି ଜଳୁଥାଏ) ହୋଇ ଗୋଟିଏ ଛୋଟ କୋଠା ପାଖରେ ପହଞ୍ଚିଲୁ, ଯାହାକୁ ଚାଓ୍ୱଡ଼ୀ କହନ୍ତି । ସେଠାରେ କେତେଗୁଡ଼ାଏ କୁକୁରଙ୍କ ବ୍ୟତୀତ ଆଉ କେହି ନ ଥିଲେ । ଚାଓ୍ୱଡ଼ୀର କାଠର କବାଟ ବନ୍ଦ ଥିଲା ମୁଁ ଭାବୁଥିଲି, ଏବେ ଆମେ କ'ଣ କରିବୁ । ବାବାଜୀ କହିଲେ, "ଚାଲ, ଭିତରକୁ ଯିବା ।"

ମୁଁ କହିଲି, "କବାଟ ବନ୍ଦ ଅଛି ।"

"ଦେଖିପାରୁଛି, ଏବେ ଆଖି ବନ୍ଦ କରି ଏମିତି ଭାବରେ ଚାଲ, ଯେମିତି ତୁମେ କବାଟ ଦେଇ ଭିତରକୁ ଯାଉଛ ।"

"କିନ୍ତୁ ବାବାଜୀ....."

"ଯେମିତି କହିଲି ସେମିତି କର ଏବଂ ଆଖି ଖୋଲିବ ନାହିଁ ।"

ମୁଁ ଆଖି ବନ୍ଦ କରି ମୋର ଆଣ୍ଠୁ ଭାଙ୍ଗି ଡାହାଣ ପାଦ ଆଗକୁ ବଢ଼ାଇଲି । ଲାଗିଲା ଯେମିତି ଗୋଟାଏ କନାର ପର୍ଦାକୁ ଠେଲୁଛି । ସେହିପରି ଅନୁଭବ ହେଲା ଯେତେବେଳେ ମୋର ସମଗ୍ର ଶରୀର କବାଟର ସଂସ୍ପର୍ଶରେ ଆସିଲା । ମୁହୂର୍ତ୍ତକ ମଧ୍ୟରେ ସେହି ପ୍ରକାରର ଅନୁଭୂତି ଅନ୍ତର୍ହିତ ହେଲା ଓ ଶୁଣିଲି, ବାବାଜୀ କହୁଛନ୍ତି, "ଠିକ୍ ଅଛି, ଏବେ ଆଖି ଖୋଲ ।"

ଆଖି ଖୋଲି ଦେଖିଲି, ମୁଁ ଚାଓ୍ୱଡ଼ୀ ଭିତରେ ଅଛି । କବାଟରେ ସେହିପରି ତାଲା ପଡ଼ିଥାଏ । ବାବାଜୀ ମୋ ପାଖରେ ଠିଆ ହୋଇଥାଆନ୍ତି । ଗୋଟିଏ ତାଲା ପଡ଼ିଥିବା

ବନ୍ଦ କବାଟ ଦେଇ ଭିତରକୁ ଆସିପାରିଥିବାର ଘଟଣାର ଆଶ୍ଚର୍ଯ୍ୟରୁ ନିର୍ଗତ ହେବା ପୂର୍ବରୁ ମୁଁ ଆହୁରି ଅଧିକ ଆଶ୍ଚର୍ଯ୍ୟଜନକ ଓ ଅବିଶ୍ୱାସ୍ୟ କିଛି ଦ୍ୱାରା ସ୍ତବ୍ଧ ହୋଇଗଲି ।

ଗୋଟିଏ ଅଳ୍ପ ଓସାରର କାଠର ପଟା ଉପରେ, ଯାହା ଚିରାଫଟା ପୁରୁଣା ଲୁଗାକୁ ବଳି ତିଆରି ହୋଇଥିବା ଦଉଡ଼ିରେ ଛାତରୁ ଝୁଲୁଥିଲା, ଶିର୍ଡୀର ସାଈଁବାବା ଆରାମ କରୁଥିଲେ । ସାଈଁବାବାଙ୍କ ଦେହାନ୍ତ ତ ୧୯୧୮ ମସିହାର ହୋଇଯାଇଥିଲା । ଯେତେବେଳେ ମୁଁ ଆଶ୍ଚର୍ଯ୍ୟ ହୋଇ ଆଖିରେ ପଲକ ନ ପକାଇ ତାଙ୍କୁ ଚାହିଁ ରହିଲି, ମୋର ରୁମ ଟାଙ୍କୁରି ଉଠିଲା ଓ ମୋର ସାରା ଶରୀର କମ୍ପିବାକୁ ଲାଗିଲା । ସେ ପଟା ଉପରେ ବସିଗଲେ । ମୁଁ ଭାବୁଥିଲି ଯେ ସେ ଭୂଇଁରୁ ଛ'ଫୁଟ ଉପରେ ଲଟକିଥିବା ସେହି ଦୋଳିରୁ ତଳକୁ କିପରି ଆସିବେ, କିନ୍ତୁ ସେ ଧୀରେ କାଠର ପଟାରୁ ଖସିଲେ ଏବଂ ସହଜରେ ପହଁରିଲା ପରି ହୋଇ ଭୂଇଁ ଉପରକୁ ଆସିଗଲେ । ମୁଁ ଦେଖିଲି ସେ ସବୁବେଳେ ଯେଉଁ କନା ମୁଣ୍ଡରେ ବାନ୍ଧିଥାଆନ୍ତି, ତାହା ନ ଥିଲା, ତାଙ୍କର ମସ୍ତକ ସମ୍ପୂର୍ଣ୍ଣ ଭାବରେ ଲଣ୍ଡିତ ଥିଲା ଏବଂ ସେ ଯେତେବେଳେ ଆମ ପାଖରେ ଠିଆ ହେଲେ, ମୁଁ ଜାଣିଲି ଯେ ତାଙ୍କର ଉଚ୍ଚତା ଛ'ଫୁଟ ଉପରେ ଓ ସେ ଜଣେ କୁସ୍ତି ଯୁଦ୍ଧ କରିପାରିବା ପରି ଦେହଧାରୀ ।

ସେ ମୁସଲମାନୀ ରୀତିରେ ବାବାଜୀଙ୍କୁ ଆଲିଙ୍ଗନ କଲେ । ଉଭୟ ଉଭୟଙ୍କର ନାକକୁ ହାଲ୍କା ଭାବରେ ଚୁମିଲେ । ମୁଁ ତାଙ୍କର ଚରଣରେ ସାଷ୍ଟାଙ୍ଗ ପ୍ରଣାମ କଲି । ସେ ମୋତେ ଉଠାଇ ଠିଆ କଲେ ଏବଂ କହିଲେ, ‘‘ସଲାମ ବଚ୍ଚା, ତୁମକୁ ଏକ ମହାନ୍ ଗୁରୁ ମିଳିଯାଇଛନ୍ତି, ମୁର୍ଶୀଦ । ମୋର ଗୁରୁ ବି ମହାନ୍ ଥିଲେ, ମୋର ବେଁକୁଶା । ମୁଁ ତ କେବଳ ଏତିକି କଲି ଯେ ତାଙ୍କୁ ଚାହିଁ ରହିଲି । ଆଲ୍ଲାହ୍ ମାଲିକ ହେଁ, ରାମ ରାମ ।’’

ବାବାଜୀ କହିଲେ, ‘‘କୃପା କରି ଏହାକୁ ଆଶୀର୍ବାଦ କରନ୍ତୁ ।’’

‘‘ଆଲ୍ଲାହ୍ ମାଲିକ, ତୁମକୁ ମୋପରି କାମ କରିବାକୁ ପଡ଼ିବ କିନ୍ତୁ ଭିନ୍ନ ଉପାୟରେ । ସହଜ ନୁହେଁ, ନବଯୁବକ । ଏହି ଦୁନିଆ ହେଉଛି ପାଗଳ ଆଉ ସମସ୍ତେ ଭାବନ୍ତି ମୁଁ ପାଗଳ । ହୂ ଆଲ୍ଲହ୍, ରାମ, ରାମ, ରାମ । କବୀରଙ୍କର କାମ କର । ଗୁରୁଙ୍କର ଆଶୀର୍ବାଦ ନିଅ । ସେ ନିଜର କାଠର ଖଟରେ ପଡ଼ିଥିବା ଚାଦର ତଳେ ଦରାଣ୍ଡିଲେ ଏବଂ ନୋଟର ଗୋଟାଏ ବିଡ଼ା ବାହାର କଲେ । ‘‘ନିଅ’’, ସେ କହିଲେ, ‘‘ଆଲ୍ଲାହ ଭଲ କରିବେ । ଏଇ ପଇସା ନିଅ ଏବଂ ଗାଣଗାପୁର, ପୀଠାପୁର ଏବଂ ଅକ୍କଲକୋଟର ଯାତ୍ରା କର । ଯାଅ, ଯାଅ ।’’ ମୁଁ ପଇସା ନେବାକୁ ଇତସ୍ତତଃ କଲି । ବାବାଜୀ ଫୁସ୍‌ଫୁସ୍ କରି କହିଲେ, ‘‘ନେଇ ନିଅ ।’’

ମୁଁ ପଇସା ନେଲି ଓ ତାଙ୍କୁ ଦଣ୍ଡବତ ପ୍ରଣାମ କଲି । ବାବାଜୀ ଓ ସାଇଁନାଥ ପରସ୍ପରକୁ ଆଲିଙ୍ଗନ କଲେ ଓ ଆମେ ଯେମିତି ଭିତରକୁ ପଶିଥିଲୁ, ସେହିପରି ଭାବରେ ବାହାରକୁ ଆସିଲୁ । ବାବାଜୀ ମଜା କରି କହିଲେ, ''ବନ୍ଦ କବାଟ ଦେଇ ପଶିବାର ଚେଷ୍ଟା କରିବ ନାହିଁ, ତାହାହେଲେ ନାକ ଚେପ୍ଟା ହୋଇଯିବ ।'' ବାହାରେ ଏବେ ବି ଅନ୍ଧାର ଥିଲା କିନ୍ତୁ ସିନ୍ଦୂରା ଫାଟିବାକୁ ଯାଉଥିଲା ।

ବାବାଜୀ କହିଲେ, ''ପଇସା ସମ୍ଭାଳି ରଖ ଏବଂ କାଲି ଯାତ୍ରା ଆରମ୍ଭ କରିଦିଅ । ମୋର ଏବେ ଯିବାକୁ ଅଛି, ଦରକାର ପଡ଼ିଲେ ପୁଣି ତୁମକୁ ଭେଟିବି । ସେ ମୋତେ ସାଇଁନାଥ କହିଥିବା ସ୍ଥାନଗୁଡ଼ିକୁ ଯିବାପାଇଁ ଆବଶ୍ୟକ ନିର୍ଦ୍ଦେଶ ଦେଲେ ଓ ଚାଲିଗଲେ ।

ଭୋର୍ ହେବା ପରେ ମୁଁ ଗୁରୁ ସ୍ଥାନ, ସମାଧି ଓ ଦ୍ୱାରକାମାଈକୁ ଗଲି । ଆଉଥରେ ଚାଓ୍ୱଡ଼ୀ ଗଲି । ଚାଓ୍ୱଡ଼ିରେ ଠିଆ ହୋଇ ମୁଁ ଗତ ରାତିର ଅସାଧାରଣ ଅନୁଭବ ବିଷୟରେ ଚିନ୍ତା କରିବାକୁ ଲାଗିଲି ।

ଜଳଖିଆ ଖାଇବା ପରେ ମୁଁ କୋପରଗାଓଁ ରେଳଷ୍ଟେସନକୁ ଯିବାପାଇଁ ବସ ଧରିଲି ଏବଂ ଟ୍ରେନର ଅପେକ୍ଷା କରିବାକୁ ଲାଗିଲି ।

ଏହି ଅଧ୍ୟାୟ ସମାପ୍ତ କରିବା ପୂର୍ବରୁ ମୁଁ ସାଇଁବାବାଙ୍କର ସଂକ୍ଷିପ୍ତ ପରିଚୟ ଦେବା ଉଚିତ ମନେକରୁଛି ।

ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଥରେ ମହାରାଷ୍ଟ୍ରର ଏକ କ୍ଷୁଦ୍ର ଶାନ୍ତ ବସ୍ତି ଶିର୍ଡୀକୁ ଜଣେ ଭ୍ରମଣ କରୁଥିବା ଯୁବା ମହାତ୍ମା ଆସିଥିଲେ । ଦେଖିବାକୁ ସେ ମୁସଲମାନ ଫକିର ପରି ଥିଲେ । କେହି ତାଙ୍କର ନାଁ ଜାଣି ନ ଥିଲେ ବା ସେ କେଉଁଠାରୁ ଆସିଛନ୍ତି ସେକଥା ଜାଣି ନ ଥିଲେ; କିନ୍ତୁ ତାଙ୍କୁ ଦେଖି ଖଣ୍ଡୋବା ମନ୍ଦିରର ପୂଜାରୀ ମହାଲଶପତି 'ୟା ସାଇଁ' (ଆସ ସନ୍ଥ) କହି ତାଙ୍କୁ ମନ୍ଦିରକୁ ଡାକିଲେ । ତାଙ୍କର ସେହି ନାମ ଚାଲିଲା, ସାଇଁବାବା । ଏବେ ଯେଉଁଠାରେ ସାଇଁବାବାଙ୍କର ସମାଧି ରହିଛି, ସେହି ସ୍ଥାନ ଦେଇ ଯାଉଥିବା ସଡ଼କର ଅନ୍ୟପଟେ ଖଣ୍ଡୋବା ମନ୍ଦିର ରହିଛି ।

ପ୍ରାୟ ବର୍ଷେ ପର୍ଯ୍ୟନ୍ତ ସେ ଶିର୍ଡୀରେ ରହିଲେ, ଗୋଟିଏ ଲିମ୍ବଗଛ ତଳେ ସେ ଶୋଉଥିଲେ, ଯାହାକୁ ସେ ନିଜର ଗୁରୁସ୍ଥାନ (ଗୁରଙ୍କର ସ୍ଥାନ) କହୁଥିଲେ । ବେଶ କିଛି ସମୟ ପରେ ସେଠାକୁ ଜଣେ ମହାତ୍ମା ଆସିଲେ । ତାଙ୍କର ନିର୍ଦ୍ଦେଶ ଅନୁସାରେ ଲିମ୍ବଗଛ ପାଖ ଖୋଳିଲା ପରେ ଗୋଟିଏ ସୁଡ଼ଙ୍ଗ ଦେଖାଗଲା । ସେହି ସୁଡ଼ଙ୍ଗ ଗୋଟିଏ ଗୁମ୍ଫାରେ ପହଞ୍ଚୁଥିଲା । ସେହି ଗୁମ୍ଫାରେ ତିନୋଟି ତେଲର ଦୀପ ମିଳିଲା, ଯେଉଁଗୁଡ଼ିକ ସେତେବେଳେ ମଧ୍ୟ ଜଳୁଥିଲା । ସେହି ସ୍ଥାନକୁ ଆଜିକାଲି ଗୁରୁସ୍ଥାନ କୁହାଯାଉଛି ।

କିଛି ସମୟ ପରେ ସାଇଁବାବା ଶିର୍ଡୀ ଛାଡ଼ି ଚାଲିଗଲେ; କିନ୍ତୁ ପୁଣି ଆସିଲେ ! ଏଥର ଆସିଲେ ପାଖରେ ଥିବା ରହଟାର ମୁସଲମାନ ଚାନ୍ଦ ପାଟିଲର ବରଯାତ୍ରୀମାନଙ୍କ ସହିତ । ତା'ପରେ ସେ ଶିର୍ଡୀ କେବେ ଛାଡ଼ି ଯାଇ ନ ଥିଲେ । ସେ ଗୋଟିଏ ଜରାଜୀର୍ଣ୍ଣ ମସଜିଦରେ ରହୁଥିଲେ, ଯାହାର ନାମ ଦ୍ୱାରକାମାଇ ରଖିଦିଆଯାଇଥିଲା । ସେଠାରେ ସାଇଁବାବା, ଯାହାଙ୍କୁ ସାଇଁନାଥ ମଧ୍ୟ କୁହାଯାଏ, ଏକ ଧୁନି ଜଳାଇଲେ ଯେପରି ହେଉଛି ନାଥ ସମ୍ପ୍ରଦାୟର ପରମ୍ପରା । ଦିନର ଅଧିକାଂଶ ସମୟ ସେ ସେଠାରେ ବିତାଉଥିଲେ । ସନ୍ଧ୍ୟାରେ ସେ ତେଲର ଦୀପ ଜଳାଉଥିଲେ ଓ ଘୁଙ୍ଗୁର ବାନ୍ଧି ନାଚ ଗୀତ କରୁଥିଲେ । ପରେ ଚାଓ୍ୱଡ଼ୀ ତିଆରି ହେଲା ଏବଂ ସେ ସେଠାରେ ରାତି ବିତାଇଲେ । ତାଙ୍କର ବିଛଣା ଥିଲା ଗୋଟିଏ ସଂକୀର୍ଣ୍ଣ କାଠର ପଟା, ତାହା ଚାଓ୍ୱଡ଼ୀ ମଧ୍ୟରେ ପୁରୁଣା ଲୁଗାପଟା ବଳି ତିଆରି ହୋଇଥିବା ଦଉଡ଼ିରେ ବନ୍ଧା ହୋଇ ଭୂଇଁରୁ ଛ'ଫୁଟ ଉପରେ ଝୁଲୁଥିଲା । କେହି ଜାଣନ୍ତି ନାହିଁ ସେ ନିଜର ସେହି ବିଛଣାରେ କୌଣସି ନିଶୁଣୀ ଆଦିର ବିନା ସହାୟତାରେ କିପରି ଚଢୁଥିଲେ । ତାଙ୍କର ତକିଆ ଥିଲା ଚିରା ଲୁଗାରେ ଗୁଡ଼ା ହୋଇଥିବା ଖଣ୍ଡିଏ ଇଟା ।

ସେ ଗୋଟିଏ ଧଳା ଲମ୍ବା ଗୋଇଠି ପର୍ଯ୍ୟନ୍ତ ଲମ୍ବିଥିବା ପୋଷାକ ପିନ୍ଧୁଥିଲେ ଓ ନିଜର ମୁଣ୍ଡରେ କନା ବାନ୍ଧୁଥିଲେ । ତାଙ୍କର ଲୁଗାପଟା ପ୍ରାୟ ଚିରା ଓ ଅପରିଷ୍କାର ହୋଇ ରହୁଥିଲା । ସେ ମୁସଲମାନ ଫକିରମାନଙ୍କ ପରି ନିଜର ମୁଣ୍ଡକୁ ଲଣ୍ଡା କରୁଥିଲେ ଓ ଏବଂ ଭଲ ଭାବରେ ସମାନ କରି କଟାଯାଇଥିବା ଦାଢ଼ି ଓ ନିଶ ରଖୁଥିଲେ । ସେ 'ରାମ ରାମ' ଓ 'ଆଲ୍ଲାହ୍ ମାଲିକ ହୈ' କହି ଚାଲୁଥିଲେ ଓ କେବେ କେବେ ପାଗଳମାନଙ୍କ ପରି ବ୍ୟବହାର କରୁଥିଲେ । ରାଗି ଅଗ୍ନିଶର୍ମା ହୋଇଯାଉଥିଲେ ଓ ଲୋକଙ୍କୁ ମାରିବାକୁ ଧମକ ଦେଉଥିଲେ । କିନ୍ତୁ ଅନ୍ୟ ସମୟରେ ସେ ଏତେ ଦୟାଳୁ ଥିଲେ ଯେ, ସମସ୍ତେ ତାଙ୍କୁ ପ୍ରେମ କରୁଥିଲେ ।

ସେ ବହୁବର୍ଷ ପର୍ଯ୍ୟନ୍ତ ଶିର୍ଡୀରେ ରହିଲେ, ବହୁତ ଚମତ୍କାର କଲେ ଏବଂ ନିଜ ପାଖକୁ ଆସୁଥିବା ଲୋକଙ୍କର ଦୁଃଖଦୁର୍ଦ୍ଦଶା ଦୂର କରିଥିଲେ । କୁହାଯାଏ ଯେ, 1886ରେ ସେ ତିନିଦିନପାଇଁ ମୃତ ହୋଇ ପୁଣି ବଞ୍ଚି ଉଠିଥିଲେ । 1918 ମସିହାରେ ଅକ୍ଟୋବର ମାସ ପନ୍ଦର ତାରିଖ ଦିନ ତାଙ୍କର ମୃତ୍ୟୁ ହୋଇଥିଲା । ମୃତ୍ୟୁ ପୂର୍ବରୁ ସେ କହିଥିଲେ ଯେ, ମୃତ୍ୟୁ ପରେ ମଧ୍ୟ ସେ ଶିର୍ଡୀରେ ରହିବେ ଏବଂ ଯେ ଭକ୍ତି ଏବଂ ସଚ୍ଚୋଟପଣିଆ ସହିତ ସେଠାକୁ ଆସିବେ, ସେ ତାଙ୍କ ସହିତ କଥାବାର୍ତ୍ତା କରିବେ । ମୋ ପ୍ରତି ଦେଖାଇଥିବା ଦୟା ପାଇଁ ମୁଁ ତାଙ୍କ ନିକଟରେ କୃତଜ୍ଞ । ମୁଁ ଅତି ବିନୟ ଓ ଶ୍ରଦ୍ଧାର ସହିତ ତାଙ୍କୁ ନମସ୍କାର କରୁଛି ଏବଂ ନିଜର ପ୍ରିୟ ବାବାଜୀଙ୍କୁ ମଧ୍ୟ, ଯେ ମୋତେ ଶିର୍ଡୀ ନେଇଗଲେ ।



# 41. ଆହୁରି ଯାତ୍ରା : ନୂତନ ଅନ୍ତର୍ଦୃଷ୍ଟି

ଶିର୍ଡ଼ୀରୁ ମୁଁ ଗାଣଗାପୁର ଓ ନରସୋବାଡ଼ୀ ଗଲି ଯେଉଁଠାରେ ମହାନ ସ୍ୱାମୀ ନରସିଂହ ସରସ୍ୱତୀ ନିଜର ଜୀବନର ଅଧିକାଂଶ ସମୟ ବିତାଇଥିଲେ । ତାହାଙ୍କୁ ଦତ୍ତାତ୍ରେୟ*ଙ୍କର ଅବତାର ବୋଲି କୁହାଯାଏ । ସେଠାରୁ ଅକ୍କଲକୋଟ ଗଲି, ଯେଉଁଠାରେ ଅକ୍କଲକୋଟକର ମହାରାଜଙ୍କର ସମାଧି ରହିଛି । ତାଙ୍କୁ ସ୍ୱାମୀ ସମର୍ଥ ବୋଲି ମଧ୍ୟ କୁହାଯାଏ ଏବଂ ସେ ଦତ୍ତାତ୍ରେୟଙ୍କର ପ୍ରକଟୀକରଣ ବୋଲି ସମସ୍ତେ ମାନନ୍ତି ।

ଅକ୍କଲକୋଟକର ମହାରାଜ ସାଇଁବାବାଙ୍କର ସମକାଳୀନ ଥିଲେ । 1878 ମସିହାରେ ସେ ଦେହତ୍ୟାଗ କରିଥିଲେ । ତାଙ୍କୁ 'ବଟବୃକ୍ଷ' ମହାରାଜ ମଧ୍ୟ କୁହାଯାଉଥିଲା କାରଣ ସେ ଅକ୍କଲକୋଟରେ ଗୋଟିଏ ବଟବୃକ୍ଷ ତଳେ ରହୁଥିଲେ । ତାଙ୍କୁ ଚମତ୍କାରୀ ମହାତ୍ମା ବୋଲି ମାନ୍ୟତା ଦିଆଯାଉଥିଲା ଓ ଅନେକ ଚମତ୍କାରର ଶ୍ରେୟ ଦିଆଯାଇଥିଲା । ମହାରାଷ୍ଟ୍ର ଓ ଉତ୍ତର କର୍ଣ୍ଣାଟକର ଲୋକମାନେ ତାଙ୍କୁ ଭାରି ସମ୍ମାନ କରୁଥିଲେ । ଅକ୍କଲକୋଟକର ମହାରାଜ ଡେଙ୍ଗା ଓ ଡଉଲଡାଉଲ ବ୍ୟକ୍ତି ଥିଲେ । କେବଳ ଗୋଟିଏ ଧୋତି ଛଡ଼ା ସେ ଆଉ କିଛି ପିନ୍ଧୁ ନ ଥିଲେ । ବିଶ୍ୱାସ କରାଯାଏ ଯେ, ଯେତେବେଳେ ସେ ଅକ୍କଲକୋଟରେ ଲୋକମାନଙ୍କର ଗହଣରେ ରହୁଥିଲେ, ସେତେବେଳେ ସେ ଦୂରଦୂରାନ୍ତରେ ଥିବା ଅନ୍ୟ କୌଣସି ଭକ୍ତକୁ ମଧ୍ୟ ଦର୍ଶନ ଦେଉଥିଲେ । ମହାରାଷ୍ଟ୍ରର ବହୁ ରାଜା ମହାରାଜା ଓ ଗ୍ୱାଲିୟରର ସିନ୍ଧିଆ ତାଙ୍କର ଅନୁଗାମୀ ଥିଲେ ।

---

* ଦତ୍ତାତ୍ରେୟଙ୍କୁ ସୃଷ୍ଟିକର୍ତ୍ତା ବ୍ରହ୍ମା, ପାଳନକର୍ତ୍ତା ବିଷ୍ଣୁ ଏବଂ ଯୋଗୀ ଦେବ ଶିବ, ସମସ୍ତଙ୍କର ଏକତ୍ରୀତ ପ୍ରକଟୀକରଣ ବୋଲି କୁହାଯାଏ । ଯେଉଁମାନେ କୌଣସି ନିୟମଦ୍ୱାରା ବନ୍ଧା ନୁହନ୍ତି, ଧାର୍ମିକ ନିୟମଦ୍ୱାରା ମଧ୍ୟ ନୁହେଁ ଏବଂ ପବନ ପରି ସ୍ୱଚ୍ଛନ୍ଦରେ ଘୂରିବୁଲନ୍ତି, ସେହିପରି ମହାତ୍ମାମାନଙ୍କର ସଂରକ୍ଷକ ଦେବତା ହେଉଛନ୍ତି ଦତ୍ତାତ୍ରେୟ । ସେହି ମହାତ୍ମାମାନଙ୍କୁ ଅବଧୂତ କୁହାଯାଏ । ସେମାନଙ୍କ ମଧ୍ୟରୁ ଯେଉଁମାନେ ନଗ୍ନ, ସେମାନଙ୍କୁ ଦିଗମ୍ବର କୁହାଯାଏ । ଅବଧୂତ ଗୀତାରେ ଅବଧୂତମାନଙ୍କର ସିଦ୍ଧାନ୍ତ ଏବଂ ଅଭ୍ୟାସ ବିଷୟରେ ଉଲ୍ଲେଖ ରହିଛି ।

ମୁଁ ତିନିଦିନ ପାଇଁ ଅକ୍କଲକୋଟର ଏକ ଚୌଲଟ୍ରୀରେ ରହିଲି । ତୃତୀୟ ଦିନ ମୁଁ ଏକ ଜୀବନ୍ତ ସ୍ୱପ୍ନରେ ଅକ୍କଲକୋଟଙ୍କର ମହାରାଜଙ୍କୁ ଦେଖିଲି । ସେ ଲାଲ ଧୋତି ପିନ୍ଧିଥିଲେ । କହିଲେ, "ମୁଁ ଶିର୍ଡ଼ୀର ସାଇଁବାବାଙ୍କଠାରୁ ଭିନ୍ନ ନୁହେଁ । ଏବେ ତୁମେ ପୀଠାପୁର ଯାଅ ଓ ଶ୍ରୀପାଦ ବଲ୍ଲଭଙ୍କୁ ପ୍ରଣାମ ଜଣାଅ ।"

ମୁଁ ଆନ୍ଧ୍ରପ୍ରଦେଶର କାକିନାଡ଼ ପାଖରେ ଥିବା ପୀଠାପୁର ଯାଇ ଶ୍ରୀପାଦ ବଲ୍ଲଭଙ୍କର ସମାଧିକୁ ଗଲି । ତାଙ୍କୁ ଶ୍ରୀ ଦତ୍ତାତ୍ରେୟଙ୍କର ରୂପ ବୋଲି ଗଣାଯାଏ । ତା'ପରେ ମୁଁ କର୍ଣ୍ଣାଟକର ଗୁଲବର୍ଗା ଜିଲାର ମାଣିକନଗରରେ ଥିବା ମାଣିକ ପ୍ରଭୁଙ୍କର ସମାଧିକୁ ଗଲି । ତାଙ୍କୁ ମଧ୍ୟ ଦତ୍ତାତ୍ରେୟଙ୍କର ପ୍ରକଟୀକରଣ ବୋଲି କୁହାଯାଏ । ମାଣିକ ପ୍ରଭୁଙ୍କର ସମାଧିରେ ଯେତେବେଳେ ମୁଁ ଗଭୀର ଭାବରେ ଧ୍ୟାନମଗ୍ନ ଥିଲି, ବାବାଜୀ ପ୍ରକଟ ହେଲେ ଓ କହିଲେ, "ଚେନ୍ନାଇରେ ତୁମର ବନ୍ଧୁ ବାଲଚନ୍ଦ୍ର ମେନନଙ୍କର ଘରକୁ ଯାଅ । ସେଠାରୁ ସାଧୁ ବେଶରେ ପବିତ୍ର ପାହାଡ଼ ତିରବନ୍ନମଲାଇକୁ ଯାଅ । ଏହା ହେଉଛି ଶିବ ଅରୁଣାଚଳଙ୍କର ନିବାସ ସ୍ଥାନ । ରମଣ ମହର୍ଷିଙ୍କ ସମାଧିରେ କିଛି ସମୟ ବିତାଅ ।" ମୁଁ ସିଧା ଚେନ୍ନାଇ ଚାଲିଗଲି ଓ ମୋତେ ଯେପରି କୁହାଯାଇଥିଲା, ସେହିପରି କଲି ।

ଦିନେ ସକାଳେ, ଭୋରରୁ ମୁଁ ସାଧୁବେଶ ଧାରଣ କରି ମୋର ବନ୍ଧୁ ମେନନଙ୍କ ଘରୁ ବାହାରି ପଡ଼ିଲି । ଟ୍ରେନ ଏବଂ ବେଳେବେଳେ ଚାଲିଚାଲି ମୁଁ ପ୍ରଥମେ ଶ୍ରୀରଙ୍ଗମ୍‌ର ରଙ୍ଗନାଥ ସ୍ୱାମୀ (ଅର୍ଥାତ୍ ନାଟକର ଅଧିଷ୍ଠାତା) ମନ୍ଦିରକୁ ଗଲି । ଏହା ହେଉଛି ବିଷ୍ଣୁ-ମନ୍ଦିର ଯେଉଁଠାରେ ବିଷ୍ଣୁ ପାଞ୍ଚଟି ଫଣା ଥିବା ଅନନ୍ତନାଗଙ୍କ ଉପରେ ଶୋଇ ରହିଛନ୍ତି । ଶ୍ରୀରଙ୍ଗମ୍ ଶ୍ରୀ ରାମାନୁଜାଚାର୍ଯ୍ୟଙ୍କଦ୍ୱାରା ପ୍ରତିପାଦିତ ବେଦାନ୍ତର ବିଶିଷ୍ଟ ଅଦ୍ୱୈତ ମତର ଏକ ମହତ୍ତ୍ୱପୂର୍ଣ୍ଣ କେନ୍ଦ୍ର ।

ମନ୍ଦିର ନିକଟରେ ହି ପ୍ରସିଦ୍ଧ ଭର୍ଜିନ ମେରୀଙ୍କର ଚର୍ଚ୍ଚ ଅଛି ଯାହାକୁ 'ବେଲାଙ୍କନୀ ମାତା'ଙ୍କର ଚର୍ଚ୍ଚ ବୋଲି କୁହାଯାଏ । ସବୁ ବର୍ଷ ହଜାର ହଜାର ଲୋକ ସେଠାକୁ ଆସନ୍ତି । ମୁଁ ସେଠାକୁ ଗଲି ଓ କିଛି ସମୟ ଶାନ୍ତ ହୋଇ ଚୁପଚାପ ବସିଲି ।

ପୁଣି ମୁଁ ଚାଲିଚାଲି ନାଗୌରର ଜଣେ ସୂଫୀ ସନ୍ଥଙ୍କର କବର ଓ ଦରଗାହକୁ ଗଲି । ସନ୍ଥଙ୍କର ନାମ ଅବ୍‌ଦୁଲ ଖାଦର ଥିଲା । ତାଙ୍କୁ ଲୋକମାନେ 'ନାଗୌର ଆଣ୍ଡଓ୍ୱର' ଅର୍ଥାତ୍ ନାଗୌରର ସ୍ୱାମୀ ନାମରେ ଡାକୁଥିଲେ । ତାଙ୍କ ବିଷୟରେ ଅନେକ ଚମତ୍କାର କରିବାର କାହାଣୀମାନ ରହିଛି । ସେ ପ୍ରାୟ କେତେଦିନ ପାଇଁ ଭୂଇଁ ତଳେ ଥିବା ଭଣ୍ଡାରରେ ଅଦୃଶ୍ୟ ହୋଇଯାଉଥିଲେ ଏବଂ ବାହାରକୁ ଆସିବାବେଳେ ପିଲାମାନଙ୍କ ପାଇଁ ପ୍ରଚୁର ମିଠେଇ ଆଣି ବାଣ୍ଟୁଥିଲେ । ଶୁଣାଯାଏ ଯେ ଥରେ ସେ ଗୋଟିଏ ପିଲାକୁ ନିଜର ପିଠିରେ

ବସାଇ ଆଖି ବନ୍ଦ କରିବାକୁ କହିଲେ, ପିଲାଟି ଯେତେବେଳେ କିଛି ସମୟ ପରେ ଆଖି ଖୋଲିଲା, ଦେଖିଲା ଯେ ସେ ପବିତ୍ର ମକ୍କା ନଗରୀରେ ଅଛି । ଏହିପରି ଭାବରେ ସେ ନାଗୌର ମଧ୍ୟ ଫେରି ଆସିଲା । ତାହାର ଚକିତ ମା'ବାପା ତା'ର ନାଁ ହାଜୀ ରଖିଦେଲେ ଅର୍ଥାତ୍ ଏପରି ବ୍ୟକ୍ତି ଯେ ହଜ କରିସାରିଛି ।

ନାଗୌରରୁ ତିରବନ୍ନମଲଇ ଉଦ୍ଦେଶ୍ୟରେ ବାହାରି ପଡ଼ିଲି; କିନ୍ତୁ ମୁଁ ଲମ୍ବା ବୁଲାଣୀ ରାସ୍ତା ଧରିଲି କାରଣ ମୁଁ କାଞ୍ଚୀ ମଠର ଅତ୍ୟନ୍ତ ଆଦରଣୀୟ ଶଙ୍କରାଚାର୍ଯ୍ୟ ଶ୍ରୀ ଚନ୍ଦ୍ରଶେଖରେନ୍ଦ୍ର ସରସ୍ୱତୀଙ୍କୁ କାଞ୍ଚୀପୁରମରେ ଭେଟିବାକୁ ଆଗ୍ରହୀ ଥିଲି ।

ତାଙ୍କୁ ଭେଟିବାର ସମ୍ଭାବନା ଖୁବ୍ କମ୍ ଥିଲା କାରଣ ଶୁଣିଥିଲି ଯେ ସେତେବେଳେ କିଛିଦିନ ହେଲା ସେ ଲୋକମାନଙ୍କୁ ଭେଟୁ ନ ଥିଲେ । ଯେତେବେଳେ ସେ ଅଳ୍ପ ସମୟ ପାଇଁ ଶଦ୍ଧାଳୁମାନଙ୍କୁ ଆଶୀର୍ବାଦ ଦେବାକୁ ଆସୁଥିଲେ, ସେତେବେଳେ ମୁଁ ଦୂରରୁ ତାଙ୍କୁ କ୍ଷଣକ ପାଇଁ ଦେଖି ପାରିବାର ଆଶା କରିପାରିବି ମାତ୍ର । ମୋତେ ସାବଧାନ କରିଦିଆଯାଇଥିଲା ଯେ, ମୁଁ ଯେପିର ତାଙ୍କ ସହିତ କିଛି କଥାବାର୍ତ୍ତା ନ କରେ ବା କିଛି ପ୍ରଶ୍ନ ନ ପଚାରେ । କାରଣ ଆଚାର୍ଯ୍ୟ ମୌନବ୍ରତରେ ଥିଲେ । ସନ୍ଧ୍ୟା ସୁଦ୍ଧା ଖବର ମିଳିଲା ଯେ, ସେ ମୌନବ୍ରତ ଭାଙ୍ଗି ଦେଇଥିଲେ ଏବଂ ଦର୍ଶନ ସମୟରେ କିଛି କହିପାରନ୍ତି । ଲୋକମାନଙ୍କୁ ଧାଡ଼ି ବାନ୍ଧି ଠିଆ ହେବାର ଥିଲା ଏବଂ ଯେତେବେଳେ ଆଚାର୍ଯ୍ୟ ଗୋଟିଏ ଛୋଟ କୁଡ଼ିଆ ସାମ୍ନାରେ ବସିବେ, ସେତେବେଳେ ସେମାନଙ୍କୁ ତାଙ୍କର ପାର୍ଶ୍ୱ ଦେଇ ଚାଲିଯିବାର ଥିଲା ।

ସେ ଜଣେ ଦୁର୍ବଳ ବୃଦ୍ଧ ଥିଲେ । ସେ ଭାରି ପତଳା, ନଗ୍ନ ଶରୀର ଥିଲେ ଏବଂ କେବଳ ଗୋଟିଏ ଗେରୁଆ ବସ୍ତ୍ର ତାଙ୍କର ଅଣ୍ଟାରେ ଗୁଡ଼ା ହୋଇଥିଲା, ଅନ୍ୟ ଗୋଟିକରେ ତାଙ୍କର ମସ୍ତକ ଆବୃତ ହୋଇଥିଲା । ସେ ଗୋଟିଏ ଦଣ୍ଡୀ ଧରିଥିଲେ, ଯେଉଁଥିରୁ ଜଣା ଯାଉଥିଲା ଯେ, ସେ ଆଦି ଶଙ୍କରାଚାର୍ଯ୍ୟଙ୍କଦ୍ୱାରା ସ୍ଥାପିତ ଦଶନାମୀ ସମ୍ପ୍ରଦାୟର ସନ୍ନ୍ୟାସୀ ଥିଲେ । ସେ ମୋଟା ଚଷମା ପିନ୍ଧିଥିଲେ, ମଥାରେ ପବିତ୍ର ଭସ୍ମ ଥିଲା, ଯାହା ଶିବଙ୍କର ଅନୁଗାମୀମାନଙ୍କର ପ୍ରତୀକ । ଭକ୍ତ ତାଙ୍କ ସମ୍ମୁଖକୁ ଯାଇ କିଛି ଦୂରରୁ ଦଣ୍ଡବତ କରୁଥିଲେ ଓ ସେ ଆଶୀର୍ବାଦର ମୁଦ୍ରାରେ ନିଜର ଡାହାଣ ହାତ ଉଠାଉଥିଲେ, କେତେବେଳେ ଗୋଟାଏ ଅଧେ କଥା କହୁଥିଲେ । ଡାଗଡ଼ା, ହୃଷ୍ଟପୁଷ୍ଟ ଜଣେ ବ୍ରାହ୍ମଣ ଭିଡ଼କୁ ନିୟନ୍ତ୍ରଣ କରୁଥିଲେ ।

ମୁଁ ବି ଧାଡ଼ିରେ ଠିଆ ହେଲି । ଯେତେବେଳେ ମୁଁ ଠିକ୍ ତାଙ୍କ ସମ୍ମୁଖରେ ପହଞ୍ଚିଲି, ସେତେବେଳେ ସେ ମୋତେ ମନଦେଇ ନିରୀକ୍ଷଣ କଲେ ଏବଂ ତାମିଲରେ ପଚାରିଲେ, ''ତୁମର ନାଁ କ'ଣ ?'' ''ମଧୁ'', ମୁଁ କହିଲି, ନିଜର ପାପୁଲିକୁ ମୁହଁ ଉପରେ ରଖିଥାଏ

ଯେପରି ମୋର ନିଃଶ୍ୱାସ ସନ୍ଥଙ୍କ ଉପରେ ନ ପଡ଼ିବ । ସେପରି କରିବାକୁ ବଳବାନ ବ୍ରାହ୍ମଣ ଜଣକ କହୁଥିଲେ ।

ସେ ମୃଦୁମୃଦୁ ହସିଲେ ଏବଂ କହିଲେ, ''ତୁମର ଗୁରୁଙ୍କଦ୍ୱାରା ଦିଆଯାଇଥିବା ନାଁ, ନୁହେଁ ? ତୁମେ ଜଷ୍ଟିସ ଇସ୍ମାଇଲଙ୍କ ନାଁ ଶୁଣିଛ ?''

''ନା'', ମୁଁ କହିଲି ।

''ସେ ମଧ୍ୟ ତୁମରି ପରି କିନ୍ତୁ ସେ କମ୍ବ ରାମାୟଣର ହେଉଛନ୍ତି ଜଣେ ବିଶେଷଜ୍ଞ । ଓଃ, ବହୁତ କାମ କରିବାର ଅଛି । ସତ୍‌ସଙ୍ଗ ହେଉଛି ମହତ୍ତ୍ୱପୂର୍ଣ୍ଣ ।''

ଏତିକି କହି ସେ ସିଧା ହାତ ଆଶୀର୍ବାଦର ଭଙ୍ଗୀରେ ଉଠାଇଲେ ଏବଂ ତାଙ୍କ ପାଖରେ ଠିଆ ହୋଇଥିବା ତାଗଡ଼ା ବ୍ରାହ୍ମଣ ଜଣକ ମୋତେ ବିଦା କରିଦେଲା । ବହୁ ବର୍ଷ ପରେ ଯେତେବେଳେ ମୋର ବନ୍ଧୁମାନେ ମୋର କାମରେ ସହାୟତା କରିବା ପାଇଁ ଗୋଟିଏ ଟ୍ରଷ୍ଟ କରିବାକୁ ଚାହିଁଲେ ଏବଂ ଗୋଟିଏ ଉପଯୁକ୍ତ ନାମର ସନ୍ଧାନ କରୁଥିଲେ, ମୋ ମନରେ ସତ୍‌ସଙ୍ଗ ନାମ ଆସିଲା ଓ ଟ୍ରଷ୍ଟର ନାମ 'ସତ୍‌ସଙ୍ଗ ଫାଉଣ୍ଡେସନ' ରଖାଗଲା । ସତ୍‌ର ଅର୍ଥ ହେଉଛି ସତ୍ୟ ଏବଂ ସଙ୍ଗର ଅର୍ଥ ହେଉଛି ଏକତ୍ର କରିବା କିମ୍ବା ସମୂହ । ତେଣୁ ସତ୍‌ସଙ୍ଗର ଅର୍ଥ ହୋଇପାରେ – ସତ୍ୟର ସନ୍ଧାନରେ ଏକତ୍ରିତ ବ୍ୟକ୍ତିମାନଙ୍କର ସମୂହ ଅଥବା ଉତ୍ତମ ଓ ସତ୍ ବ୍ୟକ୍ତିମାନଙ୍କର ସମୂହ । ଏହାର ଅର୍ଥ ସତ୍ୟ ପାଇଁ ଏକଜୁଟ ହେବା ମଧ୍ୟ ହୋଇପାରେ । ମୁଁ ଭାବୁଛି କ'ଣ ଆଚାର୍ଯ୍ୟଙ୍କର ବିଦାୟକାଳୀନ କଥାର ଏହି ନାମ ସହିତ କିଛି ସମ୍ବନ୍ଧ ଅଛି ?

ତିରବନ୍ନମଲଇ ପହଞ୍ଚି ମୁଁ ପଙ୍ଖାବାବା ନାମରେ ଜଣାଶୁଣା ଜଣେ ମହାତ୍ମାଙ୍କର ସନ୍ଧାନ କରିବାକୁ ଚେଷ୍ଟା କଲି । ତାଙ୍କର ନାଁ ରାମସୂରତ କୁମାର ଥିଲା । ମୁଁ କାଞ୍ଚୀପୁରମରେ ଜଣେ ଅବକାଶ ପ୍ରାପ୍ତ ପ୍ରଫେସରଙ୍କଠାରୁ ଶୁଣିଥିଲି ଯେ ପଙ୍ଖାବାବା ପିଲାଙ୍କ ପରି ଥିଲେ ଏବଂ ବେଳେବେଳେ ପାଗଳପରି ବ୍ୟବହାର କରୁଥିଲେ । ସେ ଖୁବ୍ ଭଲ ଇଂରେଜୀ ଓ ହିନ୍ଦୀ କହିପାରୁଥିଲେ ।

ମୁଁ ତାଙ୍କୁ ଏକ ଛୋଟ କୁଡ଼ିଆରେ ଠାବ କଲି । କୁଡ଼ିଆଟି ମନ୍ଦିରର ରଥ ନିକଟରେ ଥିଲା । ତାଙ୍କ ପାଖରେ କେତେଜଣ ଲୋକ ଠିଆ ହୋଇଥିଲେ । ସେ ଡେଙ୍ଗା ଓ ଗୋରା ରଙ୍ଗର ଥିଲେ । ତାଙ୍କର ଲମ୍ବା ଦାଢ଼ି ଏବଂ ପାଚିଲା ବାଳ ଥିଲା । ସେ ଧୋତି ଓ ଗୋଟିଏ ପାଶ୍ଚାତ୍ୟ ଲୋକମାନେ ପିନ୍ଧୁଥିବା ପରି ଘିଅ ରଙ୍ଗର କୋଟ ପିନ୍ଧୁଥିଲେ । କୋଟଟି ବହୁଦିନ ହେଲା ଧୁଆ ହୋଇ ନ ଥିଲା ପରି ଜଣାଯାଉଥିଲା ।

ସେ ଭିତରୁ ମୋତେ ଚାହିଁଲେ ଏବଂ ହାତ ହଲାଇ, ''ଆସ, ଆସ, ଏଠି ବସ ।'' ସ୍ପଷ୍ଟ ଓ ସ୍ନେହସିକ୍ତ ସ୍ୱରରେ କହିଲେ । ମୁଁ ଭିତରକୁ ଯାଇ ବସିଗଲି । ''ଆହୁରି ପାଖକୁ, ଆହୁରି ପାଖକୁ'', ସେ କହିଲେ ଏବଂ ମୁଁ ତାଙ୍କର ଅତି ନିକଟରେ ବସିଗଲି । ''ଆଚ୍ଛା, ନାଁ କ'ଣ ?'' ସେ ପଚାରିଲେ ।

''ମଧୁ, ବାବା'', ମୁଁ କହିଲି ।

''ମଧୁ, ମଧୁ'', ସେ ଦୋହରାଇଲେ ଯେପରି ନାଁଟି ତାଙ୍କୁ ଆନନ୍ଦ ଦେଉଛି ! ''ମଧୁ, ତୁମେ ତାହାହେଲେ ନମାଜ କରିବା ଜାଣ ?''

''ହଁ, କିନ୍ତୁ ମୁଁ କରେ ନାହିଁ, ମୁଁ ଧ୍ୟାନ କରେ ।''

ଧ୍ୟାନ, ନମାଜ ସବୁ ହେଉଛି ଏକ । ମଧୁ, ସବୁ ଏମ୍, ଏମ୍, ଏମ୍, ଏମ୍, ଯମ, ଯମ ତୁମେ ହେଉଛ ଏମ୍, ହା ହା ହା !'' ସେ ହସିଲେ ।

ତାଙ୍କର ହସ ଉଦରର ଗଭୀରରୁ ଉଠୁଥିଲା ଏବଂ ତୀବ୍ର ଅଟ୍ଟହାସରେ ପରିଣତ ହେଲା ।

''ଏମ୍, ଏମ୍, ହା, ହା !''

ହସରେ ଝୁଲି ଝୁଲି ସେ ମୋ କାନ୍ଧରେ ଏତେ ଜୋର୍‌ରେ ଏକ ଥାପ୍ପଡ଼ ମାରିଲେ ଯେ ଯେଉଁ ଝୁଲା ମୁଁ ଧରିଥିଲି, ସେଇଟା ମୋ ହାତରୁ ଖସିଯାଇ ତାଙ୍କ ପାଦ ପାଖରେ ପଡ଼ିଲା ଏବଂ କେତେଗୁଡ଼ିଏ ଚିନାବାଦାମ ସେଥିରୁ ବାହାରି ଚାରିଆଡ଼େ ବିଞ୍ଚିହୋଇ ପଡ଼ିଲା ।

''ଚିନାବାଦାମ'', ସେ କହିଲେ, ''ଏହି ଭିକାରିକୁ ଚିନାବାଦାମ ଭଲ ଲାଗେ'', ଏବଂ ସେଥିରୁ କିଛି ଭାରି ଖୁସିରେ ଖାଇବାକୁ ଲାଗିଲେ । ''ଆଚ୍ଛା, ଆଚ୍ଛା, ଏବେ ତୁମେ କୁଆଡ଼େ ଯାଉଛ ?'' ସେ ପଚାରିଲେ ।

''ରମଣାଶ୍ରମ'', ମୁଁ କହିଲି ।

ସେ ପୁଣି ଜୋର୍‌ରେ ହସି ଉଠିଲେ, ''ରମଣ ସେଠାରେ ଅଛନ୍ତି ?'' କେବଳ ସମାଧି ଅଛି ସେଠାରେ । ରମଣଙ୍କୁ ଗୋଟାଏ ଜାଗାରେ ସୀମିତ କରି ରଖାହୋଇ ପାରିବ ନାହିଁ । ଏଠି, ସେଠି, ସବୁଠି । ଠିକ୍ ଅଛି, ଠିକ୍ ଅଛି । ଯାଅ, ସୁଖୀ ହୁଅ ।'' ସେ ମୋର କାନ୍ଧରେ ଆଉ ଏକ ଥାପ୍ପଡ଼ ମାରିଲେ ।

ମୁଁ ଯିବାକୁ ଉଠି ଠିଆହେଲି । ସେତିକିବେଳେ କିଏ ଜଣେ କହିଲା, ''ସ୍ୱାମୀ, ମୋର ଆଉ କିଛି ଦରକାର ନାହିଁ, କେବଳ ମନର ଶାନ୍ତି 'ପୀସ୍ ଅଫ୍ ମାଇଣ୍ଡ' ଦରକାର ।''

''ମନର ଶାନ୍ତି, ପୀସ୍ ଅଫ୍ ମାଇଣ୍ଡ୍ ?'' ପଙ୍ଖା ବାବା ଜୋର୍‌ରେ କହିଲେ । ତାଙ୍କର ସାରା ଶରୀର ହସର ହିଲ୍ଲୋଳରେ ହଲିବାକୁ ଲାଗିଲା । ''ପୀସ୍ ଅଫ୍ ମାଣ୍ଡଣ୍ଡ୍ ଚାହୁଁଛି ଆଉ ଏଠି ଏହି ଭିକାରିର ମାଇଣ୍ଡ୍ ପୀସ୍-ପୀସ୍ ହୋଇଗଲାଣି । ହା ହା !''

ମୁଁ ନିଜର ଝୁଲା ଉଠାଇଲି, ଦଣ୍ଡବତ କଲି ଓ ବାହାରକୁ ଚାଲିଆସିଲି ।

''ଏମ୍, ଏମ୍ !'' ସେ ମୋ ପଛରେ ପାଟିକଲେ, ''ମନ ଖଣ୍ଡ ଖଣ୍ଡ ହୋଇଯାଇଛି । କୌଣସି ଅବସୋସ ନାହିଁ, ରମଣଙ୍କୁ କହିବ ।''

ମୁଁ ରମଣାଶ୍ରମର ଅଫିସକୁ ଯାଇ ରହିବା ପାଇଁ ସ୍ଥାନ ବିଷୟରେ ପଚାରିଲି । ମୋତେ ସାମୁହିକ ଶୟନାଗାରରେ ରହିବାର ଅନୁମତି ମିଳିଗଲା । ସେଠାରେ କେତେଜଣ ସାଧୁ ପୂର୍ବରୁ ରହିଥିଲେ । ଆଶ୍ରମ ଏକ ଶାନ୍ତିପୂର୍ଣ୍ଣ ସ୍ଥାନ ଥିଲା । ପବିତ୍ର ପ୍ରକାଶର ପାହାଡ଼ ଅରୁଣାଚଳ, ଯାହାକୁ ପ୍ରାଚୀନ କାଳରୁ ଶିବଙ୍କର ପବିତ୍ରତମ ନିବାସର ମାନ୍ୟତା ଦିଆଯାଏ, ଏଠାରୁ ଦୂରରେ ନ ଥିଲା । ସ୍କନ୍ଦ ପୁରାଣରେ ଅରୁଣାଚଳକୁ ଶିବଙ୍କର ହୃଦୟଚକ୍ର କୁହାଯାଇଛି । ଶ୍ରଦ୍ଧାଳୁ ଯାତ୍ରୀମାନେ ପର୍ବତର ପରିକ୍ରମା କରନ୍ତି, ବିଶେଷ ଭାବରେ ପୂର୍ଣ୍ଣିମାର ରାତିରେ ।

ରମଣ ମହର୍ଷି, ଯାହାଙ୍କ ନାମରେ ଏହି ଆଶ୍ରମର ନାଁ ଦିଆଯାଇଛି, ଅରୁଣାଚଳ ପର୍ବତକୁ ଉତ୍ତମ ଆଧ୍ୟାତ୍ମିକ ସ୍ଥାନର ମାନ୍ୟତା ଦେଉଥିଲେ । ନିଜର ଯୁବାବସ୍ଥାରେ ସେ ଏହା ପ୍ରତି ଅତ୍ୟନ୍ତ ସମ୍ମୋହକ ରୂପରେ ଆକର୍ଷିତ ହୋଇଥିଲେ । ଯଦିଓ ଭାରତ ଓ ବିଦେଶର ଅନେକ ଲୋକ ରମଣ ମହର୍ଷିଙ୍କ ବିଷୟରେ ଜାଣନ୍ତି, ଯେଉଁମାନେ ତାଙ୍କ ବିଷୟରେ ଅଜ୍ଞ ସେମାନେ ଜାଣିବା ପାଇଁ ମୁଁ ତାଙ୍କର ଏକ ସଂକ୍ଷିପ୍ତ ପରିଚୟ ଦେବା ଉଚିତ ମନେକରୁଛି ।

ତାଙ୍କର ଜନ୍ମ 1879 ମସିହାର ଡିସେମ୍ବର ମାସର ତିରିଶ ତାରିଖ ଦିନ ତିରଚୁଲୀ ନାମକ ଏକ ଛୋଟ ଗ୍ରାମରେ ଏବଂ ଏକ ବ୍ରାହ୍ମଣ ପରିବାରରେ ହୋଇଥିଲା । ତାଙ୍କର ପିଲାଦିନର ନାଁ ଥିଲା ଭେଙ୍କଟରମଣ ଯାହାକୁ ପରେ ଛୋଟ କରି କେବଳ ରମଣ କରିଦିଆଯାଇଥିଲା । ସେ ଜଣେ ଆକର୍ଷକ ଓ ବୁଦ୍ଧିମାନ ବାଳକ ଥିଲେ ଯାହାକୁ ବାହାରର କ୍ରିୟାକଳାପ ବେଶି ପସନ୍ଦ ଥିଲା । ସେ ଏତେ ଗାଢ଼ ନିଦରେ ଶୋଉଥିଲେ ଯେ ତାଙ୍କୁ ଉଠାଇବା କଷ୍ଟକର ହୋଇପଡୁଥିଲା । ଯେତେବେଳେ ଭେଙ୍କଟରମଣଙ୍କୁ ଚଉଦବର୍ଷ, ସେତେବେଳେ ତାଙ୍କର ପିତାଙ୍କର ଦେହାନ୍ତ ହୋଇଗଲା ଓ ସେ ନିଜର କକା ସୁନ୍ଦରମ ଆୟାରଙ୍କ ପାଖକୁ ମଦୁରାଇ ଚାଲିଗଲେ । ତାଙ୍କୁ ଷୋହଳ ବର୍ଷ ବୟସ ହୋଇଥିବା ବେଳେ ତାଙ୍କର ଏକ ଅସାଧାରଣ ଓ ସ୍ୱତଃସ୍ଫୂର୍ତ୍ତ ଅନୁଭୂତି ହୋଇଥିଲା, ତାଙ୍କର ଭାଷାରେ –

''ସବୁଦିନ ପାଇଁ ମଦୁରାଇ ଛାଡ଼ିବାର ପ୍ରାୟ ଛ' ସପ୍ତାହ ପୂର୍ବରୁ ମୋ ଜୀବନରେ ମହାନ ପରିବର୍ତ୍ତନ ହେଲା । ଏହା ବେଶ ହଠାତ୍ ଘଟିଗଲା । ମୁଁ ନିଜର କକାଙ୍କ ଘରେ

ଏକତାଲାରେ ବସିଥିଲି । ମୁଁ ପ୍ରାୟ ବେମାର ପଡୁ ନ ଥିଲି ଓ ସେଦିନ ମୋର ଦେହ ଭଲ ଥିଲା; କିନ୍ତୁ ହଠାତ୍ ମୃତ୍ୟୁଭୟ ମୋତେ ମାଡ଼ିବସିଲା । ମୋର ସ୍ୱାସ୍ଥ୍ୟରେ ଏହି ପ୍ରକାର ଭୟର କୌଣସି କାରଣ ନ ଥିଲା । ମୁଁ ତା'ର କାରଣ ଖୋଜିବାର ଚେଷ୍ଟା କଲି ନାହିଁ । ମୋତେ ଲାଗିଲା, ମୁଁ ମରିବାକୁ ଯାଉଥିଲି ଏବଂ ଭାବିବାକୁ ଲାଗିଲି, ଏଥିପାଇଁ କ'ଣ କରିହେବ । ମୋ ମୁଣ୍ଡକୁ ଆସିଲା ନାହିଁ ଯେ ଏଥିପାଇଁ ଗୁରୁଜନ ବା ଡାକ୍ତରମାନଙ୍କ ସହିତ ପରାମର୍ଶ କରିବା ଉଚିତ । ମୋତେ ଲାଗିଲା, ଯେ ଏହି ସମସ୍ୟାର ସମାଧାନ ମୋତେ ହିଁ କରିବାକୁ ହେବ, ବର୍ତ୍ତମାନ ଆଉ ଏଇଠି ।

ମୃତ୍ୟୁ ଭୟର ଧକ୍କା ମୋର ମନକୁ ଅନ୍ତର୍ମୁଖୀ କରିଦେଲା ଏବଂ ମୁଁ ମୋ ନିଜକୁ କହିଲି (ପ୍ରକୃତରେ ଏହି ସବୁ ଶବ୍ଦରେ ନୁହେଁ) – ଏବେ ମୃତ୍ୟୁ ଆସିଗଲା, ଏହାର ଅର୍ଥ କ'ଣ ? କ'ଣ ଯାହା ମରିଯାଉଛି ? ଏହି ଶରୀର ମରିଯାଏ ଏବଂ ତୁରନ୍ତ ମୁଁ ମରିବାର ପ୍ରକ୍ରିୟାର ନାଟକୀୟ ରୂପ ଦେଇଦେଲି । ମୁଁ ଶରୀରକୁ ଶବ ପରି ମେଲାଇ ଦେଇ ଅଙ୍ଗପ୍ରତ୍ୟଙ୍ଗ ଶବପରି ମରିବାର କିଛି ସମୟ ପରେ ଯେପରି ହୋଇଥାଏ, ସେହିପରି ଟାଣ କରି ଶୋଇଗଲି । ମୁଁ ନିଜର ଶ୍ୱାସରୋଧ କଲି ଏବଂ ଓଠକୁ ଚାପି ବନ୍ଦ କରିଦେଲି ଯେପରି କୌଣସି ଶବ୍ଦ, ଏପରିକି ମୁଁ ଶବ୍ଦ ମଧ୍ୟ ବାହାରିପାରିବ ନାହିଁ । ପୁଣି ମୁଁ ନିଜକୁ ନିଜେ କହିଲି, ବାସ୍ ଏହି ଶରୀର ମରିଗଲା । ଏହାକୁ ଶ୍ମଶାନ ନେଇଯାଇ ଜଳାଇ ଦେବେ । ଏହା ପାଉଁଶ ହୋଇଯିବ; କିନ୍ତୁ ଏହି ଶରୀରର ମୃତ୍ୟୁ ସହିତ କ'ଣ ମୁଁ ବି ମରିଗଲି ? କ'ଣ ଏହି ଶରୀର ହେଉଛି ମୁଁ ? ଶରୀର ନିଷ୍କ୍ରିୟ ଓ ଶାନ୍ତ କିନ୍ତୁ ମୁଁ ମୋର ବ୍ୟକ୍ତିତ୍ୱ ପୂରା ଭାବରେ ଅନୁଭବ କରୁଛି ଏବଂ ମୋର ଅଭ୍ୟନ୍ତରର 'ମୁଁ' ଶବ୍ଦ ମଧ୍ୟ ଏହାଠାରୁ ପୃଥକ ।

ତେଣୁ ମୁଁ ହେଉଛି ଶରୀର ଊର୍ଦ୍ଧ୍ୱରେ ଆତ୍ମା । ଶରୀର ମରିଯାଏ କିନ୍ତୁ ଆତ୍ମା, ଯାହା ଏହାଠାରୁ ଊର୍ଦ୍ଧ୍ୱରେ, ତାହାକୁ ସ୍ପର୍ଶ କରିହୁଏ ନାହିଁ । ତା'ର ଅର୍ଥ ହେଲା, ମୁଁ ମୃତ୍ୟୁହୀନ ଆତ୍ମା ।

ଏହାସବୁ ଅଳସ ବିଚାର ନ ଥିଲା, ଏହା ମୋ ମଧ୍ୟରେ ପରିଷ୍କାର ଭାବରେ ଝଲସିଗଲା, ଯାହା ମୁଁ ସିଧା ଅନୁଭବ କଲି, ପ୍ରାୟ ଚିନ୍ତା କରିବାର ପ୍ରକ୍ରିୟାର ଅନୁପସ୍ଥିତିରେ । 'ମୁଁ' ଥିଲି ବାସ୍ତବ, ମୋର ତତ୍କାଳୀନ ପରିସ୍ଥିତିର ଏକମାତ୍ର ବାସ୍ତବିକତା, ମୋର ଶରୀର ସମ୍ପର୍କିତ ସାରା ସଜ୍ଞାନ କାର୍ଯ୍ୟକଳାପର ଏହି 'ମୁଁ' କେନ୍ଦ୍ର ଥିଲା । ସେହି ମୁହୂର୍ତ୍ତ ପରେ 'ମୁଁ' କିମ୍ବା ଆତ୍ମା ଏକ ସମ୍ମୋହନ ଦ୍ୱାରା ନିଜେ ନିଜ ଉପରେ ଧ୍ୟାନକୁ କେନ୍ଦ୍ରିତ କରିଦେଲା । ସବୁଦିନ ପାଇଁ ମୃତ୍ୟୁଭୟ କଟିଗଲା । ଆତ୍ମାରେ ତଲ୍ଲୀନତା ଏହା ପରେ ନିରନ୍ତର ଲାଗିରହିଲା ।

ଅନ୍ୟ ବିଚାର ସଙ୍ଗୀତର ସ୍ୱର ପରି ଆସିବା ଯିବା କପରିପାରନ୍ତି, କିନ୍ତୁ 'ମୁଁ' ମୂଳଭୂତ 'ଶ୍ରୁତ ସ୍ୱର' ପରି ସର୍ବଦା ଅବସ୍ଥାନ କଲା, ଯାହା ଅନ୍ୟସବୁ ସ୍ୱରର ଆଧାର ଏବଂ ସେହି ସହିତ ମିଳିତ ହୋଇ ରହିଥାଏ । ଶରୀର ହୁଏତ ବାର୍ତ୍ତାଳାପ କରୁଥିଲା, ପଢୁଥିଲା ବା ଅନ୍ୟ କୌଣସି କାମ କରୁଥିଲା, କିନ୍ତୁ ମୁଁ ସବୁବେଳେ ସେହି 'ମୁଁ' ଉପରେ କେନ୍ଦ୍ରିତ ହୋଇ ରହିଥାଏ । ଏହି ସଂକଟ ପୂର୍ବରୁ ମୋତେ ନିଜର ଆତ୍ମ ବିଷୟରେ କିଛି ସ୍ପଷ୍ଟ ଧାରଣା ନ ଥିଲା ଏବଂ ମୁଁ ସଜ୍ଞାନରେ ତାହା ପ୍ରତି ଆକୃଷ୍ଟ ମଧ୍ୟ ନ ଥିଲି । ମୁଁ ତାହା ପ୍ରତି କୌଣସି ଅନୁଭୂତିକ୍ଷମ ରୁଚି ଅନୁଭବ କରି ନ ଥିଲି । ସେଥିରେ ନିରନ୍ତର ମଗ୍ନ ରହିବାର ପ୍ରଶ୍ନ ଉଠୁ ନ ଥିଲା ।''

ଏହାର ପରିଣାମ ସ୍ୱରୂପ ସେ ଶୀଘ୍ର ମଦୁରାଇ ଛାଡ଼ିଦେଲେ । ଯିବା ପୂର୍ବରୁ ଗୋଟିଏ ଚିଠି ଲେଖିଗଲେ ଯେ ସେ ସତ୍ୟର ସନ୍ଧାନ ପରି ଉତ୍ତମ କାର୍ଯ୍ୟପାଇଁ ଯାଉଛନ୍ତି ଏବଂ ତାଙ୍କୁ ଖୋଜିବାର କୌଣସି ଆବଶ୍ୟକତା ନାହିଁ । ଅରୁଣାଚଳ ଶବ୍ଦ ତାଙ୍କୁ ସଦାବେଳେ ଆକର୍ଷିତ କରୁଥିଲା । ଆଉ ବର୍ତ୍ତମାନ ଆତ୍ମରେ (ଯେ ନିଜେ ନିଜେ ତାଙ୍କ ମଧ୍ୟରେ ପ୍ରକଟ ହୋଇ ସାରିଥିଲା) ସର୍ବଦା ତଲ୍ଲୀନ ହୋଇ ରହିବାର ଅପ୍ରତିରୋଧ ଲାଳସାର ବଶୀଭୂତ ହୋଇ, ସେ ଅରୁଣାଚଳକୁ ଯାଉଥିବା ରେଳଗାଡ଼ି ଧରିଲେ । 1896 ମସିହା ସେପ୍ଟେମ୍ବର ମାସର କୌଣସି ଏକ ଦିନ ସେ ତିରୁବନମଲଈ ରେଳ ଷ୍ଟେସନରେ ପହଞ୍ଚିଲେ । ସେ ନିଜର ପ୍ରିୟ ଅରୁଣାଚଳ ଶିବଙ୍କ ସ୍ଥାନରେ ପହଞ୍ଚିଯାଇଥିଲେ– ଅରୁଣାଚଳ ଶିବ, ପରମ ସତ୍ତାଙ୍କର ପ୍ରକାଶସ୍ୱରୂପ, ଅରୁଣାଚଳ ପର୍ବତ ଯାହାର ପ୍ରତିନିଧିତ୍ୱ କରେ । ଅରୁଣାଚଳ ପର୍ବତ ହେଉଛି ପବିତ୍ର ପ୍ରକାଶର ପର୍ବତ ।

ଶ୍ରୀ ରମଣ ମହର୍ଷି ସ୍ୱୟଂ କହିଛନ୍ତି ଯେ, ଯେତେବେଳେ ସେ ଶୀଘ୍ର ଶୀଘ୍ର ଅରୁଣାଚଳ ଶିବ ମନ୍ଦିରକୁ ଯାଉଥିଲେ, ତାଙ୍କର ହୃଦୟ ଖୁସିରେ ଉଛୁଳୁଥିଲା । ଗର୍ଭଗୃହରେ ପଶି ଆନନ୍ଦ ବିଭୋର ହୋଇ ସେ ଅରୁଣାଚଳେଶ୍ୱର ଶିବ ଲିଙ୍ଗଙ୍କୁ ବାହୁରେ କୁଣ୍ଢାଇ ପକାଇଲେ । ଯେଉଁ ଜ୍ୱାଳା ମଦୁରାଇରୁ ଆରମ୍ଭ ହୋଇଥିଲା, ପ୍ରକାଶଙ୍କ ସହିତ ମିଳିତ ହେବାପରେ ଉଭାନ୍ ହୋଇଗଲା । ଯାତ୍ରା ସମାପ୍ତ ହୋଇଗଲା, କାରଣ ତାଙ୍କୁ ସତ୍ୟ ପ୍ରାପ୍ତ ହୋଇଯାଇଥିଲା– ହୃଦୟ କେନ୍ଦ୍ରରେ ପରମ ଆନନ୍ଦମୟ ଆତ୍ମା । ଏହାପରେ, ତାଙ୍କୁ କେବଳ ସେହି ଉନ୍ନତ ଅବସ୍ଥାରେ ମଗ୍ନ ରହିବାପାଇଁ ଏକାନ୍ତର ସନ୍ଧାନ ଥିଲା ।

ପ୍ରଥମେ ସେ ମନ୍ଦିରର ଗୋଟିଏ ଭୂଗର୍ଭ କକ୍ଷରେ ରହିଲେ । ସ୍ଥାନୀୟ ମହାତ୍ମା ଶେଷାଦ୍ରି ସ୍ୱାମୀ ତାଙ୍କୁ ସେଠାରୁ ଖୋଜି ବାହାର କଲେ ଏବଂ କହିଲେ, ''ଏ ଏପରି ଏକ ହୀରା, ଯାହା ବିଷୟରେ କେହି ଜାଣନ୍ତି ନାହିଁ ।'' ବିଛା କାମୁଡ଼ା, ପିମ୍ପୁଡ଼ି କାମୁଡ଼ା ଇତ୍ୟାଦିରେ କ୍ଷତବିକ୍ଷତ ତାଙ୍କର ଦେହର ଯତ୍ନ ଏହି ଦୟାଳୁ ଆତ୍ମା ନେଇଥିଲେ । ଖୁବ୍ ଶୀଘ୍ର ସେ

ଗୋଟିଏ ନିର୍ଜନ ମନ୍ଦିରକୁ ଚାଲିଗଲେ ଏବଂ ତା'ପରେ ଅନ୍ୟ ଏକ ମନ୍ଦିରକୁ । ଏହିପରି ଘଟଣା ଲାଗିରହିଲା । ସେ କଥା କହୁ ନଥିଲେ ଏବଂ ତାଙ୍କୁ 'ମୌନୀ ବ୍ରାହ୍ମଣ ସ୍ୱାମୀ' କୁହାଯାଉଥିଲା । ପ୍ରଚାରରୁ ବର୍ତ୍ତିବାପାଇଁ ସେ ଅରୁଣାଚଳ ପର୍ବତକୁ ଚାଲିଗଲେ ଏବଂ ଅନେକ ଗୁମ୍ଫା ଓ ମନ୍ଦିରରେ ସମୟ କଟାଇବାପରେ ବିରୂପାକ୍ଷ ନାମକ ଏକ ଗୁମ୍ଫାରେ ସତର ବର୍ଷ ରହିଲେ ।

ଖୁବ୍ ଶୀଘ୍ର ପରିଚାରକ ଓ ଭକ୍ତଙ୍କର ଏକ କ୍ଷୁଦ୍ର ଜଳ ତାଙ୍କ ସହିତ ସମ୍ପୃକ୍ତ ହୋଇଗଲେ । ମହାନ ବିଦ୍ୱାନ ଓ ଆଧ୍ୟାତ୍ମିକ ସାଧକ କାବ୍ୟ କାନ୍ତ ଗଣପତି ଶାସ୍ତ୍ରୀଜୀ ମଧ୍ୟ ସେଠାକୁ ଆସିଲେ । ସେ ହିଁ ପ୍ରଚାର କଲେ ଯେ, ରମଣ ବାସ୍ତବରେ 'ଉଚ୍ଚତମ ସତ୍ୟ'ରେ ସ୍ଥିତ ଏକ ମହାନ୍ ଋଷି; 'ସତ୍ୟ', ଯାହାର ଚର୍ଚ୍ଚା ପ୍ରାଚୀନ ଉପନିଷଦଗୁଡ଼ିକରେ କରାଯାଇଥାଏ । F.H. Humphreys ନାମକ ଜଣେ ବ୍ରିଟିଶ ପୋଲିସ ଅଫିସର ତାଙ୍କର ପ୍ରଥମ ପଶ୍ଚିମଦେଶୀୟ ଅନୁଗାମୀ ଥିଲେ । ସେ ମଧ୍ୟ ତାଙ୍କୁ ଏହିଠାରେ ଭେଟିଥିଲେ । ରମଣ ମହର୍ଷିଙ୍କର ମା' ସେଠାକୁ ଆସି, ସେଠାରେ ସ୍ଥାୟୀ ଭାବରେ ବାସ କଲେ । ସେ ତାଙ୍କର ପୁତ୍ରଙ୍କ ସହିତ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ରହିଥିଲେ । ସେତେବେଳକୁ ଶ୍ରୀ ରମଣଙ୍କୁ ମହର୍ଷି ବା ମହାନ ଋଷିଙ୍କର ମାନ୍ୟତା ଦିଆଯାଉଥିଲା । ଏହି ଉପାଧିରେ ତାଙ୍କୁ କାବ୍ୟ କାନ୍ତ ଗଣପତି ଶାସ୍ତ୍ରୀଙ୍କ ଦ୍ୱାରା ଭୂଷିତ କରାଯାଇଥିଲା । କେତେଜଣ ତାଙ୍କୁ 'ଭଗବାନ' ବୋଲି ଡାକୁଥିଲେ । କିନ୍ତୁ ସେ ପ୍ରଥମେ ତିରୁବନମଲଈରେ ପହଞ୍ଚିବାବେଳେ ଯେପରି ସାଦାସିଧା ଥିଲେ, ସେହିପରି ରହିଥିଲେ ।

ବିରୂପାକ୍ଷ ଗୁମ୍ଫାରୁ ମହର୍ଷି ସ୍କନ୍ଦ ଆଶ୍ରମକୁ ଚାଲିଗଲେ, ଯାହାକୁ ତାଙ୍କର ଜଣେ ଭକ୍ତ ପର୍ବତର ଢାଲୁ ଅଂଶର ନିର୍ମାଣ କରିଥିଲେ । ଯେତେବେଳେ ମହର୍ଷିଙ୍କର ମା'ଙ୍କର ଦେହାନ୍ତ ହେଲା, ତାଙ୍କୁ ସ୍କନ୍ଦ ଆଶ୍ରମ ନିକଟରେ ହିଁ ସମାଧି ଦିଆଗଲା । ପରେ ସେ ନିଜର ମା'ଙ୍କର ସମାଧି ପାଖରେ ଥିବା ଏକ ସାଧାସିଧା ଆଶ୍ରମକୁ ଚାଲିଗଲେ ଏବଂ ସେଠାରେ ଶାନ୍ତିରେ ନିଜର ମୃତ୍ୟୁ ପର୍ଯ୍ୟନ୍ତ ରହିଲେ । ସେ 1950 ମସିହାରେ ଦେହତ୍ୟାଗ କରିଥିଲେ । ଭରତରେ ଇଂରେଜୀ ଜାଣିଥିବା ଜନତା ଏବଂ ବିଦେଶରେ ଇଂରେଜୀ ପତ୍ରିକାର ପଲ ବ୍ରଣ୍ଟନ୍‌ଙ୍କ ଦ୍ୱାରା ଲିଖିତ ପୁସ୍ତକଦ୍ୱାରା ସେ ପ୍ରସିଦ୍ଧ ହୋଇଗଲେ । ପଲ ବ୍ରଣ୍ଟନ୍ ସେହି ଆଶ୍ରମରେ ତାଙ୍କୁ ଭେଟିଥିଲେ ।

ରମଣ ମହର୍ଷି କୁଆଡ଼େ ଯିବାଆସିବା କରୁ ନ ଥିଲେ । ସେ କେବଳ ତିରୁବନମଲଈରେ ରହିଥିଲେ । ପରବର୍ତ୍ତୀ ସମୟରେ ଲୋକମାନେ ଭିଡ଼ କରି ତାଙ୍କୁ ଦର୍ଶନ କରିବାକୁ ଏବଂ ତାଙ୍କଠାରୁ ମୌନ ଶିକ୍ଷା କରିବାପାଇଁ ବହୁ ଦୂର ଦୂରାନ୍ତରୁ ଆସୁଥିଲେ ।

ସେ ଖୁବ୍ କମ୍ କଥା କହୁଥିଲେ କିନ୍ତୁ ତାଙ୍କର ଉପସ୍ଥିତିରେ ଅନେକ ଲୋକଙ୍କୁ ଅବର୍ଣ୍ଣନୀୟ ଶାନ୍ତିର ଅନୁଭବ ହେଉଥିଲା, ବ୍ୟସ୍ତ କରୁଥିବା ଚିନ୍ତାଗୁଡ଼ିକ ବଳେବଳେ ପ୍ରଶମିତ ହୋଇଯାଉଥିଲେ ।

ମୁଁ ରମଣ ମହର୍ଷିଙ୍କ ସମାଧି, ସ୍କନ୍ଦ ଆଶ୍ରମ, ବିରୂପାକ୍ଷ ଗୁମ୍ଫା ଏବଂ ଅରୁଣାଚଳ ପର୍ବତର ଅନ୍ୟାନ୍ୟ ସ୍ଥାନରେ ଧ୍ୟାନ କରି ତିନିଦିନ ବିତାଇଲି ।

ଶେଷ ଦିନ ଯେତେବେଳେ ମୁଁ 'କଇଁଛ ପଥର' ଉପରେ ବସି ନିର୍ଜନତାର ଆନନ୍ଦ ଉପଭୋଗ କରୁଥିଲି, ମୋତେ ହଠାତ୍ ଲାଗିଲା ଯେ, ପୂର୍ବପରି ମୁଁ ଆଉ ବାବାଜୀଙ୍କର ଶାରୀରିକ ଉପସ୍ଥିତିର ଅଭାବ ସେପରି ଅନୁଭବ କରୁ ନାହିଁ । ମୁଁ ଭାବିଥିଲି ଯେ, ତିରୁବନମଲଇରେ ସେ ମୋତେ ସାକ୍ଷାତ ଦେବେ । କିନ୍ତୁ ସେ ସେପରି କଲେ ନାହିଁ, ତେବେ ବି ମୁଁ ସେଥିପାଇଁ ଆଦୌ ଚିନ୍ତିତ ନ ଥିଲି ।

ଖରା ଟାଣ ଥିଲା, ପବନ ମଧ୍ୟ ଗରମ ଥିଲା, କିନ୍ତୁ ମୋର ହୃଦୟ ଏକ ସୁଖକର ଉତ୍ତାପରେ ତଲ୍ଲୀନ ଥିଲା, ଯାହା ମୋର ବକ୍ଷରୁ ଅରମ୍ଭ ହୋଇ ମସ୍ତକ ପର୍ଯ୍ୟନ୍ତ ପ୍ରସରିତ ହେଲା । କାଗଜର ଗୋଟାଏ ଟୁକୁରା ପବନରେ ଉଡ଼ିଆସି ମୋର ପାଦ ପାଖରେ ପଡ଼ିଲା । କୌଣସି ଗୋଟାଏ ବହିର ଗୋଟାଏ ପୃଷ୍ଠା ଥିଲା । ପଢ଼ିବା ପରେ ଜାଣିଗଲି ଯେ ଏହା ହେଉଛି ରମଣ ମହର୍ଷିଙ୍କର ବାଣୀ । ଲେଖା ହୋଇଥିଲା–

''ଆମେ ଯେତେ ଗଭୀର ବିନୟର ସହିତ ବ୍ୟବହାର କରିବା, ସେତିକି ଆମପାଇଁ ଉତ୍ତମ ହେବ । କୌଣସି ଅନ୍ୟ ଲୋକକୁ ଦିଆଯାଇଥିବା ବସ୍ତୁ ବାସ୍ତବରେ ସ୍ୱୟଂକୁ ଦିଆଯାଇଥାଏ । ନିଜର ଆତ୍ମରୁ ଅସଙ୍ଗତ କୌଣସି ବସ୍ତୁକୁ ନ ଚାହିଁବା ହେଉଛି ବୈରାଗ୍ୟ ବା ଅନାସକ୍ତି । ନିଜର ବାସ୍ତବିକ ଆତ୍ମାରେ ସ୍ଥିତ ରହିବା ହିଁ ହେଉଛି ଜ୍ଞାନ ବା ଜ୍ଞାନୋଦୟ । ବୈରାଗ୍ୟ ଓ ଜ୍ଞାନ ହେଉଛି ଏକ । ପ୍ରତିଟି ବ୍ୟକ୍ତିକୁ ନିଜ ମଧ୍ୟରେ ଗଭୀରକୁ ଯାଇ ବହୁମୂଲ୍ୟ ଆତ୍ମନ୍‌କୁ ଲାଭ କରିବା ଉଚିତ । ଭଗବାନ ଓ ଗୁରୁ ହେଉଛନ୍ତି ଏକ । ଯେ ଗୁରୁ କୃପା ଲାଭ କରିଛି, ତାକୁ କେବେହେଲେ ତ୍ୟାଗ କରାଯିବ ନାହି କିନ୍ତୁ ଶିଷ୍ୟର ଉଚିତ....''

ଗୋଟିଏ ମୁହୂର୍ତ୍ତ ମଧ୍ୟରେ ମୋର ବୋଧ ହୋଇଗଲା ଯେ ବାବାଜୀ ମୋର ମାନସର ଅବିଭାଜ୍ୟ ଅଙ୍ଗ ଥିଲେ । କେହି ନିଜର ସ୍ୱତ୍ୱକୁ କିପରି ହରାଇପାରିବ ? ବୁଝିଗଲି ।

ତିରୁବନମଲଇକୁ ଚେନ୍ନାଇ ଆସି ମୁଁ ଦଶମାସ କାଳ ଘରେ ରହିଲି । ବାପାଙ୍କ ବ୍ୟବସାୟରେ ସାହାଯ୍ୟ କରେ ଓ ସନ୍ଧ୍ୟାରେ ସମୁଦ୍ର କୂଳରେ ବୁଲିବାକୁ ଯାଏ । ଦି'ଥର ମୁଁ କୃଷ୍ଣମୂର୍ତ୍ତି ଫାଉଣ୍ଡେସନକୁ ଯାଇ ଜେ. କୃଷ୍ଣମୂର୍ତ୍ତିଙ୍କ ବାର୍ତ୍ତାଗୁଡ଼ିକ ଶୁଣିଲି । ଯଦିଓ ବାବାଜୀ

କହିଥିଲେ ଯେ କୃଷ୍ଣମୂର୍ତ୍ତିଙ୍କୁ ସାକ୍ଷାତ କରେ, କିନ୍ତୁ ସେତେବେଳେ ମୋର ସେପରି କୌଣସି ଇଚ୍ଛା ଜାଗ୍ରତ ହେଲା ନାହିଁ । ରବିବାର ଦିନଟା ମୁଁ ପ୍ରାୟ ଥିଓସଫିକାଲ ସୋସାଇଟିର ପୁସ୍ତକାଳୟରେ ବିତାଏ କିମ୍ବା ପ୍ରାଚୀନ କପାଳୀଶ୍ୱର ମନ୍ଦିରକୁ ଯାଏ । ବେଳେବେଳେ ଶିର୍ଡୀ ସାଇଁବାବା ମନ୍ଦିରକୁ ଯାଉଥିଲି କିମ୍ବା ଏଗ୍‌ମୋର ଷ୍ଟେସନ ପାଖରେ ଥିବା ମୋତୀ ବାବାଙ୍କ ଦରଗାହକୁ ଯାଉଥିଲି ।

ଏହା ମଧ୍ୟରେ ମୁଁ ‘ପ୍ରୋବ’ ନାମକ ପତ୍ରିକାପାଇଁ ଦକ୍ଷିଣ ଭାରତୀୟ ମନ୍ଦିରଗୁଡ଼ିକ ଏବଂ ହିମାଳୟର ତୀର୍ଥସ୍ଥାନଗୁଡ଼ିକ ଉପରେ ପ୍ରବନ୍ଧ ଲେଖିବା ଆରମ୍ଭ କଲି । ଦିନେ ମୁଁ ଆଣ୍ଡାମାନ ଦ୍ୱୀପ ସମୂହ ରାଜଧାନୀ ପୋର୍ଟବ୍ଲେୟରରୁ ପ୍ରକାଶିତ ଏକ ଛୋଟ କାଗଜ ‘ଆଣ୍ଡାମାନ ଟାଇମ୍ସ’ ବିଷୟରେ ପଢ଼ିଲି । ବହିପତ୍ର ଓ ଖବରକାଗଜରୁ ଆଣ୍ଡାମାନ ଦ୍ୱୀପ ସମୂହ ବିଷୟରେ ପଢ଼ିବାପରେ ମୁଁ ସେଠାକୁ ଯିବି ବୋଲି ଠିକଣା କଲି । କାଗଜର ସମ୍ପାଦକ, ଯାହାଙ୍କୁ ମୁଁ ଚିଠି ଲେଖି ସାରିଥିଲି, ମୋତେ ଏକ ସୁଯୋଗ ଦେବାକୁ ପ୍ରସ୍ତୁତ ଥିଲେ ।

ତା’ପରେ ମୁଁ ପୋର୍ଟବ୍ଲେୟାର ଉଦ୍ଦେଶ୍ୟରେ ବାହାରି ପଡ଼ିଲି । ମୋତେ ପତ୍ରକାରର ଚାକିରି ମିଳିଯାଇଛି ବୋଲି ବାପାମା’ଙ୍କୁ କହି ମୁଁ ଏଥର ଯାଉଥିଲି । ଅନ୍ତତଃ ଏଇ ଥରକ ମୋର ଘର ଛାଡ଼ି ଯିବାରେ ସେମାନେ ଖୁସି ଥିଲେ ।



#  ତାଜ ମୁମ୍ବାଇରେ ବାବାଜୀ

ଆଣ୍ଡାମାନ ଦ୍ୱୀପସମୂହ, ଯାହାକୁ ପର୍ଯ୍ୟଟନ ବିଭାଗ 'ଗେଣ୍ଡୁଫୁଲର ରଙ୍ଗପରି ସୂର୍ଯ୍ୟକିରଣର ଦେଶ' ବୋଲି ପ୍ରଚାରିତ କରୁଥିଲେ, ବାସ୍ତବରେ ଭାରି ସୁନ୍ଦର ଜାଗା ଥିଲା । ନିଜର ପତ୍ରିକାର ପରିଚୟପତ୍ରଥିବାରୁ ମୁଁ ଆଣ୍ଡାମାନ ନିକୋବର ଦ୍ୱୀପସମୂହର ସେହିସବୁ ଜାଗାକୁ ଯାଇ ପାରୁଥିଲି, ଯେଉଁଠାକୁ ସାଧାରଣ ପର୍ଯ୍ୟଟକମାନଙ୍କର ଯିବା ନିଷିଦ୍ଧ ଥିଲା । ମୁଁ ଜରୱା ସୁରକ୍ଷିତ ପ୍ରଦେଶକୁ ଯାଇପାରିଲି ଯେଉଁଠାରେ ଜରୱା ଜନଜାତିର ଲୋକ ବାସ କରୁଥିଲେ । ସେମାନଙ୍କୁ ନର-ଭକ୍ଷୀ ବୋଲି କୁହାଯାଏ । ମୁଁ ନିଗ୍ରୋଏଡ୍ ଜନଜାତିର ଡେଙ୍ଗା, ଲଙ୍ଗଳା ସେଣ୍ଟିନିଲିଜ ଲୋକଙ୍କୁ ଦେଖିବାକୁ ଯାଇପାରିଲି ଯେ ପୃଥକ ଭାବରେ ଉତ୍ତର ସେଣ୍ଟେନେଲ ଦ୍ୱୀପରେ ରହୁଥିଲେ ଏବଂ ଯେଉଁମାନେ ସେପର୍ଯ୍ୟନ୍ତ ଲୁଣର ବ୍ୟବହାର ଶିଖି ନ ଥିଲେ ।

ମୁଁ ସ୍ଥାନୀୟ ରାଜନେତାଙ୍କର ପରସ୍ପର ମଧ୍ୟରେ ଲଢ଼େଇ ଦେଖିଲି । ମୁଁ କାର୍ଡ ବାଳରେ ଯେକୌଣସି ଲୋକର ଅଫିସକୁ ଯାଇ ପାରୁଥିଲି । ମୁଁ ଶିଖିଲି, ଖବର କିପରି ଏକାଠି କରାଯାଏ ଏବଂ ତାକୁ ଖବରକାଗଜରେ ଉପଲବ୍ଧ ସ୍ଥାନ ଅନୁସାରେ କୌଣସି ମହତ୍ତ୍ୱପୂର୍ଣ୍ଣ ଘଟଣା ନଛାଡ଼ି କିପରି ସମ୍ପାଦିତ କରାଯାଏ । ଏହା ମୋତେ ମୋର ନିଜର କାହାଣୀ ଲେଖିବାର ପ୍ରୟାସରେ ସାହାଯ୍ୟ କଲା । ମୁଁ 'ଦି ଆଇଲାଣ୍ଡ୍ ବୟ' (ଦ୍ୱୀପର ଯୁବକ) ଶୀର୍ଷକ ଏକ କାହାଣୀ ଲେଖିଲି, ଯାହାକୁ ହିନ୍ଦୁସ୍ତାନ ଟାଇମ୍ସ କାଗଜ ତାଙ୍କର କଥାପୃଷ୍ଠାରେ ଛପାଇଲେ । ମୁଁ ମୁଖ୍ୟଧାରାର ଖବରକାଜରେ ମଧ୍ୟ ଲେଖାଲେଖି କଲି ।

ପୋର୍ଟବ୍ଲେୟାର ଐତିହାସିକ ଭାବରେ ଆକର୍ଷକ ସ୍ଥାନ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଜାପାନୀମାନେ ଏହାକୁ ଅକ୍ତିଆର କରିନେଇଥିଲେ ଓ ମାଡ୍ରାସରେ ବୋମା ପକାଇବାପାଇଁ ଉପଯୋଗ କରିଥିଲେ । ପୋର୍ଟବ୍ଲେୟାର ନିକଟରେ ଏବେ ମଧ୍ୟ ଭୂଗର୍ଭ ସୁଡ଼ଙ୍ଗ ଓ ବଙ୍କର ଦେଖାଯାଏ । କୁଖ୍ୟାତ ସେଲ୍ୟୁଲାର ଜେଲ ମଧ୍ୟ ଏହିଠାରେ ଅବସ୍ଥିତ । ଏଠାକୁ

ଇଂରେଜମାନେ ଭୟଙ୍କର ଅପରାଧୀମାନଙ୍କୁ ପଠାଇ ଦେଉଥିଲେ ଓ ପରେ ଏହି ଜେଲ୍‌କୁ ବୀର ସାବରକର ପ୍ରଭୃତି ରାଜନୈତିକ କଏଦୀମାନଙ୍କପାଇଁ ବ୍ୟବହାର କରାଯାଇଥିଲା । ଲେଖିବାପାଇଁ ବହୁ ଜିନିଷ ଥିଲା । ଲେଖାଲେଖି ଛଡ଼ା ଏହି ସ୍ଥାନ ଚିନ୍ତନ-ମନନପାଇଁ ଖୁବ୍ ଉପଯୁକ୍ତ ସ୍ଥାନ ଥିଲା । କିଛି ମିନିଟ୍ ମଧ୍ୟରେ ସହରର ଯେକୌଣସି ସ୍ଥାନରୁ ସମୁଦ୍ରକୂଳ ପହଞ୍ଚିଯାଇ ହୁଏ ।

ମୁଁ ପୂରା ବର୍ଷେ ଖୁସିରେ ଆଣ୍ଡାମାନରେ ବିତାଇଲି । ଯତ୍ନର ସହିତ କୌଣସି ମାପଲା ବ୍ୟାପାରୀ କିମ୍ବା ଏଷ୍ଟେଟ ମାଲିକଙ୍କର ଜାମାତା ହେବାରୁ ନିଜକୁ ବଞ୍ଚାଇ ରଖିଥାଏ । ପଇସାବାଲା ଅଧିବାସୀ ନିଜର ଝିଅମାନଙ୍କର ବିବାହପାଇଁ ଶିକ୍ଷିତ ଓ ରୂପବାନ ଯୁବକମାନଙ୍କର ସନ୍ଧାନରେ ଥାଆନ୍ତି । ଝିଅମାନେ ସୁନ୍ଦର ଓ ବୁଦ୍ଧିମତୀ ଥିଲେ, କିନ୍ତୁ ମୋତେ ସାବଧାନ କରି ଦିଆଯାଇଥିଲା, ତେଣୁ ମୁଁ ବିଚଳିତ ହେଲିନାହିଁ ।

ଗୋଟାଏ ଖରାପ କଥା ହେଲା ଯେ, ଛଣା ହୋଇ ନ ଥିବା ପାଣି ପିଇବା ହେତୁ ମୋର ଲାଳ-ରକ୍ତ ଝାଡ଼ା ହେଲା । ମୁଁ ମଶାରି ଟଙ୍ଗାଇ ଶୋଉଥିବା ହେତୁ ସେରିବ୍ରାଲ ମେଲେରିଆର ବିପଦକୁ ଟାଳିଦେଇପାରିଲି । ଆଧ୍ୟାତ୍ମିକ ଦୃଷ୍ଟିରୁ ବହୁତ ବେଶି ମହତ୍ତ୍ୱପୂର୍ଣ୍ଣ କିଛି ଘଟିଲା ନାହିଁ । ବର୍ଷେ ପରେ ଇସ୍ତଫା ଦେଇ ପାଣି ଜାହାଜରେ କଲିକତା ଚାଲିଆସିଲି । ଏହା ତିନିଦିନର ସାମୁଦ୍ରିକ ଯାତ୍ରା ଥିଲା ।

କଲିକତାରେ ମୁଁ ପୁଣି ଥରେ ବେଲୁଡ଼ ମଠ ଓ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଗଲି । ମୁଁ ଯୋଗଦା ସତ୍‌ସଙ୍ଗ ସୋସାଇଟିର ଦକ୍ଷିଣେଶ୍ୱରସ୍ଥିତ ମୁଖ୍ୟାଳୟକୁ ମଧ୍ୟ ଗଲି ଏବଂ ସେଠାରେ କ୍ରିୟା ବିଷୟରେ ଜଣେ ବରିଷ୍ଠ ଆମେରିକୀୟ ସ୍ୱାମୀଙ୍କ ସହିତ ବ୍ୟକ୍ତିଗତ ବାର୍ତ୍ତାଳାପ କଲି । ତାଙ୍କର ନାମ ସ୍ୱାମୀ ଶାନ୍ତାନନ୍ଦ ଥିଲା । ସେ ବଡ଼ ମିଷ୍ଟଭାଷୀ ଓ ପ୍ରକୃତ ସଜ୍ଜନ ପୁରୁଷ ଥିଲେ ।

କଲିକତାରେ ଜଣେ ପରିଚିତ ଲୋକଙ୍କଠାରୁ ଜାଣିଲି ଯେ, ଶ୍ରୀ ଗୁରୁ ବାବାଜୀଙ୍କର ଶିଷ୍ୟ ଏବଂ କ୍ରିୟା-ଯୋଗର ପ୍ରସିଦ୍ଧ ଗୁରୁ ଶ୍ୟାମାଚରଣ ଲାହିଡ଼ୀଙ୍କର ପୌତ୍ର ଶ୍ରୀ ସତ୍ୟଚରଣ ଲାହିଡ଼ୀ ନିଜର କୌଣସି ଅନୁଗାମୀଙ୍କ ସହିତ କଲିକତାରେ ରହୁଛନ୍ତି । ମୁଁ ଶ୍ରୀ ସତ୍ୟଚରଣ ଲାହିଡ଼ିଙ୍କୁ ଭେଟିଲି ଓ ଘଣ୍ଟାଏ କାଳ କଥାବାର୍ତ୍ତା କଲି । ସେ ସୁସଂସ୍କୃତ ଓ ଦୟାଳୁ ବ୍ୟକ୍ତି ଥିଲେ । ସେ ମୋତେ ଶ୍ରୀ ଶ୍ୟାମାଚରଣ ଲାହିଡ଼ୀଙ୍କ ବିଷୟରେ ମୁଁ ସେ ପର୍ଯ୍ୟନ୍ତ ଜାଣି ନ ଥିବା ଅନେକ କଥା କହିଲେ । ଆମେ କ୍ରିୟାଯୋଗ ଉପରେ ଚର୍ଚ୍ଚା କଲୁ । ସେ ମୋ ସହିତ ସହମତ ଥିଲେ ଯେ, କ୍ରିୟା-ଯୋଗ ପତ୍ର-ବ୍ୟବହାରଦ୍ୱାରା ଶିଖେଇ ହେବ ନାହିଁ । ଏହାପାଇଁ ଗୁରୁ-ଶିଷ୍ୟଙ୍କ ମଧ୍ୟରେ ନିକଟ ବ୍ୟକ୍ତିଗତ ସମ୍ପର୍କରେ ଆବଶ୍ୟକତା ରହିଛି ।

ଖୋଲା ହସ ହସି ସେ କହିଲେ ଯେ, ତାଙ୍କର ମୁମ୍ବାଇ ପ୍ରବାସ ସମୟରେ ଜଣେ ମହିଳା ତାଙ୍କୁ କହିଲେ ସେ କିପରି ହିମାଳୟକୁ ଯାଇଥିଲେ ଏବଂ ଶ୍ରୀ ଗୁରୁ ବାବାଜୀଙ୍କୁ ଭେଟିଥିଲେ, ଯାହାଙ୍କୁ ସେ ମହାବତାର ବାବାଜୀ କହୁଥିଲେ । ମହାବତାର ବାବା ନାମ ଶ୍ରୀ ପରମହଂସ ଯୋଗାନନ୍ଦ ଦେଇଥିଲେ । ମହିଳା ଜଣକ କହିଲେ, ସେ ମହାବତାର ବାବାଙ୍କ ସହିତ ତିନି ଘଣ୍ଟା କାଳ ଧ୍ୟାନ ସାଧନା କରିଥିଲେ । ଏହି ଘଟଣା କହିବାର କିଛି ମିନିଟ ପରେ ହିଁ ସେ ଶ୍ରୀ ସତ୍ୟଚରଣ ଲାହିଡ଼ୀଙ୍କୁ ତାଙ୍କୁ କ୍ରିୟା-ଯୋଗର ଦୀକ୍ଷା ଦେବାର ଅନୁରୋଧ କଲେ । ସେ ମନା କରିଦେଲେ । ''ବାବାଜୀଙ୍କୁ ମଧ୍ୟ'' ସତ୍ୟଚରଣ ଲାହିଡ଼ୀ ଦୁଃଖରେ ମୁଣ୍ଡ ହଲାଇ କହିଲେ, ''ଲୋକମାନେ ବ୍ୟବସାୟର ଜିନିଷ କରିଦେଇଛନ୍ତି । ମୋ କଥା ମନେରଖ, ଆଗାମୀ ଦିନମାନଙ୍କରେ ଯେକୌଣସି ରାମା, ଦାମା, ଶାମା ଶ୍ରୀ ବାବାଜୀଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କର ଦାବି କରିବ ଏବଂ ତାହାର ବେଶ ଭଲ ଲାଭ ଉଠାଇବ ।''

କଲିକତାରୁ ମୁଁ ବନାରସ ଗଲି । ଏହା ମୋର ବନାରସର ଦ୍ୱିତୀୟ ପ୍ରବାସ ଥିଲା । କାଶୀ ବିଶ୍ୱନାଥଙ୍କର ମନ୍ଦିରକୁ ପୁଣି ଥରେ ଯିବା ସହିତ ମୁଁ ସାରନାଥ ଯିବାକୁ ଚାହୁଁଥିଲି, ଯେଉଁଠାରେ ବୁଦ୍ଧ ନିଜର ପ୍ରଥମ ଉପଦେଶ ଦେଇଥିଲେ ଏବଂ 'ଧର୍ମଚକ୍ର' ପ୍ରବର୍ତ୍ତିତ କରିଥିଲେ । ରାସ୍ତାରେ ରାଜଘାଟସ୍ଥିତ କୃଷ୍ଣମୂର୍ତ୍ତି ଫାଉଣ୍ଡେସନଦ୍ୱାରା ସଞ୍ଚାଳିତ କୃଷ୍ଣମୂର୍ତ୍ତି କେନ୍ଦ୍ର ଏବଂ ବସନ୍ତ କଲେଜକୁ ଗଲି ।

ଦେଖିଲି ତେବେ ମଧ୍ୟ ଘୂରି ବୁଲିବାପାଇଁ କିଛି ଟଙ୍କା ମୋ ପାଖରେ ରହିଛି । ତେଣୁ ବମ୍ବେ ଯାଇ ଏଲିଫାଣ୍ଟା ଗୁମ୍ଫା ଦେଖିବାକୁ ଭାବିଲି । ବେଶ୍ ପୂର୍ବରୁ ବାବାଜୀ ମୋତେ କହିଥିଲେ ଯେ, ଏହି ଗୁମ୍ଫାଗୁଡ଼ିକ ଦୀକ୍ଷା ସମାରୋହପାଇଁ ଉପଯୋଗ କରାଯାଉଥିଲା । କାଶ୍ମୀରର ଅନନ୍ତନାଗ ପାଖରେ ଥିବା ଭଞ୍ଜୋ ମନ୍ଦିର ମଧ୍ୟ ଏହିପରି ଉପଯୋଗ କରାଯାଏ । ନୌକାଯୋଗେ ଗଲେ ଏଲିଫାଣ୍ଟା ଗୁମ୍ଫାଗୁଡ଼ିକ ଗେଟ୍ ୱେ ଅଫ୍ ଇଣ୍ଡିଆଠାରୁ ଅଳ୍ପ ଦୂରରେ ପଡ଼େ । ମୁଁ ପର୍ଯ୍ୟଟକମାନଙ୍କଦ୍ୱାରା ବ୍ୟବହୃତ ହେଉଥିବା ବହୁ ନୌକାମାନଙ୍କ ମଧ୍ୟରୁ ଗୋଟିକରେ ଚଢ଼ି ବସିଲି ଓ ଶୀଘ୍ର ଗୁମ୍ଫାରେ ପହଞ୍ଚିଗଲି ।

ଏଲିଫାଣ୍ଟା ଗୁମ୍ଫାଗୁଡ଼ିକୁ ମରାଠୀରେ ଘରାପୁରୀ ଗୁମ୍ଫା କୁହାଯାଏ । ଏଗୁଡ଼ିକ ଆରବ ସାଗର ମଧ୍ୟରେ ରହିଛି । ଆଦି ସଂସ୍କୃତ ନାମ, ଯାହା ବାବାଜୀ ମୋତେ କହିଥିଲେ, ହେଉଛି ଅଗ୍ରହାରପୁର, ଅଗ୍ରହାରର ଅର୍ଥ ହେଉଛି, ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଣ୍ଠହାର । ଏହାର ଉପଯୋଗ ବ୍ରାହ୍ମଣମାନଙ୍କର ବସ୍ତିପାଇଁ କରାଯାଏ । ବାବାଜୀ ବୁଝାଇଥିଲେ ଯେ,

ସେ ସମୟରେ ଆଧ୍ୟାତ୍ମିକ ରହସ୍ୟରେ ଅତ୍ୟନ୍ତ ଉନ୍ନତ ଦୀକ୍ଷିତମାନଙ୍କୁ ବ୍ରାହ୍ମଣ କୁହାଯାଉଥିଲା ଏବଂ ଏହିପରି ଗୁରୁମାନଙ୍କର ସମୁଦାୟ ଗୁମ୍ଫାଗୁଡ଼ିକରେ ରହୁଥାଏ । ନୂଆ ଶିଷ୍ୟମାନଙ୍କୁ ସେଠାକୁ ରହସ୍ୟରେ ଦୀକ୍ଷା ଦେବାକୁ ନିଆଯାଉଥିଲା । ପର୍ତ୍ତୁଗାଲୀମାନେ କୌଣସି କାରଣବଶତଃ ଗୁମ୍ଫାଗୁଡ଼ିକର ନାମ ଏଲିଫାଣ୍ଟା ରଖିଦେଲେ ଏବଂ ସପ୍ତଦଶ ଶତାବ୍ଦୀରେ ଅନେକ ମୂର୍ତ୍ତିକୁ ବନ୍ଧୁକରୁ ଗୁଳିଚାଳନା ଅଭ୍ୟାସ କରି ଭାଙ୍ଗିଦେଲେ ।

ପଥରକୁ କାଟି ତିଆରି ହୋଇଥିବା ପ୍ରାଙ୍ଗଣରେ ବହୁ କକ୍ଷ, ହଲ, ଅଗଣା ଏବଂ ଗୌଣ-ଧାର୍ମିକ ପୂଜାସ୍ଥଳ ରହିଛି, ଅନେକ ସୁନ୍ଦର ମୂର୍ତ୍ତି ରହିଛି, ଶିବମନ୍ଦିର ରହିଛି । ଶିବ ହେଉଛନ୍ତି ଯୋଗୀମାନଙ୍କର ଆରାଧଦେବତା । କକ୍ଷ ମଧ୍ୟରେ ଶିବ ଅର୍ଦ୍ଧନାରୀଶ୍ୱର ଭାବରେ ଦର୍ଶାଯାଇଛନ୍ତି, ଅଧାପୁରୁଷ-ଅଧା ନାରୀ । ବାଁ ପଟ ସ୍ତ୍ରୀ ଶକ୍ତିର ପ୍ରତିନିଧିତ୍ୱ କରେ ଏବଂ ଏକ ସୁନ୍ଦର ସ୍ତ୍ରୀ ରୂପରେ ଦର୍ଶାଯାଇଛି ତଥା ଡାହାଣପଟେ ରହିଛି ଶିବଙ୍କର ନରରୂପ, ଏକ ସୁଗଠିତ ନର-ଶରୀର ।

ଶିବଙ୍କର ଅର୍ଦ୍ଧନାରୀଶ୍ୱର ରୂପ, ବାବାଜୀ କହିଥିଲେ, ଏକ ପୂର୍ଣ୍ଣ ଯୋଗୀର ପ୍ରତୀକ, ଯେ ନିଜ ଭିତରେ ସ୍ତ୍ରୀ ଏବଂ ପୁରୁଷ ପକ୍ଷଗୁଡ଼ିକର ସନ୍ତୁଳନ କରେ । ଏହି ସନ୍ତୁଳନ ମେରୁଦଣ୍ଡର ଦୁଇପାର୍ଶ୍ୱରେ ଚାଲୁଥିବା ଇଡ଼ା ଏବଂ ପିଙ୍ଗଳା ଶକ୍ତିଗୁଡ଼ିକର ଯୋଗ ହେତୁ ଏବଂ ଏହାଦ୍ୱାରା ମଧ୍ୟ-ନଳୀ ସୁଷୁମ୍ନାର ଖୋଲିଯିବା ପ୍ରାପ୍ତ ହୋଇଥାଏ । ପ୍ରବୁଦ୍ଧ ଯୋଗୀ ହେଉଛି ସେହି ବ୍ୟକ୍ତି, ଯାହାର ସୁଷୁମ୍ନା ଖୋଲା ରହିଛି, ଯାହାଦ୍ୱାରା ମହାନ୍ ସୃଜନାତ୍ମକ ଶକ୍ତି ବିନା କିଛି ବାଧରେ ପରମ ଅସ୍ତିତ୍ୱ ଶିବଙ୍କ ଆଡ଼କୁ ନାଚି ନାଚି ଯାଇପାରେ, ଶିଖର ଚକ୍ରରେ ତାଙ୍କ ସହିତ ସମାବିଷ୍ଟ ହେବାପାଇଁ ପରମ ଆନନ୍ଦଦାୟୀ ଏହି ସଙ୍ଗମ ବ୍ୟକ୍ତିର କାୟାକୁ ପାଲଟାଇ ତାହାକୁ ଅତ୍ୟନ୍ତ ବିସ୍ତୃତ ଚେତନାଯୁକ୍ତ ଅତିମାନବ କରିଦିଏ ।

ଗୁମ୍ଫା ବାହାରେ ତ୍ରିମୂର୍ତ୍ତି ଶିବଙ୍କର କୋଡ଼ିଏ ଫୁଟ ଉଚ୍ଚା ପ୍ରତିମା ରହିଛି, ଯାହା ସର୍ଜନା, ପରିରକ୍ଷଣ ଏବଂ ବିସର୍ଜନର ସଂଯୋଗର ପ୍ରତୀକ । ହଲରେ ଆନନ୍ଦୋଲ୍ଲାସରେ ନୃତ୍ୟରତ ନଟରାଜଙ୍କର ମୂର୍ତ୍ତି ରହିଛି । ନଟରାଜ ଅର୍ଥାତ୍ ନର୍ତ୍ତକମାନଙ୍କର ରାଜା । ମୁଁ ସୁନ୍ଦର ମୂର୍ତ୍ତିମାନଙ୍କୁ ଦେଖି ଚକିତ ଥିଲି । ଏହି ସମୟରେ ସେଗୁଡ଼ିକୁ ପୂର୍ବରୁ କେବେ ଦେଖିଥିବାର ସ୍ମୃତି ମୁଣ୍ଡ ଭିତରେ ଖେଳିଗଲା । କିଛି ସମୟପାଇଁ ମୁଁ ଧ୍ୟାନରେ ବୁଡ଼ିଗଲି । ପୁଣି ମୁଁ ନିଜକୁ ନିଜେ ସଚେତ କଲି ଯେ, ମୋତେ ଫେରିବାକୁ ହେବ । ତା'ପରେ ନୌକାଯୋଗେ ଗେଟୱେ ଅଫ୍ ଇଣ୍ଡିଆକୁ ଆସିଗଲି ।

ଗେଟଓ୍ୱେ ଅଫ୍ ଇଣ୍ଡିଆରୁ ଟାଟାଙ୍କର ତାଜମହଲ ହୋଟେଲ ଦେଖାଯାଏ । ଏହା ବାସ୍ତୁଶିଳ୍ପର ଏକ ଉତ୍କୃଷ୍ଟ ନମୁନା । ଗତ ଶହେବର୍ଷ ଧରି ଅନେକ ରାଜା-ମହାରାଜା, ଶକ୍ତିଶାଳୀ ଉଦ୍ୟୋଗପତି, ରାଜନେତା ଏବଂ ସମାଜର ବିଭିନ୍ନ ସ୍ତରର ଅଗ୍ରଗଣ୍ୟ ବ୍ୟକ୍ତିଙ୍କର ଏଠାକୁ ଯିବା ଆସିବା ଲାଗିରହିଛି । ମୁମ୍ବଇବାସୀଙ୍କ ପାଇଁ ସ୍ମାରକ ହିସାବରେ ଏହା ଗେଟଓ୍ୱେ ଅଫ୍ ଇଣ୍ଡିଆଠାରୁ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ । ମୁଁ ଚାଲି ଚାଲି ତାଜମହଲ ହୋଟେଲର ପ୍ରବେଶ ଦ୍ୱାରା ପର୍ଯ୍ୟନ୍ତ ଗଲି, ସେଠାରେ ଠିଆହୋଇ ବର୍ଦିପିନ୍ଧା ଦରଓ୍ୱାନମାନଙ୍କୁ ଚାହିଁ ରହିଲି ଏବଂ ଭାବିଲି, ଭିତରକୁ ଯାଇ କପେ ଦାମିକା କଫି ପିଇ ଦେଖି ଆସିବି କି, କେମିତି କ'ଣ ସବୁ ଅଛି ? ଠିକ୍ ସେତିକିବେଳେ ଏକ ଚିକ୍କଣ କଳା ମର୍ସିଡିଜ୍ କାର୍ ସାଏଁ କିନା ଆସି ଫାଟକ ପାଖରେ ରହିଗଲା । ବର୍ଦିପିନ୍ଧା ଡ୍ରାଇଭର ଡେଇଁପଡ଼ି ବାହାରକୁ ଆସିଲା ଓ କବାଟ ଖୋଲିଲା । ସାମ୍ନାର ଦରଜାରୁ ଜଣେ ପରିଷ୍କାର ଭାବରେ ଖିଅର ହୋଇଥିବା ଅଧା ବୟସର ସୁଟ ପିନ୍ଧା ବ୍ୟକ୍ତି ବାହାରିଲେ, ତାଙ୍କର ଦେହର ରଙ୍ଗରୁ  ଜଣାଯାଉଥାଏ ଯେ, ସେ ଜଣେ ପାର୍ସୀ । ପଛପଟୁ ବାହାରିଲେ ହାଲ୍କା ବାଦାମୀ ରଙ୍ଗର ସୁନ୍ଦର ଭାବରେ ସିଲାଇ ହୋଇଥିବା ପାଶ୍ଚାତ୍ୟ ଢଙ୍ଗର ପୋଷାକ ପିନ୍ଧି ଜଣେ ସୁନ୍ଦର ଯୁବତୀ ଏବଂ ଏକ ଡେଙ୍ଗା, ବହୁତ ଗୋରା ଓ ସୁନ୍ଦର ସର୍ଦାର । ସର୍ଦାର ନୀଳ ଥ୍ରୀ ପିସ୍ ସୁଟ୍ ପିନ୍ଧିଥିଲେ ଏ ସେହି ରଙ୍ଗର ପଗଡ଼ି ବାନ୍ଧିଥିଲେ । ଶିଖ ପୁରୁଷ ଓ ସ୍ତ୍ରୀ ଜଣକ ଚଷମା ପିନ୍ଧିଥିଲେ ।

ମୋର ଧ୍ୟାନ ଶିଖ ବ୍ୟକ୍ତିଙ୍କ ଆଡ଼କୁ ଆକର୍ଷିତ ହେଲା । ତାଙ୍କର କ'ଣ ଗୋଟାଏ ଥିଲା, ଯାହା ମୋତେ ଜଣାଶୁଣା ପରି ଲାଗୁଥିଲା । ତାହା କ'ଣ ତାଙ୍କର ଆତ୍ମଗାରିମାପୂର୍ଣ୍ଣ ଚାଲି ନା ତାଙ୍କର ଛ'ଫୁଟ ଉଚ୍ଚତା, କିମ୍ବା ଅତି ଗୋରା ରଙ୍ଗ ଏବଂ ସୁନ୍ଦର ଚେହେରା ? ମୁଁ ଏସବୁ ବୁଝିବାକୁ ଚେଷ୍ଟା କରୁଥିବା ସମୟରେ ସେ ନିଜ ଆଖିରୁ ଖରାରୁ ରକ୍ଷା ପାଇବାପାଇଁ ପିନ୍ଧିଥିବା କଳା ଚଷମା କାଢ଼ିଦେଲେ ଓ ମୁଁ ତାଙ୍କର ଆଖି ଦେଖିପାରିଲି । ପ୍ରକୃତରେ ସେ ମୋତେ ଦେଖୁଥିଲେ । ସେହି ଆଖିକୁ ଚିହ୍ନିବାରେ କୌଣସି ଭୁଲ ହେବାର ନାହିଁ । ସେ ସ୍ୱୟଂ ବାବାଜୀ ଥିଲେ, ସର୍ଦାର ରୂପରେ ! ମୁଁ ଉଚ୍ଚ ସ୍ୱରରେ ହସିଉଠିଲି । ସର୍ଦାର ନିଜର ସଙ୍ଗୀମାନଙ୍କୁ କ'ଣ କହିଲେ ଓ ସେମାନେ ଭିତରକୁ ଚାଲିଗଲେ । ସର୍ଦାରଜୀ ମୋ ଆଡ଼କୁ ଆସିଲେ । ''ହସ ବନ୍ଦ କର ମଧୁ'', ସେ କହିଲେ ''ଏବଂ ସାଧାରଣ ଜନତାଙ୍କ ସମ୍ମୁଖରେ ଦଣ୍ଡବତ କର ନାହିଁ ।''

ବହୁ ଚେଷ୍ଟା କରି ମୁଁ ହସ ବନ୍ଦ କଲି ଓ କହିଲି ''ହେ ଭଗବାନ, ଆପଣ ସର୍ଦାରର ଛଦ୍ମବେଶ କାହିଁକି ଧାରଣ କରିଛନ୍ତି ବାବାଜୀ ?''

''ଆସ'', ସେ କହିଲେ ଓ ଆମେ ସଡ଼କ ପାର୍ ହୋଇ ଗେଟୱେ ଅଫ୍ ଇଣ୍ଡିଆକୁ ଆସିଗଲୁ । ''ତୁମେ ମୋର ସଙ୍ଗୀମାନଙ୍କୁ ଦେଖିଲ, ସେମାନେ ବିଦେଶୀ ଢଙ୍ଗରଙ୍ଗର ଏବଂ ଅତ୍ୟନ୍ତ ଧନାଢ଼୍ୟ ପରିବାରର ପାର୍ସୀ ଲୋକ । ସ୍ୱାମୀ ବଡ଼ ଉଦ୍ୟୋଗଗୁଡ଼ିକର ମାଲିକ ଓ ପତ୍ନୀ, ଯାହାଙ୍କର ଶିକ୍ଷାଦୀକ୍ଷା ବିଦେଶରେ ହୋଇଛି, ସେ ମଦ୍ୟାସକ୍ତ ବା ମଦ ପିଇବାରେ ଅଭ୍ୟସ୍ତ ହୋଇଯାଇଛନ୍ତି । ମୁଁ ପତ୍ନୀର ବାପାଙ୍କର ଗୁରୁ ଥିଲି ଏବଂ ତାଙ୍କର ମୃତ୍ୟୁଶଯ୍ୟାରେ ବାକ୍ୟଦାନ କରିଥିଲି ଯେ, ତାଙ୍କର ଏକମାତ୍ର କନ୍ୟାର ଦେଖାଶୁଣା କରିବି । ମୁଁ ମୋର ବାକ୍ୟର ମର୍ଯ୍ୟାଦା ରକ୍ଷା କରୁଛି । ସେ ଭାବୁଛି ମୁଁ ଆଧ୍ୟାତ୍ମିକ ଶକ୍ତିଧାରୀ ଜଣେ ଶିଖ ବ୍ୟବସାୟୀ ଏବଂ ସେ ଏକଥା ସ୍ୱୀକାର କରେ ଯେ, ମୁଁ ତା'ର ବାପାଙ୍କର ଗୁରୁ ଥିଲି । ପତିପତ୍ନୀ ଉଭୟେ ଆଶ୍ଚର୍ଯ୍ୟ ଯେ, ମୁଁ କାହିଁକି ଏତେ ଅଳ୍ପ ବୟସର ଲୋକ ପରି ଦିଶୁଛି, ଅଥଚ ତାଙ୍କର ବାପାଙ୍କୁ ମୁଁ ଚାଳିଶବର୍ଷରୁ ଅଧିକ ସମୟ ଧରି ଜାଣିଥିଲି ।''

''ଏବେ କ'ଣ ସେ ମହିଳା ଭଲ ଅଛନ୍ତି ? '' ମୁଁ ପଚାରିଲି ।

''କିଛି ସମୟ ଲାଗିବ, କିନ୍ତୁ ସେ ବଦଳିଯିବ । ମୁଁ ଏକ ଉପାୟ ବାହାର କରିଛି, ଯାହାକୁ ଶୁଣି ତୁମେ ଆଶ୍ଚର୍ଯ୍ୟ ହୋଇଯିବ । ମୁଁ ବେଳେବେଳେ ତା'ସହିତ ବସି ପିଏ । କିଛି ସମୟପରେ ସେ ନିଜେ ନିଜେ ପିଇବା ଛାଡ଼ିଦେବ । ଅଜବ ଉପାୟ, କିଛି ବର୍ଷପରେ ହୁଏତ ତୁମେ ବି ନିଜର ପୂର୍ବଜନ୍ମ ସହିତ ସମ୍ବନ୍ଧିତ କିଛି ବିଶିଷ୍ଟ ବ୍ୟକ୍ତିଙ୍କପାଇଁ ଏହା କରିବ । ଏବେ ମୁଁ ବାର୍‌କୁ ଯାଇ ତା'ସହିତ ବସି ମଦ୍ୟପାନ କରିବି । ତାହା ହେଲେ ତୁମେ ଏଲିଫାଣ୍ଟା ଗୁମ୍ଫାଗୁଡ଼ିକ ବୁଲି ଆସିଲ ?''

''ହଁ, ବାବାଜୀ, ଆଉ ସବୁ ସୁନ୍ଦର ମୂର୍ତ୍ତିଗୁଡ଼ିକୁ ଦେଖିଆସିଲି ।''

''ଠିକ୍ ଅଛି, ମୁଁ ଏବେ ଯାଉଛି । ତୁମେ କ'ଣ ବର୍ତ୍ତମାନ ବି ତାଜ୍‌କୁ ଯାଇ କଫି ପିଇବାକୁ ଇଚ୍ଛା କରୁଛ ?''

''ନାହିଁ, ଏବେ ନାହିଁ'' ମୁଁ କହିଲି ।

''ତେବେ ଠିକ୍ ଅଛି । ହଁ, ମୁମ୍ବଇ ଛାଡ଼ିବାପୂର୍ବରୁ ହାଜୀ ଅଲି ଦରଗାହକୁ ନିଶ୍ଚୟ ଯିବ । ତା'ପରେ ଦିଲ୍ଲୀ, ସେଠାରେ କିଛି ସମୟ ରହ । ତୁମକୁ ଏବେ ସାମ୍ବାଦିକ ଭାବରେ କାମ ମିଳିଯିବ । ପ୍ରାୟ ବର୍ଷେ ଖଣ୍ଡେ ପରେ ଚେନ୍ନାଇ ଯିବ ଓ ଜିଦ୍ଦୁ କୃଷ୍ଣମୂର୍ତ୍ତିଙ୍କୁ ସାକ୍ଷାତ

କରିବ । ସେ ହେଉଛନ୍ତି ଶେଷ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତି ଯାହା ସଂସ୍ପର୍ଶରେ ତୁମର ଆସିବା ଉଚିତ । କୃଷ୍ଣମୂର୍ତ୍ତିଙ୍କଠାରୁ କିଛି ଜ୍ଞାନ ତୁମକୁ ମିଳିବ, ଯାହା ତୁମର ଆଧ୍ୟାତ୍ମିକ ପରିପକ୍ୱତା ପାଇଁ ଆବଶ୍ୟକୀୟ । ଦିଲ୍ଲୀ ରହଣି ସମୟରେ କାଶ୍ମୀର ଯାଇ ଅନନ୍ତନାଗ ପାଖରେ ଥିବା ଗୁମ୍ଫାମନ୍ଦିର ଦେଖିବାକୁ ଯିବ । ଏବେ ତୁମେ ମୋର ପାଦ ସ୍ପର୍ଶ କର କିନ୍ତୁ ଦଣ୍ଡବତ କର ନାହିଁ ।''

ସର୍ଦ୍ଦାର ବାବାଜୀ ଯାଇ ତାଜମହଲ ହୋଟେଲରେ ପଶିଗଲେ । ମୁଁ ସମୁଦ୍ର ଭିତରେ ଏକ ପଥୁରିଆ ଦ୍ୱୀପ ଉପରେ ଥିବା ହାଜୀ ଅଲୀ ଦରଗାହକୁ ଗଲି । ମୁଖ୍ୟ ସଡ଼କରୁ ଦରଗାହ ପର୍ଯ୍ୟନ୍ତ ରାସ୍ତା ତିଆରି ହୋଇଥିଲା ।

ଦାଦରରେ ରାସ୍ତା ଧାରାରେ ଥିବା ଏକ ଛୋଟ ରେସ୍ତୋରାଁରେ ସ୍ୱାଦିଷ୍ଟ ମରାଠୀ ଖାଦ୍ୟ ଖାଇ ମୁଁ ଦିଲ୍ଲୀ ଯିବାର ଟିକେଟ୍ କାଟିଲି । ଭାଗ୍ୟ ଯେ ପରଦିନ ପାଇଁ ହିଁ ଶୟନଯାନରେ ଟିକେଟ ମିଳିଗଲା । ମୁଁ ବମ୍ବେ ସେଣ୍ଟ୍ରାଲ ଷ୍ଟେସନ ପାଖରେ ଥିବା ମୋର ହୋଟେଲରେ ଯାଇ ଶୋଇଗଲି ଓ ପରଦିନ ସକାଳେ ଦିଲ୍ଲୀଗାମୀ ରେଳଗାଡ଼ି ଧରିଲି ।



# 43. ଲକ୍ଷ୍ମଣ ଜୁ ଏବଂ ଜେ. କୃଷ୍ଣମୂର୍ତ୍ତିଙ୍କ ସହିତ ସାକ୍ଷାତ

ନୂଆଦିଲ୍ଲୀ ଷ୍ଟେସନରେ ଓହ୍ଲାଇ ମୁଁ ପାହାଡ଼ଗଞ୍ଜ ଇଲାକାରେ ଏକ ଛୋଟକାଟିଆ ହୋଟେଲର ଗୋଟିଏ କୋଠରି ଭଡ଼ାରେ ନେଲି । ଜଲ୍‌ଦି ଗାଧୋଇପଡ଼ି ଅଟୋରିକ୍ସା ଦେଇ ମୁଁ ଇଂରାଜୀ ସାପ୍ତାହିକ ପତ୍ରିକା 'ଅର୍ଗାନାଇଜର'ର ଦପ୍ତରକୁ ଗଲି । ମୋତେ ସେତେବେଳେ ଜଣାନଥିଲା ଯେ ଏହା ଅତି ଦକ୍ଷିଣ-ପନ୍ଥୀ ଆର୍.ଏସ୍.ଏସ୍. ନାମକ ହିନ୍ଦୁ ସଂସ୍ଥାର ମୁଖପତ୍ର ଥିଲା । ମୋ କଥା କହିବାକୁ ଗଲେ, ମୋପାଖରେ ଦିଲ୍ଲୀର ଏହି ଏକମାତ୍ର ଠିକଣା ଥିଲା । ମୋର ବନ୍ଧୁ ଶ୍ରୀ ନାୟାର 'ACCENT' ପତ୍ରିକା ବନ୍ଦ କରିଦେଇ ଚେନ୍ନାଇ ଚାଲିଯାଇଥିଲେ ଏବଂ ବାବାଜୀଙ୍କର ବ୍ୟବସାୟୀ ଶିଷ୍ୟଙ୍କର ଦେହାନ୍ତ ହୋଇଯାଇଥିଲା ।

ମୋର ବନ୍ଧୁ ନାୟାର ମୋର ପରିଚୟ 'ଅର୍ଗାନାଇଜର'ର ଚେନ୍ନାଇସ୍ଥିତ ଜଣେ ସମ୍ବାଦଦାତାଙ୍କ ସହିତ କରାଇ ନେଇଥିଲେ । ତାଙ୍କର ନାଁ ଏବେ ଭୁଲିଗଲିଣି । ସେ ମୋ ଦ୍ୱାରା ହିନ୍ଦୁତ୍ୱର ଅର୍ଥ ଉପରେ ଏକ ନିବନ୍ଧ ଲେଖାଇଥିଲେ । ତାହା ସହିତ ଲେଖାଇଥିଲେ ଯେ, କ'ଣ ମୁଁ ଜଣେ ଅହିନ୍ଦୁ ହୋଇ ମଧ୍ୟ ନିଜକୁ ହିନ୍ଦୁ ବୋଲି କହିବାକୁ ଗର୍ବ ଅନୁଭବ କରେ ? ଏହି ନିବନ୍ଧ (ଯାହା ଅର୍ଗାନାଇଜରରେ ମୋତେ ନିଜକୁ ହିନ୍ଦୁ କହିବାପାଇଁ ଗର୍ବ କାହିଁକି ଲାଗେ' ଶୀର୍ଷକରେ ଛପା ହୋଇଥିଲା) ଛପା ହେବାପରେ ମୁଁ ସେହି ପତ୍ରିକାପାଇଁ ହିନ୍ଦୁ ଦର୍ଶନ ତଥା ଧର୍ମ ଉପରେ କେତୋଟି ନିବନ୍ଧ ଲେଖିଥିଲି ଏବଂ ତତ୍‌କାଳୀନ ସମ୍ପାଦକ ଶ୍ରୀ କେ.ଆର୍. ମଲକାନୀଙ୍କ ସହିତ ମୋର ସମ୍ପର୍କ ହେଲା । ସେ ମୋତେ ଚିଠି ଲେଖିଥିଲେ ଯେ, ଯେତେବେଳେ ହେଲେ ଦିଲ୍ଲୀ ଆସିବି, ତାଙ୍କୁ ଯେପରି ସାକ୍ଷାତ କରିବି ।

ଭେଟିବା ପରେ ମୁଁ ଶ୍ରୀ ମଲକାନୀଙ୍କୁ ପୂରା 'ସାହେବ' ଦେଖିଲି । ପୂରାପୂରି ପଶ୍ଚିମୀସଭ୍ୟତା ଦ୍ୱାରା ପ୍ରଭାବିତ ଏବଂ ଆର୍.ଏସ୍.ଏସ୍. ନାଁ ଶୁଣିଲେ ଯେମିତି ମନକୁ ଆସେ ମୁସଲମାନ ବିରୋଧୀ, ଖ୍ରୀଷ୍ଟିଆନ ବିରୋଧୀ ବ୍ୟକ୍ତି, ସେଭଳି ସେ ଆଦୌ ନ ଥିଲେ । ଅବଶ୍ୟ ଆର୍.ଏସ୍.ଏସ୍.ରେ ବ୍ୟତିକ୍ରମ ଥିଲେ, ଯେପରି ବରିଷ୍ଠ ଆର୍.ଏସ୍.ଏସ୍. ନେତା

ନାନାଜୀ ଦେଶମୁଖ, ଯେ ପୂରା ନିରପେକ୍ଷ ଥିଲେ । ପ୍ରକୃତରେ ମାଲକାନୀଜୀ ନିଜେ ମୋତେ ନାନାଜୀ ଦେଶମୁଖଙ୍କ ନିକଟକୁ ନେଇକରି ଗଲେ । ସେ ମୋର ପରିଚୟ ତାଙ୍କର ଯୁବକ ଉପସମ୍ପାଦକ ଶ୍ରୀ ବାଲଶଙ୍କରଜୀଙ୍କ ସହିତ କରାଇଲେ, ଯେ ମୋ ପରି କେରଳରୁ ଆସିଥିଲେ ।

ଶ୍ରୀ ବାଲଶଙ୍କର ମୋର ଦିଲ୍ଲୀରେ ରହିବାପାଇଁ ଜାଗା ଠିକ୍ କରିଦେଲେ । ମୋତେ କେରଳର କେତେଜଣ ଅନ୍ୟ ଯୁବକ କର୍ମକର୍ତ୍ତାଙ୍କ ସହିତ ରହିବାର ଥିଲା । ସେମାନେ ନିଜର ରୋଷେଇ କରୁଥିଲେ । ସେଠାରେ ପ୍ରଥମଥର ମୋତେ ଆର୍.ଏସ୍.ଏସ୍.ର ବିଚାରଧାରା ଓ ତା'ର ଭିତରର କାର୍ଯ୍ୟ-ପଦ୍ଧତି ବିଷୟରେ ଜଣାପଡ଼ିଲା । ସେମାନଙ୍କ ଖୁବ୍ ଭଲ ବ୍ୟବସ୍ଥା (ଜାଲ) ଥିଲା । ଆର୍.ଏସ୍.ଏସ୍.ର ଲୋକ ଏମିତି ସବୁ ସ୍ଥାନରେ ଥିଲେ, ଯାହା କେହି କଳ୍ପନା କରିପାରିବେ ନାହିଁ । ଉଦାହରଣସ୍ୱରୂପ, ଆର୍.ଏସ୍.ଏସ୍.ର ଜଣେ ଯୁବକ, ଯାହା ସହିତ ମୁଁ ଦିଲ୍ଲୀରେ ରହୁଥିଲି, ପରବର୍ତ୍ତୀ କାଳରେ ପ୍ରଧାନମନ୍ତ୍ରୀ ଶ୍ରୀ ପି. ଭି. ନରସିଂହ ରାଓଙ୍କ କର୍ମଚାରୀମାନଙ୍କ ମଧ୍ୟରେ ସାମିଲ ହୋଇଯାଇଥିଲା । ସେ ମୋତେ ଚିଠିରେ ଜଣାଇଥିଲା ଯେ, ସେ ଶ୍ରୀ ନରସିଂହ ରାଓଙ୍କୁ ମୋର ଭଗବତ ଗୀତା ଉପରେ ଥିବା କ୍ୟାସେଟ୍ ଶୁଣିବାର ଦେଖିଥିଲା । ଏହିପରି ପତ୍ରକାରିତା, ନ୍ୟାୟପାଳିକା, ସେନା, ଶାସନ ଇତ୍ୟାଦି ସବୁଠରେ ଆର୍.ଏସ୍.ଏସ୍.ର ବ୍ୟକ୍ତି କିମ୍ବା ତାହାର ସମର୍ଥକମାନେ ଉପସ୍ଥିତ ଥିଲେ । ସେମାନଙ୍କର ମତବାଦ ବିଷୟରେ ଯେ ଯାହା କହିଲେ ମଧ୍ୟ ମୁଁ ଦେଖିଲି ସେମାନେ ଭାରି ପରିଶ୍ରମୀ ଓ ଅନୁଶାସିତ ।

ନାନାଜୀ ଦେଶମୁଖ ପ୍ରଥମ ଦିନରୁ ହିଁ ମୋତେ ପସନ୍ଦ କଲେ । ମୋ ଲେଖାର କିଛି ନମୁନା ଦେଖି ସେ ମୋତେ ପରବର୍ତ୍ତୀ ସୋମବାର ଦିନ ଦେବେନ୍ଦ୍ର ସ୍ୱରୂପ ଅଗ୍ରୱାଲଙ୍କ ପାଖକୁ ଯିବାକୁ କହିଲେ । ସେ ଥିଲେ ଦୀନଦୟାଲ ରିସର୍ଚ୍ଚ ଇନ୍ସ୍ଟିଚ୍ୟୁଟ୍‌ର ନିର୍ଦ୍ଦେଶକ ଏବଂ ତାହା ସହିତ ଡି.ଆର୍.ଆଇ.ର ଶୋଧପତ୍ର 'ମନ୍ଥନ'ର ସଂପାଦକ । ନାନାଜୀ ସ୍ୱୟଂ ଡି.ଆର୍.ଆଇ.ର ସଂସ୍ଥାପକ ଓ ଚେୟାରମ୍ୟାନ ଥିଲେ । ମୋତେ ମନ୍ଥନର ଇଂରାଜୀ ସଂସ୍କରଣରେ ତାଙ୍କୁ ସହାୟତା କରିବାର କାମ ଦିଆଗଲା । ମୋର କୋଠରି ଡି.ଆର.ଆଇ.ର ହାଇଟେକ୍ ମୁଖ୍ୟାଳୟରେ ତାଙ୍କର ଅଫିସ ପାଖରେ ଥିଲା । ମୁଁ କୋଠରିରେ ଶ୍ରୀ ଚନ୍ଦ୍ରକାନ୍ତ ଭରଦ୍ୱାଜଙ୍କ ସହିତ ବସୁଥିଲି । ସେ ମନ୍ଥନର ହିନ୍ଦୀ ସଂସ୍କରଣର ସମ୍ପାଦନାରେ ସହାୟତା କରୁଥିଲେ । ସେ ପ୍ରାୟ ଅଫିସ ଆସୁ ନ ଥିଲେ । ତେଣୁ ପ୍ରାୟ ମୁଁ କୋଠରିରେ ଏକା ଥିଲି । ଉତ୍ତମ ପୁସ୍ତକାଳୟ ଓ ସବୁବେଳେ ଚା' ମିଳବାଟା ଅଧିକନ୍ତୁ ଥିଲା । ପଢ଼ିବା, ଚିନ୍ତା କରିବା ଓ ଲେଖିବାକୁ ଭଲପାଉଥିବା ତରୁଣ ମସ୍ତିଷ୍କପାଇଁ ତାହା ଥିଲା ଆଦର୍ଶ ସ୍ଥାନ ।

ଶ୍ରୀ ଦେବେନ୍ଦ୍ର ଜୀ ଓ ମୁଁ, ଦି'ଜଣଯାକ ନାନାଜୀଙ୍କର ଚାରିମହଲାରେ ଥିବା ଘରେ ଦି'ପହରେ ଖାଉଥିଲୁ । ନାନାଜୀ ଯଦି ସହରରେ ରହୁଥିଲେ, ସେ ମଧ୍ୟ ଆମ ସହିତ ଖାଉଥିଲେ ଓ ସେ ସମୟର ବାର୍ତ୍ତାଳାପ ବେଶ ସୂଚନାଦାୟକ ହେଉଥିଲା । ବହୁବର୍ଷ ଧରି ସଂସଦର ସଦସ୍ୟ ରହିଥିବା ନାନାଜୀ ଆର୍.ଏସ୍.ଏସ୍.ର ଆଦରଣୀୟ ନେତା ଥିଲେ । ସେ ଆର୍.ଏସ୍.ଏସ୍.ର ରାଜନୈତିକ ଅଙ୍ଗ ଜନସଂଘ ପାର୍ଟିର ଟିକେଟରେ ନିର୍ବାଚିତ ହୋଇଥିଲେ । ସେ ସମୟର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଘୋଷିତ ଆପାତକାଳୀନ ସ୍ଥିତି ବିରୁଦ୍ଧରେ ସେ ବୃଦ୍ଧ ସମାଜବାଦୀ ଜୟପ୍ରକାଶ ନାରାୟଣଙ୍କୁ କ୍ରାନ୍ତିକାରୀ ଆନ୍ଦୋଳନରେ ସାମିଲ କରାଇବାପାଇଁ ଦାୟୀ ଥିଲେ ।

ଆନ୍ଦୋଳନ ହେତୁ ଇନ୍ଦିରା ସରକାରଙ୍କର ପତନ ହେଲା । ନିର୍ବାଚନ ହେଲା । ଜନତା ପାର୍ଟି ଜିତିଲା । ତାଙ୍କର ସରକାର ଗଢ଼ା ହେଲା । ନାନାଜୀ ପାର୍ଟିର ଜେନେରାଲ ସେକ୍ରେଟେରୀ ଥିଲେ । ଏହା ଦକ୍ଷିଣପନ୍ଥୀ ଓ ସମାଜବାଦୀମାନଙ୍କର ଏକ ଅଭୂତପୂର୍ବ ସମ୍ମିଶ୍ରଣ ଥିଲା । ସେହି ସରକାର ମାତ୍ର ଦୁଇତିନି ବର୍ଷ ତିଷ୍ଠିଲା । ପରସ୍ପର ଭିତରେ କନ୍ଦଳ ଓ କେତେକ ଲୋକଙ୍କର ଶସ୍ତା କ୍ଷମତାଲିପ୍‌ସାପାଇଁ ଏହି ନୂଆକରି ଆରମ୍ଭ ହୋଇଥିବା ପରୀକ୍ଷାମୂଳକ ଧାରା ସମାପ୍ତ ହୋଇଗଲା ।

ନାନାଜୀ ଇସ୍ତଫା ଦେଇ ରାଜନୀତିରୁ ଅବସର ନେଇଗଲେ । ସେ ସମାଜସେବାରେ ଲାଗିଲେ ଓ ସେହି କ୍ଷେତ୍ରରେ ଅଦ୍‌ଭୁତ ଧରଣର କାର୍ଯ୍ୟ କଲେ । ସେ ସାଧାରଣ ରାଜନେତାଙ୍କଠାରୁ ଭିନ୍ନ ଥିଲେ, ଅର୍ଥାତ୍ ସେ ନିଜର ଭୁଲ୍ ତ୍ରୁଟି ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ । ସେ ଇନ୍ଦିରାଙ୍କ ବିରୁଦ୍ଧରେ ଲଢ଼ିଥିଲେ ମଧ୍ୟ ତାଙ୍କ ପ୍ରତି ତାଙ୍କର ମନରେ କୌଣସି ବୈରଭାବ ନ ଥିଲା । ମୋର ମନେ ଅଛି, ସେ ମୋତେ କହିଥିଲେ ଯେ, ସେ ଜଣେ ମହାନ୍ ନେତ୍ରୀ ଥିଲେ, ଯାହାଙ୍କର ପାଖ ଲୋକମାନେ ତାଙ୍କୁ ଭ୍ରମାତ୍ମକ ରାସ୍ତାରେ ନେଇ ଯାଉଥିଲେ । ଯାହାର ପରିଣାମ ଥିଲା ଆପାତକାଳୀନ ସ୍ଥିତିର ଘୋଷଣା ।

ନାନାଜୀଙ୍କ ସହିତ କାମ କରି ଓ ତାଙ୍କ ସହିତ ବେଳେବେଳେ ଯିବାଆସିବା କରି ବିଭିନ୍ନ ପ୍ରକାରର ରାଜନେତା, ସାମାଜିକ ବିଚାରଧାରା ଏବଂ ସାଂସ୍କୃତିକ ବିଚାରଧାରା ସହିତ ମୋର ପରିଚୟ ହେଲା । ଏହାଦ୍ୱାରା ସେପର୍ଯ୍ୟନ୍ତ ମୋର ଅଜଣା ଥିବା ଦୁନିଆ ଅର୍ଥାତ୍ ରାଜ୍ୟର ଶୀର୍ଷସ୍ଥାନୀୟ ବ୍ୟକ୍ତିମାନଙ୍କ ବିଷୟରେ ମୋର ଆଖି ଖୋଲିଗଲା । ଆର୍.ଏସ୍.ଏସ୍.ର ନେତାମାନେ, ଯେପରି ସେତେବେଳର ସଂଘର ମୁଖ୍ୟ ବାବାସାହେବ ଦେଓରସ ଏବଂ ଶ୍ରୀ ସୁଦର୍ଶନ (ଯେ ପରେ ମୁଖ୍ୟ ହେଲେ)ଙ୍କ ଠାରୁ ଆରମ୍ଭ କରି ଜର୍ଜ ଫର୍ଣ୍ଣାଡିସ୍‌ଙ୍କ ପରି ସୋସିଆଲିଷ୍ଟମାନେ ଥିଲେ । ସମସ୍ତେ ନାନାଜୀଙ୍କର ବନ୍ଧୁ ଓ ସହଯୋଗୀ ଥିଲେ । ମୋତେ ସେମାନଙ୍କୁ ଭେଟିବାର ଏବଂ କଥାବାର୍ତ୍ତା କରିବାର ସୁଯୋଗ ମିଳିଥିଲା ।

ବର୍ଷେ ଭିତରେ ମୋତେ ମନ୍ଥନର ଇଂରେଜୀ ସଂସ୍କରଣର ସଂଯୁକ୍ତ ସମ୍ପାଦକ କରି କିଦିଆଗଲା । ମୁଁ ପୁସ୍ତକଗୁଡ଼ିକର ସମୀକ୍ଷା କରୁଥିଲି ଏକ ପତ୍ରିକାପାଇଁ କିଛି ବିଷୟ ଉପରେ କାମ କରୁଥିଲି । ଧର୍ମ ଉପରେ, ରାଜନୀତି ବିଷୟରେ ବେଶ୍ କିଛି ଶିଖିଲି, ଖାଲି ସମୟରେ ମୁଁ ଦିଲ୍ଲୀର ପ୍ରାଚୀନ ସ୍ମାରକ, ଯାହା ସେଠାରେ ବହୁ ପରିମାଣରେ ଥିଲା ଏବଂ ଆଗ୍ରା ଓ ଫତେପୁର ସିକ୍ରୀ ତଥା ଅନ୍ୟାନ୍ୟ ସ୍ଥାନ ଦେଖି ବିତାଇଲି । ମୁଁ ହରିଦ୍ୱାର, ଋଷିକେଶ, ମଥୁରା, ବୃନ୍ଦାବନ ମଧ୍ୟ ଗଲି ଯାହା ଦିଲ୍ଲୀଠାରୁ ବେଶି ଦୂରରେ ନ ଥିଲା । ହରିଦ୍ୱାର ଓ ଋଷିକେଶରେ ବାବାଜୀଙ୍କୁ ଦେଖିଲି ନାହିଁ, ଯଦିଓ ତାଙ୍କ ସବୁ ପ୍ରିୟ ସ୍ଥାନଗୁଡ଼ିକୁ ଗଲି । କିନ୍ତୁ ସେଥିପାଇଁ ମୁଁ ବେଶି ବ୍ୟସ୍ତ ହେଲି ନାହିଁ ଏବଂ ବାବାଜୀ ମଧ୍ୟ ଚାହୁଁଥିଲେ ଯେ ମୁଁ ନିଜ ଗୋଡ଼ରେ ଠିଆ ହୁଏ ଏବଂ ତାଙ୍କ ଉପରେ ନିର୍ଭର ନ କରେ ।

ମୁଁ ବାବାଜୀଙ୍କ ପାଖରେ ଚିର ଋଣୀ ଯେ ସେ ମୋତେ ସ୍ୱାବଲମ୍ବୀ କଲେ ଓ ମୋତେ ଧ୍ୟାନ ସାଧନାର ବରଦାନ ଦେଲେ । ମୁଁ ନିରନ୍ତର ଭାବରେ ଆଖି ବନ୍ଦ ବା ଖୋଲା ରଖି ଧ୍ୟାନ କରୁଥିଲି ଅବିଚଳିତ ଭାବରେ । ଭୋରରୁ ଧ୍ୟାନପାଇଁ ମୁଁ ନିଶ୍ଚିତ ଭାବରେ ବସୁଥିଲି ଏବଂ ନିଜର ଚେତନାର କେନ୍ଦ୍ରକୁ ବିଶେଷ ଧ୍ୟାନ ଦେଉଥିଲି । ଯାହା କିଛି ଅସାଧାରଣ ସାମର୍ଥ୍ୟ ପ୍ରକଟିତ ହେଲା, ତାହାକୁ ଅନ୍ୟମାନଙ୍କଠାରୁ ଲୁଚାଇ ରଖୁଥିଲି । ଜୀବନ ବଡ଼ ନିର୍ବିଘ୍ନ ଭାବ କଟୁଥାଏ । ଜୀବନ ଧାରଣପାଇଁ ମୋ ପାଖରେ ଚାକିରି ଥିଲା ଓ ତା'ସହିତ ଅନ୍ତରରେ ଆଧ୍ୟାତ୍ମିକତାର ଆନନ୍ଦ ଅନୁଭବ କରୁଥିଲି ।

କିଛି ସମୟପରେ ମୁଁ କେବଳ ଗବେଷଣାତ୍ମକ ପତ୍ରିକାର ସଂକୀର୍ଣ୍ଣ ପରିସରରେ କାମ କରି ଅଣନିଃଶ୍ୱାସୀ ହୋଇପଡ଼ିଲି । ମୁଁ ସାମ୍ବାଦିକତାର ବୃହତ୍ତର କ୍ଷେତ୍ରରେ ନିଜର ଦକ୍ଷତା ଦେଖାଇବାକୁ ଚାହୁଁଥିଲି ।

ସାଂପ୍ରଦାୟିକ ସଦ୍‌ଭାବନାର ବିଷୟ ଉପରେ ଇଣ୍ଡିଆ ଇଣ୍ଟରନ୍ୟାସନାଲ ସେଣ୍ଟରରେ ଆୟୋଜିତ ଗୋଟିଏ ସମ୍ମିଳନୀରେ ମୁଁ ଶ୍ରୀ ଗଣେଶ ଶୁକ୍ଳାଙ୍କୁ ଭେଟିଲି । ସେ 'ନ୍ୟୁ ୱେଭ୍' ନାମକ ଏକ ସାହିତ୍ୟ ପତ୍ରିକାର ସମ୍ପାଦନା କରୁଥିଲେ । ମୁଁ ସେ ପତ୍ରିକା ପଢ଼ିଥିଲି ଓ ତାହା କିଛି ପରିମାଣରେ ବାମପନ୍ଥୀ ଭାବାପନ୍ନ ପରି ମୋତେ ଲାଗିଥିଲା, ମୋତେ ତା'ର ଶୈଳୀ ଓ ସାମଗ୍ରୀ ଭଲ ଲାଗିଲା । ଯେତେବେଳେ ମୁଁ 'ନ୍ୟୁ ୱେଭ୍' ପାଇଁ କାମ କରିବାର ଇଚ୍ଛା ପ୍ରକାଶ କଲି, ଶ୍ରୀ ଶୁକ୍ଳା ତୁରନ୍ତ ରାଜି ହୋଇଗଲେ । ପରଦିନ ମୁଁ 'ମନ୍ଥନ'ରୁ ଇସ୍ତଫା ଦେଇ 'ନ୍ୟୁ ୱେଭ୍'କୁ ଆସିଗଲି । ମୋର ସମ୍ପାଦକ ଅସନ୍ତୁଷ୍ଟ ଥିଲେ କିନ୍ତୁ ନାନାଜୀ ବୁଝିଗଲେ ଯେ ମୁଁ କାହିଁକି ଏହି ପରିବର୍ତ୍ତନ ଚାହୁଁଥିଲି ।

'ନ୍ୟୁ ୱେଭ୍' ପାଇଁ କାମ କରୁଥିବାବେଳେ ଦୁଇଟି ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିଲା । ଏହି ଘଟଣାଗୁଡ଼ିକର ମୋର ଆଧ୍ୟାତ୍ମିକ ଜୀବନ ସହିତ ସିଧା ଭାବରେ ସମ୍ପର୍କ ରହିଛି । ଗୋଟିଏ ଥିଲା ମୋର କାଶ୍ମୀର ଭ୍ରମଣ ଓ ସେଠାରେ ଶୈବ ସିଦ୍ଧାନ୍ତର ମହାନ ଗୁରୁ ସ୍ୱାମୀ ଲକ୍ଷ୍ମଣ ଜୂଙ୍କ ସହିତ ସାକ୍ଷାତ ଏବଂ ଅନ୍ୟଟି ଥିଲା ଦିଲ୍ଲୀ କନ୍‌ଷ୍ଟିଚ୍ୟୁସନ୍ ହଲ୍‌ରେ ଅଳ୍ପ ସମୟପାଇଁ ଜେ. କୃଷ୍ଣମୂର୍ତ୍ତିଙ୍କ ସହିତ ଭେଟ ।

× × ×

ନୟନାଭିରାମ ସୌନ୍ଦର୍ଯ୍ୟ ବ୍ୟତୀତ, ପ୍ରାଚୀନ କାଳରୁ ହିଁ କାଶ୍ମୀର ଆର୍ଯ୍ୟ ସଭ୍ୟତାର ଉଦ୍‌ଗମ ସ୍ଥାନ ରୂପରେ ଜଣାଶୁଣା । ଗ୍ରୀସ୍‌ର ମହାନ ଗଣିତଜ୍ଞ ପାଇଥୋଗୋରସ ମଧ୍ୟ କହିଥିଲେ ଯେ ସେ ନିଜର ଗଣିତ ଏବଂ ଆଧ୍ୟାତ୍ମିକ ଜ୍ଞାନପାଇଁ କାଶ୍ମୀରର 'ବ୍ରାକ୍‌ମନୋ' ନିକଟରେ ଋଣୀ ଥିଲେ । ଚୀନର ପରିବ୍ରାଜକ ଓ ଇତିହାସଜ୍ଞ ହୁ-ଏନ୍-ସାଙ୍ଗ୍ ଯେ ନିଜର ଜ୍ଞାନ ବଢ଼ାଇବାପାଇଁ 613 ମସିହାରେ କାଶ୍ମୀର ଆସିଥିଲେ, ସେ କାଶ୍ମୀରର ପଣ୍ଡିତମାନଙ୍କୁ ତାଙ୍କର ବିଶୁଦ୍ଧ ଜ୍ଞାନ ଓ ପାଣ୍ଡିତ୍ୟ ପାଇଁ ପ୍ରଶଂସା କରିଥିଲେ । ଚୀନର ଅନ୍ୟ ଜଣେ ପରିବ୍ରାଜକ 'ଆନକୋଙ୍ଗ' ଯେ 760 ମସିହାରେ କାଶ୍ମୀର ଆସିଥିଲେ ଏବଂ ଜଣେ ବୌଦ୍ଧ ଭିକ୍ଷୁ ଭାବରେ ସେଠାରେ ରହିଥିଲେ, ସେ କହନ୍ତି ଯେ କାଶ୍ମୀରର ତିନିଶହରୁ ଅଧିକ ମଠ (ମୋନାଷ୍ଟ୍ରି) ଧର୍ମ ଏବଂ ଦର୍ଶନର ଗଭୀର ଅଧ୍ୟୟନରେ ବ୍ୟାପୃତ ଥିଲେ । ତାହା ବ୍ୟତୀତ କାଶ୍ମୀରର ଶୈବ ସିଦ୍ଧାନ୍ତ, ଶିବଙ୍କର ଅନୁଗାମୀମାନଙ୍କର ଦର୍ଶନ ଓ ସିଦ୍ଧାନ୍ତଗୁଡ଼ିକର ହେଉଛି ଏକ ଗଭୀର ଦୃଷ୍ଟିକୋଣ ଏବଂ ଏହାକୁ ରହସ୍ୟବାଦ ଏବଂ ତା'ର ଅଭ୍ୟାସ କୁହାଯାଏ । ଏହା ହେଉଛି କାଶ୍ମୀରର ଅତୁଳନୀୟ ଦାନ ।

କାଶ୍ମୀରର ନୈସର୍ଗିକ ସୌନ୍ଦର୍ଯ୍ୟ ବିଷୟରେ କହିବାକୁ ଯାଇ ଏତିକି କହିଲେ ଯଥେଷ୍ଟ ହେବ ଯେ ଏଠାକୁ ଥରେ ଗଲେ ଯେକୌଣସି ଲୋକ ମୋଗଲ ସମ୍ରାଟଙ୍କର ଉକ୍ତି, ଏହା ଧରଣୀ ଉପରେ ସ୍ୱର୍ଗ' ସହିତ ଏକମତ ହୋଇଯିବ । ମୋଗଲ ସମ୍ରାଟ ପାର୍ସୀରେ କହିଥିଲେ, 'ଅଗର ଫିରଦୌସ ବର ର ଜମୀନ ଅସ୍ତ, ଓ ହମୀନ୍ ଅସ୍ତ ଓ ହମୀନ୍ ଅସ୍ତ, ଓ ହମୀନ୍ ଅସ୍ତ' (ଯଦି ପୃଥିବୀ ଉପରେ କେଉଁଠି ସ୍ୱର୍ଗ ଥାଏ, ତେବେ ତାହା ଏହିଠାରେ, ତାହା ଏହିଠାରେ, ତାହା ଏହିଠାରେ) । ପୂର୍ବରେ ତିବ୍ବତ, ଉତ୍ତରରେ ଚୀନର ତୁର୍କିସ୍ତାନ ଏବଂ ଋଷ ତଥା ପଶ୍ଚିମରେ ଆଫଗାନୀସ୍ଥାନ ହେଉଛି ଏହି ରାଜ୍ୟର ସୀମା । ତେଣୁ ଏହି ପ୍ରଦେଶର ଜୀବନ ଓ ସଂସ୍କୃତିରେ ଅନେକ ସଂସ୍କୃତିର ସମ୍ମିଳନ ଘଟିଛି । ଏକଥା ଖୁବ୍ କମ୍ ଲୋକ ଜାଣନ୍ତି ଯେ, ଅତୁଳନୀୟ ଉପନିଷଦଗୁଡ଼ିକର ସର୍ବ ପ୍ରଥମ ଫାର୍ସୀ ଅନୁବାଦର ଯୋଜନା ଅତ୍ୟାଚାରୀ ମୋଗଲ ସମ୍ରାଟ ଔରଙ୍ଗଜେବଙ୍କର ସଚ୍ଛ ପ୍ରକୃତିର ଭାଇ ଦାରା ସିକୋ ପ୍ରସ୍ତୁତ

କରିଥିଲେ । ସେ କାଶ୍ମୀରରେ ସୂଫୀବାଦ ଅଧ୍ୟୟନ କରୁଥିବା ସମୟରେ ଏହି ଯୋଜନା କରିଥିଲେ ଏବଂ ଏହାକୁ କାର୍ଯ୍ୟକାରୀ କରିଥିଲେ ।

କାଶ୍ମୀର ଯିବାକୁ ମୁଁ ବିଶେଷ ଭାବରେ ଚାହୁଁଥିଲି କାରଣ ମୁଁ ମହାନ ଯୋଗୀ ଲକ୍ଷ୍ମଣ ଜୁଙ୍କୁ ଭେଟିବାକୁ ଚାହୁଁଥିଲି ଏବଂ ଅନନ୍ତନାଗ ନିକଟରେ ଥିବା ଓଂକୋର ପଞ୍ଚମ-ଷଷ୍ଠ ଶତାବ୍ଦୀର ମନ୍ଦିରଗୁଡ଼ିକୁ ଦେଖିବାକୁ ଚାହୁଁଥିଲି । ଏହି ସବୁ ବିଷୟରେ ବାବାଜୀ ମୋତେ କହିଥିଲେ । ଏହି ମନ୍ଦିରଗୁଡ଼ିକ ଏକ ସମୟରେ ଧର୍ମର ଉଚ୍ଚତର ରହସ୍ୟଗୁଡ଼ିକରେ ଦୀକ୍ଷା ଦେବାପାଇଁ ବ୍ୟବହୃତ ହେଉଥିଲା । ପ୍ରାଚୀନ କାଳରେ ମିଶରର ପିରାମିଡ଼ ମନ୍ଦିରର ମହାଯାଜକ ଏତେ ଦୂରରୁ ଏହି ରହସ୍ୟର ଦୀକ୍ଷା ନେବାକୁ ଏଠାକୁ ଆସିଥିଲେ । କୁହାଯାଏ ଯେ ଯୀଶୁଖ୍ରୀଷ୍ଟ ମଧ୍ୟ କାଶ୍ମୀରରେ କିଛି ସମୟ ବିତାଇଥିଲେ ।

ଗୁମ୍ଫା ମନ୍ଦିରକୁ ଯିବା ପରେ ମୁଁ ପ୍ରସିଦ୍ଧ ହଜରତ ବଲ ଏବଂ କିଛି ସୂଫୀ ସ୍ଥାନକୁ ଗଲି । ଆଦି ଶଙ୍କରାଚାର୍ଯ୍ୟଙ୍କ ପାହାଡ଼ରେ ଚଢ଼ିଲି, ଯେଉଁଠାରେ ତାଙ୍କ ଦ୍ୱାରା ସ୍ଥାପିତ ଲିଙ୍ଗ ଆଜି ମଧ୍ୟ ବିଦ୍ୟମାନ । କିନ୍ତୁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା ଥିଲା କାଶ୍ମୀରର ଶୈବ ସିଦ୍ଧାନ୍ତର ପ୍ରକାଣ୍ଡ ପଣ୍ଡିତ ଶ୍ରୀ ଲକ୍ଷ୍ମଣଜୂଙ୍କ ସହିତ ମୋର ସାକ୍ଷାତ ।

ଗୋଟାଏ ରବିବାର ଦିନ ଦି'ପହର ପରେ ପ୍ରାୟ ସାଢ଼େ ତିନିଟା ବେଳେ ମୁଁ ଲକ୍ଷ୍ମଣ ଜୁଙ୍କର ଆଶ୍ରମରେ ପହଞ୍ଚିଲି । ଲୋକେ ତାଙ୍କୁ ସ୍ୱାମୀଜୀ ସମ୍ବୋଧନ କରୁଥିଲେ । ଶୁଣିଥିଲି ଯେ ସେ ସେଦିନ ଜନତାଙ୍କୁ ଭେଟୁଥିଲେ । ରଙ୍ଗ-ବେରଙ୍ଗି ଫୁଲ ଭର୍ତ୍ତି କିଆରୀ ଥିବା ସୁନ୍ଦର ଆଶ୍ରମ ତାଙ୍କର ବ୍ୟକ୍ତିଗତ ନିବାସ ସ୍ଥାନ ଥିଲା । ଏହା ମୋଗଲ ଗାର୍ଡ଼େନ ନିକଟସ୍ଥ ଉପତ୍ୟକାରେ ଥିଲା, ନିମ୍ନ ଦେଶରେ ଥିଲା ଡାଲ୍ ହ୍ରଦ । ଏହି ସ୍ଥାନରେ ନାମ ନିଶାତ ବାଗ ଥିଲା । ଏହାର ପରିବେଶ ଅତ୍ୟନ୍ତ ନୟନାଭିରାମ ଥିଲା । ସ୍ଥାନଟି ଯୁବକ, ଶିଶୁ, ବୃଦ୍ଧ ଆଦି ବିଭିନ୍ନ ଧରଣର ଲୋକଙ୍କଦ୍ୱାରା ଭରପୂର ହୋଇ ରହିଥିଲା । ମୁଁ ମଧ୍ୟ ଭିଡ଼ରେ ମିଶିଗଲି ଓ ସ୍ୱାମୀଜୀଙ୍କୁ ଅପେକ୍ଷା କଲି । ବାବାଜୀ ଥରେ କହିଥିଲେ, ଲକ୍ଷ୍ମଣଜୂ ହେଉଛନ୍ତି କାଶ୍ମୀର ଶୈବ ସିଦ୍ଧାନ୍ତର ସବୁଠାରୁ ବଡ଼ ଜୀବିତ ବିଦ୍ୱାନ । କେବଳ ସୈଦ୍ଧାନ୍ତିକ ଅର୍ଥରେ ନୁହେଁ, ସେ ଜଣେ ଉନ୍ନତ, ସିଦ୍ଧିପ୍ରାପ୍ତ ବ୍ୟକ୍ତି ଥିଲେ ।

କିଛି ସମୟ ପରେ ଜନତା ଶାନ୍ତ ହୋଇଗଲା । ମୁଁ ତାଙ୍କୁ ବାରନ୍ଦାରୁ ବାହାରୁଥିବାର ଦେଖିଲି – ଦୁର୍ବଳ, ପ୍ରାୟ ଛ'ଫୁଟ ଉଚ୍ଚା, ଦାଢ଼ି ନିଶ ନ ଥିବା, ଅତି ଗୌରବର୍ଣ୍ଣ, କଟା ହୋଇଥିବା ଛୋଟ ଛୋଟ ବାଳ ଥିବା, କାଶ୍ମୀରର ଫିରାନ ପିନ୍ଧିଥିବା ଜଣେ ବ୍ୟକ୍ତି । ସେ ସତୁରି ବର୍ଷ ବୟସ୍କ ପରି ଦିଶୁଥିଲେ, ତାଙ୍କର ଚାଲି ଯୁବାସୁଲଭ ଥିଲା ଏବଂ ତାଙ୍କର ଚାଲିଚଳନରେ ଆଭିଜାତ୍ୟର ଛାପ ଥିଲା । ମୁଁ ଚୁପ୍‌ଚାପ ଅନ୍ୟମାନଙ୍କ ସହିତ ଠିଆ ହୋଇଗଲି । ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ଯେତେବେଳେ ସେ ଏକତ୍ରିତ

ହୋଇଥିବା ଲୋକମାନଙ୍କ ସହିତ ଶିଷ୍ଟାଚାରବଶତଃ କଥାବାର୍ତ୍ତା କରି ଏବଂ ସେମାନଙ୍କୁ ଆଶୀର୍ବାଦ ଦେଇ ସିଧା ମୁଁ ଠିଆ ହୋଇଥିବା ଜାଗାକୁ ଆସିଲେ ଏବଂ ପ୍ରଫୁଲ୍ଲ ବଦନରେ ମୋର ହାତକୁ ଧରିଲେ । ସେ ମୋର ଆଖି ଭିତରକୁ ଚାହିଁ ଯେପରି କିଛି ଖୋଜୁଥାଆନ୍ତି । ଆନନ୍ଦୋଚ୍ଛାସର ଏକ ଲହରୀ ମୋର ଶରୀରରେ ପ୍ରବାହିତ ହେଲା ଏବଂ ମୋର ଦେହ କମ୍ପିବାକୁ ଲାଗିଲା ।

ମୁଁ ଭାବିଲି, ସେଠାରେ ଏକତ୍ରିତ ଥିବା ଲୋକ ଚକିତ ହୋଇଗଲେ ଯେତେବେଳେ ସେ ମୋର ହାତ ଧରିଥିବା ଅବସ୍ଥା କହିଲେ, ''ଆସ ଯିବା'' ଏବଂ ମୋତେ ଧ୍ୟାନ ମଣ୍ଡପ ଆଡ଼କୁ ନେଇଗଲେ । ସେଠାକୁ ଯାଇ ସେ ଗୋଟିଏ କାଶ୍ମୀରୀ ଗାଲିଚା ଉପରେ ବସିଗଲେ ଓ ନିଜ ସମ୍ମୁଖରେ ଅନ୍ୟ ଗୋଟିଏ ଗାଲିଚାରେ ମୋତେ ବସିବାକୁ କହିଲେ । ସେ ଆଗକୁ ଝୁଙ୍କିପଡ଼ି ମୋର ହାତକୁ ଧରି କହିଲେ, ''ବାପା ! ଆହୁରି ପାଖକୁ ଆସ, ମୁଁ ତୁମକୁ ଅପେକ୍ଷା କରି ରହିଛି । ବିଶ୍ୱାସ ହେଉ ନାହିଁ ? ହୁଁ ! Doubting Thomas !''

ନିଜର ଫିରାନ ଭିତରୁ ସେ ଗୋଟିଏ ପ୍ରାୟ କଳା ଗୋଟିଏ ଜିନିଷ ବାହାର କରି ମୋର ଆଖି ସାମ୍ନାରେ ଧରି ପଚାରିଲେ, ''ଦେଖ, ଚିହ୍ନିପାରୁଛ ଏହାକୁ ?''

ମୁଁ ସ୍ତମ୍ଭିତ ହୋଇଗଲି । ତାହା ଠିକ୍ ସେହିପରି ରୁଦ୍ରାକ୍ଷ ଥିଲା ଯେମିତି ବାବାଜୀ ନିଜର ଗଳାରେ ପିନ୍ଧୁଥିଲେ, ବଡ଼ ଏବଂ ପ୍ରାୟ କଳା । ''ବାବା ମହେଶ୍ୱରନାଥ ମୋତେ ଦେଇଥିଲେ । ସେତେବେଳେ ମୋର ବୟସ କୋଡ଼ିଏ ବର୍ଷ ଥିଲା । ଏହା କେହି ଜାଣନ୍ତି ନାହିଁ କେବଳ ତୁମ ଛଡ଼ା କାରଣ ଏବେ ମୁଁ ତୁମକୁ ସେକଥା କହିଦେଲି । ଏହି ଘଟଣାର ବର୍ଷେ ପରେ ମୁଁ 'ଅଭିନବଗୁପ୍ତ'ର ବ୍ୟାଖ୍ୟା ସହିତ ଭଗବତ ଗୀତାର ପ୍ରକାଶନ କଲି । ବାବାଜୀଙ୍କର ଇଚ୍ଛା ଥିଲା ମୁଁ ଏହି କାର୍ଯ୍ୟଟି କରେ । ମୁଁ ଭାରି ଖୁସି ଯେ, ତୁମ ଗୁରୁ ତୁମକୁ ମୋ ପାଖକୁ ପଠାଇଛନ୍ତି । ଯଦିଓ ବାବାଜୀ ମୋର ବ୍ୟକ୍ତିଗତ ଗୁରୁ ନୁହନ୍ତି, ମୁଁ ତାଙ୍କୁ ମୋର ଗୁରୁ ସ୍ୱାମୀ ମହତାବ କାକ ବା ନିଜର ମହାନ ପ୍ରଭୁ ସ୍ୱାମୀ ରାମଙ୍କଠାରୁ କମ୍ ଶ୍ରଦ୍ଧା କରେ ନାହିଁ । ତୁମର ସୌଭାଗ୍ୟ ଯେ, ତୁମର ଗୁରୁ ତୁମକୁ ଖୋଜି ନେଇଛନ୍ତି ଏବଂ ତୁମର ସମ୍ପର୍କ ଶ୍ରୀଗୁରୁଙ୍କ ସହିତ ପୁନର୍ବାର ସ୍ଥାପିତ କରିଦେଇଛନ୍ତି ।'' କହିଲେ ଶ୍ରୀଲକ୍ଷ୍ମଣ ଜୁ ।

ଆଖିରେ ଲୁହ ଭରି ମୁଁ କହିଲି, ''ସ୍ୱାମୀଜୀ ! ମୁଁ ଆଉ କ'ଣ କହିବି ? ଆପଣଙ୍କୁ ତ ମୋ ବିଷୟରେ ସବୁକିଛି ଜଣାଥିବା ପରି ଲାଗୁଛି !''

ଆମେ କାଶ୍ମୀରୀ ଶୈବ ସିଦ୍ଧାନ୍ତ ଏବଂ ତା'ର ଅଭ୍ୟାସ ବିଷୟରେ ଅଧଘଣ୍ଟାଏ ପର୍ଯ୍ୟନ୍ତ କଥାବାର୍ତ୍ତା କଲୁ । ସେ ମୋର କ୍ରିୟା-ଦିନଚର୍ଯ୍ୟାରେ କିଛି ପରିବର୍ତ୍ତନ କରିବାରେ ପରାମର୍ଶ ଦେଲେ ଏବଂ 'ପ୍ରତ୍ୟାଭିଜ୍ଞାହୃଦୟମ୍', 'ବିଜ୍ଞାନ ଭୈରବ' 'ପରେତ୍ରିସିକବି-

ବରଣ' ପଢ଼ିବାକୁ କହିଲେ । ସାକ୍ଷାତକାର ସମାପ୍ତ ହେବା ପୂର୍ବରୁ ସେ ଦୁଇଟି ପୁସ୍ତକ ଦେଲେ – ସଂସ୍କୃତ ପୁସ୍ତକ 'ବୋଧପଞ୍ଚଦଶିକା' ଏବଂ 'ପରାପ୍ରବେଶିକା'ର ତାଙ୍କ ଦ୍ୱାରା କରାଯାଇଥିବା ଇଂରେଜୀରେ ଭାଷାନ୍ତର । ସେଗୁଡ଼ିକର ଇଂରେଜୀ ନାମ ଥିଲା – Fifteen verses of wisdom (ଜ୍ଞାନର ପନ୍ଦରଟି ଶ୍ଳୋକ) ଏବଂ Entrance in to supreme Reality (ପରମ ସତ୍ୟରେ ପ୍ରବେଶ) ।

ମୁଁ ତାଙ୍କର ଚରଣରେ ଦଣ୍ଡବତ କଲି ଓ ଚାଲିଆସିଲି । ''ବାବାଜୀଙ୍କୁ ଭେଟିଲେ, ତାଙ୍କୁ ମୋର ପ୍ରଣାମ ଜଣାଇଦେବ, କହିବ ଅମୃତେଶ୍ୱର ଭୈରବ ମୋତେ ମୁକ୍ତି ଦିଅନ୍ତୁ ।'' ମୁଁ ଯାଉ ଯାଉ ସେ କହିଲେ । କାଶ୍ମୀରରୁ ମୁଁ ଦିଲ୍ଲୀ ଚାଲିଆସିଲି ।

× × ×

ଦିଲ୍ଲୀ ଆସିବା ପରେ ଜାଣିଲି, ଜେ. କୃଷ୍ଣମୂର୍ତ୍ତି କନ୍‌ଷ୍ଟିଚ୍ୟୁସନ କ୍ଲବରେ ଦି'ଦିନ ଧରି ପ୍ରବଚନ ଦେବେ । ବହୁ କାରଣରୁ ମୁଁ ପ୍ରଥମ ଦିନ ଯାଇପାରିଲି ନାହିଁ; କିନ୍ତୁ ଦ୍ୱିତୀୟ ଦିନ ମୁଁ ପ୍ରବଚନ ଆରମ୍ଭ ହେବା କେତେ ମିନିଟ୍ ପୂର୍ବରୁ ହିଁ ପହଞ୍ଚିଗଲି । ଶ୍ରୋତାମାନେ ବିଶିଷ୍ଟ ବର୍ଗର ଲୋକ ଥିଲେ – ବଡ଼ବଡ଼ ବ୍ୟବସାୟୀ, ଉଦ୍ୟୋଗପତି, ବିଭିନ୍ନ ରାଜନୈତିକ ଦଳର ନେତା, ବୁଦ୍ଧିଜୀବୀ, ବୈଜ୍ଞାନିକ ଏବଂ ଗଣମାଧ୍ୟମର ପ୍ରତିନିଧି ଇତ୍ୟାଦି । ଏକ ପତ୍ରକାର ହୋଇଥିବାରୁ ମୋତେ ଗୋଟିଏ ଭଲ ସ୍ଥାନ ମିଳିଗଲା । ସେଠାରୁ ମୁଁ ବକ୍ତାଙ୍କୁ ଭଲ ଭାବରେ ଦେଖି ପାରିବା କଥା । ଶ୍ରୋତାମାନେ ଶାନ୍ତିପୂର୍ବକ ତାଙ୍କର ଅପେକ୍ଷା କରୁଥାଆନ୍ତି ।

ଠିକ୍ ସଞ୍ଜ ଛ' ବାଜିବା ମାତ୍ରେ ସେ ନିର୍ଦ୍ଧାରିତ ସମୟରେ ଆସି ପହଞ୍ଚିଲେ । ସେ ସୁନ୍ଦର ତ୍ରୁଟିବିହୀନ ଭାବରେ ବାଦାମୀ ରଙ୍ଗର ରେଶମୀ କୁର୍ତ୍ତା ସହିତ ଧଳା ପାଇଜାମା ପରିଧାନ କରିଥାଆନ୍ତି । ସେ ଚକା ପକାଇ ମଞ୍ଚ ଉପରେ ବସିଲେ । ଶ୍ୱେତକେଶ ଯୁକ୍ତ ଏବଂ ସୁନ୍ଦର ଚେହେରା ଥିବା ବ୍ୟକ୍ତି ଜଣକ ଯେତେବେଳେ ଅଭିବାଦନ ପାଇଁ ହାତ ଯୋଡ଼ିଲେ ଏବଂ କହିବା ଆରମ୍ଭ କଲେ, ସେତେବେଳେ ସେ ଆଧୁନିକ ବୁଦ୍ଧଙ୍କ ପରି ଦିଶୁଥାଆନ୍ତି । କୌଣସି ପରିଚିତି ନାହିଁ, ଦୀପ ଜଳାଇବା ନାହିଁ, କୌଣସି ଡ୍ରାମା ନାହିଁ । ସେ ସିଧା ବିଷୟ ଆରମ୍ଭ କଲେ । ଏତେ ବର୍ଷ ତଳେ ସେ କହିଥିବା ପ୍ରଥମ କଥା ମୋର ଆଜି ମଧ୍ୟ ସ୍ପଷ୍ଟରୂପେ ମନେଅଛି – ''ମୁଁ କହିବାକୁ ଚାହେଁ ଯେ ଆମେ କିଛି ଧାରଣା ବିଶେଷ ଆଦର୍ଶ ବା ସଂସ୍ଥା ପାଇଁ ପ୍ରଚାର କରୁ ନାହୁଁ । ଏକାଠି ହୋଇ ଆମେ ଜାଣିବାକୁ ଚେଷ୍ଟା କରୁଛୁ ଯେ ସଂସାରରେ କ'ଣ ସବୁ ଘଟୁଛି...''

ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ପୂର୍ଣ୍ଣ ଭାବରେ ଶାନ୍ତି ବିରାଜମାନ କଲା । କୃଷ୍ଣମୂର୍ତ୍ତି ହିଂସାର ସଂରଚନାକୁ ବିଶ୍ଳେଷଣ କରି ଦର୍ଶାଇଲେ ଯେ କିପରି ଶତାବ୍ଦୀ ଶତାବ୍ଦୀ ଧରି ଧର୍ମ ମଧ୍ୟ ହିଂସାକୁ ପ୍ରୋତ୍ସାହିତ କରିଛି, ପ୍ରଶ୍ରୟ ଦେଇଛି । ସେ ଲୋକମାନଙ୍କୁ ବୁଝାଉଥିଲେ ଯେ,

ସେମାନେ ଜାଣନ୍ତୁ, ମନର ଗଭୀରରେ ସେମାନେ କେତେଦୂର ହିଂସ୍ର । ସେ ହାତଯୋଡ଼ି ଅନୁନୟ କରୁଥିଲେ ଯେ ଲୋକେ ନିଜେ ଦେଖନ୍ତୁ ହିଂସା କି ପ୍ରଚୁର ହାନି କରିଛି ଏବଂ ନିଜର ଦୈନନ୍ଦିନ ଜୀବନରୁ ହିଂସା ପରିତ୍ୟାଗ କରନ୍ତୁ ।

ଏହା କିଛି ସିଦ୍ଧାନ୍ତ ବା ଦର୍ଶନର ବ୍ୟାଖ୍ୟା ନ ଥିଲା, ଏହା ଥିଲା ଅବଚେତନ ଏବଂ ଅଚେତନର ଯାତ୍ରା, ନିଜକୁ ନିଜେ ଖୋଜିବାର ଯାତ୍ରା । ଶ୍ରୋତାମାନେ ବକ୍ତୃତାରେ ଏପରି ଭାବରେ ମଜ୍ଜିଯାଇଥିଲେ ଯେ, କୃଷ୍ଣମୂର୍ତ୍ତି କହିବା ବନ୍ଦ କରିସାରିଥିଲେ ମଧ୍ୟ କିଛି ମିନିଟ୍ ପାଇଁ କେହି ହଲଚଲ ମଧ୍ୟ ହେଲେ ନାହିଁ । ପୁଣି ସେ ନମସ୍କାର ମୁଦ୍ରାରେ ହାତଯୋଡ଼ିଲେ ଓ ମଞ୍ଚରୁ ଓହ୍ଲାଇ ଆସିଲେ । ସେହି ଥିଲା ସେହି ମୁହୂର୍ତ୍ତ, ଯେତେବେଳେ ମୋ ସହିତ କିଛି ବହୁତ ବ୍ୟକ୍ତିଗତ ଓ ଅନ୍ତରଙ୍ଗ ଘଟଣା ଘଟିଗଲା । ଯାଉ ଯାଉ ସେ ହଠାତ୍ ରହିଗଲେ, ବୁଲିପଡ଼ିଲେ ଓ ମୋର ଆଖି ଭିତରକୁ ଚାହିଁଲେ । ପୁଣି ସେ ବୁଲିପଡ଼ି ଚାଲିଗଲେ ।

ମୁଁ ଗୋଟାଏ (tangible) ଶାନ୍ତିର ଅନୁଭବ ମୋ ମଧ୍ୟରେ ପ୍ରବେଶ କରିବାର ବୋଧ କଲି । ବସ ଧରି ନିଜର କୋଠରିକୁ ଆସିବା ପର୍ଯ୍ୟନ୍ତ ସେହି ଶକ୍ତିର ପ୍ରଭାବ ରହିଲା । ଲାଗୁଥିଲା ଯେମିତି ମୁଁ ଗୋଟାଏ* ଅର୍ନ୍ତନିହିତ କୋମଳ ଆନନ୍ଦର ନିଶାରେ ନିଶାରେ ଥିଲି । ଯେତେବେଳେ ମୁଁ କୋଠରିକୁ ପଶିଲି, ମୋର ମନେଅଛି, ଉପରତାଲାରେ ରହୁଥିବା ମୋର ବନ୍ଧୁ ଶେରିଦାନ ପଚାରିଥିଲା, ମୁଁ କ'ଣ ପିଇଦେଇଛି କି ବୋଲି । ଶେରିଦାନ ପରେ ରାଷ୍ଟ୍ରପତି ଶ୍ରୀ ଅବଦୁଲ କଲାମଙ୍କର ବ୍ୟକ୍ତିଗତ ସଚିବ ହୋଇଥିଲା । ମୁଁ ଟଳମଳ ହେଉଥିଲି । ରାତିସାରା ସେହି ପ୍ରଭାବ ରହିଲା ଓ ଭୋର୍ ହେବା ପୂର୍ବରୁ ଶୋଇଗଲି ।

ପରଦିନ ହିଁ ମୁଁ ଶ୍ରୀ ଗଣେଶ ଶୁକ୍ଳାଙ୍କୁ ମୋର ଇସ୍ତଫାପତ୍ର ଦେଇ ଦେଲି ଏବଂ 'ନ୍ୟୁ ୱେଭ୍' ଛାଡ଼ିଦେଲି । ତା'ର ଦିନେ ପରେ ମୁଁ ବନାରସକୁ ଗାଡ଼ି ଧରିଲି । ବନାରସରେ ମୋତେ ଜୁନା ଆଖଡ଼ାରେ ରହିବାର ଅନୁମତି ମିଳିଗଲା । ପାଖରେ ହିଁ ରାଜଘାଟରେ କୃଷ୍ଣମୂର୍ତ୍ତି କେନ୍ଦ୍ର ଥିଲା; କିନ୍ତୁ ମୋତେ ସେଠାକୁ ଯିବାର ଇଚ୍ଛା ହେଲା ନାହିଁ । ମୁଁ ବର୍ଷେ କାଳ ଏମିତିରେ ବିଭିନ୍ନ ଘାଟଗୁଡ଼ିକରେ ବୁଲିବୁଲି ବିତାଇ ଦେଲି । ମଝିରେ ମଝିରେ ମୁଁ କାଶୀ ବିଶ୍ୱନାଥଙ୍କ ମନ୍ଦିରକୁ ଯାଉଥିଲି । ମୁଁ ସମ୍ପୂର୍ଣ୍ଣ, ଅପ୍ରତିବନ୍ଧ ମୁକ୍ତିର ଆନନ୍ଦୋତ୍ସବ ପାଳନ କରୁଥିଲି ।



---

* Subtle

# 44. ବସନ୍ତ ବିହାର

ପୂର୍ଣ୍ଣିମାର ଗୋଟିଏ ରାତିରେ ମାଣିକ ଘାଟରୁ ଗୋଟିଏ ନୌକା ଯାଉଥିବାର ଦେଖି ହଠାତ୍ ମୋ ମନରେ କୃଷ୍ଣମୂର୍ତ୍ତିଙ୍କୁ ଭେଟିବାର ଏକ ଅଦମ୍ୟ ଇଚ୍ଛା ଜାଗ୍ରତ ହେଲା, ପରଦିନ ମୁଁ ରାଜଘାଟକୁ ଯାଇ କୃଷ୍ଣମୂର୍ତ୍ତି କେନ୍ଦ୍ରର ତତ୍‌କାଳୀନ ମୁଖ୍ୟ ଶ୍ରୀ ଉପାସନୀଙ୍କୁ ଭେଟିଲି । ପଚାରିବାରୁ ସେ କହିଲେ, କୃଷ୍ଣମୂର୍ତ୍ତି ସପ୍ତାହେ ଦି'ସପ୍ତାହ ମଧ୍ୟରେ ଚେନ୍ନାଇ ଆସିବେ । ସେ ପରାମର୍ଶ ଦେଲେ, ଚେନ୍ନାଇ ଯାଇ ପ୍ରସିଦ୍ଧ ସ୍ୱତନ୍ତ୍ରତା ସେନାନୀ ଏବଂ ସେ ସମୟରେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନରେ ଉପାଧ୍ୟକ୍ଷ ଥିବା ଶ୍ରୀ ଅଚ୍ୟୁତ ପଟବର୍ଦ୍ଧନଙ୍କୁ ସାକ୍ଷାତ କଲେ ସେ ହୁଏତ ମୋର ତାଙ୍କ ସହିତ ସାକ୍ଷାତ କରାଇ ପାରିବେ ।

ମୁଁ ତାଙ୍କୁ ଧନ୍ୟବାଦ ଦେଇ ରେଳଷ୍ଟେସନକୁ ଗଲି ଓ ଚେନ୍ନାଇର ଟିକେଟ କିଣିଲି । ଦ୍ୱିତୀୟ ଶ୍ରେଣୀ ଶୟନଯାନରେ ଦି'ଦିନ ପରର ଟିକେଟ ମିଳିଗଲା । ଏହିପରି କିଛିଦିନ ପରେ ମୁଁ ଚେନ୍ନାଇରେ ଥିଲି; ନିଜର ମା' ବାପାଙ୍କ ଘରକୁ ନ ଯାଇ ମୁଁ ସିଧା କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ଗ୍ରୀନୱେଜ ରୋଡ଼ସ୍ଥିତ ମୁଖ୍ୟାଳୟକୁ ଗଲି । ମୁଁ ସେଠାରେ ଶ୍ରୀ ଅଚ୍ୟୁତ ପଟବର୍ଦ୍ଧନଙ୍କୁ ଭେଟିବା ପାଇଁ ସମୟ ମାଗିଲି । ଅଫିସ ମ୍ୟାନେଜର ଶ୍ରୀ ପଞ୍ଚାବି ଇଣ୍ଟରକମ୍‌ରେ ଶ୍ରୀ ପଟବର୍ଦ୍ଧନଙ୍କ ସହିତ କଥାବାର୍ତ୍ତା କଲେ ଏବଂ ମୋତେ ଏକ ବଡ଼ ହଲକୁ ନେଇଗଲେ । ସେଠାରେ ମୋତେ ପଟବର୍ଦ୍ଧନଙ୍କୁ ଅପେକ୍ଷା କରିବାକୁ କୁହାଗଲା । ପ୍ରାୟ ଅଧଘଣ୍ଟାଏ ପରେ ସେ କୋଠରିକୁ ଆସିଲେ ।

ସ୍ୱନାମଧନ୍ୟ ଅଚ୍ୟୁତ ପଟବର୍ଦ୍ଧନଙ୍କ ବିଷୟରେ ମୁଁ ସବୁ ଶୁଣି ସାରିଥିଲି । ସେ ଥିଲେ ସ୍ୱାଧୀନତା ସଂଗ୍ରାମୀ, ସେ କିଶୋର ଅବସ୍ଥାରୁ ଆନ୍ଦୋଳନରେ ସାମିଲ ହୋଇଯାଇଥିଲେ ଏବଂ ଅରୁଣା ଆସଫ ଅଲୀଙ୍କ ସହିତ ଇଂରେଜ ସାମ୍ରାଜ୍ୟର ମୁଖ୍ୟାଳୟକୁ ଯାଇ ୟୁନିୟନ ଜ୍ୟାକ୍‌କୁ ଓହ୍ଲାଇ, ତ୍ରିରଙ୍ଗା ପତାକା ଲହରାଇ ଦେଇଥିଲେ । ତେଣୁ ଜଣେ ହୃଷ୍ଟପୁଷ୍ଟ, ପ୍ରଭାବଶାଳୀ ଲୋକଙ୍କର ଅପେକ୍ଷା କରୁଥିଲି । ଯେଉଁ ବ୍ୟକ୍ତି ବାହାରକୁ ଆସିଲେ, ସେ ବେଶି ଡେଙ୍ଗା ନ ଥିଲେ । କିନ୍ତୁ ତାଙ୍କର ଦୃଷ୍ଟି ଶକ୍ତିଶାଳୀ ଓ ସାବଧାନୀ ଥିଲା । ସେ ସତୁରି ବର୍ଷ ବୟସର ପରି ଦିଶୁ ନ ଥିଲେ । ସେ ବେଶ ଫୁର୍ତ୍ତି ଓ ଭଦ୍ର ଥିଲେ । ମୋ ସହିତ

ସାକ୍ଷାତ ହେବା ପୂର୍ବରୁ ସେ ପ୍ରସ୍ତୁତ ହୋଇ ଆସିଥିଲେ । ରାଜଘାଟରୁ ଉପାସନୀ ଟେଲିଫୋନରେ ମୋ ବିଷୟରେ କହିସାରିଥିଲେ । ସେ ଦିଲ୍ଲୀର ନାନାଜୀ ଦେଶମୁଖଙ୍କଠାରୁ ମଧ୍ୟ ଖବର ନେଇଥିଲେ । ସେ ନାନାଜୀଙ୍କୁ ଖୁବ୍ ଭଲ ଭାବରେ ଜାଣିଥିଲେ । ସେ ମୋର ସବୁ ବିଷୟ ଜାଣି ସନ୍ତୁଷ୍ଟ ଥିଲେ ଓ ଖୁବ୍ ଭଲ ବ୍ୟବହାର କଲେ ।

ସେ କହିଲେ, କୃଷ୍ଣମୂର୍ତ୍ତିଙ୍କର ମାସକ ଭିତରେ ସେଠାକୁ ଆସିବାର ଥିଲା । ସେ ପର୍ଯ୍ୟନ୍ତ ମୁଁ ମୁଖ୍ୟାଳୟ କୁହାଯାଉଥିବା ବସନ୍ତ ବିହାରରେ ରହି ପାରିବି । ସେ 'କେ'ଙ୍କ ସହିତ ମୋର ବ୍ୟକ୍ତିଗତ ସାକ୍ଷାତପାଇଁ ଚେଷ୍ଟା କରିବେ । ମୁଁ ତାଙ୍କୁ ଧନ୍ୟବାଦ ଦେଲି ଓ ରାଜି ହୋଇଗଲି । ମୋତେ ଭୋଜନ କକ୍ଷ ପାଖରେ ଥିବା ଗୋଟିଏ ଛୋଟ କୋଠରି ଦିଆଗଲା । ମୁଁ ଭୋଜନକକ୍ଷରେ ଅଚ୍ୟୁତଜୀଙ୍କ ସହିତ ଭୋଜନ କରୁଥିଲି । ବେଳେ ବେଳେ ଦି'ପହରେ ବା ସନ୍ଧ୍ୟାରେ ଭୋଜନ ପାଇଁ କିଛି ଅତିଥି ରହୁଥିଲେ । କ୍ୟାମ୍ପସ ଶାକାହାରୀ ଥିଲା, ମଦ୍ୟ ନାହିଁ, ତମ୍ବାଖୁ ନାହିଁ । ଏହା ମୋ ପାଇଁ ପୂରା ଅନୁକୂଳ ଥିଲା । ସନ୍ଧ୍ୟାରେ ମୁଁ ଅଚ୍ୟୁତଜୀଙ୍କ ସହିତ ସାଢ଼େ ପାଞ୍ଚଏକରର ବହୁ ବୃକ୍ଷ ମଣ୍ଡିତ କ୍ୟାମ୍ପସ୍‌ରେ ବୁଲିବାକୁ ଯାଉଥିଲି କିମ୍ବା ନିକଟସ୍ଥ ଥିଓସଫିକାଲ ସୋସାଇଟିର ବିଶାଳ ଉଦ୍ୟାନରେ, ଯେଉଁଠାରେ ଆମକୁ ଗାଡ଼ି ଛାଡ଼ିଦିଏ ଏବଂ ପୁଣି ଫେରାଇ ଆଣେ ।

ବୟସ ଓ ସାମାଜିକ ସ୍ତରରେ ଥିବା ପାର୍ଥକ୍ୟ ସତ୍ତ୍ୱେ ଆମେ ଉତ୍ତମ ବନ୍ଧୁ ହୋଇଗଲୁ । ସେ ମୋର ତିନିଗୁଣ ବୟସର ଥିଲେ ଏବଂ ସାମାଜିକ ଓ ରାଜନୈତିକ ପରିସରରେ ବିଖ୍ୟାତ ଥିଲେ । ଆମେ ଅନେକ ବିଷୟରେ ଆଲୋଚନା କରୁଥିଲୁ । ତାଙ୍କ ପରି ଲବ୍ଧ ପ୍ରତିଷ୍ଠଙ୍କ ନିକଟରୁ ବହୁତ କିଛି ଶିଖିବାର ଥିଲା । ସେ କହିଥିବା ଗୋଟିଏ କଥା ମୁଁ କେବେହେଲେ ଭୁଲିପାରିବି ନାହିଁ । କଥାଟି ଥିଲା ଏହିପରି – କେମିତି ଗାନ୍ଧୀଜୀଙ୍କ ନେତୃତ୍ୱରେ ଚାଲିଥିବା ଭାରତୀୟ ସ୍ୱତନ୍ତ୍ରତା ଆନ୍ଦୋଳନରେ ଭାଗ ନେବାକୁ ସେ 'କେ'ଙ୍କଠାରୁ ଅନୁମତି ମାଗିଲେ । ଉତ୍ତରରେ ସେ କହିଲେ ଯେ, ''ମୋ ପାଇଁ ସ୍ୱତନ୍ତ୍ରତାର ଅର୍ଥ ହେଉଛି ଅନ୍ଧବିଶ୍ୱାସ, ବିଭାଜନ ଏବଂ ହିଂସାରୁ ସମ୍ପୂର୍ଣ୍ଣ ମୁକ୍ତି ଏବଂ ଯଦି ସ୍ୱତନ୍ତ୍ରତା ଆନ୍ଦୋଳନ ଦ୍ୱାରା ଏହା ପ୍ରାପ୍ତ ହେବ, ତେବେ ସେଥିରେ ସାମିଲ ହୋଇଯାଅ ଯଦି ତୁମେ ଚାହୁଁଛ, ମୋତେ ପଚାର ନାହିଁ ।'' ତା'ପରେ ଇଂରେଜମାନେ ଚାଲିଯିବା ପରେ ଭାରତ ବିଭାଜିତ ହେଲା ଏବଂ ତାହା ସହିତ ହେଲା ହୃଦୟବିଦାରକ ହିଂସା ଓ ରକ୍ତପାତ । ଅଚ୍ୟୁତଜୀ ତା'ପରେ 'କେ'ଙ୍କୁ ଭେଟିଥିଲେ । 'କେ' କିଛି କିଛି ବ୍ୟଙ୍ଗାତ୍ମକ ଢଙ୍ଗରେ ତାଙ୍କୁ ପଚାରିଥିଲେ, ''କ'ଣ ବିଭାଜନର ଅନ୍ୟଥା ହିଂସା ଏବଂ ରକ୍ତପାତ ବାସ୍ତବରେ ସ୍ୱତନ୍ତ୍ରତା ଥିଲା ?''

ମୁଁ କୃଷ୍ଣମୂର୍ତ୍ତିଙ୍କୁ ଅପେକ୍ଷା କରୁଥିବା ସମୟରେ ପ୍ରାୟ ସବୁଯାକ କୃଷ୍ଣମୂର୍ତ୍ତି ସାହିତ୍ୟ ପଢ଼ିନେଲି ଏବଂ ତାଙ୍କର ବାଣୀର ଅଡ଼ିଓ ଟେପ୍ ଶୁଣିନେଲି । ଆପଣମାନଙ୍କୁ କୃଷ୍ଣମୂର୍ତ୍ତିଙ୍କ ସହିତ ମୋର ବ୍ୟକ୍ତିଗତ ସାକ୍ଷାତ ବିଷୟରେ ବିବରଣୀ ଦେବା ପୂର୍ବରୁ, ମୁଁ କୃଷ୍ଣମୂର୍ତ୍ତିଙ୍କର ସଂକ୍ଷିପ୍ତ ଚିତ୍ରଣ କରିବାକୁ ଚାହିଁବି ।

ଆରମ୍ଭ ହେଉଛି 1873 ମସିହାରେ ରୁଷର ଏକ କୁଳୀନ ପରିବାରର ହେଲେନା ପେଟ୍ରୋଭ୍ନା ବ୍ଲାଭାଟ୍‌ସ୍କିଙ୍କର ଭାରତ ଆଗମନ ସହିତ । କର୍ଣ୍ଣେଲ ହେନେରୀ ଆଲ୍‌କଟଙ୍କ ସହିତ ସେ ଗୁପ୍ତ ବିଦ୍ୟାର ଚମତ୍କାରିତାର ସନ୍ଧାନ ଆରମ୍ଭ କଲେ ଏବଂ ଥିଓସଫିକାଲ ସୋସାଇଟିର ସ୍ଥାପନା କଲେ । ଏଚ୍.ପି.ବି. ଯେପରି ବ୍ଲାଭାଟ୍‌ସ୍କିଙ୍କୁ ସମ୍ବୋଧନ କରାଯାଉଥିଲା, ଜଣେ ବିବାଦାସ୍ପଦ ବ୍ୟକ୍ତି ଥିଲେ । ସେମାନଙ୍କର ତଥାକଥିତ ଗୁପ୍ତବିଦ୍ୟା ଦ୍ୱାରା ପଦାର୍ଥଗୁଡ଼ିକର ପ୍ରକଟ ହେବାକୁ କେତେଜଣ ଦୈବୀଶକ୍ତି ବୋଲି ମାନୁଥିଲେ ଆଉ ଅନ୍ୟ କେତେଜଣ ଭାବୁଥିଲେ ଏହା କେବଳ ହାତସଫେଇ ଥିଲା । ଆଲ୍‌ଡସ୍ ହକ୍ସଲେ ତାଙ୍କୁ ପୂରା ଠକ ଏବଂ 'ହୋକ୍ସ' ବୋଲି କହିଥିଲେ ।

ଏଚ୍.ପି.ବି. କହୁଥିଲେ ଯେ ସେ ହିମାଳୟର ମହାନ ରହସ୍ୟମୟ ଗୁରୁମାନଙ୍କ ତରଫରୁ କାମ କରୁଥିଲେ, ଯେଉଁମାନେ ତାଙ୍କୁ ଥିଓସଫିକାଲ ସୋସାଇଟି ସ୍ଥାପନ କରିବାର ଆଦେଶ ଦେଇଥିଲେ । ସେ ଦୁଇଜଣ ଗୁରୁଙ୍କ ବିଷୟରେ କହିଥିଲେ । ଜଣେ ଥିଲେ 'ମୋରୟା' ଏବଂ ଅନ୍ୟଜଣକ ଥିଲେ କୁଥୁମୀ ଲାଲ ସିଂହ ଏବଂ ଏଚ୍.ପି.ବି. ତାଙ୍କ ସହିତ ତିବ୍ବତରେ ଓ କାରାକୋରମ ପର୍ବତମାଳାରେ ରହିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଥିଲେ ତାଙ୍କର ବ୍ୟକ୍ତିଗତ ଗୁରୁ । ତାଙ୍କର ଚାକଚକ୍ୟଭରା ଜୀବନ-ଶୈଳୀ, ସନ୍ଦେହାତୀତ ବିସ୍ତୃତ ଜ୍ଞାନ ଏବଂ ଚୁମ୍ବକ ପରି ଆକର୍ଷଣ କରିପାରୁଥିବା ବ୍ୟକ୍ତିତ୍ୱ ଦ୍ୱାରା ସେ ମହାନ ବକ୍ତା, ନିରୀଶ୍ୱରବାଦୀ, ଫେବିୟାନ ସୋସାଇଟିର ସଦସ୍ୟା ଏବଂ ଜର୍ଜ ବର୍ଣ୍ଣାଡ଼ ଶ'ଙ୍କର ଅନ୍ତରଙ୍ଗ ବନ୍ଧୁ ଏନି ବେସେଣ୍ଟଙ୍କୁ ଆକର୍ଷିତ କଲେ । ଏନି ବେସେଣ୍ଟଙ୍କୁ ବ୍ଲାଭାଟ୍‌ସ୍କିଙ୍କର ବହି 'ଦି ସିକ୍ରେଟ୍ ଡକ୍ଟ୍ରିନ୍' ସମୀକ୍ଷା ପାଇଁ ଦିଆଯାଇଥିଲା । ସେ ତାହାଦ୍ୱାରା ଏତେଦୂର ପ୍ରଭାବିତ ହେଲେ ଯେ, ବ୍ଲାଭାଟ୍‌ସ୍କିଙ୍କୁ ଭେଟିଲେ ଓ ତାଙ୍କର ଶିଷ୍ୟା ହୋଇଗଲେ । କୃଷ୍ଣମୂର୍ତ୍ତିଙ୍କ ଜୀବନରେ ଏନି ବେସେଣ୍ଟଙ୍କ ଭୂମିକା ମହତ୍ତ୍ୱପୂର୍ଣ୍ଣ ।

ସି.ଡବ୍ଲ୍ୟୁ. ଲିଡ୍‌ବିଟର୍ ଥିଲେ ଅନ୍ୟ ଜଣେ ବ୍ୟକ୍ତି, ଯେ ବୋଧହୁଏ କୃଷ୍ଣମୂର୍ତ୍ତିଙ୍କ ଜୀବନର ଅନ୍ୟତମ ମହତ୍ତ୍ୱପୂର୍ଣ୍ଣ ପ୍ରଭାବ । ସେ ଚର୍ଚ୍ଚ ଅଫ୍ ଇଂଲଣ୍ଡର ପୂର୍ବତନ ପ୍ରିଷ୍ଟ ଥିଲେ । ସେ ବହୁତ ପଢ଼ାପଢ଼ି କରିଥିଲେ ଓ ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ । ତାଙ୍କଦ୍ୱାରା ଲିଖିତ ଗୁପ୍ତ ବିଦ୍ୟା ଉପରର ପୁସ୍ତକଗୁଡ଼ିକ ଅତ୍ୟନ୍ତ ରୁଚିକର ଥିଲା; କିନ୍ତୁ ତାଙ୍କୁ

ପଢ଼ି ଲୋକମାନେ ଆଶ୍ଚର୍ଯ୍ୟ ହେଉଥିଲେ ଯେ ତାହା ସବୁ ସତ୍ୟ ନା କପୋଳକଳ୍ପିତ ? ସି.ଡବ୍ଲ୍ୟୁ. ଲିଡ୍‌ବିଟର (CWL) ଯେ ନିଜର ଲହରିଆ ଶ୍ୱେତ ଶ୍ମଶ୍ରୁ ଓ ତୀକ୍ଷ୍ଣ ଚେହେରା ପାଇଁ ବାଇବେଲର ଜଣେ ପାତ୍ର ପରି ଦିଶୁଥିଲେ, ବ୍ଲାଭାଟ୍‌ସ୍କିଙ୍କୁ ଭେଟିଲେ ଓ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିନେଲେ ଏବଂ ଖୁବ୍ ଶୀଘ୍ର ଜଣେ ପ୍ରମୁଖ ଥିଓସଫିଷ୍ଟ ହୋଇଗଲେ । ବ୍ଲାଭାଟ୍‌ସ୍କିଙ୍କ ପରେ CWL ମଧ୍ୟ ଦାବି କରିବା ଆରମ୍ଭ କଲେ ଯେ, ସେ ଏବେ ଅଦୃଶ୍ୟ ଥିଓସଫିଷ୍ଟ ଗୁରୁମାନଙ୍କର ସମ୍ପର୍କରେ ଥିଲେ ଏବଂ ସେମାନଙ୍କ ତରଫରୁ ଦୀକ୍ଷା ଓ ଆଶୀର୍ବାଦ ଦେବା ଆରମ୍ଭ କରିଦେଲେ । ଗୁପ୍ତବିଦ୍ୟା କ୍ଷେତ୍ରରେ ଏନି ବେସାଣ୍ଟ୍ ତାଙ୍କ ଉପରେ ବେଶ ନିର୍ଭର କରୁଥିଲେ ।

ମୈତ୍ରେୟ ବୁଦ୍ଧ, ଭବିଷ୍ୟତର ବୁଦ୍ଧ, ଏହି ସମୟର ମସିହା (ଅବତାର)ଙ୍କର ଅବତରଣର ସମୟ ଯେ ଆସିଯାଇଛି, ଏହି ବିଚାରକୁ ଥିଓସଫିଷ୍ଟମାନଙ୍କ ମଧ୍ୟରେ ପ୍ରସାରିତ କରିବା ପାଇଁ ମୁଖ୍ୟତଃ CWL ଦାୟୀ ଥିଲେ । ଏହି ଅବତରଣ ବିଶିଷ୍ଟ ଥିଲା । ଏହାଦ୍ୱାରା ବୁଦ୍ଧ ପୂର୍ବରୁ ଜନ୍ମ ନେଇଥିବା କୌଣସି ବ୍ୟକ୍ତିର ପବିତ୍ର, ଗୁଣବାନ ଏବଂ ବିଶେଷ ରୂପରେ ପ୍ରଶିକ୍ଷିତ ଶରୀରରେ ପ୍ରବେଶ କରିଯିବେ । ତେଣୁ ପ୍ରମୁଖ ଥିଓସଫିଷ୍ଟମାନେ ଏପରି କୌଣସି ବାଳକର ସନ୍ଧାନରେ ଥିଲେ ଯେ ହୁଏତ ମୈତ୍ରେୟ ବୁଦ୍ଧଙ୍କର ଅବତରଣପାଇଁ ଉପଯୁକ୍ତ ହୋଇପାରିବ ।

HPBଙ୍କର ଜୀବଦ୍ଦଶାରେ ହିଁ ଥିଓସଫିକାଲ ସୋସାଇଟି ତିନିଶହ ଏକରର ଜମି ଉପରେ ଚେନ୍ନାଇର ଆଡ୍ୟାରରେ ନିଜର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପିତ କରି ଦେଇଥିଲା । ସୁନ୍ଦର, ଘନ ବୃକ୍ଷରାଜି ଶୋଭିତ ଏହି ସ୍ଥାନ ଆଡ୍ୟାର ନଦୀ କୂଳରେ ଥିଲା । ଏହାର ନିଜସ୍ୱ ସମୁଦ୍ରତଟ (Beach) ମଧ୍ୟ ଥିଲା । ଏହି ସ୍ଥାନରେ ନଦୀକୂଳରୁ CWL କୃଷ୍ଣମୂର୍ତ୍ତି ଓ ତାଙ୍କର ଭାଇ ନିତ୍ୟାନନ୍ଦଙ୍କୁ ପାଇଥିଲେ । ସେ ଘୋଷଣା କଲେ ଅଳ୍ପ ବୟସର ବାଳକ କୃଷ୍ଣମୂର୍ତ୍ତିଙ୍କର ପ୍ରଭାମଣ୍ଡଳ, ଯାହାକୁ ସେ ଦାବି କଲେ ଯେ ନିଜର ଅତୀନ୍ଦ୍ରିୟ ଦୃଷ୍ଟି ଦ୍ୱାରା ଦେଖିପାରିଛନ୍ତି, ଶୁଦ୍ଧ, ଗୁଣବାନ ଓ ଉଜ୍ଜ୍ୱଳ ଥିଲା । ସେ ତେଣୁ ଭଗବାନ ମୈତ୍ରେୟଙ୍କର ଗ୍ରହଣଯୋଗ୍ୟ ଥିଲେ ଏବଂ ସେହି ଉଦ୍ଦେଶ୍ୟରେ ଉପଯୋଗ କରିବା ପାଇଁ ସଠିକ ଥିଲେ ।

ଲମ୍ୱା କାହିଣୀକୁ ସଂକ୍ଷିପ୍ତ କଲେ ଏହିପରି ହେବ – ବାହାଡ଼ା ଦାନ୍ତ ଥିବା, ମୁଣ୍ଡରେ ଉକୁଣି ଭର୍ତ୍ତି ହୋଇଥିବା କୃଷ୍ଣ ଓ ତାଙ୍କର ସାନଭାଇ ନିତ୍ୟାନନ୍ଦଙ୍କୁ ତାଙ୍କର ଛୋଟକାଟିଆ ସରକାରୀ ଚାକିରିରୁ ଅବସରପ୍ରାପ୍ତ ପିତା କୃଷ୍ଣାୟାଙ୍କଠାରୁ ନେଇ ନିଆଗଲା ଓ ଲିଡ୍‌ବିଟର ଓ ତାଙ୍କ ଦ୍ୱାରା ବଛା ଯାଇଥିବା ଅନ୍ୟମାନଙ୍କ ଦ୍ୱାରା ପ୍ରଶିକ୍ଷିତ କରାଗଲା, ଯେପର୍ଯ୍ୟନ୍ତ ସେ ସେହିମାନଙ୍କ ପରି ପକ୍କା ସାହେବ ହୋଇ ନ ଗଲେ ଓ ସେମାନଙ୍କ ପରି ବ୍ୟବହାର ନ

କଲେ । କୃଷ୍ଣ, ଯାହାଙ୍କୁ ଦତ୍ତକ ଭାବରେ ନିଆ ନ ଯିବା ପୂର୍ବରୁ ବୁଦ୍ଧୁ ବୋଲି ଜଣାଶୁଣା ଥିଲେ, କେବେହେଲେ କେମ୍ବ୍ରିଜ ବା ଅକ୍ସଫୋର୍ଡର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲେ ନାହିଁ । କିନ୍ତୁ ତାଙ୍କର ଭାଇ ନିତ୍ୟାନନ୍ଦ ବୁଦ୍ଧିମାନ ଥିଲେ ଓ ଭଲ ଭାବରେ ଶିକ୍ଷା ପ୍ରାପ୍ତ କରିଥିଲେ । ଥିଓସଫିଷ୍ଟମାନେ ଯେବେ ତାଙ୍କୁ ପଶ୍ଚିମର ଦେଶଗୁଡ଼ିକୁ ନେଇଗଲେ, ସେମାନଙ୍କର ପ୍ରଚାର ହେତୁ ଯୁବକ ଦୁଇଜଣ ବେଶ ଲୋକପ୍ରିୟ ହୋଇଗଲେ ।

କୃଷ୍ଣଙ୍କୁ, ଯାହାଙ୍କୁ ଭବିଷ୍ୟତର ମସିହା ବୋଲି ମାନି ନିଆଯାଇଥିଲା, ଜଣେ ରାଜପୁଅ ପରି ରଖାଯାଉଥିଲା । ସେ Saville Row ସୁଟ୍ ପିନ୍ଧୁଥିଲେ, ଦାମିକା ଗାଡ଼ି ଚଲାଉଥିଲେ ଏବଂ ସାଧାରଣତଃ ଇଂଲଣ୍ଡ, ୟୁରୋପ ଓ ଆମେରିକାର ଉଚ୍ଚସ୍ତରର ଲୋକମାନଙ୍କର ଆଖିର ମଣି ଥିଲେ । ବିପଦ ଆସିଲା, ଯେତେବେଳେ ସାନଭାଇ ନିତ୍ୟାନନ୍ଦ ଯକ୍ଷ୍ମା ରୋଗରୁ ମୃତ୍ୟୁମୁଖରେ ପଡ଼ିଲେ । କୃଷ୍ଣଙ୍କର ବିଶ୍ୱାସ ଥିଲା ଯେ ଥିଓସଫିଷ୍ଟ ଗୁରୁ ନିତ୍ୟଙ୍କୁ ମରିବାକୁ ଦେବେ ନାହିଁ । ତାଙ୍କର ଥିଓସଫିରୁ ବିଶ୍ୱାସ ତୁଟିଗଲା, ବିଶେଷ ଭାବରେ CWLଙ୍କ ପ୍ରକାରର ଥିଓସଫିରୁ । ସେ ତାଙ୍କର ଧର୍ମ-ତନ୍ତ୍ରାତ୍ମକ ଢାଞ୍ଚାରୁ ଦୂରେଇ ଯିବାକୁ ଲାଗିଲେ । ଶେଷରେ ହଲାଣ୍ଡର ଓମ୍ମେନର ଥିଓରଫିଷ୍ଟମାନଙ୍କ ଦ୍ୱାରା ଆୟୋଜିତ ଏକ ଆନ୍ତର୍ଜାତୀୟ ଧର୍ମସମ୍ମିଳନୀରେ 1929 ମସିହାର ଅଗଷ୍ଟ ତିନି ତାରିଖ ଦିନ କୃଷ୍ଣମୂର୍ତ୍ତି ଥିଓସଫିକାଲ ସୋସାଇଟି ଓ ତାହାର ସିଦ୍ଧାନ୍ତଗୁଡ଼ିକରୁ ନିଜକୁ, ସମ୍ପୂର୍ଣ୍ଣ ଭାବରେ ବିଚ୍ଛିନ୍ନ କରିଦେଲେ, 'ମାଷ୍ଟର ଅଫ୍ ଦି ଷ୍ଟାର', ଯାହାର ସେ ମୁଖ୍ୟ ଥିଲେ, ତାହାକୁ ବିସର୍ଜନ ଦେଇ କହିଲେ । "ସତ୍ୟ ହେଉଛି ପଥହୀନ ରାଜ୍ୟ ଏବଂ ତାହାକୁ ଆପଣ କୌଣସି ଉପାୟରେ ପହଞ୍ଚି ପାରିବେ ନାହିଁ... ।"

ସ୍ତବ୍ଧ ଶ୍ରୋତାମାନଙ୍କୁ, ଯେଉଁମାନଙ୍କ ମଧ୍ୟରେ ଏନି ବେସାଣ୍ଟ ମଧ୍ୟ ଥିଲେ, ସେ କହିଲେ, "ମୁଖ୍ୟ ହୋଇଥିବା କାରଣରୁ ମୁଁ ବର୍ତ୍ତମାନ ଅର୍ଡର[୧]କୁ ବିସର୍ଜନ ଦେବାର ନିଷ୍ପତ୍ତି କରୁଛି । ଆପଣମାନେ ଅନ୍ୟ କୌଣସି ସଂସ୍ଥା ନିର୍ମାଣ କରିପାରନ୍ତି । ତାହା ସହିତ ମୋର କୌଣସି  ସମ୍ପର୍କ ନାହିଁ । ମୋର ନୂଆ ପିଞ୍ଜରା ପ୍ରସ୍ତୁତ କରିବାର ଇଚ୍ଛା ନାହିଁ ବା ତାହା ପାଇଁ ନୂଆ ଅଳଙ୍କାର କରିବାର ଇଚ୍ଛା ନାହିଁ । ମୋର କେବଳ ଉଦ୍ଦେଶ୍ୟ ହେଉଛି ମଣିଷକୁ ପୂର୍ଣ୍ଣରୂପରେ ଅପ୍ରତିବନ୍ଧିତ ସ୍ୱତନ୍ତ୍ରତା ଦାନ କରାଇବା ।" ଶ୍ରୀମତୀ ଏନି ବେସାଣ୍ଟ ଏହି ଧକ୍କାରୁ କେବେ ବି ବାହାରି ଆସିପାରିଲେ ନାହିଁ ଏବଂ ଅଳ୍ପ ଦିନ ଭିତରେ ତାଙ୍କର ଦେହାନ୍ତ ହୋଇଗଲା । ରାଜଗୋପାଳ ଯେ CWL ଦ୍ୱାରା ବଛା ଯାଇଥିବା ଆଉ ଜଣେ ବ୍ୟକ୍ତି ଥିଲେ, ସେ ଥିଲେ କୃଷ୍ଣମୂର୍ତ୍ତିଙ୍କ ବନ୍ଧୁ । ରାଜଗୋପାଳ ଥିଲେ CWLଙ୍କ ଦ୍ୱାରା ବଛାଯାଇଥିବା

---

୧. Order

ବ୍ୟକ୍ତିମାନଙ୍କ ମଧ୍ୟରୁ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ । କୃଷ୍ଣମୂର୍ତ୍ତି ରାଜଗୋପାଳ ଓ ଅନ୍ୟ କେତେଜଣ ବନ୍ଧୁଙ୍କ ସହିତ ମିଶି ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ 'କୃଷ୍ଣମୂର୍ତ୍ତି ରାଇଟିଙ୍ଗସ ଇନକରପୋରେଟେଡ୍'ର ସ୍ଥାପନ କଲେ । ଏହା ସାରା ପୃଥିବୀର ବିଭିନ୍ନ ସ୍ଥାନରେ କୃଷ୍ଣମୂର୍ତ୍ତି ଦେଉଥିବା ଭାଷଣ ତଥା ଅନ୍ୟ କାର୍ଯ୍ୟକ୍ରମର ବ୍ୟବସ୍ଥା କରୁଥିଲା । ରାଜଗୋପାଳ ହେଉଛନ୍ତି ସେହି ବ୍ୟକ୍ତି, ଯେ କୃଷ୍ଣମୂର୍ତ୍ତିଙ୍କର ବାର୍ତ୍ତାଗୁଡ଼ିକର ପ୍ରଥମ ସଂସ୍କରଣ 'କମେଣ୍ଟରିଜ୍ ଅନ୍ ଲିଭିଙ୍ଗ୍'ର ସମ୍ପାଦନା ନିପୁଣତାର ସହିତ କରିଥିଲେ ।

ବହୁବର୍ଷ ପରେ ରାଜଗୋପାଳ ଓ କୃଷ୍ଣମୂର୍ତ୍ତିଙ୍କ ମଧ୍ୟରେ ମତଭେଦ ହୋଇଗଲା ଏବଂ ଦୀର୍ଘ ଅପ୍ରିୟ ବିଚ୍ଛେଦ ପରେ ଏବଂ ଆଇନର ପେଞ୍ଚ କଷାକଷି ପରେ ତାଙ୍କୁ ଗୋଟାଏ କଡ଼କୁ ଠେଲିଦିଆଗଲା ଏବଂ କୃଷ୍ଣମୂର୍ତ୍ତିଙ୍କର ନୂଆ ରାଜନୈତିକ ସ୍ତରରେ ପ୍ରଭାବଶାଳୀ ବନ୍ଧୁମାନଙ୍କର ସାହାଯ୍ୟରେ, 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ଇଣ୍ଡିଆ', 'ଦି କୃଷ୍ଣମୂର୍ତ୍ତି ଟ୍ରଷ୍ଟ ଇଂଲଣ୍ଡ' ଏବଂ 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ଆମେରିକା' (ଯାହାର ମୁଖ୍ୟାଳୟ କାଲିଫର୍ଣ୍ଣିଆର Ojaiରେ) ଆଦି ସ୍ଥାପିତ ହେଲା । ସେହି ସଂସ୍ଥାଗୁଡ଼ିକ ତାଙ୍କର ପ୍ରତିଲିପିଗୁଡ଼ିକୁ ପ୍ରକାଶିତ କଲେ ଓ ଭାରତ ତଥା ବିଦେଶରେ କୃଷ୍ଣମୂର୍ତ୍ତିଙ୍କର ସବୁ କାର୍ଯ୍ୟକ୍ରମଗୁଡ଼ିକର ନିର୍ବାହନ କଲେ ।

କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ଭାରତୀୟ ମୁଖ୍ୟାଳୟ ଥିଲା ବସନ୍ତ ବିହାର, ଯେଉଁଠାରେ ମୁଁ ତାଙ୍କୁ ଅପେକ୍ଷା କରୁଥିଲି ।

ନଭେମ୍ବରର ଶେଷରେ କୃଷ୍ଣମୂର୍ତ୍ତି ଚେନ୍ନାଇ ଆସିଲେ । ସେ ରାତି ଅଧରେ ଉଡ଼ାଜାହାଜରେ ଆସି ପହଞ୍ଚିଲେ ଏବଂ ମୁଁ ତାଙ୍କୁ ତା' ପରଦିନ ଭୋଜନ ସମୟରେ ହିଁ ଦେଖିଲି ।

ଅଚ୍ୟୁତ ପଟବର୍ଦ୍ଧନଙ୍କର ସାନଭାଇ ପଦ୍ମାକର ପଟବର୍ଦ୍ଧନ ଓ ତାଙ୍କର ଦକ୍ଷିଣ ଭାରତୀୟ ପତ୍ନୀ ସୁନନ୍ଦା, ଯେ କୃଷ୍ଣମୂର୍ତ୍ତି ବୁଲେଟିନ୍‌ର ସମ୍ପାଦନା କରୁଥିଲେ, ସେ କୃଷ୍ଣମୂର୍ତ୍ତି ଆସିବା ପୂର୍ବରୁ ହିଁ ନିଜର ଭ୍ରମଣ ସମାପ୍ତ କରି ଆସିଯାଇଥିଲେ । ସେମାନଙ୍କର ସନ୍ଦେହୀ ପ୍ରକୃତି ସତ୍ତ୍ୱେ ଅଚ୍ୟୁତଜୀଙ୍କର ସୁପାରିଶକ୍ରମେ ମୋତେ ସେହି ଛୋଟ ଦଳରେ ଅନ୍ତର୍ଭୁକ୍ତ କରିନିଆଗଲା, ଯେଉଁମାନେ ଭୋଜନ କକ୍ଷରେ କୃଷ୍ଣମୂର୍ତ୍ତିଙ୍କ ସହିତ ଭୋଜନ କରୁଥିଲେ ।

କୃଷ୍ଣମୂର୍ତ୍ତିଙ୍କର ବସନ୍ତ ବିହାରରେ ତାଙ୍କର ପ୍ରବଚନ ଓ ସଭାପାଇଁ ଯଥେଷ୍ଟ ସମୟ ବାକି ଥିଲା । ତେଣୁ ବସନ୍ତ ବିହାରରେ ଅଳ୍ପ ଲୋକ ରହୁଥିଲେ । ମଧ୍ୟାହ୍ନ ଭୋଜନ କିମ୍ବା ରାତ୍ରିଭୋଜନ ସମୟରେ ବିଶେଷ କଥାବାର୍ତ୍ତା ହେଉ ନ ଥିଲା । ବେଳେବେଳେ କୌଣସି ଅତିଥିଙ୍କୁ (ଯେ ହୁଏତ ଫାଉଣ୍ଡେସନକୁ ଦାନ ଦେଇପାରିବେ, କିମ୍ବା କୌଣସି ପ୍ରଭାବଶାଳୀ (VIP) ବ୍ୟକ୍ତିଙ୍କୁ ଯେ ଫାଉଣ୍ଡେସନର ସହାୟକ ହୋଇପାରିବେ)

କୃଷ୍ଣମୂର୍ତ୍ତିଙ୍କ ସହିତ ଭୋଜନ କରିବାକୁ ନିମନ୍ତ୍ରଣ କରାଯାଉଥିଲା । ମୋତେ କୃଷ୍ଣମୂର୍ତ୍ତିଙ୍କଠାରୁ ଯେତେ ଦୂରରେ ସମ୍ଭବ ସେତେ ଦୂରରେ ବସିବାକୁ ଦିଆଯାଉଥିଲା । ଅନ୍ତତଃ ତିନି ଚାରିଦିନ ପରେ ମୋତେ ସୁନନ୍ଦା ସୂଚନା ଦେଲେ ଯେ କୃଷ୍ଣଜୀ (ସେ କୃଷ୍ଣମୂର୍ତ୍ତିଙ୍କୁ ସେହି ନାମରେ ଡାକୁଥିଲେ) ଏକୁଟିଆ ଅଧଘଣ୍ଟାଏ ବା ଯେତେ ସମୟ ସେ ଚାହିଁବେ, ସେତେ ସମୟ ଉପରର ମୋତେ ବେଡ୍‌ରୁମ୍‌ରେ ସାକ୍ଷାତ ଦେବେ । ମୁଁ ଜାଣିଥିଲି ଯେ ଅଚ୍ୟୁତଜୀଙ୍କ ଦୟାରୁ ମୋତେ ଏହି ସୁଯୋଗ ମିଳିଲା ।

ଉପରର ବେଡ୍‌ରୁମ ଅଲଘଂନୀୟ ବୋଲି ଧରାଯାଉଥିଲା । ଆଗନ୍ତୁକମାନଙ୍କୁ ଶିଢ଼ିରେ ମଧ୍ୟ ଚଢ଼ିବା ମନା ଥିଲା । ତେଣୁ ଏହି ବିଶେଷ ଅନୁମତି ପାଇବାରୁ ମୁଁ ଭାରି ଖୁସି ଥିଲି । ଟିକିଏ ଡରି ଡରି କୋଠରିରେ ପଶି ଦେଖିଲି, କୃଷ୍ଣମୂର୍ତ୍ତି ଚଟାଣରେ ପଡ଼ିଥିବା ଗୋଟିଏ ଗାଲିଚାରେ ଚକାପକାଇ ବସିଛନ୍ତି । ''ସାର୍, ଆପଣ କବାଟ ବନ୍ଦ କରିପାରନ୍ତି,'' ଏହା ଥିଲା ତାଙ୍କର ପ୍ରଥମ କଥା, ''ଏବଂ ଏଠାକୁ ଆସି ବସନ୍ତୁ,'' ମୁଁ ସାବଧାନତାର ସହିତ ଗାଲିଚାର ଧାରରେ ବସିଗଲି ।

''ନା, ନା ଆଗକୁ ଆସ'' ସେ ଇଙ୍ଗିତ କଲେ ଯେ ମୁଁ ଆଗକୁ ଯାଏ । ମୁଁ ତାଙ୍କ ସାମ୍ନାରେ କିଛି ଫୁଟ ଦୂରରେ ବସିଗଲି । ମିନିଟକପାଇଁ ସେ ମୋର ବାଁ ହାତକୁ ଧରିଲେ ଓ ପୁଣି ଛାଡ଼ିଦେଲେ । ମୁଁ ତାଙ୍କର ଉପସ୍ଥିତିରେ ଆତଙ୍କିତ ବା ଭୟଭୀତ ନ ଥିଲି, ମୋତେ ଲାଗୁଥିଲା ଯେମିତି ମୁଁ ମୋର କୌଣସି ଉତ୍ତମ ବନ୍ଧୁଙ୍କ ସହିତ ବସିଛି । ଅଶୀବର୍ଷ ପାଖାପାଖି ବୟସର ହୋଇଥିଲେ ମଧ୍ୟ ସେ ପ୍ରକୃତ ସୁନ୍ଦର ପୁରୁଷ ଥିଲେ । ଯଦିଓ ମୁଁ ତାଙ୍କୁ ଚେନ୍ନାଇରେ ଓ ପୁଣି ଦିଲ୍ଲୀରେ ଦୂରରୁ ଦେଖିଥିଲି, ପ୍ରଥମ ଥର ମୁଁ ଜାଣିପାରିଲି, ବର୍ଣ୍ଣାଡ ଶ'ଙ୍କୁ କିପରି ଲାଗିଥିବ ଯେତେବେଳେ ସେ କୃଷ୍ଣମୂର୍ତ୍ତିଙ୍କୁ ଦେଖିଥିବେ । ସେ କହିଥିଲେ, ସେ ଦେଖିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଯୁବକ କୃଷ୍ଣମୂର୍ତ୍ତି ସବୁଠାରୁ ସୁନ୍ଦର ଥିଲେ ।

''ସେଇ ଯେଉଁ ଉପନିଷଦରେ କହନ୍ତି ନା– ସମୀପରେ ବସ ।'' ସେ ଗୋଟିଏ ଦୁଷ୍ଟାମିର ହସ ହସି କହିଲେ, ''ମୁଁ ତ ଅଧିକ ପଢ଼ି ନାହିଁ !''

''ବିଶ୍ୱାସ କରିବା କଷ୍ଟ, ସାର୍'', ମୁଁ କହିଲି, ''ନିଜର ଥିଓସଫିକାଲ ଦିନଗୁଡ଼ିକରେ ଆପଣ ନିଶ୍ଚୟ ଉପନିଷଦ ପଢ଼ିଥିବେ ।''

''କେଜାଣି, ପଢ଼ିଥିବି । ମୋର ଠିକ୍ ଭାବରେ ମନେ ନାହିଁ,'' ସେ କହିଲେ ଓ କଥାବାର୍ତ୍ତାର ମୋଡ଼ ହଠାତ୍ ବଦଳାଇ ଦେଇ କହିଲେ, ''ନିଜ ବିଷୟରେ କହ, ଅଚ୍ୟୁତ କହୁଥିଲେ ଯେ ତୁମେ ଗୁରୁଙ୍କ ସହିତ ହିମାଳୟରେ ଯାତ୍ରା କର ବୋଲି । ସେ କିଏ ଏବଂ ସେ କ'ଣ କରିଥିଲେ ? ତୁମେ ଜାଣ ମୁଁ ଗୁରୁଙ୍କର ଆବଶ୍ୟକତା ଅଛି ବୋଲି

ମାନେ ନାହିଁ ?''

ମୁଁ କହିଲି, ''ସାର୍‌, ନମ୍ରତାର ସହିତ ମୁଁ କହିବାକୁ ଚାହେଁ ଯେ, ମୁଁ ଆପଣଙ୍କ ସହିତ ସହମତ ନୁହେଁ, ମୁଁ ଭାବେ ଗୁରୁଙ୍କର ଆବଶ୍ୟକତା ରହିଛି, ଯଦି ଜଣେ ତାଙ୍କ ଉପରେ ଜଣେ ପୂରାପୂରି ଭାବରେ ନିର୍ଭର କରିନଯିବ । ବାବାଜୀ, ମୁଁ ଯେପରି ଭାବରେ ନିଜର ଗୁରୁଙ୍କୁ ସମ୍ବୋଧନ କରେ, ସେ ପ୍ରଥମରୁ ହିଁ ସ୍ପଷ୍ଟ କରି ଦେଇଥିଲେ ଯେ ପ୍ରତି ଲୋକକୁ ନିଜ ଗୋଡ଼ରେ ଠିଆ ହେବା ଉଚିତ, ନିର୍ଭର କରିବା ଉଚିତ ନୁହେଁ, ତାଙ୍କର କୌଣସି ସଂସ୍ଥା ବା ଅନ୍ୟ ପରିଚୟ ନ ଥିଲା, ମୁଣ୍ଡ ଉପରେ ଛାତ ମଧ୍ୟ ନ ଥିଲା । ସେ ଏ ସ୍ଥାନରୁ ସେ ସ୍ଥାନକୁ ଘୂରି ବୁଲୁଥିଲେ ଏବଂ ପ୍ରାୟ ଗୁମ୍ଫାଗୁଡ଼ିକରେ ରହୁଥିଲେ ।

ମୁଁ ଆପଣଙ୍କର ସେହି କାହାଣୀ ଶୁଣିଛି ଯେ କିପରି ସତ୍ୟକୁ ସଂସ୍ଥାଗତ କରିଦେଲେ ତାହା ନିଜର ସତ୍ୟତା ହରାଇ ଦିଏ, ତେବେ ବି ଆପଣ କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ନାମକ ସଂସ୍ଥାର ମୁଖ୍ୟ ଅଟନ୍ତି । ବାବାଜୀଙ୍କ ପାଖରେ କିଛି ନ ଥିଲା, ସେ ଏକ ସ୍ୱାଧୀନ ବ୍ୟକ୍ତି ଥିଲେ ।''

ମୋର ସ୍ୱୀକାର କରିବା ଉଚିତ ଯେ କୃଷ୍ଣମୂର୍ତ୍ତି ମୋ କଥା ମନଦେଇ ଓ ଗମ୍ଭୀର ରହି ଶୁଣିଲେ । ମୋତେ ବାହାରିଯିବାକୁ କହିଲେ ନାହିଁ, ଯାହା ସେ ସହଜରେ କହିପାରିଥାଆନ୍ତେ ।

''ତୁମେ ଠିକ୍‌ କହୁଛ,'' ସେ କହିଲେ, ''ପ୍ରକୃତ କଥା ହେଲା, ମୁଁ ଏହିସବୁ ନାଟକ ଦ୍ୱାରା ବିରକ୍ତ ହୋଇଗଲିଣି । ତୁମେ ଜାଣ ଯେ ମୁଁ ବହୁବର୍ଷ ପୂର୍ବରୁ ଥିଓସଫିକାଲ ସୋସାଇଟି ଏବଂ ତାହାର ସଂସ୍ଥାଗୁଡ଼ିକୁ, ଧର୍ମତନ୍ତ୍ରଗୁଡ଼ିକୁ ଛାଡ଼ି ଆସିଥିଲି, ଯଦି ତୁମେ ଏଠାରେ କିଛିଦିନ ରହିବ ତାହାହେଲେ ତୁମେ ଜାଣିଯିବ ଯେ ହୁଏତ ମୁଁ ଏସବୁ ଛାଡ଼ିଦେବି ଯେତେବେଳେ ମୋ ପାଇଁ ଅଧିକ ସହ୍ୟ କରିବା କଠିନ ହୋଇଯିବ, କାହାକୁ କହିବ ନାହିଁ ଯେ, ମୁଁ ଏପରି କହିଥିଲି । ଓ.କେ. ?'' ସେ କହିଲେ ଓ ମୋର କାନ୍ଧ ଥାପୁଡାଇ ହସି ଉଠିଲେ ।

''ଏବେ କୁହ, ଯଦି ତୁମେ କ'ଣ ତ ତାଙ୍କର ନାଁ– ବାବାଜୀ, ତାଙ୍କଠାରୁ ଯାହାସବୁ ଶିଖିଲ, ସେଥିରେ ସନ୍ତୁଷ୍ଟ, ତେବେ ଏଠାକୁ କାହିଁକି ଆସିଛ ?''

''ସାର୍‌, ବାବାଜୀ ପରାମର୍ଶ ଦେଇଥିଲେ ଯେ ମୁଁ ଆପଣଙ୍କ ସହିତ ସାକ୍ଷାତ କରେ ।''

''କିନ୍ତୁ କାହିଁକି ? କ'ଣ ପାଇଁ ? ଯାହା ବି ହେଉ, ଯଦି ତୁମେ ରହିବାକୁ ଚାହୁଁଛ, ତେବେ କିଛି ସମୟ ପାଇଁ ରହିପାର । ମୁଁ ଯାହା ଶୁଣିଲି, ସେଥିରୁ ଲାଗୁଛି ତୁମେ ଘୂରିବୁଲିବା

ଲୋକ, ତେଣୁ ଜାଣିପାରୁନି ତୁମେ ଏଠି କେତେଦିନ ରହିପାରିବ, କିନ୍ତୁ ସେଇଟା କୌଣସି ସମସ୍ୟା ନୁହେଁ ।''

''ସାର୍ ମୋତେ ନିଜକୁ ମଧ୍ୟ ଜଣା ନାହିଁ, ଆଉ ମୁଁ ନିଶ୍ଚିତ ଭାବରେ କହିପାରିବି ନାହିଁ ।''

''ଠିକ୍ ଅଛି, କିନ୍ତୁ କହ ତ ତୁମର ବାବାଜୀ ଥିଓସଫିକାଲ ଗୁରୁମାନଙ୍କ ବିଷୟରେ କିଛି କହିଥିଲେ, ହ୍ୱାଇଟ୍ ଲଜ୍ ଓ ସେହିପ୍ରକାରର ଏଣୁତେଣୁ କଥା ?''

''ହିମାଳୟରେ ମହାନ୍ ଗୁରୁମାନେ ଅଛନ୍ତି, ସାର୍ । ବାବାଜୀ ସ୍ୱୟଂ ସେମାନଙ୍କ ମଧ୍ୟରୁ ଜଣେ, ଆଉ ତାଙ୍କର ଗୁରୁ, ଯାହାଙ୍କୁ ଆମେ ଶ୍ରୀ ଗୁରୁବାବାଜୀ କହୁ, ତାଙ୍କୁ ମୁଁ ଭେଟିସାରିଛି ଏବଂ ତାଙ୍କର ଅନ୍ୟ କେତେକ ଶିଷ୍ୟଙ୍କୁ ମଧ୍ୟ ସାକ୍ଷାତ କରିସାରିଛି । ବାବାଜୀଙ୍କ ମତରେ ବ୍ଲାଭାଟ୍‌ସ୍କି କିଛି ଅତିଶୟୋକ୍ତି କରୁଥିଲେ । ତା' ଉପରେ ଅନ୍ୟମାନେ ଆହୁରି ଅଧିକ କଲେ ଫଳରେ ଶେଷରେ ଯେଉଁ ବ୍ୟଙ୍ଗଚିତ୍ର ପ୍ରସ୍ତୁତ ହେଲା, ତାହା ମୂଳଠାରୁ ପୂରା ଭିନ୍ନ ଥିଲା ।''

କୃଷ୍ଣମୂର୍ତ୍ତି ଦୁଇ ହାତ ମଳିଲେ, ଚିନ୍ତାମଗ୍ନ ହେଲେ ଏବଂ କହିଲେ, ''ଠିକ୍ ଯେପରି ମୁଁ ଭାବିଥିଲି । ଏହି ବାବାଜୀ ଜଣକ ବେଶ କୌତୂହଳୋଦ୍ଦୀପକ ମନେ ହେଉଛନ୍ତି । ତେବେ ତୁମେ ଏଠାରେ କ'ଣ କରିବାକୁ ଚାହୁଁଛ ?''

''ମୁଁ ଯେତେ ପାରିବି ସେତେ କ୍ୟାସେଟ୍ ଶୁଣିବି ଏବଂ ଯାହା କାମ ଦିଆଯିବ କରିବି । ମୁଁ ଲିପ୍ୟନ୍ତର ମଧ୍ୟ କରିବାକୁ ଚାହେଁ ।''

''ତୁମେ କ'ଣ 'କମେଣ୍ଟ୍ରିଜ୍ ଅନ୍ ଲିଭିଙ୍ଗ୍' ପଢ଼ିଛ ?''

: ''ହଁ ସାର୍, ଥରେ ।''

''First and Last Freedom' ପଢ଼ିଛ ?

''ହଁ ସାର୍, ଏବଂ ସାର୍, ମୁଁ କ'ଣ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିପାରେ କି ?''

: ''ହଁ, ଉମ୍..... ମୁଁ ଠିକ୍‌ରେ ତୁମର ନାଁଟା ଜାଣି ପାରିଲିନି ।''

''ମୁମତାଜ ।''

: ''ହଁ, ହଁ । ଏମ୍ ସହଜ ହେବ ।''

''ସାର୍, ଆପଣ ଯୌନ ସମ୍ବନ୍ଧ ବିଷୟରେ କହନ୍ତି, ପ୍ରେମ, ଈର୍ଷା, କ୍ରୋଧ ଆଦି ଏହିସବୁ ବିଷୟରେ ଆପଣଙ୍କର ଅନ୍ତରଙ୍ଗ ଜ୍ଞାନ ରହିଛି ବୋଲି ମନେହୁଏ । ଅଧିକାଂଶ

ଲୋକ ଭାବନ୍ତି, ଆପଣ ଜଣେ ବ୍ରହ୍ମଚାରୀ, ତେବେ ଆପଣ ଏହିସବୁ ବିଷୟ କିପରି ଜାଣିଲେ ?''

''ସାର୍‌,'', ସେ ଚେହେରାରେ ଗମ୍ଭୀର ଓ ତୀବ୍ରଭାବ ପ୍ରକଟ କରି କହିଲେ, ''କେବଳ ବ୍ୟକ୍ତିଗତ ଅନୁଭବ ହିଁ ଶିଖିବାର ଅନୁଭବ । ସଂସାରକୁ ମୋର ବ୍ୟକ୍ତିଗତ ଜୀବନ ବିଷୟରେ କ'ଣ ଜଣା ଅଛି ? ମୋତେ ଲୋକ କ'ଣ ଭାବନ୍ତି, ସେ ବିଷୟରେ ମୋର ଖାତିର୍‌ ନାହିଁ, କିନ୍ତୁ ମନେରଖ, ମୁଁ ଏପରି କିଛି ବିଷୟରେ କୁହେ ନାହିଁ ଯେଉଁ ବିଷୟରେ ମୋର ବ୍ୟକ୍ତିଗତ ଜ୍ଞାନ ନାହିଁ, ଏଥିରୁ ଯାହା ଭାବିବାର ତୁମେ ଭାବିନିଅ ।''

: ''ଏହି କଥା ମୋତେ ଗୋଟାଏ ଦ୍ୱିତୀୟ ପ୍ରଶ୍ନ ପଚାରିବାକୁ ବାଧ୍ୟ କରୁଛି, ସାର୍‌ । ଆପଣ କ'ଣ ଭାବନ୍ତି ଯେ ବିବାହ ଜଣଙ୍କର ଆଧ୍ୟାତ୍ମିକ ପ୍ରଗତିପାଇଁ ଆବଶ୍ୟକ ?''

''ପ୍ରକୃତରେ ମୁଁ ଜାଣେ ନାହିଁ, ଆଧ୍ୟାତ୍ମିକ ପ୍ରଗତି କହିଲେ ତୁମେ କ'ଣ ବୁଝ । କିନ୍ତୁ ଭଲ ହେଉଛି ବିବାହ କରିନେବା ବା ଯୌନ ସମ୍ବନ୍ଧର ଅନୁଭୂତି ଲାଭ କରିନେବା । ନଚେତ୍‌ ଜୀବନ ସାରା ସେହି ବିଷୟରେ ଚିନ୍ତା କରି ରହିଯିବାକୁ ପଡ଼ିବ । ଜୀବନସାରା ଜଳିବାଠାରୁ ଭଲ ହେଉଛି ବିବାହ ।''

ମୁଁ ହାତଯୋଡ଼ି କହିଲି, ''ମୁଁ ଚାହୁଁନାହିଁ ନିଜକୁ ଲଦି ଦେଇ ଜଣେ ଏତେ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତିଙ୍କର ଆହୁରି ବେଶି ବହୁମୂଲ୍ୟ ସମୟ ନଷ୍ଟ କରେ । ନମସ୍କାର ସାର୍‌ । ମୁଁ ଆଉ ଅଧିକ ସମୟ ନେବି ନାହିଁ । ବହୁତ ବହୁତ ଧନ୍ୟବାଦ ।''

ସେ ଅତ୍ୟନ୍ତ ଭଦ୍ରତାର ସହିତ ହାତ ଯୋଡ଼ିଲେ ଓ କହିଲେ, ''ତୁମକୁ ଯିବାପୂର୍ବରୁ ଆଉ ଗୋଟିଏ ଛୋଟ କଥା କହି ରଖୁଛି । ଏଠି ତୁମକୁ କିଛି ଲୋକ ମିଳିବେ, ଯେ କହିବେ– କୃଷ୍ଣଜୀଙ୍କୁ ମୁଁ ତିରିଶ ବର୍ଷ ଧରି ଜାଣେ କିମ୍ବା ଏହିପରି କିଛି କଥା ଏବଂ ତୁମକୁ ମୋର ଶିକ୍ଷାର ବ୍ୟାଖ୍ୟା ଇତ୍ୟାଦି କରିବାପାଇଁ ନିଜର ସେବା ସମର୍ପିତ କରିଦେବେ । ତୁମେ ନମ୍ରତାର ସହିତ ତାଙ୍କର ପ୍ରଚେଷ୍ଟାକୁ ଅସ୍ୱୀକାର କରିବ, ହୁଏତ ସେମାନେ କିଛି ବି ବୁଝି ନାହାନ୍ତି ।''

ମୁଁ ଆଶ୍ଚର୍ଯ୍ୟ ହେଲି । ସ୍ୱାମୀ ରଙ୍ଗନାଥଙ୍କର ସେହି ଚେତାବନୀ ମନେପଡ଼ିଗଲା, ଯାହା ମୁଁ ରାମକୃଷ୍ଣ ମିଶନରେ ଜଣେ ଯୁବକ ବ୍ରହ୍ମଚାରୀ ଭାବରେ ଯୋଗଦେବା ସମୟରେ ସେ ମୋତେ କହିଥିଲେ– ''ଆଶ୍ରମ ଗୋଟିଏ କ୍ଷୁଦ୍ର ପରିସର ଏବଂ ଏଠାରେ ତୁମେ ଭିନ୍ନ ଭିନ୍ନ ଲୋକଙ୍କୁ ଭେଟିବ । ସେମାନେ ସମସ୍ତେ ବଡ଼ ବଡ଼ ସାଧକ ବା ଆଧ୍ୟାତ୍ମିକ ସ୍ତରରେ ଉନ୍ନତ ବୋଲି ଭୁଲ୍‌ ଧାରଣା କରିବ ନାହିଁ । ତୁମେ ନିଜର କାମ କର ଆଉ ସାଧନା କର ଏବଂ ନିଜର ଆଖି ଖୋଲା ରଖ ।''

ମୁଁ ଅଚ୍ୟୁତଜୀଙ୍କୁ ଧନ୍ୟବାଦ ଦେଲି । ଉତ୍ସୁକ ପ୍ରଶ୍ନକାରୀମାନଙ୍କୁ ନିଜର ସାକ୍ଷାତକାର ବିଷୟରେ କହିବାରୁ ନିଜକୁ ବଞ୍ଚାଇ ରଖିଲି । ମୁଁ ପୁଣି ଥରେ କୃଷ୍ଣମୂର୍ତ୍ତିଙ୍କୁ ଏକୁଟିଆ ସାକ୍ଷାତ କରିବାପାଇଁ ଉତ୍ସୁକ ଥିଲି, କିନ୍ତୁ ସେଥି ସହିତ ସଂପୃକ୍ତ ବ୍ୟକ୍ତିମାନେ ସେପରି ହେବାକୁ ଦେଲେ ନାହିଁ । ପ୍ରକୃତରେ ମୋର ଗତିବିଧି ଉପରେ ଉପରେ କଡ଼ା ନଜର ରଖାଯାଉଥିଲା । ଯେପରି ମୁଁ ସମସ୍ତଙ୍କ ଅଜାଣତରେ କୃଷ୍ଣମୂର୍ତ୍ତିଙ୍କ ଘରକୁ ଥିବା ଶିଡ଼ିରେ ଚଢ଼ି ତାଙ୍କ ପାଖରେ ପହଞ୍ଚି ନ ଯିବି ।

ମୁଁ ନିଜର ସମୟ–ପଢ଼ିବାରେ, କ୍ୟାସେଟ୍ ଶୁଣିବାରେ ଏବଂ ବୁଲିବାରେ କଟାଇବାକୁ ଲାଗିଲି । ବେଳେବେଳେ ଅଚ୍ୟୁତଜୀ ମୋତେ ତାଙ୍କ ସହିତ ବୁଲିଯିବାକୁ ଡାକୁଥିଲେ ଏବଂ ଆମେ ବିଭିନ୍ନ ବିଷୟ ଉପରେ ଚର୍ଚ୍ଚା କରୁଥିଲା– ହିନ୍ଦୁ ଦର୍ଶନ, ମହାତ୍ମା ଗାନ୍ଧୀ, ସମାଜବାଦ, ସ୍ୱତନ୍ତ୍ରତା ଆନ୍ଦୋଳନ, ଥିଓସଫି ଏବଂ ଅବଶ୍ୟ କୃଷ୍ଣମୂର୍ତ୍ତି । ଶୀଘ୍ର ପଦ୍ମାକର ପଟବର୍ଦ୍ଧନ ଯୁଗଳ ମୋତେ ବିଶ୍ୱାସ କରିବା ଆରମ୍ଭ କଲେ ଏବଂ ମୋତେ ପ୍ରଶାସନିକ କାର୍ଯ୍ୟ ଦେବା ଆରମ୍ଭ କଲେ ।

× × ×

କୃଷ୍ଣମୂର୍ତ୍ତିଙ୍କର ଭାଷଣଗୁଡ଼ିକର (talks) ସମୟ ଯେତିକି ଆଗେଇ ଆସିଲା, ସେହିପରି କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ଅନ୍ୟାନ୍ୟ ସଦସ୍ୟ ଭାରତ ତଥା ବିଦେଶରୁ ଆସିବାକୁ ଲାଗିଲେ । ପୁପୁଲ ଜୟକର, ଜଣେ ଅନ୍ୟ ଉପାଧ୍ୟକ୍ଷ, ଯେ କୃଷ୍ଣମୂର୍ତ୍ତିଙ୍କର ବହୁ ପୁରୁଣା ସାଥୀ ଥିଲେ, ସେ ଆସିଗଲେ । ତାଙ୍କର ରାଜକୀୟ ବ୍ୟବହାର ଦେଖିଲେ ଜଣାପଡ଼ିଯାଉଥିଲା ସେ ରାଜନୀତି କ୍ଷେତ୍ରରେ ଶକ୍ତିଶାଳୀ ଥିଲେ । ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ ଏବଂ ସେ ନିଜେ କ୍ୟାବିନେଟ ପାହ୍ୟାର ମନ୍ତ୍ରୀ ସହିତ ସମାନ ପଦରେ ଥିଲେ ଓ ଫେଷ୍ଟିଭାଲ ଅଫ୍ ଇଣ୍ଡିଆ (ଭାରତ ସମାରୋହ)ର ଅଧ୍ୟକ୍ଷା ଥିଲେ । ମୁଁ କହିରଖିବା ଭଲ ଯେ, ମୋ ପ୍ରତି ତାଙ୍କର ବ୍ୟବହାର ଭଦ୍ର ଓ ସ୍ନେହପୂର୍ଣ୍ଣ ଥିଲା, କିନ୍ତୁ ମୁଁ ସ୍ପଷ୍ଟ ଜାଣିପାରୁଥିଲି ଯେ, ସେ ସଂସ୍ଥା ପାଇଁ ମୋର ଉପଯୋଗିତାକୁ ତଉଲିବାର ପ୍ରକ୍ରିୟାରେ ଥିଲେ । ଫାଉଣ୍ଡେସନ ଦ୍ୱାରା ସଂଚାଳିତ ସ୍କୁଲଗୁଡ଼ିକର ପ୍ରାଚାର୍ଯ୍ୟ ଏବଂ ଅଧ୍ୟକ୍ଷମାନଙ୍କ ସହିତ ଆହୁରି ଅନେକ ଲୋକ ଆସିଲେ । ଋଷିଭ୍ୟାଲି ସ୍କୁଲର ପ୍ରାଚାର୍ଯ୍ୟା ଶ୍ରୀମତୀ ରେବେକା ଥମାସଙ୍କ ସହିତ ମୋର ଭାରି ବନ୍ଧୁତା ହୋଇଗଲା । ତାଙ୍କର ପତି ଯେ କୋଷାଧ୍ୟକ୍ଷ ଥିଲେ, ତାଙ୍କ ସହିତ ମଧ୍ୟ ମିତ୍ରତା ହେଲା । ସେ ପୂରାପୂରି ବାସ୍ତବ ବୁଦ୍ଧିସମ୍ପନ୍ନ ଥିଲେ ଓ ଦୋଷତ୍ରୁଟି ବିଚାର କରିବାରେ ଧୁରନ୍ଧର ଥିଲେ ଏବଂ ନିଜକୁ କୃଷ୍ଣମୂର୍ତ୍ତିଙ୍କ ସିଦ୍ଧାନ୍ତଗୁଡ଼ିକରୁ ଦୂରେଇ ରଖୁଥିଲେ । ସେ ଦୁଇଜଣଙ୍କ ସହିତ ମୋର ମିତ୍ରତାର ଆଂଶିକ

କାରଣ ହେଉଛି, ସେମାନେ ତ୍ରିଭେନ୍ଦ୍ରମ୍‌ର ଥିଲେ ଓ ଆମେ ମାଲୟାଲମ୍ ଭାଷାରେ କଥାବାର୍ତ୍ତା ହୋଇପାରୁଥିଲୁ । ଅଧିକ ଭାଷା ଜାଣିଥିବା ହେଉଛି ଲୋକମାନଙ୍କର ନିକଟବର୍ତ୍ତୀ ହେବାର ପ୍ରକୃଷ୍ଟ ଉପାୟ । ଏହାଠାରୁ ଭଲ ଉପାୟ ଆଉ ନାହିଁ । ପରେ ଜଣାପଡ଼ିଲା ଯେ ମିସେସ୍ ଥମାସ ମୋର ପରିବାରକୁ ଭଲ ଭାବରେ ଜାଣିଥିଲେ ।

କେତେଜଣ ଲୋକ ଯାହାଙ୍କ ସହିତ ମୁଁ ସହଜରେ ମିଶି ପାରୁଥିଲି, ସେମାନଙ୍କ ମଧ୍ୟରୁ ଜଣେ ଥିଲେ ରାଧା ହର୍ଜବର୍ଗର । ସେ ଥିଲେ ପୁପୁଲ ଜୟକରଙ୍କର କନ୍ୟା, ଏକ ଖାଣ୍ଟି, ନିରଭିମାନୀ ଏବଂ ସୌମ୍ୟ ବ୍ୟକ୍ତିତ୍ୱ । ସେ ବୌଦ୍ଧ ସିଦ୍ଧାନ୍ତ ଉପରେ ଡକ୍ଟରେଟ କରିସାରିଥିଲେ । ତାଙ୍କର ବିବାହ ଡକ୍ଟର ହାନ୍ସ ହର୍ଜବର୍ଗରଙ୍କ ସହିତ ହୋଇଥିଲା । ସେ କାନାଡ଼ାର ଓଣ୍ଟାରିଓ ବିଶ୍ୱବିଦ୍ୟାଳୟରେ ପ୍ରତୀକାତ୍ମକ ତର୍କ (ସିମ୍ବଲିକ ଲଜିକ) ପଢ଼ାଉଥିଲେ ।

ବୁଦ୍ଧିଜୀବୀ, ସମାଜବାଦୀ, ଶିକ୍ଷକ, ବୌଦ୍ଧ ବିଦ୍ୱାନ, ଥିଓସଫିଷ୍ଟ ତଥା ସମାଜର ଉଚ୍ଚ ସ୍ତରର ଲୋକମାନେ ବସନ୍ତ ବିବାହାରକୁ ଯିବା ଆସିବା କରୁଥିଲେ । ଶୁଣିଲି, ପ୍ରବନ୍ଧକ ସମିତିର ସଦସ୍ୟ, ପୂରା ଅଲଗା ଶ୍ରେଣୀର ଲୋକ ଥିଲେ । ସେମାନେ ଥିଲେ ବଛାବଛା ବ୍ୟକ୍ତି, ତେଣୁ ସେମାନେ ସହିତ ଅନ୍ୟମାନଙ୍କଠାରୁ ଅଲଗା ବ୍ୟବହାର କରାଯାଉଥିଲା । ସେମାନଙ୍କ ଭିତରୁ କେତେଜଣ, କେଉଁମାନଙ୍କୁ ମୁଁ ପରେ ଭେଟିଲି, ବେଶ୍ ଭଲ ଲୋକ ଥିଲେ କିନ୍ତୁ କେତେଜଣ ବାସ୍ତବରେ ଭାବୁଥିଲେ ଯେ ସେମାନେ ସମସ୍ତଙ୍କଠାରୁ ଉଚ୍ଚରେ ଥିଲେ ।

ଭାଷଣ ଶୁଣିବାକୁ ବହୁତ ଲୋକ ଆସିଲେ । କୃଷ୍ଣମୂର୍ତ୍ତିଙ୍କୁ ଚକା ପକାଇ ମଞ୍ଚରେ ବୁଦ୍ଧଙ୍କ ପରି ବସିଥିବାର ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇ ଭାବୁଥିଲି, ଯେ କ'ଣ ସେହି ବ୍ୟକ୍ତି ଯେ ଖାଇବା ଟେବୁଲରେ ପରିହାସ କରି ମଜାମଜା କଥା କହୁଥିଲେ ? ଭାଷଣଗୁଡ଼ିକ ସରିବାପରେ କୃଷ୍ଣମୂର୍ତ୍ତିଙ୍କର ଋଷିଭ୍ୟାଲି ଯିବାର ଥିଲା । ସେଠାରୁ ସେ ଚେନ୍ନାଇକୁ ଫେରିଆସି ଆମେରିକା ଯିବାପାଇଁ ଉଡ଼ାଜାହାଜ ଧରିବାର ଥିଲା । ଭାଷଣଗୁଡ଼ିକ ପରେ ଭିଡ଼ କମିଗଲା । ଅଚ୍ୟୁତଜୀ, ତାଙ୍କର ଭାଇ ପଦ୍ମାକର ଓ ତାଙ୍କ ପତ୍ନୀ ସୁନନ୍ଦା, କୃଷ୍ଣମୂର୍ତ୍ତିଙ୍କ ସହିତ ଋଷିଭ୍ୟାଲି ଚାଲିଗଲେ । ମୁଁ ପ୍ରାୟ ଏକୁଟିଆ ରହିଗଲି । କେବଳ ଅଫିସ ରନ୍ଧାଘର ଇତ୍ୟାଦି କାମ କରିବା ଲୋକମାନଙ୍କ ବ୍ୟତୀତ ଜଣେ ଶ୍ରୀ କେ.ଏସ୍. କୃଷ୍ଣମୂର୍ତ୍ତି ମଧ୍ୟ ରହୁଥିଲେ ଯେ ଇଣ୍ଡିଆନ ଏକ୍ସପ୍ରେସ୍ କାଗଜର ଉପ-ସମ୍ପାଦକ ଥିଲେ ଓ ସପ୍ତାହର ଶେଷଦିନଗୁଡ଼ିକ ବସନ୍ତ ବିହାରରେ ପତ୍ର-ବ୍ୟବହାର ଏବଂ ପ୍ରତିଲିଖନରେ ସହାୟତା

କରି ବିତାଉଥିଲେ । ତାଙ୍କୁ ଏକ ପ୍ରକୃତ ଶିଷ୍ୟ କହିହେବ, ଯେ କୃଷ୍ଣମୂର୍ତ୍ତିଙ୍କ ଦ୍ୱାରା କଥିତ ପ୍ରତିଟି ଶବ୍ଦକୁ ଧରି ରଖିବାକୁ ଚାହୁଁଥିଲେ ।

ଦଶଦିନ ପରେ କୃଷ୍ଣମୂର୍ତ୍ତି ଫେରି କାଲିଫୋର୍ଣ୍ଣିଆ ଚାଲିଗଲେ । ପଟବର୍ଦ୍ଧନ ହେରିକା ଚେନ୍ନାଇକୁ ଆସିଗଲେ । ବେଳେବେଳେ ମୁଁ ମୋର ମା'ବାପାଙ୍କ ପାଖକୁ ଯାଉଥିଲି । ସେମାନେ ଲୀଥ କ୍ୟାସେଲ ଷ୍ଟ୍ରୀଟରେ ରହୁଥିଲେ । ସେଇଟା ବେଶି ଦୂର ନଥିଲା । ମୋର ଭଉଣୀ ଭାରତୀୟ ପ୍ରଶାସନିକ ସେବାପାଇଁ ଯୋଗ୍ୟ ବିବେଚିତ ହୋଇଯାଇଥିଲା । ପରେ ତା'ର ଜଣେ ମଦ୍ୟର ସ୍ୱାଦ ବିଶେଷଜ୍ଞଙ୍କ ସହିତ ବିବାହ ହୋଇଥିଲା ଓ ସେ ବାଙ୍ଗାଲୋର ଚାଲିଯାଇଥିଲା । ମୋର ସବୁଠାରୁ ସାନ ଭଉଣୀ କଲେଜରେ ପଢୁଥିଲା ଓ ମା'ବାପାଙ୍କ ସହିତ ରହୁଥିଲା ।

ଏହିପରି ଭାବରେ ବର୍ଷେ ବିତିଗଲା । କୃଷ୍ଣମୂର୍ତ୍ତି ପୁଣି ଆସିଲେ । ଏଥର ଉଡ଼ାଜାହାଜ ପଡ଼ିଆକୁ ପଟବର୍ଦ୍ଧନ ପ୍ରଭୃତିଙ୍କ ସହିତ ମୁଁ ମଧ୍ୟ ତାଙ୍କୁ ସ୍ୱାଗତ କରିବାକୁ ଯାଇଥିଲି । ତାଙ୍କ ସହିତ ଥିଲେ ତାଙ୍କର ବ୍ୟକ୍ତିଗତ ଡାକ୍ତର ଡକ୍ଟର ପର୍ଚୁରେ, ତାଙ୍କର ଘନିଷ୍ଠ ବନ୍ଧୁ ଶ୍ରୀମତୀ ମେରୀ ଜିମ୍ବାଲିଷ୍ଟ (ବିଖ୍ୟାତ ସିନେମା 'ଟେନ୍ କମାଣ୍ଡମେଣ୍ଟ୍'ର ନିର୍ମାତା ସାମ ଜିମ୍ବାଲିଷ୍ଟଙ୍କ ଝିଅ) ଥିଲେ । ସେମାନଙ୍କୁ ଏବଂ ଭାରତ ଓ ବିଦେଶରେ ଫାଉଣ୍ଡେସନ ସହିତ ସମ୍ପୃକ୍ତ ଅନ୍ୟ ଅନେକ ଲୋକଙ୍କୁ ମୁଁ ଭେଟିଲି । ଏତେବେଳକୁ କୃଷ୍ଣମୂର୍ତ୍ତି ମୋତେ ଚିହ୍ନିପାରୁଥିଲେ ଓ ବେଳେବେଳେ ଅଳ୍ପ ସମୟ ପାଇଁ ମୋ ସହିତ ବାର୍ତ୍ତାଳାପ କରୁଥିଲେ । ମୁଁ ପ୍ରାଙ୍ଗଣରେ ତାଙ୍କ ସହିତ ବୁଲୁଥିଲି ଓ କ'ଣସବୁ ଉନ୍ନତି ହୋଇଛି କୋଠାବାଡ଼ିରେ ସେକଥା ଦେଖାଉଥିଲି । ଦିନେ ମଧ୍ୟାହ୍ନଭୋଜନପାଇଁ ତାଙ୍କୁ ଡାକିବାକୁ ଉପରକୁ ଗଲି ଓ କହୁ କହୁ କହିଦେଲି ଯେ ଯାଦୁରେ ମୋର ରୁଚି ଓ ସାମର୍ଥ୍ୟ ରହିଛି ।

"ତୁମେ କ'ଣ ଉପରକୁ ଉଠିପାରିବ (ଲେଭିଟେଟ୍) ?" ବୋଧହୁଏ ନକାରାତ୍ମକ ଉତ୍ତର ଆଶା କରୁଥିଲେ ସେ ।

"ହଁ", ମୁଁ କହିଲି, "ମୁଁ ପାରିବି ।"

"କ'ଣ ପ୍ରକୃତରେ ?"

: "ସାର୍ ଯଦି ଆପଣ ଅନୁମତି ଦେବେ, ତେବେ କାଲି ଦି'ପହରର ଖାଇବାବେଳେ ଏହି ଅଭ୍ୟାସକୁ କରି ମୁଁ ଦେଖାଇଦେବି ।"

"ଠିକ୍ ଅଛି", ସେ କହିଲେ ।

ପରଦିନ ମୁଁ ଖାଇବା ଟେବୁଲ ପାଖରେ ଏକ ଅଧିକା ବେଞ୍ଚ ଯୋଡ଼ିଲି । ତା'ପରେ କୃଷ୍ଣମୂର୍ତ୍ତି ଏବଂ ପ୍ରାୟ ବାରଜଣ ଅତିଥିଙ୍କ ସାମ୍ନାରେ (ସେମାନେ କିଏ ଥିଲେ ଆଉ ମନେ ନାହିଁ) ନିଜକୁ ଏକ ଚାଦରରେ ଢାଙ୍କିଦେଲି ଓ ଶୂନ୍ୟକୁ ଉଠିଗଲି । ମୁଁ କୃଷ୍ଣମୂର୍ତ୍ତିଙ୍କୁ ପାଟିକରି କହିବାର ଶୁଣିଲି, ''ଜେସସ୍ (ଯୀଶୁ) ! ସେ କରି ଦେଖାଇଦେଲା !'' ମୋତେ ତାଙ୍କର ମୁହଁରେ ଥିବା ଅବିଶ୍ୱାସର ଭାବ ଆଜି ମଧ୍ୟ ମନେ ଅଛି, ଯେତେବେଳେ ମୁଁ ତାଙ୍କୁ କହିଲି ଯେ ଏହା (ହାତ ସଫେଇ) କିପରି କରାଯାଏ ଏବଂ ପ୍ରକୃତରେ ଏହା କେତେ ସରଳ । ସେ କେବଳ ଏତିକି କହିଲେ, ''ମୁଁ ତ ତୁମଦ୍ୱାରା ଠକି ହୋଇଯାଇଥିଲି !''

ପୁଣି ଥରେ (talks) ପ୍ରବଚନ ଆରମ୍ଭ ହୋଇଗଲା ।, ସକାଳେ ପ୍ରଶ୍ନ-ଉତ୍ତର ଚାଲେ । ମୋତେ ବେଶ୍ ବ୍ୟସ୍ତ ରଖାଗଲା । ବିଦେଶୀ ଅତିଥିମାନଙ୍କର ଦେଖାଶୁଣା କରିବାର ଦାୟିତ୍ୱ ମୋତେ ଦିଆଯାଇଥିଲା । ପ୍ରବଚନ ପରେ କୃଷ୍ଣମୂର୍ତ୍ତି ଇଂଲଣ୍ଡ ଚାଲିଗଲେ । ଅତିଥିମାନେ ଚାଲିଗଲେ ଓ ପୁଣି ଶାନ୍ତି ବିରାଜିଲା । ମୁଁ ବସନ୍ତ ବିହାର ଛାଡ଼ି ପୁଣି ଭ୍ରମଣରେ ବାହାରିବାର ଯୋଜନ ବନ୍ଦ କରିଦେଲି, ଯେତେବେଳେ ବିମାନ ବନ୍ଦରରେ ସୁରକ୍ଷା ଯାଞ୍ଚପରେ କୃଷ୍ଣମୂର୍ତ୍ତି ପଛକୁ ବୁଲିପଡ଼ି ମୋତେ କହିଲେ, ''ଆଶାକରେ ଫେରିଲେ ତୁମ ସହିତ ପୁଣି ଦେଖା ହେବ ।''

× × ×

ବସନ୍ତ ବିହାରରେ ବିତାଇଥିବା ବର୍ଷଗୁଡ଼ିକରେ ମୁଁ ଅନେକ ପ୍ରକାରର ଲୋକମାନଙ୍କର ସମ୍ପର୍କରେ ଆସିଲି । ଅଭିଜାତ, ଖାଣ୍ଟି ଭକ୍ତମାନେ ଯେ କୃଷ୍ଣମୂର୍ତ୍ତିଙ୍କୁ ଦେବତା ପରି ମାନୁଥିଲେ; ଅବିଶ୍ୱାସୀ, ବୁଦ୍ଧିଜୀବୀ, କଳାପ୍ରେମୀଙ୍କ ଦଳ (ଅଧିକାଂଶ ଥିଲେ ପୁପୁଲ ଜୟକରଙ୍କଠାରୁ କିଛି ସାହାଯ୍ୟର ପ୍ରତ୍ୟାଶୀ)– ଆଉ କିଛି ଖାଣ୍ଟି ସାଧକ, ଯେ ଏହି ଗୋଲକଧନ୍ଦାରେ ପଶି ଦିଗ ହରାଇଥିଲେ ।

ଏହା କାହାର କିଛି କ୍ଷତି ନ କରୁଥିବା ଶାନ୍ତିପ୍ରିୟ ଲୋକମାନଙ୍କର ସମୂହ ଥିଲା । କେବଳ ଗୋଟିଏ କ୍ଷୁଦ୍ର ଦଳ ଥିଲା ଯାହାକୁ କୌଣସି ସଠିକ ନାମକରଣର ଅଭାବରେ 'ଅତି କୃଷ୍ଣମୂର୍ତ୍ତିବାଦୀ' ବୋଲି କୁହାଯାଇପାରିବ । ସେମାନଙ୍କର ନିଜର ତ ଭାରତର ଐଶ୍ୱର୍ଯ୍ୟପୂର୍ଣ୍ଣ ପରମ୍ପରା ବିଷୟରେ କିଛି ଗଭୀର ଅଧ୍ୟୟନ ନ ଥିଲା, ନିଜର ଅଭିଜ୍ଞତାଶୂନ୍ୟତାକୁ କୃଷ୍ଣମୂର୍ତ୍ତିଙ୍କ ଦ୍ୱାହିଦେଇ ଢାଙ୍କି ରଖିବାର ପ୍ରଚେଷ୍ଟା ଥିଲା । କୃଷ୍ଣମୂର୍ତ୍ତି ପ୍ରାଚୀନ ଗ୍ରନ୍ଥଗୁଡ଼ିକର

ଅଧ୍ୟୟନକୁ ଅନାବଶ୍ୟକ ବୋଲି କହୁଥିଲେ । ବାବାଜୀଙ୍କର ମାର୍ଗଦର୍ଶନରେ ମୁଁ ହିନ୍ଦୁତ୍ୱର ଜ୍ଞାନଯୁକ୍ତ ପୁସ୍ତକଗୁଡ଼ିକର ଗଭୀର ଅଧ୍ୟୟନ କରିସାରିଥାଏ । ତେଣୁ ମୋତେ ପରମ୍ପରା ଏବଂ ଅନୁଶାସନ ପ୍ରତି ଅନାଦର ଭାବ ପସନ୍ଦ ହେଉ ନ ଥାଏ ।

ସବୁକୁ ମିଶାଇ କୃଷ୍ଣମୂର୍ତ୍ତି ସଂସ୍ଥାସହିତ ଦଶବର୍ଷର ସଂପୃକ୍ତି ବହୁତ କଥା ଶିଖିବାର ଏକ ମହାନ ଅନୁଭବ ଥିଲା । ସେତେବେଳେ ମୁଁ କୃଷ୍ଣମୂର୍ତ୍ତିଙ୍କର ଭାଷଣଗୁଡ଼ିକଦ୍ୱାରା ବହୁତ ଉତ୍ସାହିତ ଥିଲି ଓ ଦୈନନ୍ଦିନ କାର୍ଯ୍ୟକ୍ରମରେ କିଛି ପରିମାଣରେ ସାହାଯ୍ୟ କରୁଥିଲି ।

× × ×

1985 ମସିହାର ଏପ୍ରିଲ ମାସରେ ବାବାଜୀଙ୍କର ଇଙ୍ଗିତ ମିଳିଲା, ତାଙ୍କର ନିଜର ଅନନୁକରଣୀୟ ଢଙ୍ଗରେ । ଦିନେ ସନ୍ଧ୍ୟାରେ ମୁଁ ବସନ୍ତ ବିହାରର ଫାଟକ ପାଖରେ ଠିଆ ହୋଇ ଭାବୁଥିଲି ଯେ, ମୁଁ ବୁଲିବାକୁ ଯିବି ନା ଜନ ବେଲ୍ଲାକଙ୍କର 'ଏସେନ୍ସ ଅଫ୍ ଚାମୀ' ବହିଟି ପଢ଼ିବି, ଏହି ସମୟରେ ଦେଖିଲି ଜଣେ ଗେରୁଆବସ୍ତ୍ରଧାରୀ ସାଧୁ ଆସୁଛନ୍ତି । ସେ ପାଖକୁ ଆସିବା ପରେ ଦେଖିଲି, ସେ ନଗ୍ନପାଦ ଥିଲେ, ଦାଢ଼ି ନିଶ ଖିଅର ହୋଇଥିଲେ ଓ ଲଣ୍ଡିତ-ମସ୍ତକ ଥିଲେ । ତାଙ୍କର ଯୁବ-ସୁଲଭ ଚେହେରା ଝଟକୁଥିଲା । ମଥାରେ ଚନ୍ଦନର ଲେପର ବୈଷ୍ଣବୀୟ ଚିତା ଥିଲା । ସେ ଠିକ୍ ମୋ ପାଖକୁ ଆସି କହିଲେ, "ରାଧେ ରାଧେ ।" "ରାଧେ, ରାଧେ", ମୁଁ ଜବାବ ଦେଲି ଓ ତାଙ୍କର ଚରଣ ସ୍ପର୍ଶ କଲି । ସୌଭାଗ୍ୟବଶତଃ କୃଷ୍ଣମୂର୍ତ୍ତିଙ୍କର କୌଣସି ଅଭିଜାତବର୍ଗୀୟ ଅନୁଗାମୀ ମୋତେ ସେପରି କରିବାର ଦେଖି ନଥିଲେ, ନଚେତ୍ ସେ ମୋତେ ନିର୍ବୋଧ ବୋଲି ଭାବିଥାଆନ୍ତେ ।

କିଛି ଉପକ୍ରମଣିକା ନ କରି ସାଧୁ ସିଧା ତାଙ୍କର ବକ୍ତବ୍ୟକୁ ଚାଲିଆସି କହିଲେ, "ବାବାଜୀ ତୁମକୁ ଚାରିଦିନ ଭିତରେ ଭେଟିବାକୁ ଚାହୁଁଛନ୍ତି, ତୁମେ ତାଙ୍କୁ ମୌନୀବାବାଙ୍କ ଗୁମ୍ଫାରେ ପାଇବ । ଯେତେ ଜଲଦି ସମ୍ଭବ ବାହାରିପଡ଼ । ରାଧେ, ରାଧେ ।"

ଏତିକି କହି ସେ ଚାଲିଗଲେ ଓ ରାସ୍ତାର ଶେଷ ମୁଣ୍ଡରେ ଅଦୃଶ୍ୟ ହୋଇଗଲେ । ମୁଁ ସାଙ୍ଗେ ସାଙ୍ଗେ ଯିବାର ବନ୍ଦୋବସ୍ତ କଲି । ପ୍ରଥମେ ମୁଁ ସଚିବଙ୍କୁ ସୂଚନା ଦେଲି ଯେ ମୋର ହିମାଳୟକୁ ଯିବାକୁ ଅଛି, ତେଣୁ ମୋର ଦୁଇ ସପ୍ତାହ ଛୁଟି ଦରକାର । ଛୁଟି ମିଳିବା ପରେ ମୁଁ ଷ୍ଟେସନକୁ ଗଲି ଓ ପରଦିନ ଦିଲ୍ଲୀ ଯାଉଥିବ ଟ୍ରେନ୍ ପାଇଁ ଟିକେଟ୍ କିଣିନେଲି ।



# 45. ବାବାଜୀଙ୍କର ଦେହ ତ୍ୟାଗ

ଋଷିକେଶ ପହଞ୍ଚିବା ମାତ୍ରେ ହିଁ ମୁଁ ସିଧା ମୌନୀବାବାଙ୍କ ଗୁମ୍ଫା ଆଡ଼କୁ ଚାଲିଲି । ବାବାଜୀ ଏକା ଥିଲେ । ''ଅଲଖ ନିରଞ୍ଜନ'' କହି ସେ ମୋତେ ସ୍ୱାଗତ କଲେ । ମୁଁ ତାଙ୍କର ପାଦତଳେ ଦଣ୍ଡବତ କଲି । ''ମୌନୀବାବା ଉତ୍ତରକାଶୀ ଯାଇଛନ୍ତି'', ସେ କହିଲେ, ''ଆଉ, ବହୁତ ଦିନ ହେଲା ତୁମର ଦେଖା ସାକ୍ଷାତ ନାହିଁ, ବେଶ ଭଲ ଦିଶୁଛ ତ !''

''ଆଜ୍ଞା ବାବାଜୀ, ବହୁ ସମୟ ବିତିଗଲାଣି, ହୁଏତ ଆପଣ ଚାହୁଁଛନ୍ତି ଯେ ମୁଁ ପ୍ରମାଣ କରେ ମୁଁ ଆପଣଙ୍କ ଉପରେ ନିର୍ଭରଶୀଳ ନୁହେଁ ବୋଲି । କିନ୍ତୁ ଏହି ସାନ୍ନିଧ୍ୟ ଆନନ୍ଦଦାୟୀ ଓ ସବୁବେଳ ପରି ଆପଣ ଝଟକୁଛନ୍ତି ।''

''ଠିକ୍ ଅଛି, ବସ । ଏବେ ମନଦେଇ ଶୁଣ । ଏକ ମହତ୍ତ୍ୱପୂର୍ଣ୍ଣ କାମ ହେବାକୁ ଯାଉଛି ଓ ତାହା ତୁମକୁ ହିଁ କରିବାକୁ ପଡ଼ିବ । ମୁଁ ଏବେ ଚାଲିଯିବାର ନିଷ୍ପତ୍ତି କରିଛି ।''

''କେଉଁଠିକୁ ବାବାଜୀ ? ମୁଁ ବି ସାଙ୍ଗରେ ଯିବି ।''

''ନାହିଁ ବାବା, ତୁମେ ଯାଇପାରିବ ନାହିଁ, ତୁମକୁ କାମ କରିବାର ଅଛି । ମୁଁ ଦେହତ୍ୟାଗ କରିବାକୁ ଚାହୁଁଛି ।'' ମୁଁ ଏପରି ଭାବରେ କମ୍ପି ଉଠିଲି ଯେମିତି ମୋ ଉପରେ ବଜ୍ରପାତ ହୋଇଗଲା, ''କିନ୍ତୁ ବାବାଜୀ, ମୁଁ....'' ମୋ ମୁହଁରୁ ଆଉ କିଛି ବାହାରିଲା ନାହିଁ ମୁଁ ଖାଲି ଡବ ଡବ ଆଖିରେ ତାଙ୍କୁ ଚାହିଁରହିଲି ।

''ନବଯୁବକ, ନିଜକୁ ସମ୍ଭାଳ । ମୁଁ ଭାବୁଥିଲି ତୁମେ ହେଉଛ ଯୋଗୀ । ଆଚ୍ଛା ଧୀରେ ଧୀରେ ନିଃଶ୍ୱାସ ନିଅ, ଏବେ ବାହାରକୁ ଛାଡ଼ । ଠିକ୍ ଅଛି । ଏବେ କେମିତି ଲାଗୁଛି ?''

''ଠିକ୍ ଅଛି ବାବାଜୀ, ଯଥେଷ୍ଟ ଭଲ । ଯେପରି ହଠାତ୍ ଆପଣ ଏହି କଥା କହିଲେ, ମୁଁ ହଲଚଲ ହୋଇଯାଇଥିଲି । ମୁଁ ପ୍ରସ୍ତୁତ । କହନ୍ତୁ ମୋତେ କ'ଣ କରିବାକୁ ହେବ ।'' ମୁଁ ଲୁହ ଚାପିବାର ପ୍ରାଣପଣ ଚେଷ୍ଟା କରୁଥାଏ ।

"ମୋର କାମ ସରିଗଲା ଏବଂ ତୁମକୁ ଏବେ ବହୁତ କାମ କରିବାର ଅଛି, ପ୍ରଥମେ ମୁଁ କିଛି ମହତ୍ତ୍ୱପୂର୍ଣ୍ଣ ବିଷୟ ସଂକ୍ଷେପରେ ବୁଝାଇ ଦେଉଛି, ତା'ପରେ କହିବି ମୋର ପ୍ରସ୍ଥାନ ପରେ ମୋର ଶରୀରର କ'ଣ କରାଯିବ । ନାଗରାଜ ଓ ଶ୍ରୀ ଗୁରୁଙ୍କ ବ୍ୟତୀତ ତୁମେ ହେଉଛ ଏକମାତ୍ର ବ୍ୟକ୍ତି ଯେ ମୋର ପ୍ରସ୍ଥାନ ବିଷୟ ଜାଣେ । ଏବେ ମନଦେଇ ଶୁଣ ।"

ସେ କ୍ରିୟାର ଅଭ୍ୟାସ ବିଷୟରେ କିଛି ସୂକ୍ଷ୍ମ ନିର୍ଦ୍ଦେଶ ଦେଲେ, ଯାହାକୁ ଯୋଗୀମାନେ ନିଜର ଅନ୍ତିମ ସମୟରେ ଉପଯୋଗ କରନ୍ତି । ଯେତେବେଳେ ଯୋଗୀ ଦେହତ୍ୟାଗ କରିବାପାଇଁ ଠିକଣା କରନ୍ତି, ସେତେବେଳେ ସେମାନେ ସେହି ଅନ୍ତିମ-କ୍ରିୟା ପ୍ରୟୋଗ କରନ୍ତି, ସାରା ଶାରୀରିକ କର୍ମ ବନ୍ଦ କରିଦିଅନ୍ତି ଓ ଶରୀରକୁ ତ୍ୟାଗ ଦିଅନ୍ତି । ଏହାପରେ ମୁଁ ଯଦି ଚାହିଁବି ତେବେ ଏପରି କୌଣସି ବ୍ୟକ୍ତି ଯେ ଦୁଇଟି ସର୍ତ୍ତର ପୂରଣ କରୁଥିବ, ତାହାକୁ ଦୀକ୍ଷା ଦେବାର ଅନୁମତି ଦେଲେ । ସେ ଦୁଇଟି ସର୍ତ୍ତ ହେଲା– ସେହି ବ୍ୟକ୍ତି ସାଧନା ପ୍ରତି ବିଶ୍ୱସ୍ତ ଏବଂ ସତ୍ୟନିଷ୍ଠ ହେବା ଆବଶ୍ୟକ ।

ତା'ପରେ ସେ ମୋତେ ସମାଧିର ସ୍ଥିତିରେ ପହଞ୍ଚାଇଦେଲେ ଓ ମୁଁ ପୁଣି ଥରେ ଭୂତକାଳକୁ ଫେରିଗଲି, ଏଥର ଅଧିକ ସ୍ୱଷ୍ଟତା ଓ ବିସ୍ତାରର ସହିତ । ଶ୍ରୀ ଗୁରୁଙ୍କ ସହିତ ମୋର ସମ୍ପର୍କ ସେହି ସମୟର ଯେତେବେଳେ ସେ ଏକ ମହାନ ନାଥଯୋଗୀ ଭାବରେ ସଂସାରରେ ଥିଲେ ଏବଂ ମୁଁ ଶ୍ରୀକୃଷ୍ଣଙ୍କର ବଂଶଧର ବୋଲି ଦାବି କରୁଥିବା ଯଦୁବଂଶର ଏକ ଦୁର୍ଦ୍ଧର୍ଷ ଯୋଦ୍ଧା ଥିଲି ଓ ମରୁଭୂମି ମଧ୍ୟରେ ଜୟସଲମେର ରାଜ୍ୟସ୍ଥାପନ କରିବାରେ ବ୍ୟସ୍ତ ଥିଲି । ସେତେବେଳେ ସେ ମୋର ଗୁରୁ ଥିଲେ, ପ୍ରଥମ ଥର ।

ଯେତେବେଳେ ମୁଁ ସମାଧିରୁ ବାହାରିଲି, ବାବାଜୀ କହିଲେ ଯେ, ଋଣ-ବନ୍ଧନ, କାର୍ମିକ ସମ୍ବନ୍ଧ ହେତୁ ପରବର୍ତ୍ତୀ ଜୀବନରେ ଭାରତର ଅତୀତ ରାଜବଂଶର ଲୋକମାନେ ମୋର ବନ୍ଧୁ ଓ ଶିଷ୍ୟ ହେବେ । ବାବାଜୀ କହିଲେ ଯେ ମୋତେ ଅନେକ ଲୋକଙ୍କର ଜୀବନର ଦାୟିତ୍ୱ ନେବାକୁ ପଡ଼ିବ, ଯେଉଁମାନେ ଅତୀତରେ ବିଭିନ୍ନ ସମୟରେ ମୋର ନିକଟ ସମ୍ପର୍କରେ ଥିଲେ । ତାଙ୍କୁ ଦେଖି ଦେଖି ମୁଁ ଚିହ୍ନି ନେବି । ସେ କହିଲେ, ଯଦି କେହି ସାହାଯ୍ୟ ମାଗେ, ମୁଁ ଯେପରି ତାକୁ କେବେ ହେଲେ ମନା ନ କରେ ।

ସେ ପୁଣି ଜୋର ଦେଇ କହିଲେ, ମୁଁ ବାହାହେବା ଦରକାର ଏବଂ ବୈବାହିକ ଜୀବନ ମୋତେ ଭାବାତ୍ମକ ପରିସ୍ଥିତିଗୁଡ଼ିକର ମୁକାବିଲା କରିବାରେ ସାହାଯ୍ୟ କରିବ । "ବିବାହ ନ କରିବା", ସେ କହିଲେ, "ସାଧକ ପାଇଁ କିଛି ବିଶେଷ ଗୁଣ ନୁହେଁ, ତା'ପରେ ଯାହା ବି ହେଉ, ତୁମପାଇଁ ଏହି ନିୟମ ଏ ସ୍ଥିତିରେ ମଧ୍ୟ ଲାଗୁ ନୁହେଁ, ଭବିଷ୍ୟତରେ ତୁମ

ନିକଟକୁ ଆସିବେ ଅଧିକାଂଶ ଲୋକ ଯେଉଁମାନେ ବିବାହିତ ହୋଇଥିବେ ଏବଂ ତୁମେ ସେମାନଙ୍କୁ ପରାମର୍ଶ ଦେଇପାରିବ ନାହିଁ ଯଦି ତୁମେ ନିଜେ ହିଁ ଜାଣି ନ ଥିବ ଯେ ବିବାହିତ ଜୀବନ କ'ଣ ବୋଲି ।''

ବାବାଜୀ ଏକଥା ମଧ୍ୟ କହିଲେ ଯେ, କୈଳାସ-ମାନସରୋବର ଯାତ୍ରାର କିଛି ପୂର୍ବରୁ ମୁଁ ମୋର ଆତ୍ମଜୀବନୀ ଲେଖିବା ଆରମ୍ଭ କରି ଫେରିବାର ବର୍ଷେ ମଧ୍ୟରେ ସମ୍ପୂର୍ଣ୍ଣ କରିଦେବା ଉଚିତ୍ । କିଛି ଗୁପ୍ତ କଥା, ଯାହା ସେ ମୋତେ କହିଲେ, ସେଥିପାଇଁ ମୋତେ ଗୋପନୀୟତାର ଶପଥ କରାଇଲେ ।

ଏହିସବୁ କଥା କହିବା ପରେ, ସେ ମୋତେ କହିଲେ ତାଙ୍କର ଦେହତ୍ୟାଗ ପରେ ତାଙ୍କର ଦେହକୁ କ'ଣ କରାଯିବ ।

''ଦୟାକରି ବାବାଜୀ ଆଉ କିଛି କହିବାପୂର୍ବରୁ ମୋତେ ଆପଣ କୁହନ୍ତୁ, ଏହା କ'ଣ ଆପଣଙ୍କର ଅନ୍ତିମ ନିର୍ଣ୍ଣୟ ?'' ମୁଁ କହିଲି । ''ଆପଣ କ'ଣ ଆଉ କିଛି ସମୟ ରହିପାରିବେ ନାହିଁ ? ଦୟାକରି.... ।''

''ବାପା, ତୁମେ ଜାଣ ମୁଁ ଯେବେ କିଛି କରେ, ତାହା କରିବାର ନିର୍ଦ୍ଦିଷ୍ଟ କାରଣ ଥାଏ । ଏବେ ମୋର ଯିବା ନିଶ୍ଚିତ । ମୋର ମସ୍ତିଷ୍କର ଅଶୀ ପ୍ରତିଶତ କ୍ଷମତା ତୁମକୁ ମିଳିଯିବ । କିନ୍ତୁ ତାହାକୁ ଗୁପ୍ତ ରଖି ଅନ୍ୟମାନଙ୍କ ପରି ବଞ୍ଚିବାର ଅଭିନୟ ତୁମପାଇଁ କଷ୍ଟକର ସାଧନା ହେବ । ମୋର ବିଶ୍ୱାସ, ତୁମେ ଏହା କରିପାରିବ । ଖୁବ୍ ଶୀଘ୍ର ଶ୍ରୀ ଗୁରୁ ଆସିବେ ଓ ତୁମକୁ ଆଶୀର୍ବାଦ ଦେବେ ।''

''ମୁଁ ଯିବାପରେ ତୁମେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନକୁ ଫେରିଯାଅ । କୃଷ୍ଣମୂର୍ତ୍ତି ମଧ୍ୟ ଶୀଘ୍ର ଚାଲିଯିବେ । ତାଙ୍କର ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇଛି । ତାହା ପରର ଘଟଣାବଳୀକୁ ଧ୍ୟାନଦେଇ ନିରୀକ୍ଷଣ କର । ମନେରଖ ଯେ, ମୁଁ ସବୁବେଳେ ତୁମର ହୃଦୟରେ ବିଦ୍ୟମାନ ରହିଛି । ଏବେ ଶୁଣ, ତୁମକୁ କ'ଣ କରିବାକୁ ହେବ......

ମୋତେ ନୀଳକଣ୍ଠ ପର୍ବତସ୍ଥିତ ମୌନୀବାବାଙ୍କ ଗୁମ୍ଫା ନିକଟସ୍ଥ ଜଙ୍ଗଲର ଏକ ନିର୍ଜନ ସ୍ଥାନ ଦେଖାଇ ଦିଆଗଲା । ବାବାଜୀ ମୋତେ ଶାବଳ, ଖଣତି ଓ କୁରାଢ଼ି ଯୋଗାଇ ଦେଲେ । ମୋତେ ନିର୍ଦ୍ଦିଷ୍ଟ ଦୈର୍ଘ୍ୟ-ପ୍ରସ୍ଥ ଥିବା ଏକ ବଡ଼ ଗାତ ଖୋଳିବାର ଥିଲା । ପୂର୍ବ ଅନୁଭୂତି ନ ଥିଲେ ମଧ୍ୟ ମୋତେ ଏହି କାମ ଏକୁଟିଆ କରିବାର ଥିଲା । ବାବାଜୀଙ୍କୁ ଏହି କାମ କରିବାପାଇଁ ମୋର ମସ୍ତିଷ୍କକୁ ଆବଶ୍ୟକ ନିପୁଣତା ଏବଂ ଶରୀରକୁ ଆବଶ୍ୟକ ଶକ୍ତି ଦେବାର ଥିଲା ।

ଦ୍ୱି'ଦିନରେ ମୁଁ ଗାତ ଖୋଳିଦେଲି । ମୋର ହାତରେ ଫୋଟକା ହୋଇଗଲା । ତୃତୀୟ ଦିନ ଗୁରୁବାର ଥିଲା । ବାବାଜୀ ଆଉ କିଛି ବ୍ୟକ୍ତିଗତ ନିର୍ଦ୍ଦେଶ ଦେଲେ ଏବଂ ସେହି ରାତିରେ ଆମେ ଗାତ ପାଖକୁ ଗଲୁ । ପରିଷ୍କାର ଆକାଶରେ ପୂର୍ଣ୍ଣିମାର ଚନ୍ଦ୍ର ଚମକୁଥାଏ । ଏକ ଶୀତଳ ପବନ ବହୁଥାଏ । "ଆମେ ଶ୍ରୀ ଗୁରୁଙ୍କର ପ୍ରତୀକ୍ଷା କରିବା " ବାବାଜୀ କହିଲେ ।

ଖୁବ୍ ଶୀଘ୍ର ଆକାଶରେ ଏକ ଜ୍ୟୋତିର୍ମୟ ଗୋଲକ (ଯେପରି ମୁଁ ଅରୁନ୍ଧତୀ ଗୁମ୍ଫାରେ ଦେଖିଥିଲି) ଦେଖାଗଲା । ଯେତେବେଳେ ତାହା ଚନ୍ଦ୍ର ପାଖାପାଖି ହେଲା, ଲାଗିଲା ଯେପରି ଆକାଶରେ ଦୁଇଟି ଚନ୍ଦ୍ର ଥିଲେ । ଯେତେ ଆମକୁ ନିକଟବର୍ତ୍ତୀ ହେଲା, ତାହାର ଆକାର ବଢ଼ିବାରେ ଲାଗିଲା । ଏଥର ତାହା କିଛି ଶବ୍ଦ ନ କରି ଓହ୍ଲାଇଲା । କିଛି ଗର୍ଜନ ନାହିଁ କିଛି ଶବ୍ଦ ନାହିଁ । ଚମକୁଥିବା ଗୋଲକ ଖୋଲିଗଲା ଏବଂ ସେଥିରୁ ଶ୍ରୀ ଗୁରୁ ବାହାରକୁ ଆସିଲେ ଏବଂ ତାଙ୍କ ପଛରେ ଥିଲେ ଜଣେ ଅତି ସୁନ୍ଦର ନୀଳବର୍ଣ୍ଣର ନଗ୍ନ ବ୍ୟକ୍ତି । ଆମେ ଦଣ୍ଡବତ କଲାପରେ ଶ୍ରୀ ଗୁରୁ ମୋତେ କହିଲେ, "ତୁମେ ନାଗରାଜଙ୍କୁ ପୂର୍ବରୁ ଭେଟିସାରିଛ । ସର୍ପଲୋକର ବ୍ୟକ୍ତି ଇଚ୍ଛାନୁସାରେ ରୂପ ବଦଳାଇ ପାରନ୍ତି । ଏବେ କାମର କଥା ।"

"ଆମେମାନେ ତୁମର ଗୁରୁଙ୍କର ଶରୀର ଓ ମସ୍ତିଷ୍କର କିଛି ତତ୍ତ୍ୱକୁ ତୁମର ଶରୀର ଓ ମସ୍ତିଷ୍କକୁ ସ୍ଥାନାନ୍ତରିତ କରିବାର ନିର୍ଣ୍ଣୟ ନେଇଛୁ । ଏହାର ଆବଶ୍ୟକତା ରହିଛି କାରଣ ଯୋଜନା ଅନୁଯାୟୀ ତୁମକୁ ବହୁତ କାମ କରିବାର ଅଛି । ତୁମର ଗୁରୁଙ୍କର କୌଣସି ସଂସ୍ଥା ନ ଥିଲା ବା ଦେଖାଇବା ପରି ଢଙ୍ଗରଙ୍ଗ ନ ଥିଲା । ସେ ଚୁପ୍‌ଚାପ୍ କାମ କରିଗଲେ । 1991 ମସିହା ପର୍ଯ୍ୟନ୍ତ ତୁମେ ତୁମର ଗୁରୁଙ୍କ ପରି ଚୁପଚାପ କାମ କରିଯିବ, ତା'ପରେ ଅଧିକରୁ ଅଧିକ ଲୋକ ତୁମ ବିଷୟରେ ଜାଣିଯିବେ, ଏଥିରେ ସଂକୋଚ କରିବାର ଆବଶ୍ୟକତା ନାହିଁ । ତୁମର କାର୍ଯ୍ୟପାଇଁ ଏହା ଦରକାର, ତୁମେ ଅନୁଭବ କରିବ ଯେ ଏହି ପବିତ୍ର ଭୂମିରେ ମଧ୍ୟ ଲୋକ କେତେ ସ୍ୱାର୍ଥପର ଓ ହିଂସ୍ର ହୋଇ ଚାଲିଛନ୍ତି । ତୁମେ ମୋ' ସହିତ ସହମତ, ମହେଶ ?"

"ଆଜ୍ଞା" ବାବାଜୀ କହିଲେ– "ମୁଁ ଚାହୁଁଥିଲି ଆପଣ ହିଁ କୁହନ୍ତୁ । ଏବେ ସମୟ ଆସିଯାଇଛି । ମୋତେ ଆଶୀର୍ବାଦ ଦିଅନ୍ତୁ ଓ ନିଜ ସହିତ ରଖନ୍ତୁ ।"

ଆମର– ଶ୍ରୀ ଗୁରୁ, ନାଗରାଜ ଓ ମୋର ଆଖି ସାମ୍ନାରେ ବାବାଜୀ ଗାତକୁ ଓହ୍ଲାଇ ଗଲେ, ପଦ୍ମାସନରେ ବସିଲେ ଏବଂ କିଛି ସମୟପାଇଁ ଜୋର୍‌ଜୋର୍‌ରେ ନିଃଶ୍ୱାସ ନେବାକୁ ଲାଗିଲେ । ତାଙ୍କର ଆଖି ଦୁଇଟି ଆଜ୍ଞାଚକ୍ରରେ କେନ୍ଦ୍ରିତ ଥିଲା । ଅନ୍ତିମ ଉଚ୍ଛ୍ୱାସ

ସହିତ, ଯାହା ସବୁଠାରୁ ଅଧିକ ଶକ୍ତିଶାଳୀ ଥିଲା, ସେ ଶାନ୍ତ ହୋଇଗଲେ ଓ ତାଙ୍କର ଶରୀର ଏକାବେଳକେ ନିଷ୍କ୍ରିୟ ହୋଇଗଲେ ।

ଇନ୍ଦ୍ରଧନୁ ରଙ୍ଗର ଏକ ଜ୍ୟୋତି ତାଙ୍କ ମଥାରୁ ବାହାରିଲା ଓ ମୋର ହୃଦୟରେ ମିଶିଗଲା । ମୋର ଅନ୍ତଃକରଣ ସବୁଦିନପାଇଁ ବଦଳିଗଲା । ଏହାପରେ ବାବାଜୀଙ୍କର ଶକ୍ତି ମୋର ମାଧ୍ୟମ ଦେଇ କାମ କରିବା ଆରମ୍ଭ କଲା । ତା'ପରେ ମୁଁ ତାଙ୍କର ମୁଣ୍ଡରୁ ଗୋଟିଏ କ୍ଷୁଦ୍ର, ଶୁଭ୍ର ଜ୍ୟୋତି ବାହାରିବାର ଦେଖିଲି, ତାହା ଆକାଶକୁ ଉଠି ଚାଲିଲା । କିଛି ସମୟ ପରେ ତାହା ଶୂନ୍ୟରେ ବିଲୀନ ହେଲା । ଶ୍ରୀ ଗୁରୁ କହିଲେ, ''ଏହି ଘଟଣା ପୂର୍ଣ୍ଣ ହେଲା । ଯାହା କରିବାକୁ ତୁମକୁ ନିର୍ଦ୍ଦେଶ ଦିଆଯାଇଥିଲା, ତାହା ପାଳନ କର । ମୋତେ ଏବେ ଯିବାକୁ ହେବ, ତୁମେ ଜାଣିଛ କିପରି ମୋ ସହିତ ସମ୍ପର୍କ ସ୍ଥାପନ କରି ହେବ । ମୁଁ ତାଙ୍କୁ ଓ ନାଗରାଜଙ୍କୁ ଦଣ୍ଡବତ କଲି । ସେ ନିଜର ବିମାନରେ ଚଢ଼ିଗଲେ ଏବଂ ଖୁବ୍ ଶୀଘ୍ର ଚାଲିଗଲେ ।

ମୁଁ ରାତିସାରା ସମାଧିକୁ ପୂର୍ଣ୍ଣ କରିବାରେ ଲାଗିରହିଲି । ପ୍ରଥମ ମାଟି ପକାଇବା ମୋ ପାଇଁ ଅସହନୀୟ ଥିଲା । କିନ୍ତୁ ନିଜେ ଆଶ୍ଚର୍ଯ୍ୟ ହେଲି ଯେ କିପରି ଭାବପ୍ରବଣ ନ ହୋଇ ମୁଁ ସମାଧିକୁ ମାଟିରେ ଭରିଦେଲି । ନିର୍ଦ୍ଦେଶ ଅନୁଯାୟୀ ଭୂଇଁକୁ ଚାପି ଚାପି ସମାନ କଲି । ତା'ଉପରେ ଘାସ ଥାପି ପାଣି ଢାଳିଲି । କାରଣ ବାବାଜୀ ଗୋଟାଏ ଛୋଟ ପଥର ମଧ୍ୟ ବସାଇ ତାଙ୍କର ସମାଧିକୁ ଚିହ୍ନିତ କରିବାକୁ ବାରଣ କରିଥିଲେ । ମୁଁ ସେହି ପବିତ୍ର ସ୍ଥାନକୁ ସାଷ୍ଟାଙ୍ଗ ଦଣ୍ଡବତ କରି ଚାଲି ଆସିଲି ।

ଯେତେବେଳେ ମୁଁ ଗୁମ୍ଫାରେ ପହଞ୍ଚିଲି, ଭୋର ହୋଇଆସୁଥାଏ । ପକ୍ଷୀମାନେ ରାବୁଥାଆନ୍ତି । ପବନ ଧୀରେ ଧୀରେ ବହୁଥାଏ । ଅଚାନକ ମୋର ହୃଦୟ ଶୋକାପ୍ଲୁତ ହୋଇଗଲା ଓ ମୁଁ ବିକଳ ହୋଇ ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲି । ପ୍ରେମ, କୃତଜ୍ଞତା ଓ ବିୟୋଗର ଅଶ୍ରୁ ବହିଚାଲିଲା । ମୁଁ ମୋ ବିଛଣାରେ ଲୋଟିଗଲି ଓ କ୍ଳାନ୍ତ ହୋଇଯାଇ ଥିବାରୁ କାନ୍ଦି କାନ୍ଦି ଶୋଇପଡ଼ିଲି । ସେଇଟି ଗୋଟିଏ ସ୍ୱପ୍ନହୀନ ଗଭୀର ନିଦ୍ରା ଥିଲା । ମୁଁ ସୁସ୍ଥ ହୋଇ ନିଦରୁ ଉଠିଲି । ଶାନ୍ତ, ନିଜର ଉତ୍ତରଦାୟିତ୍ୱ ସମ୍ଭାଳିବାକୁ ପ୍ରସ୍ତୁତ ।



#  'କେ'ଙ୍କ ପ୍ରସ୍ଥାନ

ଦି'ଦିନକାଳ ମୁଁ ଘୂରିବୁଲିଲି । ତୃତୀୟ ଦିନ ମୁଁ ଦିଲ୍ଲୀ ଯିବାକୁ ଟ୍ରେନ ଧରିଲି ଏବଂ ସେଠାରେ ଅମୃତସର ଯିବାପାଇଁ ବସ୍‌ରେ ଚଢ଼ିଲି । ମୁଁ ସବୁବେଳେ ଶିଖମାନଙ୍କର ଅମୃତସରସ୍ଥିତ ସ୍ୱର୍ଣ୍ଣମନ୍ଦିରକୁ ଯିବାକୁ ଚାହୁଁଥିଲି । ବାବାଜୀ ଶିଖମାନଙ୍କର ପବିତ୍ର ପୁସ୍ତକ 'ଗୁରୁ ଗ୍ରନ୍ଥସାହେବ'କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ଏହି ପୁସ୍ତକକୁ ହରମନ୍ଦର ସାହିବରେ ପୂଜା କରାଯାଏ । ଏହାକୁ ଶିଖମାନେ ଭଗବାନ ପରି ମାନନ୍ତି । ସୁନାର ଗମ୍ବୁଜ ଥିବା ହରମନ୍ଦର ସାହେବର ନିର୍ମାଣ ଶିଖମାନଙ୍କର ଚତୁର୍ଥ ଗୁରୁ ରାମଦାସଙ୍କଦ୍ୱାରା ଆରମ୍ଭ କରାଯାଇଥିଲା ଏବଂ ପଞ୍ଚମଗୁରୁ ଅର୍ଜନ ସିଂହଙ୍କ ଦ୍ୱାରା ସମ୍ପୂର୍ଣ୍ଣ କରାଯାଇଥିଲା । ଏହା ଏକ ପ୍ରାକୃତିକ ଝରର ଜଳରେ ନିର୍ମିତ ଅମୃତସର – (ଅମୃତର ପୁଷ୍କରିଣୀ) ନାମକ ହ୍ରଦର ମଧ୍ୟସ୍ଥଳରେ ରହିଛି । ଅମୃତସର ଏହି ହ୍ରଦର ନାମରେ ନାମିତ ହୋଇଛି । ଏହା ଓ୍ୱାଘା ନିକଟସ୍ଥ ପାକିସ୍ଥାନର ସୀମା ନିକଟବର୍ତ୍ତୀ ଅଞ୍ଚଳ ।

ମୁଁ ଭୋର୍‌ରୁ ମନ୍ଦିରକୁ ଗଲି । ହରମନ୍ଦର ସାହେବର ରାଗୀମାନଙ୍କଦ୍ୱାରା (ଗାୟକମାନଙ୍କ ଦ୍ୱାରା) ଗ୍ରନ୍ଥ ସାହେବର ମର୍ମସ୍ପର୍ଶୀ ଗାୟନ ମୋର ହୃଦୟକୁ ଗଭୀର ଆନନ୍ଦରେ ବୁଡ଼ାଇଦେଲା । "ଜିସ ଘଟମେ ପ୍ରେମ ନ ସଞ୍ଚରୈ, ସୋ ଘଟ ଜାନ ମସାନ । (ଯେଉଁ ଘଟରେ ପ୍ରେମ ନାହିଁ, ତାହା ଶ୍ମଶାନ ବୋଲି ଜାଣ – କବୀରଙ୍କର ବାଣୀ) । ପବିତ୍ର ଗ୍ରନ୍ଥସାହେବଙ୍କୁ ପ୍ରଣାମ କରିବା ପରେ ମୁଁ ମିଠା 'କାଡ଼ା ପ୍ରସାଦ' ପାଇଲି ଓ ପ୍ରାଙ୍ଗଣ ବାହାରକୁ ଚାଲିଆସିଲି ।

ବସ୍ ଧରି ମୁଁ ଦିଲ୍ଲୀ ଆସିଲି । ସେଠାରୁ ମୁଁ ସିଧା ନୂଆଦିଲ୍ଲୀ ରେଳ ଷ୍ଟେସନକୁ ଯାଇ ଅରକ୍ଷିତ ବଗିରେ ଚେନ୍ନାଇ ପାଇଁ ଟିକେଟ୍ କିଣିଦେଲି । ଦୁଇଦିନର କ୍ଳାନ୍ତିକର ଯାତ୍ରା ଥିଲା, ସେହି ସମୟ ଭିତରେ ମୁଁ ଖୁବ୍ କମ୍ ଶୋଇପାରିଲି । ଧନାଢ଼୍ୟ ଓ ପ୍ରଭାବଶାଳୀ ଲୋକମାନେ ଧାରଣା କରିପାରିବେ ନାହିଁ ଯେ ସାଧାରଣ ସ୍ତରର ନାଗରିକ କିପରି ଯାତ୍ରା କରନ୍ତି – ଏହା ଏକ ଦୁଃସ୍ୱପ୍ନ ।

× × ×

ଚେନ୍ନାଇ ଆସି ମୁଁ ବସନ୍ତବିହାରର ଦିନଚର୍ଯ୍ୟାରେ ମିଶିଗଲି । ପ୍ରଥମେ ଏହା ଦେଖାଇବା କଷ୍ଟକର ହେଲେ ମଧ୍ୟ ପରେ ମୁଁ ସେହି ଚିନ୍ତାରୁ ମୁକ୍ତ ହୋଇଗଲି ଯେ ମୁଁ କେବଳ ଋଷିକେଶ ଛୁଟି ବିତାଇବାକୁ ଯାଇଥିଲି, କିଛି ମହତ୍ତ୍ୱପୂର୍ଣ୍ଣ ସେଠାରେ ଘଟି ନ ଥିଲା ।

ସେହି ବର୍ଷ ଅକ୍ଟୋବରରେ ମୁଁ ଶୁଣିଲି ଯେ କୃଷ୍ଣମୂର୍ତ୍ତି ଅସୁସ୍ଥ ଥିଲେ; କିନ୍ତୁ ତେବେ ମଧ୍ୟ ସେ ଭାରତ ଆସୁଥିଲେ ।

ଆସିବା ପରେ ସେ କିଛି ବୌଦ୍ଧ ବିଦ୍ୱାନଙ୍କ ସହିତ ଚର୍ଚ୍ଚା କରିବାକୁ ବାରାଣସୀ ଗଲେ । ସେମାନଙ୍କ ମଧ୍ୟରୁ ଜଣେ ଥିଲେ ପଣ୍ଡିତ ଜଗନ୍ନାଥ ଉପାଧ୍ୟାୟ । ସେ ପରବର୍ତ୍ତୀ ସମୟରେ ମହାଯାନ ଗ୍ରନ୍ଥ 'କାଳଚକ୍ର ତନ୍ତ୍ର'ର ବିବେଚନାତ୍ମକ ଗ୍ରନ୍ଥ ପ୍ରକାଶ କଲେ । କାଳଚକ୍ର ତନ୍ତ୍ରକୁ ମୈତ୍ରେୟ ବୁଦ୍ଧଙ୍କର ଶିକ୍ଷା ବୋଲି କୁହାଯାଏ । ସେତେବେଳେ ତିବ୍ବତର ନିର୍ବାସିତ ପ୍ରଧାନ ସଂଦ୍ଧୁନ୍‌ଗ ରିଂପୋଚ ମଧ୍ୟ ଚର୍ଚ୍ଚାରେ ଅଂଶଗ୍ରହଣ କରିଥିବା ବିଦ୍ୱାନମାନଙ୍କ ମଧ୍ୟରୁ ଜଣେ ଥିଲେ । କୃଷ୍ଣମୂର୍ତ୍ତିଙ୍କ ପ୍ରଶ୍ନର କୌଣସି ସନ୍ତୋଷଜନକ ଉତ୍ତର ମିଳିପାରିଲା ନାହିଁ : ''କ'ଣ କିଛି ପବିତ୍ର, କିଛି ଶାଶ୍ୱତ ଅଛି... ଭାରତରେ, ଦୁନିଆର ଏହି ଭୂଖଣ୍ଡରେ ? ଯଦି ଅଛି ତେବେ ଦୁନିଆର ଏହି ସ୍ଥାନ ଏତେ ଭ୍ରଷ୍ଟ କାହିଁକି ?''

କିନ୍ତୁ ଏହା ସ୍ପଷ୍ଟ ଥିଲା ଯେ ସେ ଅସୁସ୍ଥ ଥିଲେ ଏବଂ ମୃତ୍ୟୁ ଉପରେ ଗଭୀରତାର ସହିତ ବିଚାର କରୁଥିଲେ ଏବଂ ଏହି ପ୍ରଶ୍ନ ଯେ, ମୃତ୍ୟୁ ପରେ କ'ଣ ହୁଏ, ତାହା ଉପରେ ମଧ୍ୟ ଗୁରୁତ୍ୱର ସହିତ ବିଚାର କରୁଥିଲେ । ଭାରତକୁ ଆସିବା ପୂର୍ବରୁ ସୁଇଜରଲ୍ୟାଣ୍ଡର ସାନେନରେ ସେ କହିଥିଲେ, ''ପର୍ବତ ମୋତେ ବିଦାୟ ଦେଉଛନ୍ତି ।'' ସାନେନର ଭାଷଣ ସମୟରେ ସେ କଠୋପନିଷଦର ନଚିକେତା ଉପାଖ୍ୟାନ ନିଜ ଢଙ୍ଗରେ କହିଥିଲେ, ସେହି ବାଳକର କଥା ଯେ ମୃତ୍ୟୁଗୃହକୁ ଯାଇଥିଲା ମୃତ୍ୟୁ ବିଷୟରେ ଅନେକ କଥାର ଉତ୍ତର ପାଇବାପାଇଁ ।

1929ରେ ସେ ଯାହା ଲେଖିଥିଲେ, ତାହା ପୁଣି ତାଙ୍କର ବିଚାରଧାରାର କେନ୍ଦ୍ରସ୍ଥାନରେ ଥିଲା । ଯେବେ କୃଷ୍ଣମୂର୍ତ୍ତି ଚାଲିଯିବେ, ଯାହା ହେଉଛି ନିଶ୍ଚିତ, ଆପଣମାନେ ମନକୁମନ ନିୟମ ପ୍ରଣୟନ କରିବାରେ ଲାଗିପଡ଼ିବେ, କାରଣ ବ୍ୟକ୍ତି କୃଷ୍ଣମୂର୍ତ୍ତି ସତ୍ୟକୁ ଆପଣଙ୍କ ସାମ୍ନାରେ ପ୍ରସ୍ତୁତ କରିଥିଲା । ତେଣୁ ଆପଣ ମନ୍ଦିର ତିଆରି କରିବେ, ପୁଣି ଆପଣ ଧର୍ମାନୁଷ୍ଠାନ ପ୍ରସ୍ତୁତ କରିବେ... ଯଦି ଆପଣ ମୋ ଉପରେ ପ୍ରତିଷ୍ଠାନ କରିବେ, ବ୍ୟକ୍ତି

କୃଷ୍ଣମୂର୍ତ୍ତି ଉପରେ, ତେବେ ଆପଣମାନେ ସେଥିରେ ଧନ୍ଦି ହୋଇଯିବେ । ଆପଣଙ୍କୁ ଅନ୍ୟ ଏକ ଗୁରୁର ଆବଶ୍ୟକତା ପଡ଼ିବ ଯେ ଆପଣଙ୍କୁ ସେହି ମନ୍ଦିରରୁ ବାହାର କରିବ । କିନ୍ତୁ ମାନବ ମସ୍ତିଷ୍କ ଏପରି ଯେ, ଆପଣ ସେହି ଶିକ୍ଷକ ଚାରିପଟେ ଆଉ ଗୋଟାଏ ମନ୍ଦିର ବନାଇବେ – ଏହିପରି ପ୍ରଥା ଚାଲୁ ରହିବ ।

ସେ ନିଜ ଉପରର ପ୍ରତିଷ୍ଠାନଗୁଡ଼ିକୁ ହଲାଇବାକୁ ଓ ଭାଙ୍ଗିବାକୁ ଭରପୂର ପ୍ରଯତ୍ନ କରୁଥିଲେ । କିନ୍ତୁ ତାଙ୍କ ବ୍ୟତୀତ କେହିହେଲେ ସେହି ମନ୍ଦିରଗୁଡ଼ିକୁ ଭାଙ୍ଗିବାକୁ ପ୍ରସ୍ତୁତ ନ ଥିଲେ । ସେହିସବୁ ମଧ୍ୟରେ ରହି ସେମାନେ ସୁରକ୍ଷିତ ଅନୁଭବ କରିବାରେ ଅଭ୍ୟସ୍ତ ହୋଇଯାଇଥିଲେ ।

ନଭେମ୍ବରରେ ସେ ଯେତେବେଳେ ଋଷିଭ୍ୟାଲିରେ ପହଞ୍ଚିଲେ, ଅତ୍ୟନ୍ତ କ୍ଳାନ୍ତ ହୋଇଯାଇଥିଲେ ଓ ତାଙ୍କର ସ୍ୱାସ୍ଥ୍ୟ ଖରାପରୁ ଖରାପ ଆଡ଼କୁ ଗତି କରୁଥିଲା । ତାଙ୍କର ଓଜନ-ହ୍ରାସ ଚିନ୍ତାଜନକ ଥିଲା । ଋଷିଭ୍ୟାଲିରେ ତାଙ୍କର ଭାଷଣକୁ ସେ ଅନ୍ତିମ ପ୍ରଦର୍ଶନ (ଲାଷ୍ଟ୍ ସୋ) ବୋଲି କହିଥିଲେ । ଋଷିଭ୍ୟାଲିର ବିଦ୍ୟାର୍ଥୀ ଓ ଶିକ୍ଷକମାନଙ୍କୁ ସେ ବାରମ୍ବାର କହୁଥିଲେ ଯେ କିପରି ଭାବରେ ସେହି ସ୍କୁଲ ଅନ୍ୟ ସ୍କୁଲମାନଙ୍କଠାରୁ ଭିନ୍ନ ଥିଲା ତା'ର ବଳିଷ୍ଠ ପ୍ରମାଣ ସେମାନେ ଦିଅନ୍ତୁ । ଲାଗୁଥିଲା ଉତ୍ତରଗୁଡ଼ିକ ତାଙ୍କୁ ସନ୍ତୁଷ୍ଟ କରିପାରୁ ନ ଥିଲା ।

ଡିସେମ୍ବର ବାଇଶ ତାରିଖ ଦିନ ସେ ଭାଷଣ ଦେବାପାଇଁ ଚେନ୍ନାଇ ଆସିଲେ । ତାଙ୍କର ଓଜନ ଆହୁରି କମିଯାଇଥାଏ ଓ ତାଙ୍କୁ ବହୁତ ଜର ଥାଏ । ସେ ଭାଷଣ ଦେଇପାରିବେ କି ନାହିଁ, ସେକଥା ଭାବି ଚିନ୍ତିତ ଥିଲେ । ଅନ୍ତରଙ୍ଗ ସାଙ୍ଗସାଥୀମାନେ ଜାଣିଯାଇଥିଲେ ସେ ଭୀଷଣ ଅସୁସ୍ଥ ଥିଲେ ଓ ମଝିରେ ମଝିରେ ସେ ନିଜେ ଦେଉଥିବା ସଙ୍କେତରୁ ଏହି ଚିତ୍ର ସମ୍ମୁଖକୁ ଆସୁଥିଲା ଯେ, ତାଙ୍କର ଜୀବନ ସମାପ୍ତ ହୋଇ ଆସୁଛି ।

ପୂର୍ବ ସଂସ୍କାରଦ୍ୱାରା ପ୍ରଭାବିତ, କୁସଂସ୍କାରଗ୍ରସ୍ତ ଓ ସ୍ୱାର୍ଥପର ମଣିଷମାନଙ୍କର ମର୍ମରେ ପ୍ରବେଶ କରିବାକୁ ସାଧାରଣ ସଭାମାନଙ୍କରେ ଦେଉଥିବା ଭାଷଣପାଇଁ ତାଙ୍କର ପ୍ରଚଣ୍ଡ ଶକ୍ତିର ଆବଶ୍ୟକ ହେଉଥିଲା । ସେହି ମଣିଷମାନଙ୍କ ବିଷୟରେ ସେ ଥରେ କହିଥିଲେ, "ହେ ଭଗବାନ ! କି ପିଢ଼ି !" ଆବଶ୍ୟକ ହେଉଥିବା ଶକ୍ତି ବ୍ୟତୀତ ତାଙ୍କୁ ନିଜ ପ୍ରତିଷ୍ଠାନ ସହିତ ସମ୍ବନ୍ଧିତ ଲୋକମାନଙ୍କ ମଧ୍ୟରେ ଥିବା ଆତ୍ମ-ସନ୍ତୁଷ୍ଟ ଓ ମିଥ୍ୟାଭିମାନୀଙ୍କୁ ବଦଳାଇବାର କଠିନ କାର୍ଯ୍ୟର ସାମ୍ନା କରିବାର ଥିଲା । ପରଦା ପଛପଟେ ଉତ୍ତରାଧିକାରୀମାନଙ୍କପାଇଁ ଦାବି ଆରମ୍ଭ ହୋଇଯାଇଥାଏ ।

ଫାଉଣ୍ଡେସନକୁ ବିସର୍ଜନ ଦେବାର ଯୁଦ୍ଧରେ ହାରିବାର କାରଣ ଥିଲା, ଜଣେ ବି ସଦସ୍ୟ ଏହାର ସମର୍ଥନ କରୁ ନ ଥିଲେ । ସମସ୍ତେ ନିଜ ନିଜ ପଦରେ ସୁରକ୍ଷିତ ଥିଲେ – ସେ ନିଜକୁ ଏହି କଥା କହି ଫାଉଣ୍ଡେସନରୁ ଅଲଗା କରିନେଲେ ଯେ, ସେ କୌଣସି ଗୋଟିଏ ହେଲେ ପ୍ରତିଷ୍ଠାନର ସଦସ୍ୟ ନ ଥିଲେ । ମୁଁ ସେତେବେଳେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ସଦସ୍ୟ ନ ଥିଲେ ମଧ୍ୟ ସ୍ୱୟଂ କୃଷ୍ଣମୂର୍ତ୍ତି ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ହାତରେ କହିପଠାଇଥିଲେ ଯେ ମୁଁ ଯେପରି ତାଙ୍କର ଅନ୍ତିମ ସଭାରେ ଉପସ୍ଥିତ ରହିବି; ସେହି ବିଶେଷ ସଭାରେ ସେ ନିଜକୁ ତାଙ୍କ ନାମରେ ଚଳୁଥିବା ସବୁ ସଂସ୍ଥାରୁ ନିଜକୁ ବିଛିନ୍ନ କରିଦେଇଥିଲେ । ମୋର ତିନିବର୍ଷ ତଳର କଥା ମନେ ପଡ଼ିଲା, ଯେତେବେଳେ ପ୍ରଥମଥର ମୋତେ ତାଙ୍କୁ ଏକୁଟିଆ ଭେଟିବାର ସୁଯୋଗ ଦିଆଯାଇଥିଲା । ସେ କହିଥିଲେ, ‘‘ଯଦି ତୁମେ କିଛିଦିନ ଏଠାରେ ରହିବ ତେବେ ଦେଖିବ ଯେ ମୁଁ ବୋଧହୁଏ ଏହାକୁ ମଧ୍ୟ ଛାଡ଼ିଦେବି, ଯେତେବେଳେ ସହିବା ବା ବରଦାସ୍ତ କରିବାର ବାହାରକୁ ଚାଲିଯିବ ।’’

କାଳେ କେହି ନିଜକୁ ଉତ୍ତରାଧିକାରୀ ସ୍ଥାପିତ କରିଦେବ, ସେଥିପାଇଁ ସେ ଗଭୀର ଭାବରେ ଚିନ୍ତାଗ୍ରସ୍ତ ଥିଲେ । ତେଣୁ ସେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ନିୟମାବଳୀରେ ଏହି ବାକ୍ୟ ଯୋଡ଼ି ଦେଲେ – କୌଣସି ପରିସ୍ଥିତିରେ ମଧ୍ୟ ଫାଉଣ୍ଡେସନ ବା ଏହାଦ୍ୱାରା ସଞ୍ଚାଳିତ କୌଣସି ସଂସ୍ଥା କିମ୍ବା ତାହାର ସଦସ୍ୟ ନିଜକୁ କୃଷ୍ଣମୂର୍ତ୍ତିଙ୍କ ମତବାଦର ବିଶେଷଜ୍ଞ କରି ପ୍ରତିଷ୍ଠିତ କରିପାରିବ ନାହିଁ ।

ଏହି ସମୟରେ ପରିସ୍ଥିତି ମୋତେ କୃଷ୍ଣମୂର୍ତ୍ତିଙ୍କ ନିକଟକୁ ନେଇଆସିଲା । କାରଣ କୃଷ୍ଣମୂର୍ତ୍ତି ମୁଖ୍ୟାଳୟର ପୂର୍ବ କାର୍ଯ୍ୟନିର୍ବାହକ ଏବଂ ପୁରାତନ ସଚିବଙ୍କୁ ହଟାଇବାରେ ସେ ସଫଳ ହୋଇଥିଲେ । ନୂଆ ପ୍ରତିଦିନିଆ ପ୍ରଶାସନ ଚଳାଇବାପାଇଁ ସେ ମୋ ଉପରେ ବେଶ ନିର୍ଭର କରୁଥିଲେ । କୃଷ୍ଣମୂର୍ତ୍ତିଙ୍କ ଦ୍ୱାରା ନିଯୁକ୍ତ ନୂଆ ସଚିବ ରାଜସ୍ଥାନର ଅବସରପ୍ରାପ୍ତ ପୁଲିସ ଆଇ.ଜି. ଶ୍ରୀ ମହେଶ ସକ୍‌ସେନା ସେହି ସାଙ୍ଗେ ସାଙ୍ଗେ ଆସିଥିଲେ ଏବଂ ତାଙ୍କର ସାହାଯ୍ୟର ବହୁତ ଆବଶ୍ୟକତା ଥିଲା । କୃଷ୍ଣମୂର୍ତ୍ତି ନିଜେ ମୋତେ ଭାରି ଭଲ ପାଉଥିଲେ । ତାଙ୍କର ଶୋଇବାଘରକୁ ଯିବାଆସିବା ପାଇଁ ମୋର ଅନୁମତିର ଆବଶ୍ୟକତା ପଡୁ ନ ଥିଲା । ପ୍ରକୃତରେ ସେ ପୁରୁଣା ବ୍ୟବସ୍ଥାର ଲୋକମାନଙ୍କୁ ନିଜର ଆଖପାଖରେ ଦେଖିବାକୁ ଚାହୁଁ ନ ଥିଲେ । ସେ ମୋତେ କହିଲେ ଯେ, ଆଗକୁ ଯେଉଁସବୁ ପ୍ରବଚନପାଇଁ ସେ ଯିବେ, ମୁଁ ତାଙ୍କର କୋଠରିରୁ ତାଙ୍କ ସହିତ ମଞ୍ଚ ପର୍ଯ୍ୟନ୍ତ ଯିବି ଓ ପ୍ରବଚନ ଆରମ୍ଭ ପୂର୍ବରୁ ମୁଁ ମାଇକ୍ରୋଫୋନର ଲେପଲ ତାଙ୍କ ଉପରେ ଲଗାଇବି ଓ ପ୍ରବଚନ ଶେଷ ହେବା ପରେ ତାକୁ ବାହାର କରିଦେବି ।

ତାଙ୍କର ଓଜନ କମିବାରେ ଲାଗିଲା ଏବଂ ଜର ବଢ଼ିବାକୁ ଲାଗିଲା । ଡାକ୍ତର ଠିକ୍‌ରେ କାରଣ କହିପାରିଲେ ନାହିଁ । ବେଳେ ବେଳେ ଭାଷଣ ସମୟରେ ତାଙ୍କ ଦେହରେ 104 ଡିଗ୍ରୀ ତାତି ରହୁଥିଲା । ତାହାସତ୍ତ୍ୱେ, କହିବାର ସ୍ୱଷ୍ଟତାରେ ସାମାନ୍ୟ କମ୍ ହେବା ବ୍ୟତୀତ (ଯାହାକୁ ଲୋକମାନେ ପ୍ରାୟ ଧରିପାରୁ ନ ଥିଲେ) ସେ ଭାଷଣ ଦେବା ସମୟରେ ସବୁ ସମୟ ପରି ପ୍ରଭାବଶାଳୀ ଓ ତୀକ୍ଷ୍ଣ ଥିଲେ ।

ଅନ୍ତିମ ଭାଷଣ ଥିଲା 1986 ମସିହା ଜାନୁଆରି 4 ତାରିଖ ଦିନ । ସେହି ବାର୍ତ୍ତାର ଆରମ୍ଭ ଥିଲା ଏହିପରି – ‘‘ଆପଣ କ’ଣ ଦୟାକରି ଯାହା କହୁଛି ସେଥିରେ ଭାଗ ନେବାକୁ ଚାହିଁବେ ?’’ ବାର୍ତ୍ତାର ଶେଷ ଥିଲା – ‘‘ଏହା ଶେଷ କଥା, ଆପଣମାନେ କିଛି ସମୟ ଶାନ୍ତିରେ ଏକାଠି ବସିବେ କି ? ଠିକ୍ ଅଛି ସାର୍‌ମାନେ, ଧୀରସ୍ଥିର ଭାବରେ କିଛି ସମୟ ବସନ୍ତୁ ।’’ ସେଦିନ ରାତିରେ ସେ ପ୍ରଳାପ କରୁଥିଲେ; କିନ୍ତୁ ପରଦିନ ସକାଳେ ମୁଁ ଦେଖିଲି ସେ ଶାନ୍ତ ଭାବରେ ତାଙ୍କର କୋଠରିରେ ବସିଥିଲେ ଓ ଟେନିସନଙ୍କର ଗୋଟିଏ କବିତା ଆବୃତ୍ତି କରୁଥିଲେ; ଏପରି ଭାବରେ ଆବୃତ୍ତି କରୁଥିଲେ ଲାଗୁଥିଲା ଯେପରି ସଂସ୍କୃତରେ ଉଚ୍ଚାରଣ କରୁଛନ୍ତି !

ମୋତେ ବେଶ ଭଲ ଭାବରେ ଜଣାପଡ଼ିଲା ଯେ, ତାଙ୍କର ଆଉ ବେଶିଦିନ ନାହିଁ । ତାଙ୍କ କୋଠରିରେ କେତେଗୁଡ଼ିଏ ଜିନିଷ ଥିଲା ଯାହା ଭିତରେ ଗୋଟାଏ ପୁରୁଣା ଚଉକି ମଧ୍ୟ ଥିଲା, ଯେଉଁଗୁଡ଼ିକର ଯତ୍ନର ଆବଶ୍ୟକତା ଥିଲା । ଯେତେବେଳେ ମୁଁ ତାଙ୍କୁ କହିଲି ଯେ, ଯେତେବେଳେ ଆରଥର ସେ ଫେରିଆସିବେ, ସେତେବେଳକୁ ସେଗୁଡ଼ିକ ପ୍ରସ୍ତୁତ ହୋଇ ଯାଇଥିବ, ସେ ତାଙ୍କର ଦୁର୍ବଳ ହାତକୁ ମୋ କାନ୍ଧରେ ପକାଇ ମୋର ଆଖି ଭିତରକୁ ଚାହିଁ କହିଲେ, ‘‘ସାର୍ ସର୍କସର ଖେଳ ଶେଷ ହୋଇଯାଇଛି । ମୁଁ ଆଉ ଫେରିବି ନାହିଁ ।’’ ମୋର ଆଖିକୁ ଲୁହ ଆସିଗଲା । ପାହାଚ ଓହ୍ଲାଉଥିବା ସମୟରେ ମୁଁ ରାଧିକା ହର୍ଜବର୍ଗରଙ୍କୁ ପାହାଚ ଚଢୁଥିବାର ଦେଖିଲି । କେମିତି କେଜାଣି ମୋତେ ଲାଗିଲା, ଯେମିତି ସେ ମଧ୍ୟ ଜାଣିଥିଲେ ।

ସେହି ରାତିରେ ସେ ଓଜାୟ ଉଦ୍ଦେଶ୍ୟରେ ଯାତ୍ରା କଲେ । ମୁଁ ବିମାନ ବନ୍ଦରରେ ତାଙ୍କୁ ବିଦାୟ ଜଣାଇବାପାଇଁ ଉପସ୍ଥିତ ଥିଲି । ତାଙ୍କର ଅସୁସ୍ଥତାର ଗଭୀରତା ହେତୁ ବିମାନ ବନ୍ଦର କର୍ତ୍ତୃପକ୍ଷ ତାଙ୍କୁ ଉଡ଼ାଜାହାଜ ପର୍ଯ୍ୟନ୍ତ କାର୍‌ରେ ଯିବାର ଅନୁମତି ଦେଇଥିଲେ । ସେତିକିବେଳେ ମୁଁ ତାଙ୍କୁ ଶେଷଥର ପାଇଁ ଦେଖିଥିଲି । ଯେତେବେଳେ କାର୍ ଚାଲିବା

ଆରମ୍ଭ କଲା ଓ ଆମେ ଉପସ୍ଥିତ ଥିବା ତିନିଜଣ ହାତଯୋଡ଼ି ନମସ୍କାର କଲୁ, ସେ ସବୁବେଳ ପରି ଅତ୍ୟନ୍ତ ଶାଳୀନତାର ସହିତ ହାତଯୋଡ଼ି ପ୍ରତ୍ୟୁତ୍ତର ଦେଲେ ।

ପ୍ରାୟ ମାସେ ଖଣ୍ଡେ ପରେ 1986 ମସିହା ଫେବୃଆରି 17 ତାରିଖ ଦିନ ତାଙ୍କର ଓଜୟରେ ଦେହାନ୍ତ ହୋଇଗଲା । ଡାକ୍ତରମାନେ ପ୍ୟାନ୍‌କ୍ରିୟସରେ କ୍ୟାନସର ବୋଲି ଚିହ୍ନଟ କରିଥିଲେ । ମୃତ୍ୟୁର କିଛିଦିନ ପୂର୍ବରୁ ସେ ଅନୁରୋଧ କରିଥିଲେ (ରେକର୍ଡ ହୋଇଥିବା ସ୍ୱରରେ) ଯେ, ତାଙ୍କର ଶରୀରକୁ ନେଇ କୌଣସି ବିସ୍ତୃତ କର୍ମକାଣ୍ଡ ଯେପରି କରା ନ ଯିବ ଏବଂ ତାଙ୍କୁ ବିଦ୍ୟୁତ୍-ଶବଗୃହକୁ ପଠାଇ ଦିଆଯିବ । ମୋର ସେହି ଟେପ୍ ହୋଇଥିବା କଥାର ବିଷୟବସ୍ତୁ କହିବାର ସ୍ୱାଧୀନତା ନାହିଁ, କାରଣ ତାହା ଜନସାଧାରଣଙ୍କ ପାଇଁ ନ ଥିଲା; କିନ୍ତୁ ମୁଁ ଏକଥା କହିବାର ଲୋଭ ସମ୍ବରଣ କରିପାରୁ ନାହିଁ ଯେ କୃଷ୍ଣମୂର୍ତ୍ତି ସେହି ଟେପ୍‌ରେ ସ୍ୱୟଂ କହିଥିଲେ – ତାଙ୍କର ଶରୀର ମାଧ୍ୟମରେ କେଉଁ ଆଶ୍ଚର୍ଯ୍ୟ ଶକ୍ତିଗୁଡ଼ିକ କାର୍ଯ୍ୟ କରୁଥିଲେ ସେକଥା କାହାରିକୁ ଜଣା ନାହିଁ ।



#  ବିବାହ ଓ ନୀଳବାଗକୁ ସ୍ଥାନାନ୍ତରଣ

କୃଷ୍ଣମୂର୍ତ୍ତିଙ୍କ ଦେହାନ୍ତ ପରେ ନୂତନ ବ୍ୟବସ୍ଥା (ଯେଉଁଥିରେ ଶ୍ରୀ ମହେଶ ସକ୍‌ସେନା ସଚିବ ଥିଲେ) କିଛି ସମୟ ପର୍ଯ୍ୟନ୍ତ ସୁଚାରୁ ରୂପରେ ଚାଲିଲା । ଅବସରପ୍ରାପ୍ତ ପୁଲିସ ଅଧିକାରୀ ହୋଇଥିବାରୁ ତାଙ୍କର ଅତି ଉତ୍ତମ ପ୍ରଶାସନିକ କ୍ଷମତା ଥିଲା । ସେ ମୋତେ ତାଙ୍କ ସହିତ ରଖିଲେ ଓ କିଛି ଲୋକଙ୍କର ବିରୋଧ ସତ୍ତ୍ୱେ ସଂଯୁକ୍ତ ସଚିବ ପଦରେ ନିଯୁକ୍ତ କରିଦେଲେ । କୃଷ୍ଣମୂର୍ତ୍ତିଙ୍କ ମୃତ୍ୟୁ ପରେ ହୋଇଥିବା ପ୍ରବନ୍ଧକ ସମିତିର ବୈଠକରେ ମୋତେ ପ୍ରବନ୍ଧକ ସମିତିର ସଦସ୍ୟ ରୂପରେ ମଧ ବଛାଗଲା ।

କିନ୍ତୁ କେତେଗୁଡ଼ିଏ କାରଣ ହେତୁ ଶ୍ରୀ ସକ୍‌ସେନା କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ପରିବେଶ ସହିତ ଖାପ ଖାଉ ନ ଥିଲେ । ସେ ପରମ୍ପରାଗତ ବାତାବରଣରେ ଉତ୍ପନ୍ନ ହୋଇଥିଲେ । ସେ ଥିଲେ ବସନ୍ତ ବିହାରରେ ପ୍ରଥମ ଥରପାଇଁ ଲମ୍ବା ବାଳ ରଖିଥିବା, ଖଇରିଆ ରଙ୍ଗର ଆଣ୍ଠୁପର୍ଯ୍ୟନ୍ତ ଲମ୍ବିଥିବା ଗାଧୁଆ ପୋଷାକ ପରି ପୋଷାକ ପିନ୍ଧିଥିବା ଜଣେ ବ୍ୟକ୍ତି ଯେ ଜଣେ ପୋଲିସ ପରି ପହରାଦାରୀ କରୁଥିଲେ । ବସନ୍ତ ବିହାରର ନିବାସୀମାନେ ସାଧାରଣତଃ 'ହ୍ୟାଲୋ ସାର୍' କିମ୍ବା 'ଗୁଡ୍ ମର୍ଣ୍ଣିଂ' ସହିତ ପରିଚିତ ଥିଲେ । ତାହା ପରମ୍ପରାଗତ 'ନମସ୍ତେ'କୁ ବଦଳାଇ ଦିଆଗଲା ।

ଖୁବ୍ ଶୀଘ୍ର ହିଁ ମୋତେ କଥାବାର୍ତ୍ତା କରିବା ସମୟରେ ସେ ଜଣାଇଲେ ଯେ ସବୁ ଠିକ୍‌ଠାକ୍ ଚାଲି ନାହିଁ । ସେ ସବୁ କାର୍ଯ୍ୟକଳାପରେ ନିୟମ ଏବଂ ସୁବ୍ୟବସ୍ଥା ଏବଂ ଯାହାଙ୍କୁ ସେ ଅଧୀନସ୍ଥ ବୋଲି ଭାବୁଥିଲେ, ସେମାନଙ୍କଠାରୁ ଆଜ୍ଞାକାରିତାରେ ଅଭ୍ୟସ୍ତ ଥିଲେ । ବସନ୍ତ ବିହାରର ବିଚାରଧାରା ଏବଂ କାର୍ଯ୍ୟକଳାପରେ ତଥାକଥିତ ସ୍ୱତନ୍ତ୍ରତା ତାଙ୍କୁ କଷ୍ଟ ଦେଲା । ତାହା ସହିତ ସେ ବେଳେବେଳେ ଅବସାଦଗ୍ରସ୍ତ ହୋଇପଡୁଥିଲେ ଏବଂ ତାଙ୍କର ଅନ୍ୟମାନଙ୍କୁ ପ୍ରଭାବିତ କରିବା ପ୍ରକୃତି ଦେଖି ମୋର ସନ୍ଦେହ ହୋଇଥିଲା ଯେ ତାଙ୍କର ବ୍ୟକ୍ତିତ୍ୱରେ କିଛି ବିକାର ରହିଛି । ସେ ଯାହା ବି ହେଉ, ଏହି ସବୁ ସମସ୍ୟା ତାଙ୍କୁ କାବୁ କରିନେଲା ଓ ସେ ଇସ୍ତଫା ଦେଇ ବନାରସ ଚାଲିଗଲେ ।

କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ସଦସ୍ୟ ରୂପରେ ବଛାହେବାର କିଛି ମାସ ପରେ କିଛି ଏମିତି ଘଟଣା ଘଟିଲା, ଯାହା ମୋ ଜୀବନର ଏକ ନୂଆ ଅଧ୍ୟାୟ ଖୋଲିଦେଲା । ପଚିଶ ବର୍ଷ ବୟସର ଜଣେ ସୁନ୍ଦରୀ ମହିଳା ବସନ୍ତ ବିହାରକୁ ଆସି ମୋତେ ଦେଖା କଲେ । ତାଙ୍କର ନାମ ସୁନନ୍ଦା ସନଦୀ ଥିଲା ଓ କେତେବର୍ଷ ଧରି ସେ ଋଷିଭ୍ୟାଲି ସ୍କୁଲରେ ଇଂରେଜୀ ଅଧ୍ୟାପିକା ଥିଲେ । ସେ ଇଂରେଜୀରେ ଏମ୍.ଏ. ପାସ୍ କରିଥିଲେ ଏବଂ ଚେନ୍ନାଇରେ ଅଧ୍ୟାପନା ବ୍ୟତୀତ ଅନ୍ୟ କୌଣସି କାମ ମିଳିବାର ସମ୍ଭାବନା ବିଷୟରେ ସନ୍ଧାନ ନେଉଥିଲେ । ତାଙ୍କର ପିତା ସୈନ୍ୟ ବିଭାଗରୁ ଅବସର ନେବା ପରେ ତାଙ୍କର ମାତାଙ୍କ ସହିତ ଚେନ୍ନାଇର ଏକ ଉପନଗର ପୁରଶାବଲ୍କମ୍‌ରେ ରହୁଥିଲେ । ପ୍ରକୃତରେ ଔପଚାରିକ ଭାବରେ ଦେଖାସାକ୍ଷାତ ନ ହୋଇଥିଲେ ମଧ୍ୟ ମୁଁ ତାଙ୍କୁ ଋଷି ଭ୍ୟାଲିରେ ଭେଟିଥିଲି । ତାଙ୍କର ଜଣେ ପୂର୍ବ ବିଦ୍ୟାର୍ଥୀଙ୍କଠାରୁ ଶୁଣିଥିଲି ଯେ ସୁନନ୍ଦା ଜଣେ ଉଚ୍ଚଦରର ଶିକ୍ଷିକା ଓ ଉତ୍ତମ ମଣିଷ ଥିଲେ ।

ସେହି ସମୟରେ ବସନ୍ତ ବିହାରରୁ କୃଷ୍ଣମୂର୍ତ୍ତି ବୁଲେଟିନ ପ୍ରକାଶନ ସହିତ ସମ୍ପର୍କିତ କାମର ସମନ୍ୱୟ ମୋର ଦାୟିତ୍ୱର ଅଂଶ ବିଶେଷ ଥିଲା । ମୁଁ ଭାବିଲି ସାହିତ୍ୟର ଛାତ୍ରୀ ହୋଇଥିବାରୁ ସେ ବୁଲେଟିନର ପ୍ରକାଶନରେ ସହାୟତା କରିପାରିବେ ଏବଂ ମୁଁ ତାଙ୍କୁ ଏହି କାମ ଦେଖିବାକୁ କହିଲି । ଶ୍ରୀ ସକ୍‌ସେନା ସାଙ୍ଗେ ସାଙ୍ଗେ ସେଥିପାଇଁ ରାଜି ହୋଇଗଲେ । ପ୍ରଥମେ, ସପ୍ତାହର ଅନ୍ୟ ଦିନମାନଙ୍କରେ ତାଙ୍କୁ ମୁଖ୍ୟାଳୟରେ ରହିବାକୁ ପଡୁଥିଲା ଏବଂ ସପ୍ତାହ ଶେଷରେ ସେ ନିଜର ଘରକୁ ଯାଇ ପାରୁଥିଲେ । ଏହି ବ୍ୟବସ୍ଥା ତାଙ୍କ ପାଇଁ ଉପଯୁକ୍ତ ଥିଲା ।

ନିଜର ଯୁବାବସ୍ଥାରେ କିଛି ନାରୀଙ୍କ ସହିତ ମୋର ସମ୍ବନ୍ଧ ଥିଲା, ଯଦିଓ ଏହା ଅତି ଅନ୍ତରଙ୍ଗ ବା ଶାରୀରିକ ନ ଥିଲା; କିନ୍ତୁ ମୁଁ ସେସବୁ ପ୍ରତି ବିଶେଷ ମନ ଦେଇ ନ ଥିଲି । ମୋତେ ପଇଁତିରିଶ ବର୍ଷ ହୋଇଯାଇଥାଏ ଓ ମୁଁ ସାମାଜିକ ସମ୍ବନ୍ଧ ଇତ୍ୟାଦିରେ ପଶିବାକୁ ଚାହୁଁ ନ ଥିଲି । କିନ୍ତୁ ବାବାଜୀଙ୍କ କଥା ଯେ, ମୋର ଚେତନାର ବିକାଶପାଇଁ ବିବାହ ନିହାତି ଆବଶ୍ୟକ, ଏହା ବାରମ୍ବାର ମୋର ମନକୁ ଆସୁଥିଲା । ଏହି ଝିଅଟି ବିଶ୍ୱସ୍ତ, ସ୍ନେହୀ, ସୁନ୍ଦର ଥିଲେ ଓ ଏକ ଭଲ ପରିବାରରୁ ଆସିଥିଲେ ।

ଯେତେବେଳେ ମୁଁ ଥରେ କୃଷ୍ଣମୂର୍ତ୍ତିଙ୍କ ସହିତ ବାହାଘର ବିଷୟରେ ଆଲୋଚନା କରିଥିଲି, ସେ ସେଣ୍ଟ୍ ପଲଙ୍କର ଉଦାହରଣ ଦେଇ କହିଥିଲେ, ‘‘ଜଳିବାଠାରୁ ଭଲ ହେଉଛି ବିବାହ ।’’ ମୁଁ ପ୍ରେମର ଅଗ୍ନିରେ ଦଗ୍ଧ ହେଉନଥିଲି ସତ; କିନ୍ତୁ କିଛି ଦିନ

ଏକାଠି କାମ କଲାପରେ ସୁନନ୍ଦାଙ୍କୁ ଓ ମୋତେ ଲାଗିଲା ଯେପରି ଆମ ଦୁହିଁଙ୍କ ମଧ୍ୟରେ ପ୍ରେମର ହାଲ୍‌କା ପ୍ରବାହ ବହୁଛି । ଆମେ ବିବାହ କରିବାକୁ ସ୍ଥିର କଲୁ; କିନ୍ତୁ ତାହା ଏତେ ସହଜ ନ ଥିଲା ।

ପ୍ରଥମ କଥା ଥିଲା ଯେ ସେ ଉଡୁପ୍ପୀର ଏକ ସାରସ୍ୱତ ବ୍ରାହ୍ମଣ ପରିବାରର ଥିଲେ (ତାଙ୍କର ମା' ଥିଲେ ଧାରୱାଡ଼ର) ଆଉ ମୁଁ, କେବଳ ଅବ୍ରାହ୍ମଣ ନ ଥିଲି, ଜନ୍ମରୁ ଅଣହିନ୍ଦୁ ଥିଲି । ମୋତେ ଖୁବ୍ କମ ଦରମା ମିଳୁଥିଲା ଓ ମୋର ନିଜର ଘର ନ ଥିଲା । କିନ୍ତୁ ଆମେ ଦୁହେଁ ମିଶି ସମସ୍ୟାର ସମାଧାନ ଖୋଜିନେଲୁ । ଆମେ ତାଙ୍କର ବାପା ମା'ଙ୍କର ସର୍ତ୍ତ (ଯେ ବାହାଘର ହିନ୍ଦୁ ବୈଦିକ ପଦ୍ଧତିରେ ହେବ) ମାନିନେଲୁ । ମୁଁ ଏଥିପାଇଁ ସୁନନ୍ଦାଙ୍କୁ ବହୁତ ପ୍ରଶଂସା କରେ, କାରଣ ମୋ ପରି ଅଜଣା ଲୋକ, ଯାହାକୁ ସେ ଅଳ୍ପ କିଛି ସମୟ ଜାଣିଥିଲେ, ତାହା ଉପରେ ପୂରା ଭରସା କଲେ । କେବଳ ଏତିକି ନୁହେଁ, ସେ ଯେଉଁ ପଦକ୍ଷେପ ନେଲେ ସେଥିପାଇଁ ସେହି ପରିସ୍ଥିତିରେ ଅନୁକରଣୀୟ ସାହସର ଆବଶ୍ୟକତା ଥିଲା । ମୁଁ ଏକଥା ସ୍ୱୀକାର କରୁଛି ଯେ, ତାଙ୍କର ମାତା-ପିତାଙ୍କର ଉଦାର ମନୋବୃତ୍ତି ବିନା ଏହା ସମ୍ଭବ ହୋଇ ନ ଥା'ନ୍ତା ।

ଯେତେବେଳେ ମୁଁ ଏସବୁ କଥା ଲେଖୁଛି, ସେତେବେଳେ ଆମର ବିବାହକୁ ତେଇଶବର୍ଷ ବୟସ ହୋଇଗଲାଣି ଓ ଆମର ଦୁଇଟି ବଡ଼ ବଡ଼ ପିଲା ମଧ୍ୟ ଅଛନ୍ତି । ମୁଁ କହିବି ନାହିଁ ଯେ ଆମର କେବେ ମତଭେଦ ହୋଇ ନାହିଁ; କିନ୍ତୁ ସବୁକିଛିକୁ ନେଇ ଆମର ଏକ ସୁଗଠିତ ପରିବାର । ଆମେ ସାଥୀ ହୋଇ ସମସ୍ୟାଗୁଡ଼ିକର ସମାଧାନ କରିଛୁ ଏବଂ ପରସ୍ପର ଭିତରେ ଆମର ଗଭୀର ପ୍ରେମ ରହିଛି ।

ଏଥର ବସନ୍ତ ବିହାରକୁ ଫେରିବା । ଆମେ ଯୁବାବସ୍ଥାରେ ଉତ୍ସାହୀ ଯୁଗଳ ଥିଲୁ । ବିବାହ ପରେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ସୁନ୍ଦର ମୁଖ୍ୟାଳୟରେ ରହିଲୁ; କିନ୍ତୁ ଖୁବ୍ ଶୀଘ୍ର ଆମେ ଜାଣିଗଲୁ ଯେ, କେଉଁଠାରେ କିଛି ଗଣ୍ଡଗୋଳ ରହିଛି । ପ୍ରଥମ କଥା ହେଲା ଶ୍ରୀ ସକ୍‌ସେନାଙ୍କର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ଦିନକୁ ଦିନ ଖରାପ ହୋଇ ଚାଲିଥିଲା ଏବଂ ସେ ନିଜର ଆପଣାର ଲୋକଙ୍କୁ ଅଧିକରୁ ଅଧିକ ସନ୍ଦେହ କରିବା ଆରମ୍ଭ କରିଦେଇଥିଲେ । ମୋର ବ୍ୟକ୍ତିଗତ ମତ ଯେ, ତାଙ୍କର ଅବସ୍ଥା ଖରାପ ହେବାର କାରଣ ଥିଲା ଯେ ତାଙ୍କର ପରମ୍ପରା-ପ୍ରଭାବିତ ମସ୍ତିଷ୍କ କୃଷ୍ଣମୂର୍ତ୍ତିଙ୍କର ବିଚାରଧାରା ସହିତ ଖାପ ଖାଇଲା ନାହିଁ । ସେ ମୋର ମଧ୍ୟ ବିରୁଦ୍ଧାଚରଣ କରିବାକୁ ଲାଗିଲେ, କାରଣ ସେ ସୁନନ୍ଦାଙ୍କ ସହିତ ମୋର ବିବାହର ସପକ୍ଷରେ ନ ଥିଲେ କିମ୍ବା ମୋର ବାହାଘରର ସପକ୍ଷରେ ହିଁ ନ ଥିଲେ ।

ଏହା ମଧ୍ୟରେ ସୁନନ୍ଦା ସନ୍ତାନ ସମ୍ଭବା ହେଲେ ଓ ଆମେ ଭାବିଲୁ, କ'ଣ ବସନ୍ତ ବିହାର ଶିଶୁପାଳନପାଇଁ ଉପଯୁକ୍ତ ସ୍ଥାନ ଥିଲା ? ସେତିକିବେଳେ ସେଠାରୁ ବାହାରି ଆସିବାର ଏକ ଈଶ୍ୱର ପ୍ରଦତ୍ତ ଅବସର ଆସିଲା । ଦିନେ ରାତିରେ ବାବାଜୀ ସ୍ୱପ୍ନରେ ଆମକୁ ଆଶୀର୍ବାଦ ଦେଲେ ଓ କହିଲେ ଯେ, ଏଥର ସେଠାରୁ ଚାଲିଯିବାର ସମୟ ଆସିଯାଇଛି । ପରଦିନ ସକାଳେ ଆମେ ଜାଣିଲୁ, ଋଷିଭ୍ୟାଲି ସ୍କୁଲ ନୀଲବାଗ ସ୍କୁଲଟିକୁ କିଣିବାକୁ ଯାଉଛି ଏବଂ ଏପରି ଲୋକର ସନ୍ଧାନ କରାଯାଉଛି ଯେଉଁମାନେ ସେଠାରେ ରହି ସ୍କୁଲଟିକୁ ଚଳାଇବେ ।

କର୍ଣ୍ଣାଟକର କୋଲାର ଜିଲାରେ ରୟାଲପାଡ଼ ନାମକ ସ୍ଥାନର ନିକଟରେ ଦୂର ଗ୍ରାମୀଣ ଇଲାକାରେ ସାଢ଼େ ସାତ ଏକରର ସୁନ୍ଦର ବୃକ୍ଷରାଜି ଶୋଭିତ ସ୍ଥାନରେ ନୀଲବାଗ ସ୍କୁଲ ଥିଲା । ଏହା ଆନ୍ଧ୍ରପ୍ରଦେଶର ସୀମା ପାଖରେ ଥିଲା । ସେଠାରୁ ଆନ୍ଧ୍ରପ୍ରଦେଶସ୍ଥିତ ଋଷିଭ୍ୟାଲି ଯିବାକୁ ମାତ୍ର ଦେଢ଼ଘଣ୍ଟା ଲାଗୁଥିଲା । ପ୍ରଥମେ ସ୍କଟଲ୍ୟାଣ୍ଡବାସୀ ଡେଭିଡ୍ ହର୍ଷବରୋ ଏହି ଜମିକୁ କିଣିଥିଲେ ଏବଂ ମାଟିକାନ୍ଥ ଥିବା ଏକ ଇଂରେଜ ଶୈଳୀର କୁଡ଼ିଆ ପ୍ରସ୍ତୁତ କରି ସେଠାରେ ରହୁଥିଲେ । ସେ ଖୁବ୍ ଭଲ ସଂସ୍କୃତ ଜାଣିଥିଲେ । ସେ ଜଣେ ଉତ୍କୃଷ୍ଟ ଶିଳ୍ପୀ, କାଠକାମରେ ଦକ୍ଷ ଏବଂ ଶିକ୍ଷକ ଥିଲେ । ସ୍କୁଲ ତାଙ୍କ ଘରର ଆଖପାଖରେ ଗଢ଼ି ଉଠିଥିଲା । ସେଇଟି ଆଖପାଖର ଗାଆଁଗୁଡ଼ିକର ପିଲାମାନଙ୍କପାଇଁ ମାଗଣା ସ୍କୁଲ ଥିଲା । ଡେଭିଡ୍ ପ୍ରଥମେ ଋଷିଭ୍ୟାଲି ଓ ପରେ ବ୍ରିଟିଶ କାଉନ୍‌ସିଲ୍‌ର ଶିକ୍ଷା ବିଭାଗରେ କାମ କରିସାରିଥିଲେ । ନୀଲବାଗ ସ୍କୁଲରେ ସେ କେବଳ ପିଲାମାନଙ୍କୁ ମାଗଣାରେ ଶିକ୍ଷା ଦେଉ ନ ଥିଲେ, ଶିକ୍ଷକମାନଙ୍କୁ ମଧ୍ୟ ଅଭିନବ ଶୈଳୀରେ ପଢ଼ାଇବାର ପ୍ରଶିକ୍ଷଣ ଦେଉଥିଲେ ।

ଦୁର୍ଭାଗ୍ୟବଶତଃ ଷାଠିଏ ବର୍ଷ ପାଖାପାଖି ବୟସରେ ଡେଭିଡ୍‌ଙ୍କର ସିରୋସିସ ରୋଗରୁ ଦେହାନ୍ତ ହୋଇଗଲା । ତାଙ୍କର ଉତ୍ତରାଧିକାରୀମାନେ ସ୍କୁଲଟିକୁ ଚଳାଇ ପାରିଲେ ନାହିଁ ଓ ତାହାକୁ ଇଂଲଣ୍ଡକୁ ସ୍ଥାନାନ୍ତରିତ କରିବାକୁ ଚାହିଁଲେ । ସେତିକିବେଳେ ଋଷିଭ୍ୟାଲି ତାହାକୁ କିଣିବାର ନିଷ୍ପତ୍ତି ନେଲା । ତାହା ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ଏକ ସ୍ଥାନ ଥିଲା, ଏକାବେଳେକେ ଗ୍ରାମ୍ୟ । ସବୁତକ କାନ୍ଥ ମାଟିର ହୋଇଥିଲେ ମଧ୍ୟ ତାହା ଡେଭିଡ୍‌ଙ୍କର ବନ୍ଧୁ ବାସ୍ତୁକାର ଶ୍ରୀ ବେକରଙ୍କଦ୍ୱାରା ପୂରା ଇଂରେଜ ଶୈଳୀରେ ଓ ଢାଞ୍ଚାରେ ପ୍ରସ୍ତୁତ ହୋଇଥିଲା । କେତେଗୁଡ଼ିକରେ ତ ବାଥଟବ୍ ଥିଲା ଏବଂ କାଠର ସିଟ୍ ଥିବା ବିଦେଶୀ ଶୈଳୀର ଟୟଲେଟ୍ ମଧ୍ୟ ଥିଲା ।

ଋଷିଭ୍ୟାଲିର ନିର୍ଦ୍ଦେଶକ ଓ ମୋର ଭଲ ବନ୍ଧୁ ଡକ୍ଟର ରାଧିକା ହର୍ଜବର୍ଗର ନୀଲବାଗ

ସ୍କୁଲକୁ କିଣିବା କଥା ଆରମ୍ଭ କରିଥିଲେ । ଯେତେବେଳେ ମୁଁ ଆମର ନୀଲବାଗ ଯିବାର ସମ୍ଭାବନା ବିଷୟ ତାଙ୍କୁ କହିଲି, ସେ ଖୁସିରେ ରାଜି ହୋଇଗଲେ । ସେ ଆମର ମନ କଥା ବୁଝିପାରିଥିଲେ । ତା'ପରେ, ଏହିପରି ଭାବରେ ଗର୍ଭବତୀ ସୁନନ୍ଦାକୁ ନେଇ ମୁଁ ନୀଲବାଗକୁ ଚାଲିଆସିଲି ।

ନୀଲବାଗରେ ବିତାଇଥିବା ଦଶବର୍ଷ ମୋ ପାଇଁ ବହୁତ ମହତ୍ତ୍ୱପୂର୍ଣ୍ଣ । ବାହାଘର ପରେ ଏହା ଆମର ପ୍ରଥମ ନିଜସ୍ୱ ଘର ଥିଲା । ଆମେ ଏକ ସ୍ୱତନ୍ତ୍ର କଟେଜରେ ରହୁଥିଲୁ । ସୁନନ୍ଦା ଶିକ୍ଷାଦାନରେ ଓ ମୁଁ ପ୍ରଶାସନ ବିଷୟକ କାମରେ ବ୍ୟସ୍ତ ରହୁଥିଲି । ଆମର ଦୁଇଟି ସନ୍ତାନ–ପୁତ୍ର ରୋଶନ ଓ କନ୍ୟା ଆଇଶାର ଲାଳନ ପାଳନ ମଧ୍ୟ ନଅ ଏବଂ ସାତବର୍ଷ ପର୍ଯ୍ୟନ୍ତ ସେହିଠାରେ ହୋଇଥିଲା । ତୃତୀୟ ଘଟଣା ଥିଲା, ସେଠାକୁ ଆସିବାର ପରବର୍ତ୍ତୀ ସମୟରେ ମୁଁ ବାଙ୍ଗାଲୋରରେ ନିଜର ସାର୍ବଜନୀନ ଭାଷଣ ଦେଲି ଏବଂ ଦେଇ ଚାଲିଲି । ଚତୁର୍ଥରେ, ସେହିଠାରେ ସତ୍‌ସଙ୍ଗ ଫାଉଣ୍ଡେସନର ସ୍ଥାପନା ହେଲା । ପଞ୍ଚମରେ ମୋର ତ୍ରିଭେନ୍ଦ୍ରମର ବନ୍ଧୁ ରାଧାକୃଷ୍ଣନଙ୍କ ସହିତ ଦିଲ୍ଲୀର ବିବେକ ମହେନ୍ଦ୍ରୁ ଏହିଠାରେ ମୋତେ ଭେଟିବାକୁ ଆସିଲେ ଓ ପରବର୍ତ୍ତୀ ସମୟରେ ସେ ବାବାଜୀଙ୍କ କାର୍ଯ୍ୟରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କଲେ । ଏହିଠାରେ ମୁଁ ମୋର ପ୍ରଥମ ପୁସ୍ତକ ଲେଖିଲି – ''ଦି ଲିଟ୍‌ଲ୍ ଗାଇଡ୍ ଟୁ ଗ୍ରେଟର୍ ଗ୍ଲୋରି ଆଣ୍ଡ୍ ଏ ହ୍ୟାପି ଲାଇଫ୍ ।'' ଶେଷରେ (କିନ୍ତୁ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ) ଏହିଠାରୁ ମୁଁ କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍‌ରୁ ଇସ୍ତଫା ଦେଲି ।



# ୪୪. ନୀଳବାଗ ଓ ସତ୍‌ସଙ୍ଗ ଗାଡ଼ି

ଆଧ୍ୟାତ୍ମିକ ଓ ସାଂସାରିକ, ଉଭୟ ଦୃଷ୍ଟିରୁ ନୀଳବାଗରେ ବିତାଇଥିବା ଦଶବର୍ଷ ମୋ ପାଇଁ ବାସ୍ତବିକ ମହତ୍ତ୍ୱପୂର୍ଣ୍ଣ ଥିଲା ଏବଂ ଅନ୍ୟ କିଛି ଦୃଷ୍ଟିରୁ ଲାଭପ୍ରଦ । ଗଛବୃଚ୍ଛ ଏବଂ ସବୁଜିମା ବେଷ୍ଟିତ ଏହି ସ୍ଥାନ ମୋର ଧ୍ୟାନପାଇଁ ଆଦର୍ଶ ଥିଲା । ବିବାହ ପରେ ପ୍ରଥମ ଘର ହୋଇଥିବାରୁ, ଏଠାରେ ଆମକୁ ପରସ୍ପର ସହିତ ବୁଝାମଣା ଏବଂ ଏକ ସଠିକ୍ ପାରିବାରିକ ସମ୍ବନ୍ଧପାଇଁ ସହାୟକ ପରିସ୍ଥିତି ମିଳିଲା । ପିଲାଙ୍କ କଥା କହିବାକୁ ଗଲେ, ସେମାନେ ପ୍ରକୃତିର ପ୍ରାଙ୍ଗଣରେ ସ୍ୱତନ୍ତ୍ର ବାତାବରଣରେ ବଢୁଥିଲେ । ସେମାନେ ତାହାକୁ ପସନ୍ଦ କରୁଥିଲେ ।

ସପ୍ତାହରେ ଥରେ ମୁଁ ମୋର ମଟରସାଇକେଲ୍‌ରେ ଋଷିଭ୍ୟାଲି ଯାଉଥିଲି । ସେଠାରେ ନବମ ଶ୍ରେଣୀରେ ସଂସ୍କୃତି ବିଷୟରେ ପଢ଼ାଉଥିଲି ଏବଂ ସୁବିଧା ହେଲେ ସମିତିର ସଭାରେ ଭାଗ ନେଉଥିଲି । କିଛିଦିନ ପରେ ମୁଁ ଗୋଟିଏ ପୁରୁଣା କାର୍ କିଣିଲି । ସେତେବେଳେ ମୋର ତାହା ହିଁ କ୍ଷମତା ଥିଲା । ଆମେ କାର୍‌ରେ ପ୍ରାୟ ବାଙ୍ଗାଲୋର ଯାଉଥିଲୁ ଯେଉଁଠାରେ ମୋର ମା'ବାପା ଓ ଶାଶୂ ଶ୍ୱଶୁର ରହୁଥିଲେ । ରାସ୍ତାରେ ଆମେ ସୁନ୍ଦର ପୋଖରୀ କୂଳରେ ଅଟକୁ ଥିଲୁ ଓ ଶ୍ୱେତ ପକ୍ଷୀ ଏବଂ ମାଙ୍କଡ଼ ଦେଖୁଥିଲୁ । ମୋତେ ମୋର ସେହି ଜୀବନ ଭାରି ପ୍ରିୟ ଥିଲା । ପ୍ରଧାନ ଅଧ୍ୟାପିକା ସୁନନ୍ଦାଙ୍କୁ ସ୍କୁଲ ବହୁତ ପସନ୍ଦ ଥିଲା । ଡେଭିଡ୍ ହର୍ଷବରୋଙ୍କ ଦ୍ୱାରା ପ୍ରଶିକ୍ଷିତ ଇନ୍ଦିରା ସୀତାରାମନ୍ ଦକ୍ଷତା ପୂର୍ବକ ସୁନନ୍ଦାଙ୍କର ସହାୟତା କରୁଥିଲେ । ମୁଁ ତାଙ୍କର ପତି ଶ୍ରୀ ସୀତାରାମନ୍‌ଙ୍କୁ ଭେଟିଲି, ଯେ ସେହି ସମୟରୁ ଜଣେ ପ୍ରିୟ ମିତ୍ର ହୋଇ ରହିଛନ୍ତି ।

ସେଠାରେ ଲେଖିଥିବା ନିଜର ପ୍ରଥମ ବହିକୁ ସେତେବେଳେ ଛାପିବାର କଥା ମୋର ମନକୁ ଆସି ନ ଥିଲା, କାରଣ ସେତେବେଳକୁ ମୋର ଜନତାଙ୍କ ସମ୍ମୁଖକୁ ଆସିବାର ଅଧ୍ୟାୟ ଆରମ୍ଭ ହୋଇ ନ ଥିଲା । ଯେତେଦୂର ପାରେ ନିଜର ଅନୁଭବ ଓ ଜ୍ଞାନକୁ ନିଜ ମଧ୍ୟରେ ସୀମିତ ରଖୁଥିଲି । ପଛକୁ ଫେରିଚାହିଁଲେ ମୁଁ ଭାବେ, ଯଦି ବାବାଜୀ ନିଜର ବିଶିଷ୍ଟ ଶୈଳୀରେ ସବୁଜ ପତାକା ନ ଦେଖାଇଥାଆନ୍ତେ, ତେବେ ହୁଏତ ମୁଁ ଖୁସିରେ ସେହିପରି ଭାବରେ ଅଜ୍ଞାତ ରୂପରେ ରହିଯାଇଥାଆନ୍ତି । କୌଣସି ପ୍ରକାରର ମୁଣ୍ଡବ୍ୟଥା

ନ ଥା'ନ୍ତା; କିନ୍ତୁ ସେପରି ହେବାର ନ ଥିଲା କାରଣ ମୋ ପାଇଁ ବାବାଜୀଙ୍କର ଯୋଜନା କିଛି ଅନ୍ୟ ପ୍ରକାରର ଥିଲା ।

ଯଦିଓ ମୁଁ ନିଜର ଆଧ୍ୟାତ୍ମିକ ଅନୁଭବ ଏବଂ ଅଭିଯାନଗୁଡ଼ିକୁ ନିଜ ଭିତରେ ହିଁ ସୀମିତ କରି ରଖିଥିଲି ଏବଂ ସେହିସମୟରେ ମୋତେ ଭେଟୁଥିବା ଲୋକମାନଙ୍କର ସେସବୁ ବିଷୟରେ ଧାରଣା ନ ଥିଲା, ମୋର ପୁରୁଣା ବନ୍ଧୁ ଓ ସହପାଠୀମାନଙ୍କୁ ମୋର ଆଧ୍ୟାତ୍ମିକ ପ୍ରବୃତ୍ତି ଏବଂ ସନ୍ଧାନ-ଯାତ୍ରା ବିଷୟ ଜଣାଥିଲା । ସେମାନଙ୍କ ମଧ୍ୟରୁ ଜଣେ, ପ୍ରେମ କୁକିଲାୟା ସେହି ସମୟରେ ବାଙ୍ଗାଲୋରରେ କାମ କରୁଥିଲେ । ସେ ସେହି ସମୟରେ କିଛି ପୁରୁଣା ଗହଣାପତ୍ର ବଦଳାଇବାକୁ ବା ସେହିପରି କିଛି କାମ କରିବାକୁ ଜୁଏଲର୍ସ୍ ଷ୍ଟ୍ରୀଟର ସୁନାବେପାରୀ ମଙ୍ଗୟା ଚେଟ୍ଟୀ ଆଣ୍ଡ୍ ସନ୍ସଙ୍କ ପାଖକୁ ଗଲେ । ଦୋକାନ ଚଲାଉଥିବା ଦି'ଭାଇଙ୍କ ମଧ୍ୟରୁ ସାନ ଜଣଙ୍କର ନାଁ ଥିଲା ମୋହନ କୁମାର । ତାଙ୍କ ସହିତ କଥାବାର୍ତ୍ତା ହେଉଥିବା ସମୟରେ ପ୍ରେମ ସ୍ୱାମୀ ମୁକ୍ତାନନ୍ଦଙ୍କର ଏକ ବହି ଟେବୁଲରେ ପଡ଼ିଥିବାର ଦେଖିଲେ । ପଚାରିବାରୁ ମୋହନ କୁମାର୍ କହିଲେ, ତାହା ଏକ ଆଧ୍ୟାତ୍ମିକ ପୁସ୍ତକ ଥିଲା ଓ ତାଙ୍କର ସେସବୁରେ ଆଗ୍ରହ ରହିଛି ।

ଏମିତି କହୁ କହୁ ପ୍ରେମ ତାଙ୍କୁ କହିଲେ ଯେ, ତାଙ୍କର ଜଣେ ପୁରୁଣା ବନ୍ଧୁ ଜନ୍ମରୁ ହିନ୍ଦୁ ନ ହେଲେ ମଧ୍ୟ ହିନ୍ଦୁ ଦର୍ଶନ ଓ ଆଧ୍ୟାତ୍ମିକ ବିଷୟରେ ଗଭୀର ଜ୍ଞାନର ଅଧିକାରୀ । ସେ ଯୋଗସାଧନା କରୁଥିଲା, ହିମାଳୟର ଯାତ୍ରା କରିସାରିଛି ଏବଂ କିଛି କୁହୁକ ବିଦ୍ୟା ପରି ଜିନିଷ ମଧ୍ୟ ଜାଣେ । ମୋହନ ମୋତେ ଭେଟିବାକୁ ବହୁତ ଆଗ୍ରହୀ ହେଲେ । ସେ ଜାଣିପାରିଲେ ଯେ ମୁଁ ବାଙ୍ଗାଲୋରଠାରୁ ତିନିଘଣ୍ଟାର ଦୂରତ୍ୱରେ ଥିବା ଦୂରଦୂରାନ୍ତର ଏକ ଗ୍ରାମ ରୟାଲପାଡ଼ରେ ରହୁଛି ଏବଂ ବେଳେବେଳେ ବାଙ୍ଗାଲୋର ଆସୁଛି କାରଣ ମୋର ବାପା-ମା' ଓ ଶାଶୂ-ଶଶୁର ସେଠାରେ ରହୁଛନ୍ତି । ତେଣୁ ପ୍ରେମ ତାଙ୍କର ମୋତେ ଭେଟିବାର ଇଚ୍ଛା କଥା ମୋ ସହିତ ଦେଖାହେଲେ ମୋତେ ଜଣାଇଦେବ ବୋଲି ତାଙ୍କୁ ଆଶ୍ୱାସନା ଦେଲା ।

ତିନି ସପ୍ତାହ ପରେ ମୁଁ ମୋର ଶାଶୂ-ଶଶୁରଙ୍କୁ ଭେଟିବାକୁ ବାଙ୍ଗାଲୋର ଆସିବାରୁ ପ୍ରେମର ଅଫିସକୁ ଗଲି । ସେ ମୋତେ ତା'ର ମୋହନ ସହିତ ସାକ୍ଷାତ ବିଷୟରେ କହିଲା । ମୁଁ ବିଶେଷ ଆଗ୍ରହ ଦେଖାଇଲି ନାହିଁ ଏବଂ ସେ କଥା ଭୁଲିଗଲି । ପରଥର ବାଙ୍ଗାଲୋର ଆସିବା ପରେ ମୁଁ ରିଲାୟନ୍ସ ଷ୍ଟେସନର୍ସରୁ ତେଲରଙ୍ଗ ଓ ତୂଳୀ କିଣିବାକୁ କମର୍ସିଆଲ୍ ଷ୍ଟ୍ରିଟକୁ ଗଲି । ମୋର ମନେପଡ଼ିଗଲା ଯେ, ମୋର ପତ୍ନୀ ତାଙ୍କର ମା'ଙ୍କର କିଛି ଗହଣା ସଫା କରିବାକୁ ମୋତେ ଦେଇଥିଲେ । କୌଣସି ଗହଣା ଦୋକାନର ସନ୍ଧାନରେ

ଯାଉ ଯାଉ ଖୁବ୍ ଶୀଘ୍ର ମୁଁ ମଙ୍ଗେୟା ଚେଙ୍ଗୀ ଆଣ୍ଡ୍ ସନ୍ସର ଦୋକାନରେ ପହଞ୍ଚିଗଲି । ମୋତେ ପ୍ରେମ କହିଥିବା ଦୋକାନର ନାଁ କିଛି କିଛି ମନେଥିଲା । ପଶିବା ପରେ ଦେଖିଲି ଟେବୁଲ ପଛପଟେ ଜଣେ ବୃଦ୍ଧ ଓ ଯୁବକ ବସିଛନ୍ତି । ମୁଁ ମୋର ଚାହିଦା ବିଷୟ କହିଲି । ମୁଁ ପଚାରିଲି ଯେ, ''ଏଇଟା କ'ଣ ସେ ହିଁ ଦୋକାନ ଯେଉଁଠାକୁ ମୋର ତ୍ରିଭେନ୍ଦ୍ରମର ବନ୍ଧୁ ପ୍ରେମ ଆସିଥିଲା ?''

ଯୁବକଟି, ଯେ ମୋହନ ଥିଲେ, ସେ ପଚାରିଲେ ମୁଁ କ'ଣ ପ୍ରେମଙ୍କର ଅନ୍ୟ ଏକ ବନ୍ଧୁଙ୍କୁ ଚିହ୍ନେ, ଯେ ହିମାଳୟ-ଯାତ୍ରା କରିସାରିଛନ୍ତି ? ମୋର ଟି ସାର୍ଟ ଓ ଜିନ୍ସ ଦେଖି ବୋଧହୁଏ ମୋହନ ଭାବିପାରିଲେ ନାହିଁ ଯେ ମୁଁ ସେହି ଯୋଗୀ ବନ୍ଧୁ ହୋଇପାରେ, ଯାହା ବିଷୟରେ ପ୍ରେମ କହିଥିଲା ।

ମୁଁ ମିଛ କହିବାକୁ ଚାହୁଁ ନ ଥିଲି । କହିଲି ଯେ ମୁଁ ହେଉଛି ସେ ବ୍ୟକ୍ତି । ସେହିଠାରୁ ଆରମ୍ଭ ହେଲା ନୂତନ ଯାତ୍ରା । ମୋହନ କହିଲେ, ସେ ସ୍ଥାନୀୟ ଥିଓସଫିକାଲ ସୋସାଇଟିର ସଚିବ ଥିଲେ ଏବଂ ସୋସାଇଟିରେ ଗୋଟିଏ ପ୍ରବଚନ ଦେବା କ'ଣ ମୋ ପାଇଁ ସମ୍ଭବ ଥିଲା ? ମୁଁ କହିଲି, ମୋର ଆଧ୍ୟାତ୍ମିକ ଜୀବନ ବିଷୟରେ ସାର୍ବଜନୀନ ଭାବରେ କେବେ କହି ନାହିଁ ବା ଏହା କହିବାକୁ ଚାହେଁ ନାହିଁ । ସେ କହିଲେ, ମୁଁ ମୋର ହିମାଳୟ-ଯାତ୍ରା ବିଷୟରେ କହିଲେ ହିଁ ଯଥେଷ୍ଟ ହେବ । ମୁଁ କହିଲି, ସେ ବିଷୟରେ ମୁଁ ଚିନ୍ତା କରିବି ଓ କାମସାରି ଦୋକାନରୁ ଶୀଘ୍ର ବାହାରି ଆସିଲି ।

ମୋର ସନ୍ଦେହ ଥିଲା ଯେ ମୋହନ ସହିତ ସାକ୍ଷାତ ପଛରେ ବାବାଜୀଙ୍କର ହାତ ଥିଲା । ଦି'ଦିନ ପରର ଘଟଣାରୁ ଏହା ସତ୍ୟ ପ୍ରମାଣିତ ହେଲା । ଏହି ଘଟଣା ପରର ଦ୍ୱିତୀୟ ରାତିରେ ମୁଁ ଏକ ପ୍ରତ୍ୟକ୍ଷ ସ୍ୱପ୍ନ ଦେଖିଲି । ଦୀର୍ଘ ସମୟ ପରେ ମୁଁ ବାବାଜୀଙ୍କୁ ସ୍ୱପ୍ନରେ ଦେଖିଲି ଏବଂ ସେ ଏତେ ବିଚିତ୍ର ଦିଶୁଥିଲେ ମୁଁ ସ୍ୱପ୍ନରେ ହିଁ ଜୋର୍‌ରେ ହସିଉଠିଲି । ମୁଁ ଗୋଟାଏ ପ୍ରକାରର ରେଳଗାଡ଼ିରେ ଥିଲି, ଯେଉଁଥିରେ ଏକ ପତାକା ମରା ହୋଇଥିଲା । ପତାକା ଉପରେ 'ସତ୍‌ସଙ୍ଗ' ଲେଖା ହୋଇଥିଲା । ବାବାଜୀ ପ୍ଲାଟଫର୍ମରେ ଗାର୍ଡ୍‌ର ପୋଷାକରେ ଦେଖାଦେଲେ; କିନ୍ତୁ ସେ ଟୋପି ଓ ଜୋତା ପିନ୍ଧି ନ ଥିଲେ । ସେ ବାରମ୍ବାର ସିଟି ମାରୁଥିଲେ । ଗାଡ଼ି ଜୋର୍‌ରେ ଚାଲିବା ଆରମ୍ଭ କଲା । ଉଠିବା ପରେ ମଧ୍ୟ ମୁଁ ହସୁଥିଲି; କିନ୍ତୁ ଯେତେବେଳେ ମୁଁ ସ୍ୱପ୍ନର ଅର୍ଥ ବୁଝିଲି, ସେତେବେଳେ ମୋ ମୁହଁରୁ ହସ ଲିଭିଗଲା । ମୋତେ ଜନତାର ସମ୍ମୁଖକୁ ଆସିବାପାଇଁ ସବୁଜ ପତାକା ଦେଖାଯାଉଥିଲା । ଖୁବ୍ ଶୀଘ୍ର ପରିବାର ସହିତ ଶାନ୍ତ, ଏକାନ୍ତ ଜୀବନରେ ବ୍ୟବଧାନ ଆସିବାର ଥିଲା । ମୁଁ ମୋର ଆଶଙ୍କା ନିଜ ମଧ୍ୟରେ ସୀମାବଦ୍ଧ ରଖିଲି । ଜାଣିଥିଲି ଯେ ଯେତେବେଳେ ଉଚ୍ଚତର

ଶକ୍ତିଗୁଡ଼ିକ ତୁମଦ୍ୱାରା କୌଣସି ଉଦ୍ଦେଶ୍ୟ ସାଧନ କରିବାକୁ ଚାହାଁନ୍ତି, ସେତେବେଳେ ନିଜର ବ୍ୟକ୍ତିଗତ ସୁବିଧା ଅସୁବିଧାକୁ ଏଡ଼ାଇ ଦିଆଯାଏ ।

ଦୁଇ ସପ୍ତାହ ପରେ ଯେତେବେଳେ ମୁଁ ମୋହନଙ୍କୁ ଦିଆଯାଇଥିବା ଗହଣା ଫେରସ୍ତ ଆଣିବାକୁ ଗଲି, ସେ ମୋତେ ଥିଓସଫିକାଲ ସୋସାଇଟିରେ କହିବାପାଇଁ ରାଜି କରାଇବା ପାଇଁ ଚେଷ୍ଟା କଲେ ଏବଂ ମୁଁ ରାଜି ହୋଇଗଲି । ପରଦିନ ରବିବାର ଥିଲା, ମୋତେ ସୋସାଇଟିର କ୍ୟାଣ୍ଟନମେଣ୍ଟ ଲଜ୍‌କୁ ନିଆଗଲା । ତାହା ମୋର ପ୍ରଥମ ସତ୍‌ସଙ୍ଗ ଥିଲା । ସେଠାରେ ଉପସ୍ଥିତ ଥିବା ପ୍ରାୟ ତିରିଶଜଣ ଲୋକ ମୋର କଥା ଶେଷ ହେବା ପରେ ମୋ ସହିତ ହାତ ମିଳାଇ କହିଲେ, ତାହା ସେମାନଙ୍କର ଜୀବନରେ ଶୁଣିଥିବା ସବୁଠାରୁ ଭଲ ଭାଷଣମାନଙ୍କ ମଧ୍ୟରୁ ଗୋଟିଏ ଥିଲା । ସୋସାଇଟିର ଜଣେ ପଦାଧିକାରୀ ଶ୍ରୀ ରଘୁ ପଚାରିଲେ, ଏହିପରି ଭାଷଣପାଇଁ ନିୟମିତ ଭାବରେ ଆସିବା କ'ଣ ମୋ ପାଇଁ ସମ୍ଭବ ଥିଲା ? ସତ୍‌ସଙ୍ଗର ଗାଡ଼ି ଚାଲିବା ଆରମ୍ଭ କରି ଦେଇଥିଲା, ସିଟି ବାଜି ସାରିଥିଲା ।

ଏହି ପ୍ରଥମ ସତ୍‌ସଙ୍ଗ ସମୟରେ ମୋର ପରିଚୟ ଶ୍ରୀ ରତ୍ନାକର ସନଦୀଙ୍କ ସହିତ କରାଇ ଦିଆଯାଇଥିଲା । ସେ ଭାରତୀୟ ବାୟୁସେନାର ଅବସରପ୍ରାପ୍ତ ଲଢୁଆ ପାଇଲଟ ଥିଲେ । ଜଣାଗଲା, ସେ ସୁନନ୍ଦାଙ୍କର ବନ୍ଧୁବାନ୍ଧବ ଥିଲେ । କବ୍‌ବନ ରୋଡ୍‌ରେ ଥିବା ତାଙ୍କ ଘରର ପଣସଗଛ ତଳେ ବହୁ ଅନୌପଚାରିକ ସତ୍‌ସଙ୍ଗ ହେଲା । ସେହି ରତ୍ନାକର ସନଦୀ ମୋତେ 'ଲିଟ୍‌ଲ୍ ଗାଇଡ୍'କୁ ପ୍ରକାଶିତ କରିବାକୁ ଉତ୍ସାହିତ କଲେ ଏବଂ ରାଜି କରାଇଲେ । ବହିଟି ଟାଇପ୍ ହୋଇଥିବା ପାଣ୍ଡୁଲିପି ଆକାରରେ ପୂର୍ବରୁ ମୋ ପାଖରେ ଥିଲା ।

ବହିର ପ୍ରକାଶନପାଇଁ ପ୍ରକାଶକର ଆବଶ୍ୟକତା ଥିଲା, ସତ୍‌ସଙ୍ଗ ଫାଉଣ୍ଡେସନ୍‌ର ସ୍ଥାପନା କରାଗଲା । ଯାହା ପୁସ୍ତକ ପ୍ରକାଶନ ଏବଂ ସତ୍‌ସଙ୍ଗର ବ୍ୟବସ୍ଥା କରିବାପାଇଁ ଦାୟୀ ଥିଲେ । ମୋତେ ଅଧ୍ୟକ୍ଷ କରାଗଲା । ରତ୍ନାକର ସନଦୀ ହେଲେ କୋଷାଧ୍ୟକ୍ଷ ଓ ମୋହନ ପ୍ରଥମ ସଚିବ । ହାତଗଣତା ଘନିଷ୍ଠ ବନ୍ଧୁମାନେ ସଦସ୍ୟ ଥିଲେ; କିନ୍ତୁ ବହି ଛପାଇବାପାଇଁ ଯଥେଷ୍ଟ ପଇସା ନ ଥିଲା । ଜଣେ ଇଟାଲୀୟ ସଜ୍ଜନ ଯେ ନିଜକୁ କେବଳ ମରିସ୍ ବୋଲି କହୁଥିଲେ, ସଠିକ୍ ସମୟରେ ଆସି ଉଭା ହେଲେ । ସେ ମୋର ପ୍ରଥମ ବହି 'ଦି ଲିଟ୍‌ଲ୍ ଗାଇଡ୍ ଟୁ ଗ୍ରେଟର ଗ୍ଲୋରି ଏଣ୍ଡ୍ ହ୍ୟାପି ଲାଇଫ୍'ର ପ୍ରକାଶନର ଖର୍ଚ୍ଚ ବହନ କଲେ । ବର୍ତ୍ତମାନ ସୁଦ୍ଧା ବହିଟିର ତୃତୀୟ ସଂସ୍କରଣ ହୋଇସାରିଛି । ମରିସ ଓ ରତ୍ନାକର ମୋତେ ପ୍ରଥମେ 'M' (ଏମ୍) ବୋଲି ସମ୍ବୋଧନ କଲେ, ଯାହା ପରବର୍ତ୍ତୀ ସମୟରେ ଶ୍ରୀ ଏମ୍ ବା Mr. Mକୁ ପରିବର୍ତ୍ତିତ ହେଲା ମୁଁ ଏମ୍‌କୁ ମଧୁ ସହିତ ଯୋଡ଼ିଲି,

ଯେଉଁ ନାମ ମୋତେ ଶ୍ରୀଗୁରୁ ଏବଂ ବାବାଜୀ ଦେଇଥିଲେ ।

× × ×

ଦିଲ୍ଲୀରୁ ଆସିଥିବା ଜଣେ ଅଜଣା ବ୍ୟକ୍ତି, ବିବେକ ମହେନ୍ଦ୍ରୁ ମୋତେ ପ୍ରଥମେ ନୀଳବାଗରେ ଭେଟିଥିଲେ । ତାଙ୍କ ମାଧ୍ୟମରେ ମୁଁ ହାନ୍ସ କେଲିକାସ୍ (Hans Kellickhaus)ଙ୍କୁ ଭେଟିଲି । ସେ ଜର୍ମାନୀର ଆଖେମ (Aachen)ରୁ ଆସିଥିଲେ । ସେ ବର୍ତ୍ତମାନ ପର୍ଯ୍ୟନ୍ତ ମୋର ଘନିଷ୍ଠ ସହଯୋଗୀ ଏବଂ ବନ୍ଧୁ । ବିବେକ ମହେନ୍ଦ୍ରୁ ଏକ ସ୍ୱିଚ ଗିୟର କମ୍ପାନିର ନିର୍ଦ୍ଦେଶକ ଥିଲେ । କମ୍ପାନିର କାରଖାନାଗୁଡ଼ିକ ଜଲନ୍ଧର, ନୂଆ ଦିଲ୍ଲୀ ଓ ନୋଇଡ଼ାରେ ଥିଲା । ମୋର ପୁରୁଣା ସାଙ୍ଗ ରାଧାକୃଷ୍ଣ ନାୟାର ଚେନ୍ନାଇରେ ତାଙ୍କର ସେଲ୍ସ ମ୍ୟାନେଜର ଥିଲା । ବିବେକଙ୍କର ଧର୍ମ ଓ ମସ୍ତିଷ୍କର ଶକ୍ତି ବିଷୟରେ ଆଗ୍ରହ ଥିଲା ଓ ସେ ପ୍ରାୟ ସେହି ବିଷୟରେ ତାଙ୍କର ସେଲ୍ସରେ କାମ କରୁଥିବା ଲୋକଙ୍କ ସହିତ କଥାବାର୍ତ୍ତା କରୁଥିଲେ । ଥରେ ସେ ଚେନ୍ନାଇ ଗସ୍ତରେ ଆସିଥିବାବେଳେ ରାଧାକୃଷ୍ଣ ତାଙ୍କୁ ମୋ ବିଷୟରେ କହିଲା ଓ ଗୋଟିଏ 'ଲିଟ୍‌ଲ୍ ଗାଇଡ୍' ବହି ଦେଲା । ବିବେକ ସେହି ଦିନ ହିଁ ମୋତେ ଭେଟିବାର ଆଗ୍ରହ କଲେ । ଚେନ୍ନାଇରୁ ନୀଳବାଗ ତିନିଶହ ପଚାଶ କିଲୋମିଟର ଦୂରରେ ଥିଲା । ମୋର ସେଦିନ ଦ୍ୱିପ୍ରହର ପରେ ବାଙ୍ଗାଲୋର ଆସିବାର ଥିଲା । ଆମେମାନେ ବିଭିନ୍ନ ଆଧ୍ୟାତ୍ମିକ ବିଷୟରେ ଚର୍ଚ୍ଚା କରି କରି ସେହି ଯାତ୍ରା କରିଥିଲୁ, ତାହାପରେ ଆମେ ପ୍ରାୟ ପରସ୍ପରକୁ ଭେଟିଲୁ ଓ ସେ ଜଣେ ଉତ୍ତମ ବନ୍ଧୁ ।

ଏହିପରି ଭାବରେ ବହିଟି ଅନେକ ଲୋକଙ୍କ ଘରେ ପହଞ୍ଚିଗଲା ଏବଂ ସମର୍ପିତ ଲୋକଙ୍କର ଏକ ଦଳ ମୋର ଆଖପାଖରେ ଏକାଠି ହେଲା । ସତ୍‌ସଙ୍ଗ ପରିବାର ବଢ଼ିଚାଲିଲା...



#  କୈଳାସ ମାନସରୋବର ଯାତ୍ରା

ମୋର ବହି ଦେଖିଥିବା ମହତ୍ତ୍ୱପୂର୍ଣ୍ଣ ଲୋକଙ୍କ ମଧ୍ୟରୁ ଜଣେ ଥିଲେ କାଶ୍ମୀରର ପୂର୍ବତନ ରାଜବଂଶର ଡକ୍ଟର କରଣ ସିଂ । ସେ ଜଣେ ପ୍ରବୀଣ ରାଜନୀତିଜ୍ଞ, ମହାନ୍ ବିଦ୍ୱାନ ଓ ସଚ୍ଚୋଟ ଆଧ୍ୟାତ୍ମିକ ଅଭ୍ୟାସ କରିବା ଲୋକ ଥିଲେ । ଜଣଙ୍କ ପାଖରେ ଏହି ତିନୋଟି ଗୁଣ ଏକାଠି ରହିଥିବାର ସେ ହେଉଛନ୍ତି ବିରଳ ଉଦାହରଣ । ସେ ଅନେକ ଆଧ୍ୟାତ୍ମିକ ଗୁରୁଙ୍କୁ ଭେଟିଛନ୍ତି ଏବଂ ସେମାନଙ୍କ ସହିତ ଚର୍ଚ୍ଚା କରିଛନ୍ତି । ତାଙ୍କୁ ମିହିରଟୋଲା ଆଶ୍ରମର ଶ୍ରୀ କୃଷ୍ଣପ୍ରେମ ଦୀକ୍ଷା ଦେଇଥିଲେ ।

ଥରେ ବାଙ୍ଗାଲୋର ଯାଇଥିବା ସମୟରେ ଲିଟ୍‌ଲ୍ ଗାଇଡ୍‌ରେ ଲେଖାଥିବା ଠିକଣା ଓ ଟେଲିଫୋନ୍ ନମ୍ବରରୁ ସେ ମୋହନ କୁମାରଙ୍କୁ ଖୋଜି ବାହାର କଲେ ଓ ତାଙ୍କ ସହିତ ଫୋନ୍ ଦ୍ୱାରା ସମ୍ପର୍କ କଲେ । ସେ ଯେତେବେଳେ ଜାଣିଲେ ଯେ ମୁଁ ବାଙ୍ଗାଲୋରରେ ଥିଲି, ସେ ମୋ ସହିତ ଭେଟିବାର ଆଗ୍ରହ ପ୍ରକାଶ କଲେ । ଦି'ପହରେ ରାଜଭବନରେ ସାକ୍ଷାତର ବ୍ୟବସ୍ଥା ହେଲା । ସେ ସେହିଠାରେ ରହୁଥିଲେ । ପ୍ରଥମ ସାକ୍ଷାତରୁ ହିଁ ଆମେ ପରସ୍ପରକୁ ପସନ୍ଦ କଲୁ । ମୁଁ ଦେଖିଲି, ସେ ପୁରାତନ ପରମ୍ପରାର ଏକ ସୁବିଖ୍ୟାତ ରାଜବଂଶର ଉତ୍ତରାଧିକାରୀ ହୋଇଥିବାରୁ ଯଥାର୍ଥ ଭାବରେ ଦୟାଳୁ ଓ ନିରଭିମାନୀ ଥିଲେ । ତାଙ୍କର ବ୍ୟବହାରରୁ ଶିଷ୍ଟତା ଏବଂ ଗାରିମା ବିଚ୍ଛୁରିତ ହେଉଥିଲା । ସେ ଆଧ୍ୟାତ୍ମିକ ଏବଂ ବ୍ୟବହାରିକ ଏହି ଦୁଇଟି ବିଷୟରେ ପ୍ରକାଣ୍ଡ ପଣ୍ଡିତ ଓ ସୁବିଜ୍ଞ ଥିଲେ । ଏସବୁ ସତ୍ତ୍ୱେ ସେ ଗାରିମାଯୁକ୍ତ ଓ ବିନୟୀ ଥିଲେ ।

ସେହି ଥିଲା ପ୍ରଥମ ସଂପର୍କ, ଯାହା ପରବର୍ତ୍ତୀ ସମୟରେ ଭାରତର ପୂର୍ବ ରାଜବଂଶଗୁଡ଼ିକ ସହିତ ସମ୍ପର୍କରେ ଏକ ବଡ଼ ଶୃଙ୍ଖଳରେ ପରିଣତ ହେଲା । ହୁଏତ ମୋ ସହିତ ପୂର୍ବଜନ୍ମର ସମ୍ବନ୍ଧ ହେତୁ, ରାଜପରିବାରର ବର୍ତ୍ତମାନ ଅଧିକାରୀମାନେ ମୋତେ ଏତେ ପସନ୍ଦ କରନ୍ତି । ଡକ୍ଟର କରଣ ସିଂହ ହିଁ ଦିଲ୍ଲୀରେ ମୋର ପ୍ରଥମ ସତ୍‌ସଙ୍ଗ ନିଜର ଟ୍ରଷ୍ଟ ରାମାୟଣ ବିଦ୍ୟାପୀଠରେ କରାଇଥିଲେ । ପରେ ମୋର ଦୁଇଟିଯାକ ପୁସ୍ତକ 'The Jewel in the Lotus'

ଏବଂ 'Wisdom of Rishies'ର ପ୍ରସ୍ତାବନା ଲେଖିଥିଲେ । ସେ ଆଜି ମଧ୍ୟ ମୋ ସହିତ ସମ୍ପର୍କ ରଖିଛନ୍ତି । ମୋର ହୃଦୟରେ ତାଙ୍କପାଇଁ ବିଶେଷ ସ୍ଥାନ ରହିଛି । ମୁଁ ଦିଲ୍ଲୀରେ ତାଙ୍କ ସହିତ କିଛି ସମୟ ବିତାଇବାର ବା ତାଙ୍କ ସହିତ ଭୋଜନ କରିବାର ଅବସରକୁ କେବେହେଲେ ଛାଡ଼େ ନାହିଁ ।

ଯେଉଁ ସମୟରେ ମୁଁ କରଣ ସିଂହଙ୍କୁ ଭେଟିଲି ପ୍ରାୟ ସେହି ସମୟରେ ମୁଁ କୃଷ୍ଣମୂର୍ତ୍ତି ଫାଉଣ୍ଡେସନରୁ ଇସ୍ତଫା ଦେଲି । ତା'ର ଅନେକ କାରଣ ଥିଲା, ତାହା ମଧ୍ୟରୁ ପ୍ରମୁଖ ଯାହା ତାହା ନିମ୍ନରେ ଦିଆଗଲା –

କୃଷ୍ଣମୂର୍ତ୍ତି ଫାଉଣ୍ଡେସନଠାରୁ ଭିନ୍ନ ସତ୍‌ସଙ୍ଗ ଫାଉଣ୍ଡେସନ ସ୍ଥାପିତ ହୋଇସାରିଥିଲା । ତାହାର ଅଧ୍ୟକ୍ଷ ହୋଇଥିବାରୁ ସେଥିପାଇଁ ମୋତେ ଅଧିକ ସମୟ ଓ ଶକ୍ତି ବିନିଯୋଗ କରିବାର ଥିଲା । ତେଣୁ ମୋତେ ବୋଧହେଲା, କୃଷ୍ଣମୂର୍ତ୍ତି ଫାଉଣ୍ଡେସନରେ ରହିବା ଉଚିତ ହେବ ନାହିଁ । ଦ୍ୱିତୀୟ କଥା ହେଲା କୃଷ୍ଣମୂର୍ତ୍ତିଙ୍କର ମୃତ୍ୟୁ ପରେ ମୋର ସେହି ସଂସ୍ଥାରୁ ଆଗ୍ରହ କମିଯାଇଥିଲା, ଯଦିଓ କୃଷ୍ଣମୂର୍ତ୍ତିଙ୍କପାଇଁ ମୋର ବହୁତ ଶ୍ରଦ୍ଧା ରହିଥିଲା । ମୋତେ ଲାଗିଲା ଯେ, ତାଙ୍କର ମହାପ୍ରୟାଣ ପରେ ଆତ୍ମା ବାହାରି ଯାଇଥିଲା ଓ କେବଳ ଖୋଳ ରହିଯାଇଥିଲା ।

ମୁଁ ଅଚ୍ୟୁତ ପଟବର୍ଦ୍ଧନଙ୍କ ସହିତ ମୋର ନିର୍ଣ୍ଣୟ ବିଷୟରେ କଥାବାର୍ତ୍ତା କରି ମୋର ଇସ୍ତଫା ପଠାଇଦେଲି । ମୋତେ ସେ କହିଲେ, କୃଷ୍ଣମୂର୍ତ୍ତିଙ୍କ ସହିତ ମୋର ପ୍ରଥମ ସାକ୍ଷାତ ପରେ ସେ କହିଥିଲେ – "ଏହି ଚଢ଼େଇ ତୁମ ପଞ୍ଜୁରିରେ ବେଶିଦିନ ରହିବା ବ୍ୟକ୍ତି ନୁହେଁ ।" ସୁନନ୍ଦା ଓ ମୁଁ ଏହାପରେ ନୀଳବାଗରେ କାମକରୁଥାଉ ଓ ରହୁଥାଉ । ମୋର ଇସ୍ତଫା ମଞ୍ଜୁର ହେବାର ପ୍ରାୟ ମାସେ ପରେ ମୁଁ ପ୍ରବଚନ (teachings) ଦେବାପାଇଁ ପ୍ରଥମ ଥର ବିଦେଶଯାତ୍ରା କଲି ।

ମୋର ଭଲ ସାଙ୍ଗ ମୋହନ କୁମାରଙ୍କଠାରୁ NASAର ବୈଜ୍ଞାନିକ ଡକ୍ଟର ରାମାନନ୍ଦ ପ୍ରସାଦ ମୋ ବିଷୟରେ ଜାଣିଲେ । ସେ 'ଦି ଗୀତା ସୋସାଇଟି ଅଫ୍ ଆମେରିକା'ର ସ୍ଥାପନା କରିସାରିଥିଲେ ଏବଂ ଯେପରି ବାଇବେଲ ସୋସାଇଟି ଅଫ୍ ଇଣ୍ଡିଆ ମାଗଣାରେ ବାଇବେଲ ବାଣ୍ଟନ୍ତି ସେହିପରି ସେମାନେ ଗୀତାର ଅନୁବାଦ ମାଗଣାରେ ବାଣ୍ଟୁଥିଲେ । ସେ ମୋତେ ବାଙ୍ଗାଲୋରରେ ଭେଟିଲେ ଓ ମୋତେ ଆମେରିକା ଡାକିଲେ । ସେ କହିଲେ, ସେ କାଲିଫର୍ଣ୍ଣିଆର ଫ୍ରିମଣ୍ଟରେ ରହୁଥିଲେ ମଧ୍ୟ ବିଭିନ୍ନ ସ୍ଥାନରେ ପ୍ରବଚନର ଆୟୋଜନ କରାଇବେ ।

ଏଥର ମୁଁ ବାବାଜୀଙ୍କର କିଛି ବିଶେଷ ଇଙ୍ଗିତ ବିନା ପ୍ରସ୍ତୁତ ହୋଇଗଲି । ଏବେ ମୁଁ ଜାଣିଯାଇଥିଲି ଯେ, କାର୍ଯ୍ୟ ଆରମ୍ଭ ହୋଇଯାଇଛି ଏବଂ 'ଏମ୍' ଏବେ ତା'ର

ଗୋପନୀୟତାକୁ ବଞ୍ଚାଇ ରଖିପାରିବ ନାହିଁ । ତେଣୁ 2000 ମସିହାରେ ମୁଁ ପ୍ରଥମ ଥର ପାଇଁ ଆମେରିକା ଗଲି । ମୋର ପୁରୁଣା ପ୍ରିୟ ବନ୍ଧୁ ଥମାସ କୁରିୟନ ମୋ ପାଇଁ ଚେନ୍ନାଇରୁ ସାନଫ୍ରାନ୍‌ସିସ୍‌କୋକୁ ଟିକେଟ କାଟିଦେଲେ । କିଛି ଦିନ ପରେ ମୋର ବନ୍ଧୁ ହାନ୍ସ କେଲିକାସ୍ ମୋତେ ଜର୍ମାନୀର ଆଚେନକୁ ଡକାଇଲେ । ସେ ମହେନ୍ଦ୍ରୁ ପରିବାରର ପୁରୁଣା ଚିହ୍ନା ଥିଲେ ଏବଂ ଦିଲ୍ଲୀରେ ତାଙ୍କର ମୋ ସହିତ ପରିଚୟ ବିବେକ ମହେନ୍ଦ୍ରୁ କରାଇଥିଲେ । କିଛି ସମୟ ମଧ୍ୟରେ ମୁଁ ପ୍ରାୟ ପ୍ରତିବର୍ଷ ଜର୍ମାନୀ ଏବଂ ୟୁ.ଏସ୍.ଏ.କୁ ଯାଉଥିଲି ।

ଶିକ୍ଷା ବିସ୍ତୃତ ହେଉଥିଲା, କିନ୍ତୁ ବ୍ୟକ୍ତିଗତ ଭାବରେ ଓ ଧୀମା ଗତିରେ । ବାବାଜୀଙ୍କର ଉପାୟ ଥିଲା 'ଗୁଣବତ୍ତା' । ସେ କହୁଥିଲେ, ''ସଂଖ୍ୟା ନୁହେଁ, ଆଧ୍ୟାତ୍ମିକ ବିକାଶ ବ୍ୟକ୍ତିଗତ ହେବା ଉଚିତ, ସାମୂହିକ ଘଟଣା ନୁହେଁ । ଧ୍ୟାନ ଯୋଗର ବ୍ୟବସାୟୀକରଣ କରିବ ନାହିଁ । ପ୍ରତିଟି ବ୍ୟକ୍ତି ବିଶିଷ୍ଟ । ଯେତେବେଳେ ତୁମେ କାମ ଆରମ୍ଭ କରିବ, ସେତେବେଳେ ବିଜ୍ଞାପନ ଅଭିଯାନର ଆବଶ୍ୟକତା ନାହିଁ ।''

ଧୀରେ ଧୀରେ କିନ୍ତୁ ସ୍ଥିର ଗତିରେ କାମ ଆଗଉଥାଏ, ତା' ସହିତ ସତ୍‌ସଙ୍ଗ ଫାଉଣ୍ଡେସନ ମଧ୍ୟ । ମୋର ପିଲାମାନେ ବି ବଡ଼ ହେଉଥାଆନ୍ତି । ଏପରି ପରିସ୍ଥିତିରେ, ନୀଲବାଗ ସ୍କୁଲକୁ ମାଗଣାରେ ଚଳାଇବା ଋଷିଭ୍ୟାଲି ସ୍କୁଲ ପାଇଁ କଠିନ ହୋଇପଡ଼ିଲା । କେହି ଜଣେ ଏହାକୁ କିଣିନେବାକୁ ଆଗ୍ରହ ପ୍ରଦର୍ଶନ କରୁଥିଲେ । ମୁଁ ଏକଥା ଶୁଣି ଖୁସିରେ ସେହି ସ୍ଥାନ ଛାଡ଼ିବାକୁ ପ୍ରସ୍ତୁତ ହୋଇଗଲି । ମୋତେ ଲାଗୁଥିଲା, ମୋତେ ସେହି ସ୍ଥାନ ଛାଡ଼ିଦେବା ଉଚିତ ଓ ସତ୍‌ସଙ୍ଗର କ୍ରିୟାକଳାପ ପାଇଁ ଅଧିକ ସମୟ ଦେବା ଉଚିତ ।

ଋଷିଭ୍ୟାଲି ସ୍କୁଲର ନିର୍ଦ୍ଦେଶକ ମୋର ବନ୍ଧୁ ଡକ୍ଟର ରାଧା ହର୍ଜବର୍ଗର ଚାହୁଁଥିଲେ ଯେ ମୋର ପତ୍ନୀ ସୁନନ୍ଦା ପୁଣି ଋଷିଭ୍ୟାଲି ସ୍କୁଲରେ ପଢ଼ାନ୍ତୁ । ଠିକଣା ହେଲା ଯେ ଆମର ଦୁଇଟି ପିଲା ଋଷିଭ୍ୟାଲିରେ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ନିଃଶୁଳ୍କ ପଢ଼ିପାରିବେ । ମୁଁ ବାବାଜୀଙ୍କ ବ୍ୟତୀତ ଆଉ କାହାପାଇଁ କାମ କରିବାକୁ ଚାହୁଁ ନ ଥିଲି । ତେଣୁ ମୁଁ ଋଷିଭ୍ୟାଲି ନ ଯିବାକୁ ଠିକଣା କଲି । ନୀଲବାଗ ସ୍କୁଲ ବିକ୍ରୀ ହୋଇଗଲା ପରେ, ମୋର ପରିବ୍ରାଜକ ଦିନଗୁଡ଼ିକ ପରି ମୁଁ ପୁଣି ଏମିତି ଗୋଟାଏ ପରିସ୍ଥିତିକୁ ଆସିଗଲି ଯେତେବେଳେ ମୋତେ ଜଣା ନ ଥିଲା ଯେ, ମୋତେ କେଉଁଠି ରହିବାକୁ ପଡ଼ିବ ।

ମହାନ ଇହୁଦୀ ଶିକ୍ଷକ ଓ ଆଧ୍ୟାତ୍ମିକ ଗୁରୁଙ୍କ ପରି ମୁଁ ଏହି କଥା ଭାବି ଖୁସି ଥିଲି ଯେ, ''ସାପମାନଙ୍କର ଗାତ ଅଛି, ଶିଆଳମାନଙ୍କର ମଧ୍ୟ ରହିବାର ଗାତ ଅଛି; କିନ୍ତୁ ମଣିଷ ଛୁଆର ନିଜର ମୁଣ୍ଡ ଗୁଞ୍ଜିବାକୁ ଜାଗା ନାହିଁ ।'' କିନ୍ତୁ ବେଶି ସମୟ ଏହି ପରିସ୍ଥିତି ରହିଲା ନାହିଁ । ଏହିସବୁ ଘଟଣାକ୍ରମରେ ମୁଁ ବର୍ଷକ ପୂର୍ବେ ମଦନପଲ୍ଲୀ ବାହାରେ ଏକରର ଏକ ଚତୁର୍ଥାଂଶରୁ

କିଛି ଅଧିକ ପରିମାଣର ଜମି କିଣିନେଇଥିଲି । ମଦନପଲ୍ଲୀ ଏକ ଛୋଟ ସହର ଯାହାକୁ ମୁଁ ପ୍ରାୟ ପ୍ରତି ସପ୍ତାହରେ ନୀଲବାଗରୁ ରଷିଭ୍ୟାଲି ସ୍କୁଲକୁ ଗଲାବେଳେ ପାର ହୋଇ ଯାଉଥିଲି । ଜାଗାଟି ଶସ୍ତାରେ ମିଳିଯାଇଥିଲା, କାରଣ ଏହି ସ୍ଥାନ ସହରର ବ୍ୟସ୍ତ କେନ୍ଦ୍ରସ୍ଥଳିରୁ ଦୂରରେ ଥିଲା ଓ ଲମ୍ବାଣୀ ଜାତିର ଆଦିବାସୀମାନଙ୍କର ବସ୍ତି ନିକଟରେ ଥିଲା । ସେମାନଙ୍କୁ ଭଲ ପଡ଼ୋଶୀ ବୋଲି କୁହାଯାଉ ନଥିଲା । ଲମ୍ବାଣୀମାନଙ୍କୁ ଲୋକେ ଚୋରଡକାୟତ ବୋଲି ଭାବୁଥିଲେ; କିନ୍ତୁ ମୁଁ ଖୁସିଥିଲି, କାରଣ ସ୍ଥାନଟି ସହରର ବ୍ୟବସାୟ କେନ୍ଦ୍ରଠାରୁ ଦୂରରେ ପାହାଡ଼ଘେରା ଉପତ୍ୟକାରେ ଧାନକ୍ଷେତ ମଝିରେ ଥିଲା । ଲମ୍ବାଣୀମାନଙ୍କ କଥା ଧରିବାକୁ ଗଲେ, ମୋତେ ଲାଗୁଥିଲା କୌଣସି ଜାତିର ଲୋକଙ୍କୁ ଏପରି ଅପମାନଜକ ଶବ୍ଦରେ ବର୍ଗୀକୃତ କରିବା ଭୁଲ୍ ଥିଲା । ମୋର ସେମାନଙ୍କର ପଡ଼ିଶାରେ ରହିବାକୁ ଆପତ୍ତି ନ ଥିଲା । ମୁଁ ଗୋଟାଏ ଝୁଙ୍କରେ ଜମିଟା କିଣି ଦେଇଥିଲି । ଭାବି ନ ଥିଲି ଏହାକୁ ନେଇ କ'ଣ କରିବି ବୋଲି । ଏବେ ଏହା ଭଲ ସିଦ୍ଧାନ୍ତ ବୋଲି ପ୍ରମାଣିତ ହେଲା ।

ନୀଲବାଗସ୍ଥିତ ସ୍କୁଲ ବିକ୍ରୀ ହେବା ପରେ ସେହି ଗ୍ରାମୀଣ ଜିଲ୍ଲାରେ କ୍ଷେତର ଜମିର ପଟ୍ଟା ଇତ୍ୟାଦି ବଦଳାଇବାପାଇଁ ଏବଂ ବିକ୍ରୀର ପଞ୍ଜୀକରଣ କରିବାରେ ଲାଲଫିତା କାରବାର ହେତୁ ବର୍ଷେ ଲାଗିଯିବାର ସମ୍ଭାବନା ଥିଲା । ମୁଁ ମୋର ସାରା ସଞ୍ଚୟ ଏବଂ ଚଢ଼ା ସୁଧରେ ମଦନପଲ୍ଲୀର ଜଣେ ସାହୁକାରଠାରୁ ନେଇଥିବା ଋଣକୁ ଖଟାଇ ଜମି ଉପରେ ଘର କରିବା ଆରମ୍ଭ କରିଦେଲି । ବର୍ଷେ ଭିତରେ ଗୋଟିଏ ଧଳା ରଙ୍ଗର ଘର ପ୍ରସ୍ତୁତ ହୋଇଗଲା । ନୀଲବାଗ ସ୍କୁଲ ବିକ୍ରିର ପ୍ରକ୍ରିୟା ପୂରା ହେବା ମାତ୍ରେ ଆମେ ସେହି ଘରକୁ ଆସିଗଲୁ, ଯାହାର ନାମ ହିମାଳୟର ଉପରିଭାଗରେ ବାରମାସ ଧରି ଜମି ରହିଥିବା ବରଫକୁ ସ୍ମରଣ କରି 'ସ୍ନୋ ହ୍ୱାଇଟ୍' ରଖାଗଲା ।

ସୁନନ୍ଦା ଓ ପିଲାମାନେ ରଷିଭ୍ୟାଲି ସ୍କୁଲକୁ ଚାଲିଗଲେ ଓ ମୁଁ 'ସ୍ନୋ ହ୍ୱାଇଟ୍'କୁ ଚାଲିଆସିଲି । ଖୁବ୍ ଶୀଘ୍ର ମଦନପଲ୍ଲୀର ଘର ଏଥର ପକ୍ଷ ବିସ୍ତାର କରୁଥିବା ସତ୍‌ସଙ୍ଗ ଫାଉଣ୍ଡେସନର କାର୍ଯ୍ୟକଳାପର ମୁଖ୍ୟ କେନ୍ଦ୍ର ହୋଇଗଲା । ଏହିଠାରୁ ଏହି ଫାଉଣ୍ଡେସନ୍‌ର କ୍ରିୟାକର୍ମ ସାରା ସଂସାରରେ ବିସ୍ତୃତ ହେବାର ଥିଲା । ସେହିଠାରେ ଏକ ଶ୍ରେଣୀଗୃହ, ପନ୍ଦରଜଣ ପିଲା ଏବଂ କୌଣସି ଶିକ୍ଷକ ନ ଥିବା ଗୋଟିଏ ମାଗଣା ସତ୍‌ସଙ୍ଗ ପାଠଶାଳା ଆରମ୍ଭ ହେଲା । ଏବେ ଏହା ଏକ ଉତ୍କୃଷ୍ଟ ବିଦ୍ୟାଳୟରେ ପରିଣତ ହୋଇଛି । ସେଠାରେ ଶହେ କୋଡ଼ିଏ ଜଣ ଛାତ୍ରଛାତ୍ରୀଙ୍କୁ ସବୁ ପ୍ରକାରର ଉତ୍ତମ ଶିକ୍ଷା ନିଃଶୁଳ୍କ ଯୋଗାଇ ଦିଆଯାଏ । ଅଧିକାଂଶ ପିଲା ସେହି ଜନଜାତିର ଲୋକମାନଙ୍କର ଯେଉଁମାନଙ୍କୁ ସମାଜ ଓ ସରକାର ଚୋର ଡକାଏତ୍ କହୁଥିଲେ ଏବଂ ଯେଉଁମାନଙ୍କର ପିଲାମାନେ ସ୍କୁଲକୁ ଯାଉ ନ ଥିଲେ ।

ସେହି ପିଲାମାନଙ୍କର ଉତ୍ସାହ ଓ ଶିଖିବାର କ୍ଷମତା ଦେଖିବାପରି । ଏହା ମୋ ପାଇଁ ବିଶେଷ ସନ୍ତୋଷ ଓ ଆନନ୍ଦର ଉତ୍ସ । ସତ୍‌ସଙ୍ଗ ଫାଉଣ୍ଡେସନର ସଦସ୍ୟ ଏବଂ ଅନ୍ୟ ସହୃଦୟ ବ୍ୟକ୍ତିମାନଙ୍କ ଦ୍ୱାରା ଦିଆଯାଉଥିବା ଦାନଦ୍ୱାରା ଏହି ବିଦ୍ୟାଳୟକୁ ପରିଚାଳନା କରାଯାଏ । ପିଲାଙ୍କୁ ସ୍କୁଲ ୟୁନିଫର୍ମ ଓ ଦ୍ୱିପ୍ରହରର ଗରମ ଗରମ ଉତ୍ତମ ଖାଦ୍ୟ ମଧ୍ୟ ମାଗଣା ଦିଆଯାଏ । ଲୋକମାନେ ସାଢ଼େସାତହଜାର ଟଙ୍କା ଦେଇ ଗୋଟିଏ ପିଲାର ଉତ୍ତରଦାୟିତ୍ୱ ନିଅନ୍ତି । ଏହା ଆୟକର ମୁକ୍ତ ।

କିଛି ବର୍ଷ ପରେ ଆଇ.ସି.ଏସ୍.ଇ. ପଦ୍ଧତିରେ ଆବାସିକ 'ପୀପଲ ଗ୍ରୋଭ୍ ସ୍କୁଲ' (ପିଜିଏସ୍)* ଆରମ୍ଭ ହେଲା । ଏହା ଏକ ସୁନ୍ଦର ଗ୍ରାମୀଣ ସ୍ଥାନ । ଏହା ଜଙ୍ଗଲ ପାହାଡ଼ ମଝିରେ ଥିବା ଏକ ସୁନ୍ଦର ହ୍ରଦ ନିକଟରେ ରହିଛି । ଏହି ସ୍ଥାନ ତିରୁପତିଠାରୁ ବେଶି ଦୂର ନୁହେଁ । ଭାରତର ତତ୍‌କାଳୀନ ରାଷ୍ଟ୍ରପତି ଡ: ଅବଦୁଲ କଲାମ ତାଙ୍କର ଗସ୍ତ କାର୍ଯ୍ୟକ୍ରମରେ ସେଠାକୁ ଆସି ପିଲାମାନଙ୍କୁ କହିଥିଲେ – "ଏହା ଏକ ସୁନ୍ଦର ସ୍ଥାନ, ତୁମମାନଙ୍କର ଭାଗ୍ୟ ଯେ ତୁମେ ଏହି ସ୍ଥାନରେ ବଡ଼ ହେଉଛ ଏବଂ ନିଜର ସୃଜନାତ୍ମକତା ବଢ଼ାଉଛ ।" ଏଠାରେ ପିଲାଏ କେବଳ ଶ୍ରେଣୀ ଗୃହରେ ପାଠ ପଢ଼ନ୍ତି ନାହିଁ, ସେମାନେ ସେହି ବହୁମୁଖୀ ବାସ୍ତବତାକୁ ବୁଝିବାର ଚେଷ୍ଟା କରନ୍ତି ଯାହାକୁ ଜୀବନ କୁହାଯାଏ । ମୁଁ ପ୍ରାୟ ନିଜର ମନଶ୍ଚକ୍ଷୁରେ ବାବାଜୀଙ୍କୁ ପିପ୍ପଳୀ ଗଛ ମୂଳେ ବସି ତାହାର ବୈଜ୍ଞାନିକ ନାଁ 'Ficus Religiosa'କୁ ବୁଝାଇବାର କିମ୍ବା ଗଛ ଡାଳରେ ବସିଥିବା ପକ୍ଷୀର ଜାତିକୁ ନିର୍ଦ୍ଦିଷ୍ଟ କରୁଥିବାର ଦୃଶ୍ୟ ଦେଖିପାରେ ।

ସତ୍‌ସଙ୍ଗ ଫାଉଣ୍ଡେସନର କାର୍ଯ୍ୟ ସୁଚାରୁରୂପରେ ଆଗଉଥାଏ, ସ୍କୁଲ ହେଉ ବା ମାନବ ଏକତା ମିଶନ ହେଉ (ଯାହା ସର୍ବ ଧର୍ମ ଓ ଜାତିର ଲୋକଙ୍କୁ ମାନବ ଜାତିର ହୋଇଥିବାରୁ ଏକତ୍ରିତ କରିବାର ପ୍ରୟାସ କରେ), କିମ୍ବା ସବୁକିଛି ଦୃଶ୍ୟମାନ ପଶ୍ଚାତରେ ପ୍ରକୃତ ସତ୍ୟ ପ୍ରତି ଆଗ୍ରହୀ ଲୋକଙ୍କୁ ମାର୍ଗଦର୍ଶନ ଦେବାପାଇଁ ମୋର ଭାରତ ବା ବିଦେଶ ଯାତ୍ରା ହେଉ, ଏହା ସବୁ ସେହି ଲୋକମାନଙ୍କ ଏକାଠି ହୋଇଥିବାପାଇଁ ସମ୍ଭବ ହୋଇପାରୁଥିଲା

---

* ଶ୍ରୀମତୀ ବାରାଣସୀ ରୁକ୍ମଣୀ ରାମାସ୍ୱାମୀ ରେଡ୍ଡୀଙ୍କର (ଯେ ମୋର ବନ୍ଧୁ ରମେଶ ରେଡ୍ଡୀଙ୍କର ମାତା) ଚିତ୍ତୁର ଜିଲ୍ଲାସ୍ଥିତ ସଦୁମର ଏକ ସୁନ୍ଦର ଉପତ୍ୟକାରେ ଥିବା ଜମି ଉପରେ ପୀପଲ ଗ୍ରୋଭ୍ ସ୍କୁଲ ସ୍ଥାପିତ ହୋଇଛି । ଏହି ଜମି ଶ୍ରୀମତୀ ରେଡ୍ଡୀଙ୍କର ଦାନ । ଏଠାରେ ବହୁ ପ୍ରାକୃତିକ ପିପ୍ପଳୀ ବୃକ୍ଷ ରହିଛି ।

ଯେଉଁମାନେ ଏହି କାରଣକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲେ । ସେମାନଙ୍କୁ ରାମକୃଷ୍ଣ ପରମହଂସଙ୍କ ଶବ୍ଦରେ ସମ୍ଭରକ (Provider) ବୋଲି କହିବି । କିଛି ଲୋକ ଧନ ଦାନ କଲେ, କିଛି ଲୋକ ନିଜର ଦୁଃଖକଷ୍ଟକୁ ଖାତିର ନ କରି କାର୍ଯ୍ୟ ନିର୍ବାହ କଲେ ଏବଂ ନିଜର ବହୁମୂଲ୍ୟ ସମୟ ଦେଲେ । ଆହୁରି କେତେଜଣ ସଚ୍ଚା ସାଧକ ଆସିଲେ ଯେଉଁମାନଙ୍କର ପ୍ରମୁଖ ଉଦ୍ଦେଶ୍ୟ ଥିଲା

ସତ୍ୟର ସନ୍ଧାନ । ଆଧ୍ୟାତ୍ମିକ ଦୃଷ୍ଟିରୁ ଅନ୍ତିମ ଶ୍ରେଣୀର ଲୋକମାନେ ମୋ ପାଇଁ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ଥିଲେ, ଯଦିଓ କାର୍ମିକ ରୂପରେ ମୁଁ ସେହିସବୁ ଲୋକମାନଙ୍କ ନିକଟରେ ଋଣୀ, ଯେଉଁମାନଙ୍କୁ ବାବାଜୀ ନିଜର ଯୋଜନାଗୁଡ଼ିକୁ କ୍ରିୟାନ୍ୱିତ କରିବାପାଇଁ ମୋ ପାଖକୁ ପଠାଇଥିଲେ । ମୁଁ ତ ତାହାର ନିମିତ୍ତ ମାତ୍ର ଥିଲି ।

ମୁଁ କୌଣସି ବ୍ୟକ୍ତିବିଶେଷଙ୍କର ନାମ ଉଲ୍ଲେଖ କରି ସେମାନଙ୍କୁ ଲଜ୍ଜିତ କରିବାକୁ ଚାହେଁ ନାହିଁ । ପୁଣି ତାହା କଲେ ନାମର ସୂଚୀ ଅତ୍ୟନ୍ତ ଦୀର୍ଘ ହୋଇଯିବ । କେବଳ ଏତିକି କହିପାରେ ଯେ, ଏହିସବୁ ଲୋକଙ୍କ ଉପରେ ବାବାଜୀଙ୍କର ଆଶୀର୍ବାଦର ଛତ୍ର-ଛାୟା ରହିଛି ଏବଂ ତାଙ୍କର ଅନନ୍ତ କୃପା ହେତୁ ସେ ନିଜର ଉଦ୍ଦେଶ୍ୟରୁ ବିଚଳିତ ହେବେ ନାହିଁ ଏବଂ ସ୍ଥିର ଗତିରେ ସେହି ଦିଗକୁ ଅଗ୍ରସର ହେବେ । ମୋ କଥା କହିବାକୁ ଗଲେ, ମୁଁ ତ ହେଉଛି ବାବାଜୀଙ୍କର ଦାସ, ଏହି ଲୋକମାନଙ୍କର କଠିନ କିନ୍ତୁ ବୈଭବମଣ୍ଡିତ ଯାତ୍ରାରେ ସେମାନଙ୍କ ସହିତ ଚାଲିବାକୁ ଏବଂ ଆବଶ୍ୟକ ପଡ଼ିଲେ ଦିନ-ରାତି ପରିଶ୍ରମ କରିବାକୁ ପ୍ରସ୍ତୁତ ।

ଆଧ୍ୟାତ୍ମିକ ଯାତ୍ରାର ଅଙ୍ଗସ୍ୱରୂପ ମୁଁ କିଛି ବନ୍ଧୁଙ୍କର ଦଳଙ୍କୁ କିଛି ବର୍ଷ ପୂର୍ବେ ବଦ୍ରି, କେଦାର, ଗୋମୁଖ, ଋଷିକେଶ, ଆଜମେର, ଦକ୍ଷିଣେଶ୍ୱର, କନ୍ୟାକୁମାରୀ, ବାଲକନାଥ, ଗୋରଖପୁର, ଅଯୋଧ୍ୟା ଏବଂ ଅନ୍ୟସ୍ଥାନମାନଙ୍କୁ ତୀର୍ଥଯାତ୍ରାରେ ନେଇଯିବାକୁ ଲାଗିଲି । କୈଳାସ-ମାନସରୋବରର ଯାତ୍ରା ଥିଲା ସବୁଠାରୁ କଠିନ । ଏହା ଥିଲା ମୋ ପାଇଁ ସବୁଠାରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ମୋର ବିଶ୍ୱାସ ଯେ, ଯେଉଁ ପଚାଶରୁ ଅଧିକ ବ୍ୟକ୍ତି, ଯେ ଏହି ଯାତ୍ରାରେ ଆସିଥିଲେ, ସେମାନଙ୍କର ଅନୁଭବ ହୋଇଥିବ ଯେ କିପରି ଏହି ଯାତ୍ରା ଆମେ ପୂର୍ବରୁ କରିଥିବା ଯାତ୍ରାଗୁଡ଼ିକଠାରୁ ଭିନ୍ନ ଥିଲା ।

ଆପଣଙ୍କର ମନେ ଥିବ ଯେ ମୁଁ ବହୁବର୍ଷ ପୂର୍ବେ ବାବାଜୀଙ୍କ ସହିତ କୈଳାସର ଅଧା ପର୍ଯ୍ୟନ୍ତ ଯାତ୍ରା କରିସାରିଥିଲି ଏବଂ ମୋତେ ଅସୁସ୍ଥତା ହେତୁ ଫେରିଆସିବାକୁ ପଡ଼ିଥିଲା । ସେତେବେଳେ ବାବାଜୀ କହିଥିଲେ, ବହୁ ଲୋକଙ୍କ ସହିତ ମୁଁ କୈଳାସକୁ ଯିବି, ସେତେବେଳେ ଭାବିଥିଲି, 'ବହୁ ଲୋକ'ର ଅର୍ଥ କ'ଣ ଥିଲା ବୋଲି ।

ଜଣେ ଉତ୍ତମ ବନ୍ଧୁ ଆରମ୍ଭ କଲେ ଓ ସବୁ କଷ୍ଟ ସତ୍ତ୍ୱେ ଯାତ୍ରାର ପ୍ରବନ୍ଧ କଲେ । ମୁଁ ଯାତ୍ରାର ଓ ସହର-ଜୀବନରେ ଅଭ୍ୟସ୍ତ ସଙ୍ଗୀମାନଙ୍କର ଅସୁବିଧାର ପୂରା ବର୍ଣ୍ଣନା ଦେବି ନାହିଁ । ଜଣେ ବନ୍ଧୁଙ୍କ ଦ୍ୱାରା ଏହି ଯାତ୍ରା-ବୃତ୍ତାନ୍ତ ଲେଖା ସରିଛି, ତେବେ ବି ମୁଁ ନିଜର କିଛି ବ୍ୟକ୍ତିଗତ ଅନୁଭବ ବର୍ଣ୍ଣନା କରିବାକୁ ଚାହେଁ, ଯାହା ସେହି ଯାତ୍ରା ସମୟରେ ହୋଇଥିଲା – ଯେତେବେଳେ ପ୍ରଥମେ ମାନସରୋବର ହ୍ରଦ ଦୃଷ୍ଟିଗୋଚର ହେଲା, ଯମଦ୍ୱାରରେ ଯେତେବେଳେ ପ୍ରଥମକରି କୈଳାସ ଦୃଷ୍ଟିଗୋଚର ହେଲେ ଏବଂ ଶେଷରେ କୈଳାସର ପରିକ୍ରମାରେ ସମୁଦ୍ର ତଳରୁ 18500 ଫୁଟ ଉଚ୍ଚା ଡୋଲ୍ମାଲା ଗିରିପଥ ଚଢ଼ିବା

ସମୟରେ, (ଆମ ମଧ୍ୟରୁ ଅଧିକାଂଶ ଅମ୍ଳଜାନର ଅଳ୍ପତା ହେତୁ ନିଃଶ୍ୱାସ ନେବାରେ କଷ୍ଟ ଅନୁଭବ କରୁଥିଲେ) ଯେଉଁଠାରେ ଆମେ ରାତିରେ ତମ୍ବୁ ପକାଇ ରହିଲୁ ।

ଯେମିତି ମୁଁ ମାନସରୋବରକୁ ଦେଖିଲି, ମୁଁ ଜାଣିଗଲି ଏହି ପବିତ୍ର ନୀଳ ରଙ୍ଗର ହ୍ରଦକୁ ମୁଁ ପ୍ରଥମ ଥର ଦେଖୁ ନାହିଁ । ମୁଁ ଯେତେବେଳେ ସେହି ହ୍ରଦକୁ ଦେଖି ଠିଆ ହୋଇଥିଲି, ମୋର ମେରୁଦଣ୍ଡରେ ଆନନ୍ଦର ଏକ ସ୍ରୋତ ଊର୍ଦ୍ଧ୍ୱମୁଖୀ ହେଲା । ମୋର ପୂର୍ବଜନ୍ମଗୁଡ଼ିକର ଦୃଶ୍ୟ ପରେ ଦୃଶ୍ୟ ମୋର ଆଖି ସାମ୍ନାରେ ଖେଳିଗଲା । ମୁଁ ନିଜକୁ ଗୁର୍ଲା ମାନ୍ଧାତା ପର୍ବତ ଶ୍ରେଣୀର ଗୋଟିଏ ଗୁମ୍ଫାରେ କେବଳ ଖଣ୍ଡେ ଧଳା ଧୋତି ପିନ୍ଧି ଧ୍ୟାନରେ ଯୋଗୀ ରୂପରେ ବସିଥିବାର ଦେଖିଲି । ଡାହାଣପଟେ କୈଳାସ ପର୍ବତ ଦଣ୍ଡାୟମାନ ଥିଲା ।

ଯେମିତି ମୁଁ ହ୍ରଦରେ ବୁଡ଼ ପକାଇବାକୁ ପ୍ରସ୍ତୁତ ହେଲି, ମୁଁ ଜଣେ ଯୁବ ସନ୍ନ୍ୟାସୀଙ୍କୁ ପାଣିରୁ ବାହାରି ଆସିବାର ଦେଖିଲି । ସେ କୋଡ଼ିଏ ବର୍ଷରୁ କମ୍ ବୟସର ଥିଲେ, ତାଙ୍କର ଜଟା ଥିଲା, ସେ କୌପୀନ ପିନ୍ଧିଥିଲେ ଏବଂ ନାଥପନ୍ଥୀଙ୍କର ଚିହ୍ନ ସ୍ୱରୂପ ଚିମୁଟା ଧରିଥିଲେ । ସେ ଅତି ସୌନ୍ଦର୍ଯ୍ୟବାନ୍ ଥିଲେ, ତାଙ୍କ ଓଠରେ ମନ୍ଦ ହାସ୍ୟ ଖେଳୁଥିଲା । ନିଜର ପାଖର ଲୋକମାନଙ୍କର ଭାବଲେଶହୀନ ଚେହେରା କହୁଥିଲା ଯେ ସେମାନେ କିଛି ଦେଖିପାରୁ ନ ଥିଲେ । ଏହି ବିଶେଷ ଦୃଷ୍ଟି ମୋତେ ଦିଆଯାଇଥିଲା, କାରଣ ଯାହା ବି ହୋଇଥାଉ । ମୁଁ ତାଙ୍କର ପାଣିରୁ ବାହାରିବାପାଇଁ ଅପେକ୍ଷା କରିଥାଏ । ମୋ ପାଖ ଦେଇ ଯିବା ସମୟରେ ମୁଁ ଶ୍ରଦ୍ଧାପୂର୍ବକ ଠିଆ ହୋଇଥାଏ, ସେ ମୋତେ କହିଲେ – ''ମୁଁ ଗୁରୁ ଗୋରକ୍ଷ ଏବଂ ଜଳନ୍ଧରୀପାଙ୍କର ଶିଷ୍ୟ ସିଦ୍ଧିନାଥ । ଶ୍ରୀଗୁରୁ ତୁମକୁ ଅପେକ୍ଷା କରିଛନ୍ତି । ଅଲଖ ନିରଞ୍ଜନ !'' ଏବଂ ଚାଲିଗଲେ । କେହି କିଛି ଦେଖିଲେ ନାହିଁ ବା ଶୁଣିଲେ ନାହିଁ । ମୁଁ ଯେତେବେଳେ ନଇଁପଡ଼ି ଭୂଇଁରେ ମୁଣ୍ଡ ଲଗାଇଲି, ସେତେବେଳେ ସେମାନେ ଭାବିଲେ ଯେ ମୁଁ ମାନସରୋବର ଓ କୈଳାସଙ୍କୁ ଦଣ୍ଡବତ କରୁଛି । ତା'ପରେ ମୁଁ ବୁଡ଼ ପକାଇଲି, ଅନ୍ୟମାନେ ମଧ୍ୟ । ପାଣି ଭାରି ଥଣ୍ଡା ଥିଲା; କିନ୍ତୁ ଭାରି ସ୍ଫୂର୍ତ୍ତିଦାୟକ ଓ ପୂତ ଥିଲା । ମୋତେ ଲାଗିଲା ଯେପରି ଏକ ଭିନ୍ନ ସ୍ତରରେ ପହଞ୍ଚିଯାଇଛି !

ତା'ପରେ ଆମେ ଯମଦ୍ୱାରରେ ପହଞ୍ଚିଲୁ । ସେଠାରୁ ଆମକୁ କୈଳାସର ନିକଟତମ ଦର୍ଶନ ମିଳିଲା । କୈଳାଶକୁ ହିନ୍ଦୁ, ବୌଦ୍ଧ ଓ ତିବ୍ବତର ବୋନପା ପବିତ୍ର ବୋଲି ମାନନ୍ତି । ମହାନ୍ ବରଫାବୃତ୍ତ ଶୃଙ୍ଗ ଆମ ଉପରେ ମୀନାର ପରି ଠିଆହୋଇ ରହିଥାଏ । ଏକ ଅସାଧାରଣ ଧ୍ୟାନର ଭାବ ମୋ ଉପରେ ପ୍ରଭାବ ବିସ୍ତାର କଲା ।

× × ×

ଆମର କେତେଜଣ ଯାତ୍ରୀ ଖଚ୍ଚର ନେଇଥିଲେ । ସେମାନଙ୍କୁ ସେଠାରେ କିଛିସମୟ ରହିବାର ଥିଲା ଯେମିତି ଖଚ୍ଚର ଓ କୁଲିମାନେ ବ୍ୟବସ୍ଥିତ ହୋଇଯିବେ । ମୋ ପରି କେତେଜଣ ଅନ୍ୟ ଲୋକ ପାଦରେ ଚାଲି ପରିକ୍ରମା କରିବାର ନିର୍ଣ୍ଣୟ ନେଇଥିଲୁ । କିନ୍ତୁ ଆମେ ସମସ୍ତେ ଯମ ଦ୍ୱାରରେ ଅଧଘଣ୍ଟାଏ ଅପେକ୍ଷା କଲୁ । ମୁଁ କୈଳାସ ଆଡ଼କୁ ମୁହଁକରି ଗୋଟିଏ ପଥର ଉପରେ ବସିଗଲି ଓ ନିଜର ଅନ୍ତରର ଗଭୀରତାକୁ ଲମ୍ଫ ପ୍ରଦାନ କଲି । ମୁଁ ମୋର ଅନ୍ତର ମଧ୍ୟରେ ବିଧ୍ୱଂସକ ତାଣ୍ଡବ ସମୟରେ ଶିବ ମହାଦେବ ବଜାଉଥିବା ଡମ୍ବୁରର ଶବ୍ଦ ଶୁଣିଲି – ଡଗ୍, ଡଗ୍, ଡଗ୍ । ଶୀଘ୍ର ହିଁ ତାହା ଭମ୍, ଭମ୍, ଭମ୍ ଗୁଞ୍ଜରଣରେ ପରିବର୍ତ୍ତିତ ହେଲା, ଯାହା ମୋର ମସ୍ତିଷ୍କରେ ବିସ୍ଫୋଟିତ ହେଉଥିବାଭଳି ଜଣାଗଲା । ମନଶ୍ଚକ୍ଷୁରେ ମୁଁ ଦୂରରେ ଏକ ଦ୍ରୁତ ଗତିଶୀଳ ଶଙ୍କୁ ପରି ଘୂର୍ଣ୍ଣିବାତ୍ୟା ଦେଖିଲି । ତାହା ମୋ ଆଡ଼କୁ ଆସୁଥାଏ ଓ ତାହା ସହିତ ମୋତେ ଉଡ଼ାଇ ନେଇଯିବାର ଭୟ ଦେଖାଉଥାଏ । ହଠାତ୍ ମୁଁ ଉଚ୍ଚସ୍ୱରରେ ନାଥମାନଙ୍କର ସମ୍ଭାଷଣ ଶୁଣିଲି – ଅଲଖ ନିରଞ୍ଜନ ଏବଂ ବାତ୍ୟା ଅପସରିଗଲା । ଘୂର୍ଣ୍ଣନ ବନ୍ଦ ହେଲା, ଚାରିଆଡ଼େ ନିସ୍ତବ୍ଧତା ବିରାଜିଲା । ମୁଁ ଆଖି ଖୋଲି କହିଲି, 'ଶିବୋହମ୍' ଏବଂ ଚାଲିବା ଆରମ୍ଭ କଲି । 'ଶିବୋହମ୍' ସାରା ଯାତ୍ରାପଥ ମୋ ସହିତ ରହିଲା ଏବଂ ପରେ ମଧ୍ୟ ।

× × ×

ପରିକ୍ରମାର ଦ୍ୱିତୀୟ ଦିନ 'ଡୋଲ୍‌ମୋଲା' ଗିରପଥ ପାର ହୋଇ ଆମେ ପ୍ରାୟ ସନ୍ଧ୍ୟା ଆଠଟାରେ ଆମର ରହିବା ସ୍ଥାନରେ ପହଞ୍ଚିଲୁ । ଆମେ ସମସ୍ତେ ଭାରି ଥକି ଯାଇଥିଲୁ । ଉଚ୍ଚତା ହେତୁ ପବନରେ ଅମ୍ଳଜାନର ପରିମାଣ କମ୍ ଥିଲା ଏବଂ ଆମେ ଗୋଟାଏ ଦିନ ଭିତରେ ଦୁର୍ଗମ ବାଇଶ କିଲୋମିଟର ଚାଲି ସାରିଥିଲୁ ।

ନିଜ ତମ୍ବୁରେ ପହଞ୍ଚିବା ପରେ ମୁଁ ମୋର ବନ୍ଧୁମାନଙ୍କୁ କହିଲି ମୋତେ ଖାଇବା ପରେ କେହି ବ୍ୟସ୍ତ କରିବେ ନାହିଁ । ଆମ ମଧ୍ୟରୁ କେତେଜଣଙ୍କର ନାକରୁ ରକ୍ତ ବାହାରୁଥିଲା (ଅକ୍ସିଜେନର ଅଳ୍ପତା ହେତୁ), ମୁଁ ନିଜର ନାକ ସଫାକଲି, ମୂତ୍ରାଶୟ ଖାଲି କଲି ଏବଂ ତମ୍ବୁର କବାଟର ଜିପ୍ ବନ୍ଦ କରି ପଦ୍ମାସନରେ ବସିଗଲି, ଆଜ୍ଞାଚକ୍ର ଉପରେ ଧ୍ୟାନ ଲଗାଇଲି । ରକ୍ତ ଜୋର୍‌ରେ ମୋର ମସ୍ତିଷ୍କକୁ ଚଢ଼ିଲା, ମୋର ମେରୁଦଣ୍ଡରେ ବିଦ୍ୟୁତ୍ ଖେଳିଗଲା ପରି ଲାଗିଲା ଏବଂ କିଛି ସମୟ ମଧ୍ୟରେ ମୁଁ ଆନନ୍ଦୋଚ୍ଛ୍ୱାସର ଏକ ରୁପେଲି ସ୍ୱଚ୍ଛ ଆବରଣ ପିନ୍ଧି ନିଜ ଶରୀରର ବାହାରେ ଥିଲି ।

ଏହି ନୂତନ ତେଜୋଦୀପ୍ତ ମୁଁ, କ୍ଷିପ୍ର ଗତିରେ ବହୁ ସ୍ତର ଦେଇ ଗତି କରିଗଲି ଓ

ପହଞ୍ଚିଲି ସେହିଠାରେ, ଯେଉଁଠାରେ ଅନେକ ତେଜସ୍ୱୀ ଜୀବ ରହୁଥିଲେ ଏବଂ ଏପରି ଏକ ଆଶ୍ଚର୍ଯ୍ୟଜନକ ସ୍ଥାନରେ ପହଞ୍ଚିଲି, ଯାହା ରୁପେଲି-ନୀଳ ରଙ୍ଗର ଶୀତଳ ଜ୍ୟୋତିରେ ଦୀପ୍ତ ଥିଲା । ଏକ ଶ୍ୱେତ ସ୍ଫଟିକର ପ୍ରାସାଦ ଦ୍ୱାରରେ ବିରାଟ ନୀଳ ରଙ୍ଗର ନାଗ ପ୍ରହରୀ ଥିଲେ । ସେ ନିଜର ଫଣା ହଲାଇ ମୋତେ ଭିତରକୁ ଯିବାର ଇଙ୍ଗିତ ଦେଲେ । କେନ୍ଦ୍ରୀୟ କକ୍ଷରେ ସାମାନ୍ୟ ଉଚ୍ଚା ଲାଲ-ବାଇଗଣୀ ରଙ୍ଗର ଆସନରେ ମହାନ୍ ଆତ୍ମା ମହାଦେବ ଏକ ପ୍ରଦୀପ୍ତ ଶୂନ୍ୟ ରୂପରେ ବିରାଜମାନ ଥିଲେ (ଜ୍ୟୋତିର୍ମୟ ଶୂନ୍ୟତା ମଝିରେ ମଝିରେ ତେଜୋଦୀପ୍ତ ଶିବ ଭୋଳାନାଥଙ୍କ ରୂପରେ ପରିବର୍ତ୍ତିତ ହେଉଥିଲା । ତାଙ୍କର ମଥାରେ ଅର୍ଦ୍ଧଚନ୍ଦ୍ର ଓ ଗଳାରେ ନାଗରାଜ ଏବଂ ତାଙ୍କର ତୃତୀୟ ନୟନ ନୀଳ ମୋତି ପରି ଚମକିତ) । ତାଙ୍କର ଦୁଇପଟେ ପାଞ୍ଚଜଣ ବ୍ୟକ୍ତି ବସିଥିଲେ । ବାବାଜୀ, ବାଇବେଲର ପୟଗମ୍ବରଙ୍କ ପରି ଜଣେ, ନିଜର ଚିମୁଟା ସହିତ ଜଣେ ନାଥ, ଦାଢ଼ି ଓ ପଗଡ଼ି ଥିବା ଜଣେ ବ୍ୟକ୍ତି, ଯାହାଙ୍କର ଆଖି ମୁଁ ଭେଟିଥିବା ସବୁ ବ୍ୟକ୍ତିଙ୍କ ମଧ୍ୟରେ ସବୁଠାରୁ କରୁଣାମୟ ଥିଲା, ଆଉ ଜଣେ ମଙ୍ଗୋଲୀୟ ଚେହେରାର, ବାଳର ଜଟାରେ ଜୁଡ଼ା ପାରିଥିବା ଓ ଉପରକୁ ଉଠିଯାଇଥିବା ନିଶ ରଖିଥିବା ଏବଂ ଲାଲ ଢିଲା ଜାମା ପିନ୍ଧିଥିବା ବ୍ୟକ୍ତି ମଧ୍ୟ ଥିଲେ । ସେମାନେ ସମସ୍ତେ ମୋ ପରି ରୁପେଲି-ଜ୍ୟୋତିର୍ମୟ ଶରୀରଯୁକ୍ତ ଥିଲେ । ମଲ୍ଲୀଫୁଲର ସୁଗନ୍ଧରେ ଚତୁର୍ଦ୍ଦିଗ ମହକୁଥିଲା । ମୁଁ ବହୁବାର ଦଣ୍ଡବତ ପ୍ରଣାମ କଲି ଓ ଚକା ପକାଇ ଭୂଇଁରେ ବସିଗଲି । ବାବାଜୀ ମୌନ ଭାଙ୍ଗିଲେ ।

"ମଧୁ କୈଳାସକୁ ତୁମକୁ ସ୍ୱାଗତ । ଏ ହେଉଛନ୍ତି ମହାନ ୟିହୁଦୀ ଗୁରୁ ଈଶା ବା ଯୀଶୁ । ନାଥ ହେଉଛନ୍ତି ସ୍ୱୟଂ ଗୋରଖନାଥ, କରୁଣାମୟ ଚକ୍ଷୁଯୁକ୍ତ ହେଉଛନ୍ତି ମହାନ ନାନକଦେବ, ଏହି ନିଶ ଓ ଲାଲଜାମା ପିନ୍ଧା ହେଉଛନ୍ତି ଅଦ୍ୱିତୀୟ ପଦ୍ମସମ୍ଭବ, ଗୁରୁ ରିମ୍ପୋଚ । ଆମେ ଏଠାର ସମସ୍ତେ ବାବାଜୀଙ୍କର ଶିଷ୍ୟ । ଶ୍ରୀ ଗୁରୁ ଆଉ କେହି ନୁହନ୍ତି, ସୁଦୀପ୍ତ ଶୂନ୍ୟ ଆଦିନାଥ ସ୍ୱୟଂ ମହାଦେବ, ଯେ ସିଂହାସନରେ ବସନ୍ତି । ମହାନ୍ ପୀର ସାଇଁନାଥ ଏବଂ ଆଦରଣୀୟ ଖ୍ୱାଜା ମୋଇନୁଦ୍ଦୀନ ଚିସ୍ତୀ, ଯାହାକୁ ଗରିବ ନୱାଜ ମଧ୍ୟ କୁହାଯାଏ, ଏଠାରେ ରହିପାରିଲେ ନାହିଁ; କିନ୍ତୁ ସେ ତାଙ୍କର ସ୍ନେହ ଓ ଆଶୀର୍ବାଦ ତୁମକୁ ପଠାଇଛନ୍ତି । ଶଙ୍କର ଭାଗବତ୍ ପାଦ ପ୍ରଭୃତି ଅନ୍ୟ ମହାନ୍ ଯୋଗୀମାନଙ୍କର ଓ ଗୁରୁମାନଙ୍କର ତରଫରୁ ମଧ୍ୟ (ଯେଉଁମାନଙ୍କର ନିବାସ କୈଳାସ ଓ ଯେଉଁମାନେ ଆଜି ଏଠାରେ ପ୍ରକଟ ନ ହେବାପାଇଁ ଠିକଣା କରିଛନ୍ତି) ତୁମର ସ୍ୱାଗତ ଓ ଆଶୀର୍ବାଦ ।

"ବାବାଜୀ" ! ମୁଁ କହିଲି, "ମୋତେ ଏଠାକୁ ଆସିବାକୁ ଦେଇଥିବାରୁ ଆପଣଙ୍କୁ ଓ ଶ୍ରୀଗୁରୁଙ୍କୁ ଧନ୍ୟବାଦ ଜଣାଉଛି । ମୁଁ ଭାବୁଛି, ମୁଁ ଏଥର ଏଇଠି ରହିଯିବି । ଆପଣଙ୍କ ପରି ମୋର ମଧ୍ୟ ପୃଥିବୀକୁ ଫେରିବାର କୌଣସି ଆଗ୍ରହ ନାହିଁ, ତାହା କଳିଯୁଗୀୟ ଅନ୍ଧକାରରେ

ଢାଙ୍କିହୋଇ ରହିଛି । ମୁଁ ଭାବୁଛି ମୁଁ ବହୁତ କିଛି କରି ସାରିଲିଣି ଏବଂ ଯାହାଙ୍କୁ ଆପଣ ମୋ ପାଖକୁ ମାର୍ଗଦର୍ଶନପାଇଁ ପଠାଇଥିଲେ, ସେମାନେ ଏବେ ତାଙ୍କ ନିଜର ଦେଖାଶୁଣା କରିପାରିବେ । ଆଉ ତା'ପରେ ମୁଁ ତ ଜାଣେ ସହାୟତାପାଇଁ ଆପଣ ତ ଅଛନ୍ତି ହିଁ ।

ମୋର ଶରୀର ଷାଠିଏ ବର୍ଷ ପୁରୁଣା ହୋଇଗଲାଣି ଏବଂ ଭୟଙ୍କର ବେମାର ପଡ଼ିବା ପୂର୍ବରୁ ବା ଦୁର୍ବଳ ହୋଇଯିବା ପୂର୍ବରୁ ଏହାକୁ ତ୍ୟାଗ କରିବା ଉଚିତ । ମୁଁ ଶାରୀରିକ ରୂପେ କାହା ଉପରେ ନିର୍ଭର କରିବାକୁ ଚାହେଁ ନାହିଁ ।''

''ତୁମେ ପୁଣି ସେହି ପରିସ୍ଥିତିରେ ଅଛ ଯେପରି ତୁମେ ସେତେବେଳେ ଥିଲ ଯେତେବେଳେ ମୁଁ ତୁମକୁ ମୋତେ ଛାଡ଼ି ସମତଳକୁ ଯିବାକୁ କହିଥିଲି । ମୁଁ ପୁଣି ଥରେ କହୁଛି, ଫେରିଯାଅ । ତୁମର ଆଶ୍ରିତ ଲୋକମାନେ ଏବଂ ତୁମର ସାଥୀମାନେ, ଆଧ୍ୟାତ୍ମିକ ଓ ସାଂସାରିକ, ଏବେ ଏତେ ଉନ୍ନତ ହୋଇ ନାହାନ୍ତି ଯେପରି ନିଜର ଯତ୍ନ ନିଜେ ନେଇପାରିବେ । ତୁମର ପତ୍ନୀକୁ, ଯାହାକୁ ତୁମେ ନିଜ ପସନ୍ଦରେ ବିବାହ କରିଥିଲ, ବର୍ତ୍ତମାନ ମଧ୍ୟ ତୁମର ଆବଶ୍ୟକତା ଅଛି । ସାଂସାରିକ ଓ ଆଧ୍ୟାତ୍ମିକ ଦାୟିତ୍ୱ ବର୍ତ୍ତମାନ ପୂର୍ଣ୍ଣ ହୋଇ ନାହିଁ । ତରବର ହୁଅ ନାହିଁ । ତୁମେ ଏହା ମଧ୍ୟ ଠିକଣା କରି ନାହଁ ଯେ ତୁମ ପରେ ତୁମର ଆଧ୍ୟାତ୍ମିକ ଦାୟିତ୍ୱ କିଏ ନିର୍ବାହ କରିବ । ସେତେବେଳ ପର୍ଯ୍ୟନ୍ତ ତୁମେ ସେହିଠାରେ ରୁହ । କିଛି ସମସ୍ୟା ନାହିଁ, ତୁମେ ଯେତେବେଳେ ଚାହିଁବ ଏଠାକୁ ଯିବାଆସିବା କରିପାରିବ । ସେପରି ସ୍ୱାଧୀନତା ତୁମର ଅଛି । ଏହା ମୋର ଓ ଶ୍ରୀ ଗୁରୁଙ୍କର ନିର୍ଣ୍ଣୟ; କିନ୍ତୁ ସବୁ ସମୟ ପରି ତୁମେ ତୁମର ନିର୍ଣ୍ଣୟ ନେବାପାଇଁ ସ୍ୱାଧୀନ ।''

ମୁଁ ମୁଣ୍ଡ ଓହଳାଇ ବସିରହିଲି । ଗୁରୁ ରିମ୍ପୋଚ କହିଲେ, ''ବୋଧିସତ୍ତ୍ୱଙ୍କ ମାର୍ଗକୁ ନିଜର କର, ମଧୁପ । ବୋଧିସତ୍ତ୍ୱ ଅନ୍ୟମାନଙ୍କୁ ନିର୍ବାଣ ଦେବାପାଇଁ ପୁନଃ ପୁନଃ ଜନ୍ମ ନେବାକୁ ପ୍ରସ୍ତୁତ । ଅର୍ହନ୍ତ ହିଁ କେବଳ ନିଜର ମୁକ୍ତି ଖୋଜେ, ଓମ୍ ବଜ୍ରସତ୍ତ୍ୱ ହୁମ୍ ।''

ମହାନ୍ ଯୀଶୁ କହିଲେ, ''ଗୋଟିଏ ମାତ୍ର ଆତ୍ମାକୁ ସାହାଯ୍ୟ କରିବାପାଇଁ ନିଜର ଦେହକୁ କ୍ରୁଶବିଦ୍ଧ କର, ହେ ମନୁଷ୍ୟର ପୁତ୍ର !''

ନାନକ ଦେବ କହିଲେ, ''ପରମାତ୍ମା ବଡ଼ ଦୟାଳୁ । ମୋର ଆଶୀର୍ବାଦ ଯେ, ତୁମେ ତାଙ୍କର ଗାରିମା ସଂସାରକୁ ଅବତରଣ କରାଇବାର ମାଧ୍ୟମ ହୁଅ । ସତନାମ, ହରି ହରି ୟା ରବ ।''

ଶିବ ଗୋରଖ କହିଲେ, ''ଧୁନି ଅନନ୍ତକାଳ ପର୍ଯ୍ୟନ୍ତ ଜଳୁଥିବା ଆବଶ୍ୟକ, ତୁମେ ତାହାକୁ ଜଳାଇ ରଖିବାପାଇଁ କାହାକୁ ଖୋଜ, ଅଲଖ ନିରଞ୍ଜନ, ବମ୍ ଭୋଲେ ।''

ମୁଁ କହିଲି, ''ମୁଁ ଆପଣଙ୍କର ନିତ୍ୟ ସେବକ । ମୁଁ ଜାଣିଲି, ସୂକ୍ଷ୍ମ ଅହଙ୍କାର, ଯାହା ନିଜର ବ୍ୟକ୍ତିଗତ ମୁକ୍ତିଦ୍ୱାରା ହିଁ ସନ୍ତୁଷ୍ଟ ହୁଏ, ଏବେ ଗଭୀର ଅବଚେତନରେ ରହିଯାଇଥିଲା । ଆଜି ତାହା ମୂଳ ସହିତ ଉତ୍ପାଟିତ ହେଲା, ନାଥମାନଙ୍କର ଧୁନିର ଜ୍ୱାଳାରେ ଜଳିଗଲା । ଜୟ ଭୋଲେନାଥ, ବମ୍ ଭୋଲେ । ଜଗନ୍ନାଥ ବ୍ରହ୍ମାଣ୍ଡର ଅଧିଷ୍ଠାତା, ରବ-ଇଲ-ଆଲିମୀନଙ୍କର ଜୟ । ମୁଁ ଶୀଘ୍ର ଫେରିଯିବି । ଶ୍ରୀ ଗୁରୁ ମୋତେ ଆଶୀର୍ବାଦ ଦିଅନ୍ତୁ ।''

ମୁଁ ଶ୍ରୀ ଗୁରୁଭ୍ୟୋ ନମଃ କହି ସାଷ୍ଟାଙ୍ଗ ପ୍ରଣାମ ଦଣ୍ଡବତ କରି ଲୋଟିଗଲି । ସେହି ମୁହୂର୍ତ୍ତରେ ମୁଁ ମୋ ନିଜକୁ ତମ୍ବୁ ମଧ୍ୟରେ ସଶରୀରେ ପଦ୍ମାସନରେ ବସିଥିବାର ଦେଖିଲି । ମୁଁ ଘଣ୍ଟା ଦେଖିଲି, ବାରଟା ବାଜି ମିନିଟିଏ ହୋଇଥିଲା ।

ଉଜ୍ଜ୍ୱଳ ଶୂନ୍ୟତା ମଧ୍ୟରେ ଶ୍ରୀ ଗୁରୁଙ୍କର ମଧୁର ବାଣୀ ଶୁଣାଗଲା, ''ମଧୁ, ଶ୍ରୀ ମଧୁ । ମୁଁ ସବୁବେଳେ ତୁମ ସହିତ ରହିଛି । ତୁମେ ମୋର ଅନ୍ତରାଗ୍ନିର ଏକ ସ୍ଫୁଲିଙ୍ଗ । ଏବେ ଶାନ୍ତି ଓ ଆନନ୍ଦର ସହିତ ଫେରିଯାଅ ।''

ହଠାତ୍ ମୋର ମୁଣ୍ଡ ଯନ୍ତ୍ରଣାରେ ଫାଟିଗଲା ପରି ଲାଗିଲା । ପୁଣି ମୋର ନାକରୁ ବହୁତ ରକ୍ତ ବହିଲା । ମୋ ପାଖରେ ଯେତେଟା ତଉଲିଆ ଥିଲା, ସବୁତକ ରକ୍ତ ସଫା କରିବାପାଇଁ ବ୍ୟବହାର କରିବାକୁ ପଡ଼ିଲା । ଯେତେବେଳେ ରକ୍ତସ୍ରାବ ବନ୍ଦ ହେଲା, ମୁଣ୍ଡବିନ୍ଧା ଉଭାନ୍ ହୋଇଗଲା । ଲାଗିଲା ଯେଉଁ ରକ୍ତ ମୋର ମସ୍ତିଷ୍କକୁ ତୀବ୍ର ଗତିରେ ଯାଇଥିଲା, ତାହାକୁ ନିର୍ଗତ କରି ଦିଆଗଲା । ମୁଁ ବୋତଲର ପାଣିରେ ମୋର ନାକ ଓ ମୁହଁ ଧୋଇଲି, ପାଦକୁ ଲମ୍ବାଇଲି ଓ ପୁଣି ପଦ୍ମାସନରେ ବସି ଗଭୀର ଧ୍ୟାନରେ ବୁଡ଼ିଗଲି । ଏଥର ମୁଁ ନିଜେ ନିଜକୁ ୟାକ ଓ ଖଚ୍ଚର ଆଦି ନିଜର ଚାରିପଟେ ଥିବା ସବୁ ପ୍ରାଣୀଙ୍କର ମଧ୍ୟରେ ଅନୁଭବ କରିପାରିଲି ।

ସକାଳେ ଆମେ ପରିକ୍ରମାର ଅନ୍ତିମ ଦୂରତ୍ୱ ପାର କରିଦେଲୁ ଏବଂ କିଛି ବିଶେଷ ଦୁର୍ଘଟଣାର ସମ୍ମୁଖୀନ ନ ହୋଇ ମାନସରୋବରରେ ପହଞ୍ଚିଗଲୁ । କେବଳ ଜଣେ ଖଚ୍ଚରରୁ ପଡ଼ିଗଲେ ଓ ତାଙ୍କର ପଞ୍ଜରା ଓ ପିଠିରେ ଆଘାତ ଲାଗିଲା । ଆମ ସହିତ ଯାତ୍ରାସଙ୍ଗୀ ଥିବା ମୋର ଅନ୍ତରଙ୍ଗ ଡାକ୍ତର ବନ୍ଧୁ ବେଶ ଚିନ୍ତିତ ହେଲେ, କିନ୍ତୁ ମୁଁ ଜାଣିଥିଲି ଯେ ଶ୍ରୀଗୁରୁଙ୍କ ଆଶୀର୍ବାଦରୁ ସବୁ ଠିକଣା ହୋଇଯିବ ।



# 50. ଯାତ୍ରା ଚାଲିଛି

ଏହା ହେଉଛି ଶେଷ ଅଧ୍ୟାୟ । ମୁଁ ଏହାକୁ ହରିଦ୍ୱାରରେ ନିଜର ତମ୍ବୁରେ ବସି ଲେଖୁଛି । ଗଙ୍ଗାର ଶୀତଳ ଜଳ ଏଠାରୁ ଦୂରରେ ନାହିଁ । ଆମେ ପ୍ରାୟ ଅଶୀଜଣ ଲୋକ ଏଠାରେ ପୂର୍ଣ୍ଣ କୁମ୍ଭରେ ଭାଗ ନେବାକୁ ଏକାଠି ହୋଇଛୁ । ପୂର୍ଣ୍ଣ କୁମ୍ଭ ବାରବର୍ଷରେ ଥରେ ଆସେ । ଆମେ ଏଠାରେ ଭାରତର କୋଣବିକୋଣରୁ ଆସିଥିବା ଶହଶହ ମହାତ୍ମାମାନଙ୍କର ଏବଂ ସେମାନଙ୍କର ଆଶୀର୍ବାଦ ନେବାକୁ ତଥା ପବିତ୍ର ଗଙ୍ଗାନଦୀରେ ସ୍ନାନ କରିବାକୁ ଆସିଥିବା ହଜାର ହଜାର ଲୋକଙ୍କର ମଝିରେ କିଛିଦିନ ବିତାଇବାକୁ ଆସିଛୁ । ଆମର ତମ୍ବୁ, ଭିଡ଼ଭାଡ଼ ଓ ମେଳାର ପାଟିତୁଣ୍ଡରୁ ଦୂରରେ ଏକ ନିର୍ଜନ ସ୍ଥାନରେ ରହିଛି; କିନ୍ତୁ ଏପରି ଦୂରରେ ନାହିଁ ଯେ ଆମେ ଯେତେବେଳେ ଚାହିଁଲେ ଚାଲି ଚାଲି ଯାଇ ମେଳାର ସବୁ କାର୍ଯ୍ୟକଳାପରେ ଭାଗ ନେଇ ପାରିବୁ ନାହିଁ ।

ଏହି ଆତ୍ମକଥା ସମାପନ ପରେ ଧନ୍ୟବାଦ ଜ୍ଞାପନ ପୂର୍ବରୁ ମୁଁ କିଛି ମହତ୍ତ୍ୱପୂର୍ଣ୍ଣ କଥା ସ୍ପଷ୍ଟ କରିଦେବାକୁ ଚାହେଁ । ଏହା ମୁଁ ଧୁନି ସମ୍ମୁଖରେ ଅଗ୍ନି ଏବଂ ପରମାତ୍ମାଙ୍କୁ ସାକ୍ଷୀ ମାନି କହୁଛି :

ମୋର ଦେହାବସାନ ପରେ ମୋର କୌଣସି ଏପରି ଜୀବନୀକୁ ପ୍ରାମାଣିକ ବୋଲି ଗ୍ରହଣ କରାଯିବ ନାହିଁ ଯେଉଁଥିରେ ଏପରି ସାମଗ୍ରୀ ଥିବ ଯାହା ମୋ ଦ୍ୱାରା ଲେଖାଯାଇଥିବା ଏହି ଆତ୍ମକଥାରେ ଦିଆଯାଇଥିବା ସାମଗ୍ରୀ ସହିତ ତଥ୍ୟଗତ ଭାବରେ ମେଳ ଖାଉ ନ ଥିବ, ବିଶେଷ ଭାବରେ ମୋତେ ମହିମାମଣ୍ଡିତ କରିବାପାଇଁ ଯେପରି ତଥ୍ୟକୁ ଭାଙ୍ଗିଚୂରି ଦିଆ ଯାଇ ନ ଥିବ ।

ଦ୍ୱିତୀୟ ମହତ୍ତ୍ୱପୂର୍ଣ୍ଣ କଥା ହେଲା : ଆଜି ପର୍ଯ୍ୟନ୍ତ ମୁଁ କାହାକୁ ଉତ୍ତରାଧିକାରୀ ଭାବରେ ନିର୍ଦ୍ଦିଷ୍ଟ କରି ନାହିଁ । ଅନେକ ବିଶ୍ୱସ୍ତ ଓ ସମର୍ପିତ ଲୋକ ଅଛନ୍ତି, ଯେଉଁମାନେ ମୋର ଘନିଷ୍ଠ; କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ କାହାରିକୁ ଏହି ଗୁରୁଦାୟିତ୍ୱ ନେବାପାଇଁ ପ୍ରସ୍ତୁତ ଥିବା ପରି ଜାଣିପାରୁ ନାହିଁ । ହୁଏତ ସେମାନଙ୍କ ମଧ୍ୟରୁ କାହା ମଧ୍ୟରେ ଆବଶ୍ୟକ ଗୁଣର ବିକାଶ ଘଟିବ କିମ୍ବା କୌଣସି ନୂତନ ଓ ପରିପକ୍ୱ ବ୍ୟକ୍ତି, ଯାହା ସହିତ ମୋର ସମ୍ପର୍କ ରହିଛି (ଯେପରିକି ମୋର ଅନେକ ପୁରୁଣା ବନ୍ଧୁମାନଙ୍କ ସହିତ ଅଛି) ଆସିବ । ମୁଁ ଧୈର୍ଯ୍ୟର ସହିତ ଅପେକ୍ଷା କରିବି ଏବଂ ଉପଯୁକ୍ତ ସମୟରେ ସ୍ପଷ୍ଟ ସଙ୍କେତ ଦେବି ।

ଆଧ୍ୟାତ୍ମିକ ଉତ୍ତରାଧିକାରୀ ଗ୍ରନ୍ଥିର ବହୁତ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟର ସ୍ପଷ୍ଟୀକରଣର ଆବଶ୍ୟକତା ରହିଛି । ଯଦି ମୃତ୍ୟୁ ପୂର୍ବରୁ ମୁଁ କୌଣସି ଆଧ୍ୟାତ୍ମିକ ଅଧିକାରୀ ନିଯୁକ୍ତ ନ କରେ, ମୁଁ ମୋର ବନ୍ଧୁମାନଙ୍କୁ ସାବଧାନ କରିଦେବାକୁ ଚାହେଁ ଯେ ସେମାନେ ଏପରି କୌଣସି ବ୍ୟକ୍ତିକୁ ମୋର ଉତ୍ତରାଧିକାରୀ ନିଯୁକ୍ତ କରିବେ ନାହିଁ ଯେ ଦାବି କରିବ ଯେ, ମୁଁ ସ୍ୱପ୍ନରେ ତାହାକୁ ଉତ୍ତରାଧିକାରୀ ନିଯୁକ୍ତ କରିଛି କିମ୍ବା ସେ ପ୍ରେତାତ୍ମା-ଲିଖନ ମାଧ୍ୟମରେ ନିଜର ଦାବିକୁ ପ୍ରମାଣିତ କରିବ କିମ୍ବା ସେହିପରି ଅନ୍ୟ ପ୍ରକାରର ଏଣୁ ତେଣୁ କଥାର ସାହାଯ୍ୟ ନେବ । ମୁଁ ଘୋଷଣା କରୁଛି, ମୁଁ ନିଜର ବିଚାରକୁ ବ୍ୟକ୍ତ କରିବାକୁ କିମ୍ବା ଲୋକମାନଙ୍କୁ ନିର୍ଦ୍ଦେଶ ଦେବାପାଇଁ ତଥାକଥିତ ମାଧ୍ୟମଗୁଡ଼ିକର ଉପଯୋଗ କରିବି ନାହିଁ ।

ଯେଉଁ ବିଶ୍ୱସ୍ତ, ଯୋଗ୍ୟ ତଥା ଦୟାଳୁ ବ୍ୟକ୍ତିମାନେ ଯେ ସତ୍‌ସଙ୍ଗର କ୍ରିୟାକଳାପରେ ଏବଂ ସ୍କୁଲଗୁଡ଼ିକୁ ଚଳାଇବାରେ ଫାଉଣ୍ଡେସନ୍‌ର ପ୍ରଶାସନିକ ପଦରେ ଥାଇ ସହାୟତା କରନ୍ତି, କେବେହେଲେ ନିଜକୁ ମୋର ଏକମାତ୍ର ଉତ୍ତରାଧିକାରୀ ବୋଲି ଭାବିନେବା ଉଚିତ ନୁହେଁ, ଯେତେବେଳ ପର୍ଯ୍ୟନ୍ତ ମୁଁ ଶରୀରତ୍ୟାଗ ପୂର୍ବରୁ ଏକଥା ସ୍ପଷ୍ଟ କରି ନ ଦେବି ।

ଏତିକି କହିବା ପରେ, ମୁଁ ସେହିସବୁ ଲୋକଙ୍କୁ ଧନ୍ୟବାଦ ଦେବାକୁ ଚାହେଁ, ଯେଉଁମାନେ ବାବାଜୀଙ୍କର ଯୋଜନାକୁ କାର୍ଯ୍ୟକାରୀ କରିବାପାଇଁ ସାହାଯ୍ୟ କରିଛନ୍ତି ।

ସର୍ବପ୍ରଥମେ ମୁଁ ମୋର ମାତା-ପିତାଙ୍କୁ ଧନ୍ୟବାଦ ଦେଉଛି, ଯେ ମୋତେ ସଂସାରକୁ ଆଣିଛନ୍ତି, ଯାହାଦ୍ୱାରା ମୁଁ ମୋତେ ସମର୍ପିତ ହୋଇଥିବା କାର୍ଯ୍ୟ କରିପାରିଛି । ମୁଁ ସେମାନଙ୍କୁ ମୋର ପ୍ରଥମ ସମ୍ଭରକ (Provider) ବୋଲି ସ୍ୱୀକାର କରେ । ମୁଁ ନିଜର ପତ୍ନୀଙ୍କୁ, ମୋ ପରି ଅଦ୍ଭୁତ ଓ ପାଗଳ ସ୍ୱାମୀକୁ ସହ୍ୟ କରିଥିବାରୁ ଧନ୍ୟବାଦ ଜଣାଉଛି । ମୋର ପିଲାମାନଙ୍କୁ ମୋର ବିଚିତ୍ର ବ୍ୟବହାରକୁ ବୁଝିପାରିବା ଏବଂ ସହାନୁଭୂତିପୂର୍ଣ୍ଣ ହେବାପାଇଁ ଧନ୍ୟବାଦ ଦେଉଛି । ତାହା ବ୍ୟତୀତ ମୁଁ ଅନ୍ୟ ସବୁ ଆଧ୍ୟାତ୍ମିକ ଏବଂ ସାଂସାରିକ ଯୋଗାଣଦାରଙ୍କୁ ଧନ୍ୟବାଦ ଦେଉଛି ଯେଉଁମାନେ ମୋର ପିଲାଦିନୁ ଏପର୍ଯ୍ୟନ୍ତ ମୋର କାର୍ଯ୍ୟରେ ନିଃସ୍ୱାର୍ଥ ଭାବରେ ସହାୟତା କରି ଆସିଛନ୍ତି ।

ଏହି ସବୁ ଲୋକଙ୍କୁ ଏବଂ ସେହି ସବୁ ଲୋକଙ୍କୁ ମଧ୍ୟ, ଯେ ନିରବ ଓ ଅଜ୍ଞାତ ରହି ମୋର ସହାୟତା କରନ୍ତି, ମୁଁ ପ୍ରଣାମ କରୁଛି । ବାରମ୍ବାର ବିନମ୍ରତାରେ ନଇଁପଡ଼ି ସେମାନଙ୍କର ପଦ-ଚୁମ୍ବନ କରୁଛି । ମୋର ପ୍ରାର୍ଥନା, ଶ୍ରୀ ଗୁରୁ ସେମାନଙ୍କ ଉପରେ ନିଜର ଅଗାଧ କୃପା ବର୍ଷଣ କରନ୍ତୁ ।

ଏହା ମୋର ଆତ୍ମକଥାର ସମାପ୍ତି ଏବଂ କାମନା କରେ ଯେ ଏହା ଅନ୍ୟ କାହାର ଆଧ୍ୟାତ୍ମିକ ଯାତ୍ରାର ପ୍ରାରମ୍ଭ ହେବ ।

ପ୍ରେମ ଓ ମୈତ୍ରୀ ସହିତ

**ଏମ୍.**



ଭାରତର ଦକ୍ଷିଣପ୍ରାନ୍ତରୁ ହିମାଳୟର ରହସ୍ୟମୟ ଉଚ୍ଚତା ପର୍ଯ୍ୟନ୍ତ ଜଣେ କିଶୋରଙ୍କର ରୋମାଞ୍ଚକର ଯାତ୍ରାର ବର୍ଣ୍ଣନା, ଯେଉଁଠାରେ ତାଙ୍କୁ ତାଙ୍କର ଜ୍ଞାନୀ, ଶକ୍ତିମାନ୍ ଏବଂ ସ୍ନେହମୟ ଗୁରୁଙ୍କର ଆଶ୍ରୟ ପ୍ରାପ୍ତ ହୁଏ ।

ଏକ ବିସ୍ମୟଉଦ୍ରେକକାରୀ, ରୋମାଞ୍ଚକ, ମହାନ୍ ଗୁରୁମାନଙ୍କ ସହିତ ସାକ୍ଷାତର ବର୍ଣ୍ଣନା, ଚେତନାର ଉଚ୍ଚତର ପରିଧି ଏବଂ ଆଧ୍ୟାତ୍ମିକ ଉପଲବ୍ଧି ଗୁଡ଼ିକରେ ପରିପୂର୍ଣ୍ଣ ପୁସ୍ତକ ।

- ଡକ୍ଟର କର୍ଣ୍ଣ ସିଂହ


Magenta Press

*Exclusive Distributor*


A. K. MISHRA
AGENCIES (P) LTD.

Rs. 270/-


ISBN 978-819100969-9